# ଧ୍ୱନ୍ୟାଲୋକ

ମୂଳ ରଚନା

ଆନନ୍ଦ ବର୍ଦ୍ଧନ




ପଣ୍ଡିତ କୁଳମଣି ମିଶ୍ର

# ଧ୍ୱନ୍ୟାଲୋକ

ମୂଳ ରଚନା

ଆନନ୍ଦ ବର୍ଦ୍ଧନ




ପଣ୍ଡିତ କୁଳମଣି ମିଶ୍ର

# ଅଗ୍ରଲେଖା

"ଧ୍ୱନ୍ୟାଲୋକ"ର ଓଡ଼ିଆ ଅନୁବାଦ ପ୍ରକାଶ ପାଇବା ଅତ୍ୟନ୍ତ ଆନନ୍ଦର ବିଷୟ । ଏହା ସଂସ୍କୃତ ସାହିତ୍ୟ ସମାଲୋଚକମାନଙ୍କର ଏକ ଆଦରଣୀୟ ଗ୍ରନ୍ଥ । ସାହିତ୍ୟର ମୂଲ୍ୟାଙ୍କନ ଲାଗି ବହୁଶତାବ୍ଦୀ ବ୍ୟାପୀ ପଣ୍ଡିତମାନେ ଏହି ଗ୍ରନ୍ଥର ସହାୟତା ଗ୍ରହଣ କରିଛନ୍ତି । ଆଧୁନିକ ଯୁଗର ସାହିତ୍ୟ ସମୀକ୍ଷକମାନେ ଏହି ଉପାଦେୟ ଗ୍ରନ୍ଥର ଆଲୋଚନା କରି, ନାନାଭାବରେ ଏହାର ବିଶେଷତ୍ୱ ପ୍ରତିପାଦନ କରିଛନ୍ତି । ଓଡ଼ିଶାର ସାହିତ୍ୟ ସ୍ରଷ୍ଟା ଓ ସାହିତ୍ୟ ଆଲୋଚକମାନେ ଏହି ଅନୁବାଦର ସଦ୍‌ବ୍ୟବହାର କରି ପାରିଲେ, 'ଏକାଡ଼େମୀର ଉଦ୍ୟମ ସାର୍ଥକ ହେବ । ଇତି ।

ଶ୍ରୀ ସନ୍ତୋଷ କୁମାର ସାହୁ
ସଭାପତି
ଓଡ଼ିଶା ସାହିତ୍ୟ ଏକାଡ଼େମୀ ।

# ଦୁଇ ପଦ

ଓଡ଼ିଆ ସାହିତ୍ୟର ବହୁମୁଖୀ ଉନ୍ନତି ବିଧାନ କରିବାକୁ ହେଲେ ବିଭିନ୍ନ ଭାଷାର ଉପାଦେୟ ଗ୍ରନ୍ଥମାନଙ୍କର ଅନୁବାଦ ଓଡ଼ିଆରେ ପ୍ରକାଶ କରିବା ଆବଶ୍ୟକ । ଧ୍ୱନ୍ୟାଲୋକ ସମଗ୍ର ଭାରତରେ ସହସ୍ରାଧିକ ବର୍ଷ ଧରି ଏକ ପ୍ରାମାଣିକ ସାହିତ୍ୟ-ସମାଲୋଚନାତ୍ମକ ଗ୍ରନ୍ଥରୂପେ ପଣ୍ଡିତମାନଙ୍କ ଦ୍ୱାରା ସ୍ୱୀକୃତ ହୋଇ ଆସିଛି । ଏହାର ଅନୁବାଦ ସ୍ୱର୍ଗତ ସ୍ୱନାମଧନ୍ୟ ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତି ଅଧ୍ୟୟନ କରି ଏକାଡେମୀ ପକ୍ଷରୁ ଏହାର ମୁଦ୍ରଣ ନିମନ୍ତେ ସୁପାରିସ କରିଥିଲେ । ତାଙ୍କର ସ୍ୱହସ୍ତାଙ୍କିତ ପତ୍ରଟି ଅନ୍ୟତ୍ର ସମାବେଶିତ ହୋଇଅଛି ।

ଧ୍ୱନ୍ୟାଲୋକ ଏକ ଜଟିଳ ଓ ଅତ୍ୟନ୍ତ ପାଣ୍ଡିତ୍ୟପୂର୍ଣ୍ଣ ଗ୍ରନ୍ଥ । ଆଲଂକାରିକ ତତ୍ତ୍ୱଆଲୋଚନାରେ ଓ "ଧ୍ୱନି"କୁ କାବ୍ୟର ଆତ୍ମାରୂପେ ପ୍ରତିପାଦନ କରି ଚିନ୍ତା ରାଜ୍ୟରେ ଏକ ଚମକ ଆଣିଦେବାରେ ଏହାର ଗୌରବ ଭାରତୀୟ ପଣ୍ଡିତସମାଜରେ ସୁପ୍ରତିଷ୍ଠିତ । ଅନୁବାଦକ ପଣ୍ଡିତ ଶ୍ରୀ କୁଳମଣି ମିଶ୍ର ସମୀକ୍ଷକ ଆର୍ତ୍ତବାବୁଙ୍କ ସୁପରାମର୍ଶ ଅନୁସାରେ ସ୍ଥାନେ ସ୍ଥାନେ ବ୍ୟାଖ୍ୟାନ ରୀତିକୁ ସରଳ କରି ଦେଇଛନ୍ତି ଓ ଶେଷରେ ପାରିଭାଷିକ ଶବ୍ଦମାନଙ୍କର ଅର୍ଥ ଲିପିବଦ୍ଧ କରିଛନ୍ତି ।

ଆଜି ସାହିତ୍ୟର ତାତ୍ତ୍ୱିକ ଆଲୋଚନା ଲାଗି ଶିକ୍ଷିତ ସମାଜର ଯେତିକି ବ୍ୟଗ୍ରତା ପ୍ରକାଶ ପାଉଛି, ତତୋଧିକ ପରିମାଣରେ ପ୍ରାଚ୍ୟ-ଚିନ୍ତାଧାରାର ଅଭାବ ପରିଲକ୍ଷିତ ହେଉଅଛି । ଏ ପରିସ୍ଥିତିରେ ଏହି ଅନୁବାଦ ଓଡ଼ିଶାର ପାଠକମାନଙ୍କୁ ଅବଶ୍ୟ ଉଦ୍‌ବୁଦ୍ଧ କରିବାର ଆଶା କରାଯାଏ । ଇତି ।

ଶ୍ରୀ ଗୌରୀ କୁମାର ବ୍ରହ୍ମା
ସେକ୍ରେଟାରୀ
ଓଡ଼ିଶା ସାହିତ୍ୟ ଏକାଡେମୀ ।

ଭୁବନେଶ୍ୱର
୨୫-୯-୧୯୭୪

# ସୂଚନା

'ଧ୍ୱନ୍ୟାଲୋକ' ସାହିତ୍ୟ ଭଣ୍ଡାରରେ ଗୋଟିଏ ସମୁଜ୍ଜ୍ୱଳ ରତ୍ନ । ତାହା ସଂସ୍କୃତ ଭାଷାରେ ଲେଖା ଯାଇଥିଲେ ମଧ୍ୟ ତାହାର ତତ୍ତ୍ୱ କେବଳ ସଂସ୍କୃତ ସାହିତ୍ୟ ସକାଶେ ଉଦ୍ଦିଷ୍ଟ ନୁହେ କିନ୍ତୁ ବିଶ୍ୱର ସକଳ ପ୍ରକାର ସାହିତ୍ୟ ପାଇଁ ଚିରନ୍ତନ ପଥପ୍ରଦର୍ଶକରୂପେ ତାହାର ସ୍ଥାନ ରହିଅଛି ।

ପୁରାତନ ଆଲଂକାରିକମାନେ ସାହିତ୍ୟରେ ଅଳଂକାରକୁ ମୁଖ୍ୟସ୍ଥାନ ଦେଉଥିଲେ । ସେହି କାରଣରୁ ଅଦ୍ୟାବଧି ସାହିତ୍ୟ ବିଚାରକମାନଙ୍କର ଆଲଂକାରିକ ଏବଂ ସାହିତ୍ୟର ବିଚାରପୂର୍ଣ୍ଣ ଗ୍ରନ୍ଥମାନଙ୍କର ନାମ ଅଳଂକାର ଗ୍ରନ୍ଥ ବୋଲି ପ୍ରସିଦ୍ଧି ରହିଅଛି । ନାଟ୍ୟ ଶାସ୍ତ୍ରକାର ଆଚାର୍ଯ୍ୟ ଭରତ, ରସର ସ୍ୱରୂପ ନିର୍ଣ୍ଣୟ କରି ଯାଇଥିଲେ ମଧ୍ୟ ପ୍ରାଚୀନ ଆଲଂକାରିକମାନେ ସେଥିପ୍ରତି ଆଗ୍ରହ ପ୍ରକାଶ କରି ନାହାନ୍ତି । ଧ୍ୱନିକାରଙ୍କ ଧ୍ୱନିବାଦ କାବ୍ୟ-ଜଗତରେ ଏକ ନୂତନ ଆଲୋକ ସୃଷ୍ଟିକଲା ପରେ, କାବ୍ୟରେ ଆଲଂକାରର ସ୍ଥାନ ଆଉ ମୁଖ୍ୟ ହୋଇ ରହି ପାରିଲା ନାହିଁ । ଧ୍ୱନି, କାବ୍ୟର ମୁଖ୍ୟ ପ୍ରତିପାଦ୍ୟ ବସ୍ତୁ ବୋଲି ସମସ୍ତେ ଏକସ୍ୱରରେ ସ୍ୱୀକାର କରିବାକୁ ଲାଗିଲେ । ଅଦ୍ୟାବଧି ସାହିତ୍ୟିକଗଣ ତାଙ୍କ ମତକୁ ଉପେକ୍ଷା କରି ପାରି ନାହାନ୍ତି, କିମ୍ବା ଉପେକ୍ଷା କରିବା ସମ୍ଭବ ନୁହେ । ଏଣୁ ଧ୍ୱନିକାରଙ୍କୁ ସାହିତ୍ୟ କ୍ଷେତ୍ରରେ ଜଣେ ଯୁଗପ୍ରବର୍ତ୍ତକ ବୋଲି କୁହାଯିବା ଉଚିତ ।

"କାବ୍ୟସ୍ୟାତ୍ମା ଧ୍ୱନିରିତି ବୁଧୈର୍ୟଃ ସମାମ୍ନାତପୂର୍ବଃ" ବୋଲି ଧ୍ୱନିକାର ଲେଖିବା ଦ୍ୱାରା ତାଙ୍କର ବହୁପୂର୍ବରୁ ସାହିତ୍ୟରେ ଧ୍ୱନିବାଦର ପ୍ରଚଳନ ସେ ଦର୍ଶାଇ ଥିଲେ ମଧ୍ୟ 'ଧ୍ୱନ୍ୟାଲୋକ'ଠାରୁ ପୁରାତନ କୌଣସି ଧ୍ୱନି ପ୍ରତିପାଦକ ଅଳଂକାର ଗ୍ରନ୍ଥ ଉପଲବ୍ଧ ହେଉ ନ ଥିବାରୁ, ଧ୍ୱନିକାରଙ୍କୁ ମୁଖ୍ୟତଃ ସାହିତ୍ୟରେ ଧ୍ୱନିବାଦର ପ୍ରବର୍ତ୍ତକ ବୋଲି ଗ୍ରହଣ କରିବାକୁ ହେବ ।

## ବ୍ୟାକରଣରେ ଧ୍ୱନିର ସ୍ୱରୂପ

ଧ୍ୱନ୍ୟାଲୋକ ପୂର୍ବରୁ ବ୍ୟାକରଣରେ ଧ୍ୱନିସମ୍ବନ୍ଧେ ବିଚାର କରାଯାଇଥିଲା । ବୈୟାକରଣମାନେ ଶ୍ରୂୟମାଣ ଶବ୍ଦ ବା ସ୍ଫୋଟକ ଶବ୍ଦକୁ

'ଧ୍ୱନି'ବୋଲି କହୁଥିଲେ । ଶବ୍ଦଜ ଶବ୍ଦର ତାତ୍ପର୍ଯ୍ୟ ଏହା ଯେ, ବକ୍ତା କୌଣସି ଗୋଟିଏ ଶବ୍ଦକୁ ଉଚ୍ଚାରଣ କଲେ ବା ଦ୍ରବ୍ୟର ଘାତ ପ୍ରତିଘାତରେ କୌଣସି ଶବ୍ଦ ଜାତ ହେଲେ ତାହା ଆକାଶରେ ତରଙ୍ଗାୟିତ ଗତିରେ ଆସି ଶ୍ରୋତାର କର୍ଣ୍ଣବିବରରେ ପ୍ରବେଶ କରିଥାଏ । ଏଠାରେ ତରଙ୍ଗ ସାଦୃଶ୍ୟର ଅଭିପ୍ରାୟ ଏହା ଯେ, ଯେପରି କୌଣସି ଜଳାଶୟ ମଧ୍ୟରେ ଆଘାତ ସୃଷ୍ଟି କଲେ ସେଥିରେ ତରଙ୍ଗ ଉତ୍ପନ୍ନ ହୋଇ ଏକ ତରଙ୍ଗ ଅନ୍ୟ ତରଙ୍ଗକୁ ଏବଂ ସେହି ତରଙ୍ଗ ଆଉ ଏକ ତରଙ୍ଗକୁ ସୃଷ୍ଟିକରିବା ଦ୍ୱାରା କ୍ରମରେ ତରଙ୍ଗମାଳା ସୃଷ୍ଟି ହୋଇ କୂଳ ପର୍ଯ୍ୟନ୍ତ ଗତି କରିଥାଏ, ସେହି ନ୍ୟାୟରେ ଉଚ୍ଚରିତ ବର୍ଣ୍ଣମାଳା ବା ଅନ୍ୟଶବ୍ଦ ଶବ୍ଦରୁ ଶବ୍ଦାନ୍ତର ସୃଷ୍ଟିପୂର୍ବକ ଆକାଶମାର୍ଗରେ ଗତି କରି କର୍ଣ୍ଣଶଷ୍କୁଲୀ ଦ୍ୱାରା ଶ୍ରୋତାର ଗ୍ରାହ୍ୟ ହୋଇଥାନ୍ତି । ଏତାଦୃଶ ଶ୍ରବଣ ଗୋଚର ଯୋଗ୍ୟ ଶବ୍ଦକୁ ବୈୟାକରଣମାନେ ଧ୍ୱନି ବୋଲି କହିଥାନ୍ତି ।

## ବ୍ୟାକରଣରେ ବ୍ୟଞ୍ଜନା

ବୈୟାକରଣମାନଙ୍କ ମତରେ ଯେ କୌଣସି ଉଚ୍ଚାରିତ ଶବ୍ଦର ପୂର୍ବାବୟବଗୁଡ଼ିକ ଉଚ୍ଚାରଣ କ୍ରମରେ ଶ୍ରୋତାର କର୍ଣ୍ଣବିବରରେ ପ୍ରବେଶ କରିବା ମାତ୍ରେ ସଂସ୍କାରମାତ୍ରାବଶେଷ ହୋଇ ବିନଷ୍ଟ ହୋଇଯାନ୍ତି । ଉକ୍ତ ଉଚ୍ଚରିତ ଶବ୍ଦର ଏକମାତ୍ର ଅନ୍ତ୍ୟ ଅବୟବଟି ଶ୍ରୋତାର ବୁଦ୍ଧିସ୍ଥ ହୋଇ ପୂର୍ବାବୟବ ସଂସ୍କାରମାନଙ୍କ ସହଯୋଗରେ ଅଖଣ୍ଡାର୍ଥ ପ୍ରତିପାଦକ ସ୍ଫୋଟକୁ ବୋଧ କରାଏ । ଏହି ସ୍ଫୋଟର ପ୍ରକାଶକ ଧ୍ୱନି ବା ଶ୍ରୂୟମାଣ ଶବ୍ଦ ବ୍ୟଞ୍ଜକ, ଏବଂ ଧ୍ୱନି ଦ୍ୱାରା ପ୍ରକାଶିତ ସ୍ଫୋଟହିଁ ବ୍ୟଙ୍ଗ୍ୟ । ଏହା ବୈୟାକରଣମାନଙ୍କର ସିଦ୍ଧାନ୍ତ । ସେମାନେ ସ୍ଫୋଟ ଓ ଧ୍ୱନି ମଧ୍ୟରେ ବ୍ୟଙ୍ଗ୍ୟ ବ୍ୟଞ୍ଜକ ଭାବ ସ୍ୱୀକାର କରୁଥିବାରୁ ବ୍ୟଙ୍ଗ୍ୟ ବ୍ୟଞ୍ଜକ ସମ୍ବନ୍ଧରୂପିଣୀ ବ୍ୟଞ୍ଜନାବୃତ୍ତିକୁ ଅବଶ୍ୟ ସ୍ୱୀକାର କରୁଛନ୍ତି ।

## ସାହିତ୍ୟ ଧ୍ୱନି

ପ୍ରାଧାନୀଭୂତ ବ୍ୟଙ୍ଗ୍ୟ ଏବଂ ପ୍ରଧାନୀଭୂତ ବ୍ୟଙ୍ଗ୍ୟର ବ୍ୟଞ୍ଜକ ଶବ୍ଦାର୍ଥମୟ କାବ୍ୟବିଶେଷ ସାହିତ୍ୟକପରମ୍ପରାପ୍ରସିଦ୍ଧ ଧ୍ୱନି ଅଟେ । ଧ୍ୱନିକାର ଧ୍ୱନିର ସ୍ୱରୂପ ଦର୍ଶାଇବା ପାଇଁ ଲେଖିଛନ୍ତି ଯେ :—

ଯତ୍ରାର୍ଥଃ ଶବ୍ଦୋ ବା ତମର୍ଥମୁପସର୍ଜନୀକୃତସ୍ୱାର୍ଥୌ
ବ୍ୟଙ୍‌କ୍ତଃ କାବ୍ୟବିଶେଷଃ ସ ଧ୍ୱନିରିତି ସୂରିଭିଃ କଥିତଃ ॥

ଆଚାର୍ଯ୍ୟ ଅଭିନବଗୁପ୍ତ ଏହି କାରିକାର ବ୍ୟାଖ୍ୟାନରେ ବ୍ୟୁତ୍ପତ୍ତି-ଭେଦ ଅନୁସାରେ ବ୍ୟଞ୍ଜକ ଶବ୍ଦ, ବ୍ୟଞ୍ଜକ ଅର୍ଥ, ବ୍ୟଙ୍ଗ ଅର୍ଥ, ଏବଂ ବ୍ୟଙ୍ଗ୍ୟ ଓ ବ୍ୟଞ୍ଜକର ସମ୍ବନ୍ଧରୂପା ବ୍ୟଞ୍ଜନାବୃତ୍ତି, ତଥା ଏମାନଙ୍କର ସମୁଦାୟ ସ୍ୱରୂପ କାବ୍ୟ, ଏହିପରି ପାଞ୍ଚଗୋଟି ଯାକ ଧ୍ୱନି ବୋଲି ନିର୍ଣ୍ଣୟ କରିଅଛନ୍ତି । ଏହା ହିଁ ସାହିତ୍ୟିକ ପରମ୍ପରାରେ ଅପ୍ରତିଦ୍ୱନ୍ଦୀ ସିଦ୍ଧାନ୍ତରୂପେ ରହିଅଛି ।

## ବ୍ୟାକରଣ ଧ୍ୱନି ଓ ସାହିତ୍ୟଧ୍ୱନି ମଧ୍ୟରେ ପ୍ରଭେଦ

ବୈୟାକରଣମାନେ ଶବ୍ଦମାତ୍ରକୁ ଅର୍ଥାତ୍ ବାଚକ, ଲକ୍ଷକ ଓ ବ୍ୟଞ୍ଜକ ଶବ୍ଦକୁ ତଥା ନିରର୍ଥକ ମୃଦଙ୍ଗାଦି ଶବ୍ଦକୁ ମଧ୍ୟ ଧ୍ୱନି ବୋଲି କହନ୍ତି । କିନ୍ତୁ ସାହିତ୍ୟିକମାନେ ଶବ୍ଦ ସାମାନ୍ୟକୁ ଧ୍ୱନି ବୋଲି ନ କହି ପ୍ରଧାନୀଭୂତ ବ୍ୟଙ୍ଗ୍ୟର ବ୍ୟଞ୍ଜକ ଶବ୍ଦ ବିଶେଷକୁ ଧ୍ୱନି ବୋଲି କହିଥାନ୍ତି । ପୁଣି ବୈୟାକରଣମାନଙ୍କ ମତରେ ଶବ୍ଦ କେବଳ ଧ୍ୱନି, କିନ୍ତୁ ସାହିତ୍ୟିକ ବ୍ୟଙ୍ଗ୍ୟ, ବ୍ୟଞ୍ଜକ (ଶବ୍ଦ ଓ ଅର୍ଥ), ବ୍ୟଞ୍ଜନାବୃତ୍ତି ତଥା ଏ ସବୁର ସମୁଦାୟ-ରୂପ କାବ୍ୟକୁ ଧ୍ୱନି ବୋଲି କହନ୍ତି ।

ବୈୟାକରଣମାନେ ତାଙ୍କ ପ୍ରତିପାଦିତ ଧ୍ୱନିର ବ୍ୟଞ୍ଜକତା ସ୍ୱୀକାର କରନ୍ତି । ସାହିତ୍ୟିକମାନେ ମଧ୍ୟ ବ୍ୟଞ୍ଜକକୁ ଧ୍ୱନି ମଧ୍ୟରେ ଗ୍ରହଣ କରୁଥିବାରୁ ଧ୍ୱନିର ବ୍ୟଞ୍ଜକତା ସ୍ୱୀକାର କରନ୍ତି । ଅତଏବ ଧ୍ୱନିବାଦରେ ବୈୟାକରଣ ଓ ସାହିତ୍ୟିକମାନଙ୍କ ମଧ୍ୟରେ ଏତିକି ମାତ୍ର ସାମ୍ୟ ଦେଖା-ଯାଏ ଯେ ଧ୍ୱନିର ବ୍ୟଞ୍ଜକତା ଅଛି । ଏହି ବିଷୟରେ ଉଭୟ ଏକମତ । ଅନ୍ୟଥା ଉଭୟଙ୍କର ଧ୍ୱନିସିଦ୍ଧାନ୍ତ ପୃଥକ୍ ପୃଥକ୍ ।

## ଧ୍ୱନ୍ୟାଲୋକରେ ବ୍ୟଞ୍ଜନା

ବ୍ୟଞ୍ଜନାର ଅସ୍ତିତ୍ୱ ଉପରେ ହିଁ ଧ୍ୱନିବାଦ ପ୍ରତିଷ୍ଠିତ । ଧ୍ୱନ୍ୟା-ଲୋକକାର ଯେଉଁ ରୀତିରେ ଯୁକ୍ତି ପ୍ରମାଣ ପ୍ରଦର୍ଶନପୂର୍ବକ ଚତୁରସ୍ରଭାବେ ବ୍ୟଞ୍ଜନାବୃତ୍ତିକୁ ସ୍ଥାପନ କରି ପାରିଛନ୍ତି, ତାଙ୍କ ପୂର୍ବରୁ କେହି ହେଲେ

ତାତ୍ପର୍ଯ୍ୟ ଶକ୍ତିରେ ବ୍ୟଞ୍ଜନା ନିରୂପଣ କରିପାରି ନ ଥିଲେ, ଏଣୁ ଧ୍ୱନ୍ୟାଲୋକ ଗ୍ରନ୍ଥକୁ ହିଁ ଧ୍ୱନି ଓ ବ୍ୟଞ୍ଜନା ସ୍ଥାପନ ବିଷୟରେ 'ସର୍ବପ୍ରଥମ ଓ ସର୍ବପ୍ରଧାନ ଗ୍ରନ୍ଥବୋଲି ସ୍ୱୀକାର କରିବାକୁ ପଡ଼ିବ ।

ପ୍ରାଚୀନ ଆଚାର୍ଯ୍ୟମାନଙ୍କ ମଧ୍ୟରେ ଅଭିହିତାନ୍ୱୟବାଦୀ ମୀମାଂସକ-ମାନେ ଅଭିଧା, ତାତ୍ପର୍ଯ୍ୟ ଓ ଲକ୍ଷଣା, ଏହିପରି ତିନିଗୋଟି ବୃତ୍ତି ସ୍ୱୀକାର କରୁଥିଲେ ଏବଂ ଅନ୍ୱିତାଭିଧାନବାଦୀ ପ୍ରଭାକରଭଟ୍ଟପ୍ରମୁଖ ଅଭିଧା ଓ ଲକ୍ଷଣା ଏହି ଦୁଇଗୋଟି ମାତ୍ର ବୃତ୍ତି ମାନୁଥିଲେ । ଏମାନେ ବ୍ୟଞ୍ଜନାର ଅସ୍ତିତ୍ୱ ମଧ୍ୟ ଉପଲବ୍ଧି କରି ନାହାନ୍ତି । ବୈୟାକରଣମାନେ ବ୍ୟଙ୍ଗ୍ୟ ଓ ବ୍ୟଞ୍ଜକର ସତ୍ତା ସ୍ୱୀକାର କରିବା ଦ୍ୱାରା ବ୍ୟଞ୍ଜନାର ସତ୍ତା ଉପଲବ୍ଧି କରୁଥିଲେ ମଧ୍ୟ, ତାହାର ସ୍ୱରୂପ ନିର୍ଣ୍ଣୟ କରିବାରେ ସମର୍ଥ ହୋଇପାରି ନ ଥିଲେ । ଆଉ ପୁଣି ସେମାନେ ବାଚକ ଚ, ବା, ପ୍ରଭୃତି ନିପାତ ଶବ୍ଦକୁ ମଧ୍ୟ ଦ୍ୟୋତକ ବା ବ୍ୟଞ୍ଜକ ବୋଲି କହନ୍ତି । ଏଣୁ ସେମାନଙ୍କ ପ୍ରତିପାଦିତ ବ୍ୟଙ୍ଗ୍ୟ ବ୍ୟଞ୍ଜକ' ଭାବଠାରୁ ଧ୍ୱନ୍ୟାଲୋକ ପ୍ରତିପାଦିତ ବ୍ୟଙ୍ଗ୍ୟବ୍ୟଞ୍ଜକ ଭାବରେ ନୂତନତା ସ୍ପଷ୍ଟ ହେଉଅଛି ।

ଗ୍ରନ୍ଥକାର ବ୍ୟଞ୍ଜନା ସ୍ଥାପନ କରିବାକୁ ଯାଇ ଅଭିଧା, ଲକ୍ଷଣା ଓ ତାତ୍ପର୍ଯ୍ୟଠାରୁ ବ୍ୟଞ୍ଜକାବୃତ୍ତିର ତଥା ଅଭିଧେୟାର୍ଥ ଓ ଲକ୍ଷ୍ୟାର୍ଥଠାରୁ ବ୍ୟଙ୍ଗ୍ୟାର୍ଥର ଏବଂ ବାଚକ ଓ ଲକ୍ଷକ ଶବ୍ଦଠାରୁ ବ୍ୟଞ୍ଜକ ଶବ୍ଦର ପାର୍ଥକ୍ୟ ପ୍ରାଞ୍ଜଳଭାବେ ଦର୍ଶାଇ ଅଛନ୍ତି ।

## ବ୍ୟଞ୍ଜନାର ଅଭିଧାଠାରୁ ଭେଦ

ଅଭିଧାଠାରୁ ବ୍ୟଞ୍ଜନାର ପ୍ରଭେଦ ଦର୍ଶାଇବାକୁ ଧ୍ୱନ୍ୟାଲୋକକାରଙ୍କୁ ନାନାସ୍ଥଳରେ ନାନାମତବାଦ ଖଣ୍ଡନ କରିବାକୁ ପଡ଼ିଛି । ସଂକ୍ଷେପତଃ ଅଭିଧା ସଂକେତିତ ପ୍ରସିଦ୍ଧ ଅର୍ଥକୁ ମାତ୍ର ବୁଝାଏ, କିନ୍ତୁ ବ୍ୟଞ୍ଜନା ପ୍ରକରଣାଦି ସାମର୍ଥ୍ୟରୁ ଆକ୍ଷିପ୍ତ ଅର୍ଥକୁ ବୁଝାଏ । ବାଚ୍ୟାର୍ଥ ବ୍ୟଙ୍ଗ୍ୟାର୍ଥର ହେତୁ ସଦୃଶ । ସେ ବ୍ୟଙ୍ଗ୍ୟାର୍ଥ ପ୍ରତୀତିର ପୂର୍ବରୁ ପ୍ରତୀତ ହୋଇଥାଏ, କିନ୍ତୁ ବ୍ୟଙ୍ଗ୍ୟାର୍ଥ ବାଚ୍ୟାର୍ଥ ପ୍ରତୀତି ପରେ ପ୍ରତୀତ ହୁଏ । ବାଚ୍ୟାର୍ଥ ସ୍ୱରୂପ, ସଂଖ୍ୟା-ପ୍ରଭୃତିରେ ପରିଚ୍ଛିନ୍ନ କିନ୍ତୁ ବ୍ୟଙ୍ଗ୍ୟାର୍ଥ ଅପରିଚ୍ଛିନ୍ନ । ଆମ ଭାଷାରେ ଏହାର ଗୋଟିଏ କ୍ଷୁଦ୍ର ଉଦାହରଣ ଯଥା :—

"(ଦିନ) ଗୃତଷ୍ଠା ହେଲ" ବୋଲି କହିଲେ ସାଧାରଣତଃ ଏହାର ବାଚ୍ୟାର୍ଥ ହେଉଛି, ଅପରାହ୍ଣର ଚତୁର୍ଥ ଘଣ୍ଟା ସୂଚିତ ସମୟ ସମାପ୍ତ ହେଲା, ଏହା ଭିନ୍ନ ଅନ୍ୟପ୍ରକାର ବାଚ୍ୟାର୍ଥ ଏଥିରୁ ଜଣାଯାଏ ନାହିଁ, ଏଣୁ ଏହାର ବାଚ୍ୟାର୍ଥ ସଂଖ୍ୟା ହେଲା ଏକ, ଏବଂ ପ୍ରତ୍ୟେକ ଶ୍ରୋତା ଏହି ବାକ୍ୟରୁ ଏହି ଅର୍ଥକୁ ସମାନଭାବେ ଗ୍ରହଣ କରିଥାନ୍ତି । କିନ୍ତୁ ଧ୍ୱନ୍ୟାଲୋକ କର୍ତ୍ତାର ଦୃଷ୍ଟିରେ ଦେଖିବାକୁ ହେଲେ ଏହି ବାକ୍ୟର ବ୍ୟଙ୍ଗ୍ୟାର୍ଥ ଅସୀମ, ଏବଂ ସେହିସବୁ ପ୍ରକାର ବ୍ୟଙ୍ଗ୍ୟାର୍ଥ, ବାଚ୍ୟାର୍ଥଠାରୁ ସମ୍ପୂର୍ଣ୍ଣରୂପେ ପୃଥକ୍ । ଏହି ବ୍ୟଙ୍ଗ୍ୟାର୍ଥ ଦେଶ, କାଳ, ବକ୍ତା, ଓ ବୋଦ୍ଧା ଭେଦରେ ବିଭିନ୍ନ ରୂପ ଧାରଣ କରେ । ଯଥା:—

୧ ।·ଯଦି କେହି ଗୃତଷ୍ଠାବେଳେ ସାଙ୍ଗ ହୋଇ ବୁଲିଯିବାକୁ କବାବ୍ ଦେଇଥିବା ସାଙ୍ଗକୁ ଯାଇ "ଗୃତଷ୍ଠା ହେଲ" ବୋଲି କହେ, ତେବେ ସେଠି ଅନ୍ୟଜଣକ ସେଥିରୁ ଏହି ଅର୍ଥ ବୁଝିବ ଯେ "ଆସ ବୁଲିଯିବା" କିମ୍ବା "ବିଳମ୍ବ କର ନାହିଁ, ଅଥବା "ତୁମ୍ଭେ ଡେରି କରୁଛ" ଇତ୍ୟାଦି ।

୨ । ଯଦି ଘଣ୍ଟା ପିଟିବା ପାଇଁ ନିଯୁକ୍ତ ବ୍ୟକ୍ତିକୁ ଏହା କୁହାଯାଏ ତେବେ ସେ ବୁଝିବ ଯେ "ଘଣ୍ଟା ବାଡ଼ାଅ ।"

୩ । ଯଦି ବକ୍ତା ବନ୍ଧୁଙ୍କ ଆଗମନ ସମୟ ଅତୀତ ହେବା ପରେ କହେ, ତେବେ ସେଠି ଏହି ବାକ୍ୟର ଅର୍ଥ ହେଉଛି, "ବନ୍ଧୁ ଆସିଲେ ନାହିଁ କିମ୍ବା ବନ୍ଧୁ ଆସିବେ ନାହିଁ ।"

୪ । ମାଆ ଯଦି ଘରେ ଥାଇ ପାଚକ ପ୍ରତି ଏହି ବାକ୍ୟ ବ୍ୟବହାର କଲେ ତେବେ ସେଠି ତାର ଅର୍ଥ ହେଉଛି, "ପିଲାଙ୍କର ସ୍କୁଲରୁ ଫେରିବା ବେଳ ହେଲଣି, ଚଞ୍ଚଳ ଜଳଖିଆ ପ୍ରସ୍ତୁତ କର ।" ଯଦି ସେ କୌଣସି ସଙ୍ଗିନୀସହ ଆଳାପ କରିବା ମଧ୍ୟରେ ଏହା ପ୍ରକାଶ କଲେ ତେବେ ତାହାର ଅର୍ଥ ହେଉଛି, "ପିଲାଙ୍କର ସ୍କୁଲରୁ ଫେରିବା ସମୟ ହୋଇଗଲଣି ଆଉ ଆଳାପ ବଢ଼ିଧିଯୁ ନୁହେ ।"

୫ । କୌଣସି ଲୋକର ଗାଡ଼ିବେଳ ଗଡ଼ି ଯାଇଥିଲେ, ତା ପକ୍ଷରେ ଏହାର ଅର୍ଥ "ଯାଅ ନାହିଁ ।"

୬ । ଗାଡିବେଳ ନିକଟେଇ ଯାଇଥିଲେ ଏହାର ଅର୍ଥ ହେଉଛି "ଶୀଘ୍ର ଯାଅ", ଇତ୍ୟାଦି ।

ଏହି ସ୍ଥଳରେ ବାକ୍ୟରୁ ଗୋଟିଏ ମାତ୍ର ଅଭିଧେୟ ଅର୍ଥ ପ୍ରକାଶ ପାଉଥିବା ସ୍ଥଳେ ଅନନ୍ତ ବ୍ୟଙ୍ଗ୍ୟ ଅର୍ଥ ପ୍ରକାଶ ପାଏ, ଏବଂ ଏତାଦୃଶ ବ୍ୟଙ୍ଗ୍ୟ ଅର୍ଥଗୁଡ଼ିକୁ କେହି କେବେ ଅଭିଧେୟ ଅର୍ଥ ବୋଲି କହନ୍ତି ନାହିଁ । ଏଣୁ ନିଶ୍ଚିତଭାବେ ଅଭିଧାଠାରୁ ବ୍ୟଞ୍ଜନାର ଏବଂ ବାଚ୍ୟାର୍ଥଠାରୁ ବ୍ୟଙ୍ଗ୍ୟାର୍ଥର ଭେଦ ରହିଅଛି ।

ବ୍ୟଙ୍ଗ୍ୟାର୍ଥ ପ୍ରକାଶ ପାଉଥିବା ସ୍ଥଳରେ ଯେଉଁ ଶବ୍ଦଗୁଡ଼ିକ ବାଚ୍ୟାର୍ଥର ପ୍ରକାଶ ପାଇଁ ବାଚକ ନାମ ଧାରଣ କରିଥାନ୍ତି, ଠିକ୍ ସେହି ଶବ୍ଦଗୁଡ଼ିକ ବ୍ୟଙ୍ଗ୍ୟାର୍ଥ ପ୍ରକାଶ କରାଇବା ସମୟରେ ବ୍ୟଞ୍ଜକ ସଂଜ୍ଞା ଧାରଣ କରନ୍ତି । ଉଦାହୃତ "ସୂର୍ଯ୍ୟ ଅସ୍ତ ହେଲା" ବାକ୍ୟର ପଦ ଦୁଇଟି "ଚତୁର୍ଥ ଘଣ୍ଟା ସମାପ୍ତ ହେଲା" ଏହି ବାଚ୍ୟ ଅର୍ଥକୁ ବୁଝାଇବା ନିମନ୍ତେ ବାଚକ କିନ୍ତୁ ବ୍ୟଙ୍ଗ୍ୟ ଅର୍ଥମାନଙ୍କୁ ବୁଝାଇବା ଅବସରରେ ବ୍ୟଞ୍ଜକ ଅଟନ୍ତି ।

## ବ୍ୟଞ୍ଜନାର ଲକ୍ଷଣାଠାରୁ ପ୍ରଭେଦ

ଲକ୍ଷଣାଠାରୁ ବ୍ୟଞ୍ଜନାର ପ୍ରଭେଦ ଦର୍ଶାଇବାକୁ ଯାଇ ସେ ଭିନ୍ନ ଭିନ୍ନ ନାମରେ ଲକ୍ଷଣାକୁ ବ୍ୟବହାର କରୁଥିବା ବିଭିନ୍ନ ମତବାଦୀଙ୍କର ମୁଖମୁଦ୍ରଣ ନିମନ୍ତେ ଭକ୍ତି, ଗୁଣବୃତ୍ତି ଓ ଅମୁଖ୍ୟାବୃତ୍ତି ମଧ୍ୟରେ ବ୍ୟଞ୍ଜନା ଅନ୍ତର୍ଭୁକ୍ତ ହୋଇ ନ ପାରେ, ବ୍ୟଞ୍ଜନା ଏମାନଙ୍କଠାରୁ ପୃଥକ୍ ବୋଲି ବାରମ୍ବାର ବୁଝାଇଛନ୍ତି । ରୂଢ଼ିମୂଳା ଲକ୍ଷଣାରେ ବ୍ୟଙ୍ଗ୍ୟାର୍ଥର ଗନ୍ଧପର୍ଯ୍ୟନ୍ତ ନ ଥାଏ; ପ୍ରୟୋଜନମୂଳା ଲକ୍ଷଣାସ୍ଥଳରେ ପ୍ରୟୋଜନଟି ହିଁ ବ୍ୟଙ୍ଗ୍ୟ । ସେ ସ୍ଥଳରେ ଲକ୍ଷଣାବୃତ୍ତି କେବଳ ଲକ୍ଷ୍ୟାର୍ଥକୁ ବୁଝାଏ ସିନା, ପ୍ରୟୋଜନକୁ ବୁଝାଇ ପାରେ ନାହିଁ । କିନ୍ତୁ ପ୍ରୟୋଜନକୁ ବ୍ୟଞ୍ଜନାବୃତ୍ତି ବୁଝାଇ ଥାଏ । ଯଥା :—ଯଦି କେହି ବକ୍ତା ଜଣେ ଉପସ୍ଥିତ ବିଜ୍ଞ ବ୍ୟକ୍ତିଙ୍କୁ ଦେଖି "ବୃହସ୍ପତି ପହଞ୍ଚିଲେ" ବୋଲି କହନ୍ତି, ସେଠି ବୃହସ୍ପତି ଶବ୍ଦର ଲକ୍ଷ୍ୟାର୍ଥ 'ପଣ୍ଡିତେ' । ତାଙ୍କ ପାଣ୍ଡିତ୍ୟର ପ୍ରକର୍ଷ ଜଣାଇବାକୁ ବକ୍ତା ବୃହସ୍ପତି ବୋଲି କହିଛନ୍ତି । ଏଣୁ ପାଣ୍ଡିତ୍ୟ ପ୍ରକର୍ଷ ସେଠି ଲକ୍ଷଣାର ପ୍ରୟୋଜନ । ଏହି ପ୍ରୟୋଜନ ହିଁ ଏଠାରେ ବ୍ୟଙ୍ଗ୍ୟ । ଏହି ବ୍ୟଙ୍ଗ୍ୟ ପ୍ରୟୋଜନକୁ ଲକ୍ଷଣା ବୁଝାଇ ପାରେ ନାହିଁ । ଲକ୍ଷଣା କେବଳ ଲକ୍ଷ୍ୟାର୍ଥକୁ ବୁଝାଇ ବିରତ ହୁଏ । କିନ୍ତୁ ପ୍ରୟୋଜନକୁ ବ୍ୟଞ୍ଜନା ପ୍ରକାଶ କରିଥାଏ । ଅତଏବ ଏଠାରେ ବୃହସ୍ପତି ଶବ୍ଦଟି

"ପାଣ୍ଡିତ୍ୟାତିଶଯ୍ୟ" ରୂପକ ବ୍ୟଙ୍ଗ୍ୟ ଅର୍ଥଟି ବ୍ୟଞ୍ଜନା ବୃତ୍ତିରେ ପ୍ରକାଶିତ ହେଲା ।

ଏ ସ୍ଥଳରେ ବୃହସ୍ପତି ଶବ୍ଦ ଦେବଗୁରୁ ଅର୍ଥ ବୁଝାଇବା ପାଇଁ ବାଚକ, ଉଦାହୃତ ପଣ୍ଡିତ ଅର୍ଥ ବୁଝାଇବାବେଳେ ଲକ୍ଷକ ଏବଂ ପାଣ୍ଡିତ୍ୟ ପ୍ରକର୍ଷ ବୁଝାଇବା ପାଇଁ ବ୍ୟଞ୍ଜକ ନାମ ଗ୍ରହଣ କରୁଅଛି ।

## ବ୍ୟଙ୍ଗ୍ୟ ଅର୍ଥ ଓ ତାର ପ୍ରଭେଦ

କେବଳ ବ୍ୟଞ୍ଜନାବୃତ୍ତି ଦ୍ୱାରା ଯେଉଁ ଅର୍ଥ ବୁଝା ଯାଇଥାଏ, ତାହାର ନାମ ବ୍ୟଙ୍ଗ୍ୟ ଅର୍ଥ । ଏହି ବ୍ୟଙ୍ଗ୍ୟ ଅର୍ଥର ଅନ୍ୟନାମ ପ୍ରତୀୟମାନ ଅର୍ଥ । ଶବ୍ଦର ମଧ୍ୟରେ ଲାବଣ୍ୟ ପରି ତାହା କାବ୍ୟ ମଧ୍ୟରେ ସର୍ବାତିଶାୟୀ ହୋଇ ରହିଥାଏ ।

ପ୍ରତୀୟମାନଂ ପୁନରନ୍ୟଦେବ ବସ୍ତ୍ୱସ୍ତି ବାଣୀଷୁ ମହାକବୀନାମ୍ ।
ଯତ୍ତତ୍ ପ୍ରସିଦ୍ଧାବୟବାତିରିକ୍ତଂ ବିଭାତି ଲାବଣ୍ୟମିବାଙ୍ଗନାସୁ । ଉ ୧

ପ୍ରତୀୟମାନ ସାଧାରଣତଃ ତିନି ଭାଗରେ ବିଭକ୍ତ । ୧—ବସ୍ତୁ, ୨—ଅଲଙ୍କାର, ୩—ରସାଦି ।

ଉକ୍ତ ତ୍ରିବିଧ ବ୍ୟଙ୍ଗ୍ୟ ଅର୍ଥ ଯେଉଁଠି ମୁଖ୍ୟଭାବେ ରହିଥିବେ ସେଠାରେ ସେମାନେ ଧ୍ୱନି ନାମ ଗ୍ରହଣ କରିବେ । ଯେଉଁଠି ଅପ୍ରଧାନ ହୋଇ ରହିଥିବେ ସେଠାରେ ସେମାନଙ୍କର ନାମ ହେବ ଗୁଣୀଭୂତ ବ୍ୟଙ୍ଗ୍ୟ । ଓଡ଼ିଆ ସାହିତ୍ୟରୁ ଯଥାକ୍ରମେ ଏମାନଙ୍କର ଉଦାହରଣ ଦିଆଯାଉ ଅଛି :—

୧ । ବସ୍ତୁ ଧ୍ୱନି :—"କି କରିବ ଲୋକ ଲୋଚନ ଦୂଷଣ ।
ନାଙ୍କ ଗୁଣ ଯଦି ହୃଦୀୟ ଭୂଷଣ ॥

ଏହି ବାକ୍ୟର ବାଚ୍ୟାର୍ଥରୁ ଲୋକପ୍ରୀତି ଅପେକ୍ଷା ଗୁଣକୀର୍ତ୍ତି ଶ୍ରେଷ୍ଠ" ଏହି ବ୍ୟଙ୍ଗ୍ୟ ଅର୍ଥ ପ୍ରକାଶ ପାଉଅଛି । ବାଚ୍ୟ ଅର୍ଥ ଅପେକ୍ଷା ଉକ୍ତ ବ୍ୟଙ୍ଗ୍ୟ ଅର୍ଥର ପ୍ରାଧାନ୍ୟ ଥିବାରୁ ତାହା ଧ୍ୱନି ପଦବାଚ୍ୟ । ଏହି ଅର୍ଥଟି ରସାଦି ନୁହେ କିମ୍ବା କୌଣସି ଅଲଂକାର ନୁହେ, ଏଣୁ ବସ୍ତୁ ରୂପରେ ଗଣ୍ୟ । ଅତଏବ ଏଠାରେ ପ୍ରକାଶ ପାଉଥିବା ବ୍ୟଙ୍ଗ୍ୟ ଅର୍ଥଟି ବସ୍ତୁଧ୍ୱନି ।

ଯେଉଁଠି ବ୍ୟଙ୍ଗ୍ୟ-ଅର୍ଥର ପ୍ରାଧାନ୍ୟ ନ ରହେ, ତାହା ଗୁଣୀଭୂତ ବ୍ୟଙ୍ଗ୍ୟ । ଯଥା—

"ଗୋଏ ଭୁମ୍ବ ଗୀତି ସ୍ୱରରେ ପଣ୍ଡିତ ପଥେ ପାନ୍ଥ ହୃଷ୍ଟମନା,
ବଲେ ବୋଲେ ଚଷା, ଅନ୍ତଃପୁରେ ଯୋଷା, ନୃତ୍ୟରଙ୍ଗେ ବାରାଙ୍ଗନା ।

ଗୋପବନ୍ଧୁ ଦାସଙ୍କର ଏହି ପଦ୍ୟରେ "ଉପେନ୍ଦ୍ର ଭଞ୍ଜ ଜଣେ ଅସାଧାରଣ କବି" ଏହି ବ୍ୟଙ୍ଗ୍ୟ' ଅର୍ଥଟି ପ୍ରକାଶ ପାଉଛି । ଭଞ୍ଜଙ୍କ ଗୀତ ବିଭିନ୍ନ ସ୍ଥାନରେ ବିଭିନ୍ନ ମୁଖରେ ସ୍ଥାନ ପାଉଥିବାରୁ ପଦ୍ୟର ବାଚ୍ୟ ଅର୍ଥଟି ବିଶେଷ ଅଲଂକାରର ସ୍ଥଳ । ବାଚ୍ୟ ବିଶେଷ ଅଲଂକାରଠାରୁ ବ୍ୟଙ୍ଗ୍ୟ ବସ୍ତୁର ଗୁରୁତ୍ୱ ନ ଥିବାରୁ ଏହି ବସ୍ତୁଟି ଧ୍ୱନି ନ ହୋଇ ଗୁଣୀଭୂତ ବ୍ୟଙ୍ଗ୍ୟ ରୂପେ ଗଣ୍ୟ ।

ପୂର୍ବୋଦାହୃତ "ଗୃହସ୍ଥ ହେଲ, ବୃହସ୍ପତି ପହଞ୍ଚିଲେ" ପ୍ରଭୃତି ସ୍ଥଳର ପ୍ରୟୋଜନ ରୂପ ବ୍ୟଙ୍ଗ୍ୟ ଅର୍ଥ ଗୁଡ଼ିକ ମଧ୍ୟ ବ୍ୟଙ୍ଗ୍ୟ ବସ୍ତୁ ଅଟନ୍ତି । ତାଦୃଶ୍ୟ ବସ୍ତୁରେ ଯେଉଁଠି ଚମତ୍କାରତା ରହିବ ସେ ଧ୍ୱନି ହେବ, ଅନ୍ୟଥା ଗୁଣୀଭୂତବ୍ୟଙ୍ଗ୍ୟ ହେବ ।

୨ । ଅଲଂକାର ଧ୍ୱନି :—

"ଦକ୍ଷିଣ ଦିଗରେ ରବିଙ୍କର ମଧ୍ୟ କିରଣ ହୁଏ ମଳିନ ।
ତହିଁ ରଘୁ ଧାପ ସହି ନ ପାରିଲେ ପାଣ୍ଡ୍ୟ ନରପତିଗଣ ॥

ଦକ୍ଷିଣ ଦିଗରେ ସୂର୍ଯ୍ୟତାପର ନ୍ୟୂନତା ସ୍ଥଳେ ରଘୁଙ୍କ ତାପର ଆଧିକ୍ୟ ବର୍ଣ୍ଣନା କରାଯାଇଥିବାରୁ, ଅର୍ଥସାମର୍ଥ୍ୟବଶତଃ ଉପମେୟ ରଘୁତାପ ଉପମାନ ସୂର୍ଯ୍ୟତାପ ଅପେକ୍ଷା ଅଧିକ ବୋଲି ପ୍ରତୀତ ହେଉଅଛି । ଏଣୁ ଏଠାରେ 'ବ୍ୟତିରେକ' ଅଲଂକାର ବ୍ୟଙ୍ଗ୍ୟ ହେଲା । ବାଚ୍ୟାର୍ଥ ଅପେକ୍ଷା ଉକ୍ତ ବ୍ୟଙ୍ଗ୍ୟ ଅଲଂକାରରେ ଗୁରୁତା ଥିବାରୁ ଏହା ଧ୍ୱନି ।

କ୍ୱଚିତ୍ ବସ୍ତୁରୁ ବସ୍ତୁ ବା ଅଲଂକାର ଏବଂ କ୍ୱଚିତ୍ ଅଲଂକାରରୁ ବସ୍ତୁ ବା ଅଲଂକାର ଧ୍ୱନିତ ହୋଇଥାଏ । ବସ୍ତୁରୁ ଅଲଂକାର ବ୍ୟଙ୍ଗ୍ୟ ହେଲେ ସେ ଗୁଣୀଭୂତ ବ୍ୟଙ୍ଗ୍ୟ ହୋଇ ନ ପାରେ । ଉକ୍ତ ବସ୍ତୁଧ୍ୱନି ଓ ଅଲଂକାର ଧ୍ୱନିର ପ୍ରତୀତି ପୂର୍ବରୁ ବାଚ୍ୟାର୍ଥବୋଧ ହେଉଥିବାରୁ ଏହାକୁ ସଂଲକ୍ଷ୍ୟକ୍ରମ ବୋଲଯାଏ ।

୩ । ରସାଦି ଧ୍ୱନି :—

ବସ୍ତୁ ଓ ଅଳଂକାର ବାଚ୍ୟ ହୋଇ ପାରନ୍ତି ଏବଂ ବ୍ୟଙ୍ଗ୍ୟ ହୋଇ ପାରନ୍ତି, କିନ୍ତୁ ରସାଦି କେଉଁବେହେଲେ ବାଚ୍ୟ ହୋଇ ନ ପାରନ୍ତି । ଶୃଙ୍ଗାର କରୁଣ ପ୍ରଭୃତି ଶବ୍ଦ ଦ୍ୱାରା ମଧ୍ୟ ଶୃଙ୍ଗାରାଦିର ପ୍ରତୀତି ହୋଇ ନ ପାରେ ଏବଂ ତାଦୃଶ ଶବ୍ଦ ଦ୍ୱାରା ଶୃଙ୍ଗାରାଦିର ଉକ୍ତି ମଧ୍ୟ ଦୋଷାବହ ବୋଲି ନିର୍ଣ୍ଣୀତ ହୋଇଅଛି । ଏଣୁ ରସାଦି ନିତ୍ୟ ବ୍ୟଙ୍ଗ୍ୟ । ଏହି ରସାଦି ଯେଉଁଠି ମୁଖ୍ୟଭାବେ ଥିବେ ସେଠାରେ ସେ ଧ୍ୱନି ସଂଜ୍ଞାଧାରଣ କରିବେ, ଅନ୍ୟଥା ରସବତ୍ ପ୍ରେୟ ଊର୍ଜସ୍ୱି ପ୍ରଭୃତି ଅଳଂକାରରୂପେ ଗଣାଯିବେ ।

ବସ୍ତୁ ଧ୍ୱନି ଓ ଅଳଂକାର ଧ୍ୱନି ବାଚ୍ୟାର୍ଥ ବୋଧ ପରେ ପ୍ରତୀତ ହୁଏ କିନ୍ତୁ ରସ ଧ୍ୱନି ବାଚ୍ୟାର୍ଥ ବୋଧର ସମକାଳରେ ପ୍ରତୀତ ହୁଏ । ସେଠି ବାଚ୍ୟ ଓ ବ୍ୟଙ୍ଗ୍ୟର ବୋଧ ମଧ୍ୟରେ କ୍ରମ ରହିଥିଲେ ମଧ୍ୟ ତାହା ଲକ୍ଷ୍ୟ କରି ହୁଏ ନାହିଁ । ଏଣୁ ରସ ଧ୍ୱନିକୁ ଅସଂଲକ୍ଷ୍ୟ କ୍ରମ ବ୍ୟଙ୍ଗ୍ୟ ଧ୍ୱନି ବୋଲି-ଯାଇଥାଏ । ରସ ଆନନ୍ଦ ଓ ଜ୍ଞାନ ସ୍ୱରୂପ । ତେଣୁ ସେ ଅଖଣ୍ଡ ଏବଂ ସ୍ୱ ପ୍ରକାଶ । ରସ ପ୍ରତୀତି ସମୟରେ ଅନ୍ୟ ପ୍ରତୀତି ନ ଥାଏ । କାବ୍ୟ, ନାଟକ ଶ୍ରବଣ, ଦର୍ଶନ ସମୟରେ ଯେଉଁମାନେ ତନ୍ମୟ ନୁହନ୍ତି ସେମାନେ ବସ୍ତୁତଃ ରସ ଗ୍ରହଣ କରି ନ ଥାନ୍ତି । ରସ ଭୂତ ଭବିଷ୍ୟତ୍ ବର୍ତ୍ତମାନରେ ଆବଦ୍ଧ ନୁହେ । ସେ ତାହାର ସାଧାରଣୀକରଣ ଶକ୍ତି ବଳରେ ସର୍ବଗ୍ରାହକ ହୃଦୟରେ ସମାନଭାବେ ଦେଖା ଦେଇଥାଏ । ବିଭାବ ଅନୁଭାବ ବ୍ୟଭିଚାରି ଭାବମାନଙ୍କର ସଂଯୋଗରୁ ରସ ନିଷ୍ପତ୍ତି ହୁଏ ବୋଲି ନାଟ୍ୟ ସୂତ୍ରକାର ଭରତଙ୍କ ମତ । ବିଭାବାଦିମାନଙ୍କ ମଧ୍ୟରେ କାର୍ଯ୍ୟକାରଣ ଭାବ ନ ଥାଏ । ଲୋକରେ ଯାହାକୁ କାର୍ଯ୍ୟକାରଣ ସଂଜ୍ଞା ଦିଆଯାଇଥାଏ କାବ୍ୟ ନାଟକରେ ସମର୍ପିତ ହେଲେ, ସେହିମାନଙ୍କର ଅନୁଭାବ ବିଭାବାଦି ସଂଜ୍ଞା ହୁଏ । ଲୌକିକ ଶୃଙ୍ଗାର ବା ଶୋକ, ଶୃଙ୍ଗାର ବା କରୁଣରସ ନୁହେ । କିନ୍ତୁ କାବ୍ୟ ନାଟକରେ ତାଦୃଶ ଚିତ୍ର ସମର୍ପିତ ହୋଇ ସହୃଦୟମାନଙ୍କ ଦ୍ୱାରା ଗ୍ରାହ୍ୟ ହେଲେ ରସସଂଜ୍ଞା ଗ୍ରହଣ କରେ । ଏଣୁ ବିଶ୍ୱନାଥ ରସକୁ ଅଲୌକିକ ବୋଲି କହିଛନ୍ତି । ତାଙ୍କ ମତରେ ରସାସ୍ୱାଦ ବ୍ରହ୍ମାସ୍ୱାଦର ସହୋଦର । ସମାଧିସ୍ଥ ଯୋଗୀ ଯେପରି ବ୍ରହ୍ମ ସାକ୍ଷାତ୍ କରିଥାଏ

ଯେଉଁପରି ଇହଜନ୍ମ ଏ ପୂର୍ବ ଜନ୍ମର ବାସନା ଥିବା ପୁଣ୍ୟାତ୍ମା ସହୃଦୟ ବ୍ୟକ୍ତି କେବଳ ରସ ଆସ୍ୱାଦନ କରିଥାଏ । ଏହି ରସ ଶୃଙ୍ଗାର, ବୀର, କରୁଣ, ରୌଦ୍ର, ଭୟାନକ, ବୀଭତ୍ସ, ଅଦ୍ଭୁତ, ହାସ୍ୟ ଓ ଶାନ୍ତ ଭେଦରେ ନଅ ପ୍ରକାର । କେହି କେହି ବାତ୍ସଲ୍ୟକୁ ମଧ୍ୟ ରସ ମଧ୍ୟରେ ଗଣନ୍ତି । ଶୃଙ୍ଗାରାଦିରେ ଅନୌଚିତ୍ୟ ଦେଖାଗଲେ ତାହା ରସାଭାସ ନାମରେ ଖ୍ୟାତ ହୁଏ । ଦେବତା, ଗୁରୁ, ରାଜାପ୍ରଭୃତିଙ୍କ ଠାରେ ରତିର ତତ୍ପରତାକୁ ଭାବ ବୋଲାଯାଏ । ତାହାର ଅନୌଚିତ୍ୟକୁ ଭାବାଭାସ ବୋଲାଯାଏ । ଉଭୟ ଭାବର ମେଳନକୁ ଭାବ ସନ୍ଧି ବୋଲାଯାଏ । ଭାବମାନଙ୍କର ମିଶ୍ରଣର ନାମ ଭାବ ଶବଳତା । ଏହି ରସ, ରସାଭାସ, ଭାବ, ଭାବାଭାସ, ସନ୍ଧି, ଶବଳତା, ଭାବୋଦୟ ଓ ଭାବ ପ୍ରକାଶଗୁଡ଼ିକ ଆସ୍ୱାଦ୍ୟ ହେତୁ ରସ ପଦବାଚ୍ୟ । "ସର୍ବେଽପି ରସନାଦ୍ରସାଃ ।" ରସ ଆସ୍ୱାଦରୁ ଅତିରିକ୍ତ ନୁହେ, ସେ ଆସ୍ୱାଦ୍ୟ ସ୍ୱରୂପ ।

ଧ୍ୱନ୍ୟମାନ ବିପ୍ରଲମ୍ଭ ଶୃଙ୍ଗାର ଯଥା :—

"ଘନଶ୍ୟାମ ଗୁଣମାନ ତକ୍ଷିଅଛି କି ମୋ 'ଧୈର୍ଯ୍ୟ ଗୁମାନ ଗୋ, ମନ ଦହୁଛି ତା ସନମାନ, ସଜନି ଗୋ ।"

ରାଧାଙ୍କ ଏହି ଉକ୍ତିରୁ ପୂର୍ବରାଗ ନାମକ ବିପ୍ରଲମ୍ଭ ଶୃଙ୍ଗାର ଧ୍ୱନିତ ହେଉଅଛି । ଏହି ନ୍ୟାୟରେ ପ୍ରବାସ ମାନ ପ୍ରଭୃତି ବିପ୍ରଲମ୍ଭ ତଥା ସମ୍ଭୋଗ ଶୃଙ୍ଗାରର ଉଦାହରଣ ଅନୁସନ୍ଧାନ କରିବାକୁ ହେବ ।

ବୀରରସ ଯଥା :—

"ମିଶୁ ମୋର ଦେହ ଏ ଦେଶ ମାଟିରେ ।
ଦେଶବାସୀ ଚାଲି ଯାଆନ୍ତୁ ପିଠିରେ ।"

ଗୋପବନ୍ଧୁଙ୍କ ଏହି ଉକ୍ତିରୁ କର୍ମବୀର ରସ ଧ୍ୱନିତ ହେଉଅଛି । ଯୁଦ୍ଧବୀର ଦାନବୀର, ଓ ଦୟାବୀରମାନଙ୍କ ଉଦାହରଣ ଅନୁସନ୍ଧେୟ ।

କରୁଣ— "ଆହା ଧନୁର୍ଦ୍ଧର ବୀରବର,
ଧନୁଶର କି ନ ଥିଲା କର ।
ଯାହାର ବାଣ ବ୍ରହ୍ମାଣ୍ଡ ଦହିପାରେ,
ତାକୁ ମାଇଲା ପ୍ରଶସ୍ତ ଚୋର ହେ ଦଇବ ।"

ସୀତାଙ୍କର ଏହି କ୍ରନ୍ଦନ, କରୁଣ ରସର ଗୋଟିଏ ଉଦାହରଣ ।

ଶାନ୍ତ—

କେହ୍ନ ରହ୍ନି ନାହିଁ ରହିବ ନାହିଁଟି ଭବରଙ୍ଗ ଭୂମିତଳେ,
ସର୍ବେ ନିଜ ନିଜ ଅଭିନୟ ସାରି ବାହୁଡ଼ିବେ କାଳବଳେ ।

ଏ ପଦ୍ୟରେ ଶାନ୍ତରସ ମୁଖ୍ୟ ହୋଇଥିବାରୁ ଧ୍ୱନି ।

ଭାବ—

"ଯେ ଯାହା ଭାବୁଛି ଚିତ୍ତେ, ଦେଇନାହିଁ କି ହେ କହିତ ସତେ.
ଦୟାମୟ ହେ, କପାଁ କରୁଣା ନ କର ମୋତେ ।"

ଏ ପଦ୍ୟରେ ଶ୍ରୀଜଗନ୍ନାଥ ଦେବ ବିଷୟକ ରତିଭାବ ଧ୍ୱନି ଅଛି ।

ଅଥବା—

"ଆହେ ଦୟାମୟ ବିଶ୍ୱବିହାରି !
ଘେନ ଦୟାବହି ମୋର ଗୁହାରି ।
ଜଳ ସ୍ଥଳ ବନଗିରି-ଆକାଶ,
ତୁମ ଲୀଳା ସବୁଠାରେ ପ୍ରକାଶ । ଇତ୍ୟାଦି

ଏଥିରେ ଈଶ୍ୱର ବିଷୟକ ରତିଭାବ ଧ୍ୱନିତ ହେଉଅଛି ।

ଏହି ରୀତିରେ ବିଭିନ୍ନ ରସ, ରସାଭାସ, ଭାବ, ଭାବାଭାସ ପ୍ରଭୃତିର ଉଦାହରଣମାନ ଅନୁସନ୍ଧାନ କରିବାକୁ ହେବ ।

## ପ୍ରତିପାଦନ ଶୈଳୀ

ବିଷୟବସ୍ତୁ ପ୍ରତିପାଦନରେ ଧ୍ୱନିକାରଙ୍କର ଏକ ଅପୂର୍ବ ଶୈଳୀ ଦେଖାଯାଏ । ସେ ତାଙ୍କର ଲକ୍ଷ୍ୟ ବସ୍ତୁକୁ ପ୍ରକାଶ କରିବା ସକାଶେ କ୍ୱଚିତ୍ ତାହାର ସ୍ଥୂଳ ରୂପକୁ କ୍ୱଚିତ୍ ସୂକ୍ଷ୍ମରୂପକୁ ଦର୍ଶାଇଛନ୍ତି । ଉଦାହରଣ ସ୍ୱରୂପ ସେ ପ୍ରଥମେ ବାଚ୍ୟ ଏବଂ ବ୍ୟଙ୍ଗ୍ୟ (ପ୍ରତୀୟମାନ) ଉଭୟ ପ୍ରକାର ଅର୍ଥକୁ କାବ୍ୟର ଆତ୍ମା ବୋଲି ଦର୍ଶାଇ

"ଅର୍ଥଃସହୃଦୟଶ୍ଳାଘ୍ୟଃ କାବ୍ୟାତ୍ମା ଯୋ ବ୍ୟବସ୍ଥିତଃ,
ବାଚ୍ୟ ପ୍ରତୀୟମାନାଖ୍ୟୌ ତସ୍ୟ ଭେଦାବୁଭୌ ସ୍ମୃତୌ । (୧ମ ଉ ୨

ଏହାପରେ ସେ ସୂକ୍ଷ୍ମଚିନ୍ତା କରି ପୂର୍ବୋକ୍ତ ବାଚ୍ୟ ଓ ପ୍ରତୀୟମାନ ଅର୍ଥ ମଧ୍ୟରୁ କେବଳ ପ୍ରତୀୟମାନ ଅର୍ଥଟି କାବ୍ୟର ଆତ୍ମା ବୋଲି ମତଦେଲେ । ଯଥା—

କାବ୍ୟସ୍ୟାତ୍ମା ସ ଏବାର୍ଥସ୍ତଥା ଚାଦିକବେଃ ପୁରା
କ୍ରୌଞ୍ଚଦ୍ୱନ୍ଦ୍ୱବିୟୋଗୋତ୍ଥଃ ଶୋକଃ ଶ୍ଲୋକତ୍ୱମାଗତଃ । ୧ମ ଉ

ଗ୍ରନ୍ଥକାର ଏହି ପ୍ରତୀୟମାନ ଅର୍ଥକୁ କାବ୍ୟର ଆତ୍ମା ବୋଲି କହିବାରେ ସନ୍ତୁଷ୍ଟ ନ ହୋଇ ପରେ କେବଳ ପ୍ରଧାନୀଭୂତ ପ୍ରତୀୟମାନ ଅର୍ଥ (ଧ୍ୱନି) ଟିକୁ କାବ୍ୟର ଆତ୍ମା ବୋଲି ସିଦ୍ଧାନ୍ତ ଗ୍ରହଣ କରି ଧ୍ୱନିବାଦର ବର୍ଣ୍ଣନ ଆରମ୍ଭ କଲେ । ଯଥା :—

'ଯତ୍ରାର୍ଥଃ ଶବ୍ଦୋ ବା ତମର୍ଥମୁପସର୍ଜନୀକୃତସ୍ୱାର୍ଥୌ',
ବ୍ୟଂକ୍ତଃ କାବ୍ୟବିଶେଷଃ ସ ଧ୍ୱନିରିତି ସୂରିଭିଃ କଥିତଃ ।

ଗ୍ରନ୍ଥକାର ଧ୍ୱନିକୁ କାବ୍ୟର ଆତ୍ମାରୂପେ ଗ୍ରହଣ କରି ଗ୍ରନ୍ଥ ପ୍ରବର୍ତ୍ତନ କରିଥିଲେ ମଧ୍ୟ ତହିଁରୁ ଆହୁରି ସୂକ୍ଷ୍ମଚିନ୍ତା କରି ବସ୍ତୁ ଧ୍ୱନି, ଅଳଙ୍କାର ଧ୍ୱନି ଓ ରସାଦି ଧ୍ୱନି ଏହି ତ୍ରିବିଧ ଧ୍ୱନି ମଧ୍ୟରୁ କେବଳ ରସାଦି ଧ୍ୱନି କାବ୍ୟର ଆତ୍ମା ବୋଲି ପରିଶେଷରେ ପରିଷ୍କାର ଭାବେ ନିଜର ମତ ଜ୍ଞାପନ କରି-ଅଛନ୍ତି ।

"ବ୍ୟଙ୍ଗ୍ୟ ବ୍ୟଞ୍ଜକଭାବେଽସ୍ମିନ୍ ବିବିଧେ ସମ୍ଭବତ୍ୟପି ।
ରସାଦିମୟ ଏକସ୍ମିନ୍ କବିଃ ସ୍ୟାଦବଧାନବାନ୍ ॥ ୪ର୍ଥ ଉ-୫

ପୁନଶ୍ଚ ଅନ୍ୟ ଦିଗରୁ ଦେଖିବାକୁ ହେଲେ ଧ୍ୱନ୍ୟାଲୋକକାର ତାଙ୍କ 'ଧ୍ୱନି ପ୍ରବନ୍ଧ ମଧ୍ୟରେ ଅଳଂକାରମାନେ ରସାଦିର ପରିପୋଷକ ଭାବେ ରହିଥିଲେ ଅଳଂକାର ପଦବାଚ୍ୟ ହେବେ, ଅନ୍ୟଥା ସେମାନେ ଅଳଂକାର ହୋଇ ପାରିବେ ନାହିଁ, ଏବଂ ଶୌର୍ଯ୍ୟ ଦାକ୍ଷିଣ୍ୟାଦି ଗୁଣମାନଙ୍କ ପରି ମାଧୁର୍ଯ୍ୟାଦି କାବ୍ୟ ଗୁଣଗୁଡ଼ିକ କେବଳ ଅଙ୍ଗୀରସକୁ ଆଶ୍ରୟ କରି ରହିବେ ବୋଲି' ନିର୍ଣ୍ଣୟ କରିବା ଦ୍ୱାରା, କାବ୍ୟ ମଧ୍ୟରେ ରସକୁ ଶରୀର ମଧ୍ୟରେ ଆତ୍ମା ପରି ମୁଖ୍ୟସ୍ଥାନ ଦେଇଅଛନ୍ତି । ଅତଏବ ସେ ଗ୍ରନ୍ଥାରମ୍ଭରେ ଧ୍ୱନି ସାମାନ୍ୟକୁ କାବ୍ୟର ଆତ୍ମା ବୋଲି ଉଲ୍ଲେଖ କରିଥିଲେ ମଧ୍ୟ କେବଳ ରସାଦି ଧ୍ୱନିକୁ କାବ୍ୟର ଆତ୍ମାରୂପେ ପ୍ରତିପାଦନ କରିଅଛନ୍ତି । ଗ୍ରନ୍ଥକାର ତାଙ୍କର ସୂକ୍ଷ୍ମାତି-ସୂକ୍ଷ୍ମ ଗବେଷଣା ଦ୍ୱାରା କାବ୍ୟ ପ୍ରବନ୍ଧର ଆତ୍ମ ନିରୂପଣ ପ୍ରସଙ୍ଗରେ ଶୃଙ୍ଗାରାଦି ରସ ସମୂହକୁ ସାମାନ୍ୟତଃ ଆତ୍ମା ବୋଲି ଗ୍ରହଣ କରିବାକୁ କୁଣ୍ଠିତ ହୋଇ, ଗୋଟିଏ ମାତ୍ର ରସକୁ ମୁଖ୍ୟଭାବେ ଗ୍ରହଣ କରି ଅନ୍ୟ

ରସମାନଙ୍କୁ ତାହାର ପୋଷକ ଭାବେ ନିବେଶ କରିବାକୁ ଉପଦେଶ ଦେଇଅଛନ୍ତି ।

"ପ୍ରସିଦ୍ଧେଽପି ପ୍ରବନ୍ଧାନାଂ ନାନାରସନିବନ୍ଧନେ,
ଏକୋ ରସୋଽଙ୍ଗୀ କର୍ତ୍ତବ୍ୟସ୍ତେଷାମୁତ୍କର୍ଷମିଚ୍ଛତା ।

ଏହା ଦ୍ୱାରା ଗ୍ରନ୍ଥକାର ସ୍ଥୂଳରୁ ସୂକ୍ଷ୍ମ ଚିନ୍ତା କରି ପ୍ରଥମେ ଅର୍ଥ ମାତ୍ରକୁ କାବ୍ୟର ଆତ୍ମା ବୋଲି କହି ତାହା ପରେ ଅର୍ଥ ବିଶେଷ (ବ୍ୟଙ୍ଗ୍ୟ)କୁ, ତଦନନ୍ତର ବ୍ୟଙ୍ଗ୍ୟ ବିଶେଷ (ଧ୍ୱନି)କୁ, ପରିଶେଷରେ ଧ୍ୱନି ବିଶେଷ (ରସାଦି)କୁ କାବ୍ୟର ଆତ୍ମା ବୋଲି କହିଅଛନ୍ତି ।

## ସୂକ୍ଷ୍ମରୁ ସ୍ଥୂଳଚିନ୍ତା

ଧ୍ୱନିକାର ସ୍ଥୂଳରୁ ସୂକ୍ଷ୍ମଚିନ୍ତା କଲାପରି ସୂକ୍ଷ୍ମରୁ ସ୍ଥୂଳଚିନ୍ତା କରିବାକୁ ଭୁଲି ନାହାନ୍ତି । ସେ ଗ୍ରନ୍ଥାରମ୍ଭରେ "କାବ୍ୟସ୍ୟାତ୍ମା ଧ୍ୱନିଃ" ବୋଲି କେବଳ ଧ୍ୱନିକୁ କାବ୍ୟାତ୍ମାରୂପେ ଦର୍ଶାଇଥିଲେ ମଧ୍ୟ ପରିଶେଷରେ ଗୁଣୀଭୂତ ବ୍ୟଙ୍ଗକୁ କାବ୍ୟ ମଧ୍ୟରେ ସ୍ଥାନ ଦେଇଅଛନ୍ତି ।

"ପ୍ରକାରୋଽନ୍ୟୋ ଗୁଣୀଭୂତବ୍ୟଙ୍ଗ୍ୟଃ କାବ୍ୟସ୍ୟ ଦୃଶ୍ୟତେ ।
ଯତ୍ର ବ୍ୟଙ୍ଗ୍ୟାନ୍ୱୟେ ବାଚ୍ୟଚାରୁତ୍ୱଂ ସ୍ୟାତ୍ ପ୍ରକର୍ଷବତ୍ ॥

ଗୁଣୀଭୂତ ବ୍ୟଙ୍ଗ୍ୟ ସ୍ଥଳରେ ବିଶେଷତଃ ଯେଉଁଠି ବ୍ୟଙ୍ଗ୍ୟ ଅର୍ଥଠାରୁ ବାଚ୍ୟ ଅର୍ଥର ପ୍ରାଧାନ୍ୟ ରହିଅଛି ସେଠାରେ ପ୍ରଧାନୀଭୂତ ବାଚ୍ୟଅର୍ଥକୁ ମଧ୍ୟ କାବ୍ୟର ଆତ୍ମାରୂପେ ଗ୍ରହଣ କରିବାକୁ ପଡ଼ିବ, ଅନ୍ୟଥା ତାଦୃଶ ବାଚ୍ୟ ପ୍ରଧାନ ଗୁଣୀଭୂତ ବ୍ୟଙ୍ଗ୍ୟ ସ୍ଥଳ କିପରି କାବ୍ୟ ମଧ୍ୟରେ ଗଣାଯାଇ ପାରିବ ?

ଅତଏବ ଧ୍ୱନିକାର ଗ୍ରନ୍ଥର ପ୍ରଥମ କାରିକାରେ ଧ୍ୱନିକୁ କାବ୍ୟର ଆତ୍ମା ବୋଲି ଦର୍ଶାଇଥିଲେ ମଧ୍ୟ ପରେ ଦ୍ୱିତୀୟ କାରିକାରେ କେବଳ ବ୍ୟଙ୍ଗ୍ୟାର୍ଥକୁ, କାବ୍ୟାତ୍ମା ବୋଲି ନ କହି ବାଚ୍ୟ ଓ ବ୍ୟଙ୍ଗ୍ୟ (ପ୍ରତୀୟମାନ) ଉଭୟ ଅର୍ଥକୁ କାବ୍ୟର ଆତ୍ମା ବୋଲି ଉଲ୍ଲେଖକରି ଅଛନ୍ତି ।

ସେ ପ୍ରଥମେ କେବଳ ପ୍ରଧାନୀଭୂତ ବ୍ୟଙ୍ଗ୍ୟ (ଧ୍ୱନି)କୁ କାବ୍ୟ ବୋଲି କହି ତାହାପରେ ଅପ୍ରଧାନୀ ଭୂତ ବ୍ୟଙ୍ଗ୍ୟ (ଗୁଣୀଭୂତ ବ୍ୟଙ୍ଗ୍ୟ)କୁ ଦ୍ୱିତୀୟ ପ୍ରକାର କାବ୍ୟ ବୋଲି କହିବା ଦ୍ୱାରା ନିଜର ସଂକୁଚିତ ଦୃଷ୍ଟିକୁ

ସ୍ପଷ୍ଟୀକୃତ କରିଅଛନ୍ତି । ଗୁଣୀଭୂତ ବ୍ୟଙ୍ଗକୁ କାବ୍ୟରୂପେ ସ୍ୱୀକାର କରିବା ଦ୍ୱାରା ତାଙ୍କର ମୌଳିକ ଲକ୍ଷ୍ୟ "କାବ୍ୟସ୍ୟାତ୍ମା ଧ୍ୱନିଃ" ଏହି ମତବାଦରେ ଆଞ୍ଚ ଆସିପିବ ଏହି ଭୟରେ ବୃତ୍ତି ମଧ୍ୟରେ ଗୁଣୀଭୂତ ବ୍ୟଙ୍ଗ୍ୟକୁ ଧ୍ୱନି ନିଷ୍ୟନ୍ଦ ସଂଜ୍ଞା ଦିଆଯାଇଅଛି । ଯଥା :—

"ତଦୟଂ ଧ୍ୱନିନିଷ୍ୟନ୍ଦରୂପୋ ଦ୍ୱିତୀୟୋଽପି ମହାକବି ବିଷୟୋଽତିରମଣୀୟୋ ଲକ୍ଷଣୀୟଃ ସହୃଦୟୈଃ ।"

(ନିଷ୍ୟନ୍ଦ ଶବ୍ଦର ଅର୍ଥ ହେଉଛି କ୍ଷରଣ । ଧ୍ୱନି ଯଦି ମହା ପ୍ରବାହ ହୁଏ ତେବେ ଗୁଣୀଭୂତ ବ୍ୟଙ୍ଗ୍ୟ ଗୋଟିଏ କ୍ଷୁଦ୍ର ଝର । ଧ୍ୱନି ଯଦି ଅବିଶ୍ରାନ୍ତ ଜଳଧାରରୂପୀ ହୁଏ, ତେବେ ଗୁଣୀଭୂତ ବ୍ୟଙ୍ଗ୍ୟ ଝୋପା-ଝୋପା ହୋଇ ନିଗିଡ଼ିବା । ଏହି ନ୍ୟାୟରେ ଧ୍ୱନି ଗୁଣୀଭୂତ ବ୍ୟଙ୍ଗ୍ୟ ମଧ୍ୟରେ ପରିମାଣଗତ ତାରତମ୍ୟ ରହିଛି ସିନା, କିନ୍ତୁ ପ୍ରକୃତ ବ୍ୟଙ୍ଗ୍ୟ ଅର୍ଥର ସମ୍ପର୍କ ଉଭୟରେ ରହିଅଛି) ।

ଧ୍ୱନିକାର ଧ୍ୱନି ଓ ଗୁଣୀଭୂତ ବ୍ୟଙ୍ଗ୍ୟ ଭେଦରେ ଦୁଇ ପ୍ରକାର କାବ୍ୟ ନିରୂପଣ କରିବା ପରେ ଏହି ଉଭୟବିଧ କାବ୍ୟରୁ ବିଲକ୍ଷଣ ଚିତ୍ରରେ ମଧ୍ୟ ଯଥା କଥଂଚିତ୍ ବ୍ୟଙ୍ଗ୍ୟର ସତ୍ତା ସ୍ୱୀକାର କରିଅଛନ୍ତି । ଏହି ଚିତ୍ରରେ କବିର ରସାଦି ବିବକ୍ଷା ନ ଥିବାରୁ ତାହାକୁ ନୀରସରୂପେ କଳ୍ପନା କରାଯାଇଛି ମାତ୍ର, ବସ୍ତୁତଃ ତାହା ସମ୍ପୂର୍ଣ୍ଣ ରସଶୂନ୍ୟ ନୁହେ । ଏହା ବୃତ୍ତିରେ ପ୍ରତିପାଦିତ ହୋଇଅଛି ଯଥା :—

ତଥାବିଧେ ବିଷୟେ ରସାଦି ପ୍ରତୀତେର୍ବିଦ୍ୟମାନେ ପରିଦୁର୍ବଳ ଭବନ୍ତ୍ୟ-ତ୍ୟନେନାଽପି ପ୍ରକାରେଣ ନୀରସତ୍ୱଂ ପରିକଲ୍ପ୍ୟ ଚିତ୍ରବିଷୟୋ ବ୍ୟବସ୍ଥାପ୍ୟତେ ।

ଧ୍ୱନିକାରଙ୍କର ଉକ୍ତ ଧ୍ୱନି ପ୍ରତିପାଦନ ଶୈଳୀ ଦ୍ୱାରା ସର୍ବବିଧ କାବ୍ୟ ସଂସାରରେ ଧ୍ୱନି ସମ୍ପର୍କ ଯୋଜନା କରାଯାଇଅଛି । ସଂସାର ମଧ୍ୟରେ ସର୍ବତ୍ର ପରମାତ୍ମା ବ୍ୟାପି ରହିଥିଲା ପରି ଧ୍ୱନି ସମଗ୍ର କାବ୍ୟ ସଂସାରରେ ବ୍ୟାପି ରହିଅଛି । ଏଣୁ ତାହା ହିଁ କାବ୍ୟର ଆତ୍ମାରୂପେ ବିବେଚିତ ହେବା ଉଚିତ, ଏହା ଯେ କୌଣସି ବିଜ୍ଞ ବିବେଚନା କରିବେ ।

ପରମାତ୍ମା ପ୍ରାଣି ସମୁଦାୟରେ ରହିଥିଲେ ମଧ୍ୟ କୀଟ, ପତଙ୍ଗ, ମନୁଷ୍ୟଠାରେ ତଥା ଜଡ଼, ବୁଦ୍ଧିମାନ୍ ଜ୍ଞାନୀଙ୍କଠାରେ ଅଜ୍ଞାନାବରଣର ତାରତମ୍ୟ ହେତୁ ଆତ୍ମପ୍ରକାଶର ବୈଷମ୍ୟ ଥାଏ; ସେହି ନ୍ୟାୟରେ ଧ୍ୱନି ସର୍ବରଚନାବ୍ୟାପକ ହେଲେ ମଧ୍ୟ, କ୍ୱଚିତ୍ ପ୍ରଧାନ କ୍ୱଚିତ୍ ଅପ୍ରଧାନ ଏବଂ କ୍ୱଚିତ୍ ଯଥା କଥଂଚିତ୍ ସଂପୃକ୍ତ ହୋଇ ରହିଅଛି ।

## ଅଲଂକାର ଶାସ୍ତ୍ରରେ ଧ୍ୱନ୍ୟାଲୋକର ପ୍ରଭାବ

ଧ୍ୱନ୍ୟାଲୋକର ଏହି ଧ୍ୱନିବାଦ ପରବର୍ତ୍ତୀ ଆଲଂକାରିକ ସମାଜରେ ଶିରୋ-ଭୂଷଣସ୍ୱରୂପ ଗୃହୀତ ହୋଇଅଛି । କାବ୍ୟପ୍ରକାଶକାର ମମ୍ମଟ ଭଟ୍ଟ :—

"ତଦଦୋଷୌ ଶବ୍ଦାର୍ଥୌ ସଗୁଣାବନଲଂକୃତୀ ପୁନଃ କ୍ୱାପି"

(ଗୁଣାଲଂକାର ବିଶିଷ୍ଟ ନିର୍ଦ୍ଦୋଷ ଶବ୍ଦାର୍ଥ ହେଲେ କାବ୍ୟ ବୋଲଯାଏ) କାବ୍ୟର ଏହିପରି ଲକ୍ଷଣ ସ୍ଥିରକରି ଦୋଷ ଓ ଗୁଣ ନିର୍ଣ୍ଣୟରେ

"ମୁଖ୍ୟାର୍ଥହତିର୍ଦ୍ଦୋଷୋ ରସଶ୍ଚମୁଖ୍ୟଃ"
"ଯେ ରସସ୍ୟାଙ୍ଗିନୋଧର୍ମାଃ ଶୌର୍ଯ୍ୟାଦୟ ଇବାତ୍ମନଃ ।"

କାବ୍ୟରେ ରସ ମୁଖ୍ୟବସ୍ତୁ, ଏହି ମୁଖ୍ୟ ବସ୍ତୁ ରସର ଯାହା କିଛି ବାଧକ ତାହାହିଁ ଦୋଷ, ଆତ୍ମାର ଶୌର୍ଯ୍ୟ ଔଦାର୍ଯ୍ୟାଦି ଗୁଣ ଥିବାପରି ଅଙ୍ଗୀ ରସର ମାଧୁର୍ଯ୍ୟାଦି ଗୁଣ ଅଛି" ବୋଲି ଲେଖିବା ଦ୍ୱାରା ପ୍ରକାରାନ୍ତରେ ରସକୁ କାବ୍ୟର ଆତ୍ମା ବୋଲି ଗ୍ରହଣ କରି ନେଇଛନ୍ତି । ଏହା ଦ୍ୱାରା ସେ ଧ୍ୱନିବାଦର ସିଦ୍ଧାନ୍ତକୁ ଗ୍ରହଣ କରି ନିଜର ଗ୍ରନ୍ଥ ନିର୍ମାଣ କରିଛନ୍ତି ବୋଲି ନିଶ୍ଚୟ ବୁଝାଯିବ । ଧ୍ୱନିବାଦର ଅନୁସରଣ ନ କରି କେବଳ ପ୍ରାଚୀନ ଆଲଂକାରିକଙ୍କ ପରମ୍ପରାକୁ ଅନୁଧାବନ କରିଥିଲେ ଗୁଣ ଦୋଷାଦି ନିରପେକ୍ଷ ଶବ୍ଦାର୍ଥ ସ୍ଥଳକୁ କାବ୍ୟବୋଲି କହିଥାନ୍ତେ, ସୁତରାଂ ସେ ଧ୍ୱନିବାଦକୁ ଗ୍ରହଣ କରିଥିଲେ ମଧ୍ୟ "ଶବ୍ଦାର୍ଥୌ କାବ୍ୟଂ" ଏହି ମତର ଅନୁସରଣ କରି ଥିବାରୁ ଦ୍ୱିଧାଭାବଗ୍ରସ୍ତ ହୋଇ ସନ୍ଧିସ୍ଥଳରେ ରହିଛନ୍ତି ବୋଲି କୁହାଯାଇପାରେ ।

୨—ଅଲଂକାର ସୂତ୍ରକାର ମଙ୍ଖୁକ ଉପକ୍ରମରେ ଭାମହ, ଉଦ୍ଭଟ, ରୁଦ୍ରଟ, ବାମନ ବକ୍ରୋକ୍ତିଜୀବିତକାର ପ୍ରଭୃତିଙ୍କ ମତ ପର୍ଯ୍ୟାଲୋଚନା କରି ପରିଶେଷରେ ଧ୍ୱନିକାରଙ୍କ ମତ ସ୍ଥାପନ କରିଛନ୍ତି ।

୩—ସାହିତ୍ୟ ଦର୍ପଣକାର ବିଶ୍ୱନାଥ କବିରାଜ କାବ୍ୟଲକ୍ଷଣ ନିରୂପଣରେ ମତାନ୍ତରଂ ଖଣ୍ଡନ ପୂର୍ବକ "ବାକ୍ୟଂ ରସାତ୍ମକଂ କାବ୍ୟମ୍" ବୋଲି ନିଜମତ ସ୍ଥାପନ କରି ଅଛନ୍ତି । ସେ ଦୋଷ, ଗୁଣ ଅଳଂକାର ପ୍ରଭୃତି କାବ୍ୟ-ବସ୍ତୁମାନଙ୍କର ଆତ୍ମରୂପୀ ରସ ସହିତ ସମ୍ପର୍କ ପରିକଳ୍ପନା କରି ଏବଂ ଉକ୍ତ ରସ ଧ୍ୱନିକୁ କାବ୍ୟର ଆତ୍ମାରୂପେ ସ୍ୱୀକାର କରି ଧ୍ୱନ୍ୟାଲୋକର ସମ୍ପୂର୍ଣ୍ଣ ମତବାଦ ଗ୍ରହଣ କରି ଅଛନ୍ତି । ସାହିତ୍ୟଦର୍ପଣ ଅଳଂକାର ଭଣ୍ଡାରରେ ଏକ ପୂର୍ଣ୍ଣାଙ୍ଗ ଗ୍ରନ୍ଥ । ଗ୍ରନ୍ଥକାର ଉତ୍କଳର ଗଙ୍ଗ ବଂଶୀୟ ସମ୍ରାଟ ନୃସିଂହ ଭାନୁଦେବଙ୍କର ସାନ୍ଧିବିଗ୍ରହିକ ବା ବୈଦେଶିକ ମନ୍ତ୍ରୀ ଥିଲେ ।

୪—ପଣ୍ଡିତରାଜ ଜଗନ୍ନାଥ ତାଙ୍କ ରସଗଙ୍ଗାଧରକୁ ଧ୍ୱନ୍ୟାଲୋକ ଭିତ୍ତିରେ ହିଁ ପ୍ରଣୟନ କରି ଅଛନ୍ତି । ସେ ଧ୍ୱନି, ଗୁଣୀଭୂତ ବ୍ୟଙ୍ଗ୍ୟ, ବାଚ୍ୟଚିତ୍ର ଓ ଶବ୍ଦଚିତ୍ରକୁ ଯଥାକ୍ରମେ ଉତ୍ତମୋତ୍ତମ, ଉତ୍ତମ, ମଧ୍ୟମ ଓ ଅଧମ କାବ୍ୟ ଆଖ୍ୟା ଦେଇ କାବ୍ୟ ବିଭାଗ ଦର୍ଶାଇଛନ୍ତି ।

ବିଶ୍ୱନାଥ ଓ ଜଗନ୍ନାଥ ଉଭୟେ ଧ୍ୱନ୍ୟାଲୋକର ଧ୍ୱନିବାଦକୁ ଗ୍ରହଣ କରି ତଦନୁସାରେ ସ୍ୱ ସ୍ୱ ଗ୍ରନ୍ଥ ରଚନା କରିଥିଲେ ହେଁ ଉଭୟଙ୍କ ମଧ୍ୟରେ ମତଭେଦ ରହିଅଛି । ବିଶ୍ୱନାଥ ଧ୍ୱନିକାରଙ୍କର ସ୍ଥୂଳରୁ ସୂକ୍ଷ୍ମଚିନ୍ତା ପକ୍ଷକୁ ଗ୍ରହଣ କରିଛନ୍ତି । ତେଣୁ ସେ କେବଳ ଧ୍ୱନି ରସକୁ କାବ୍ୟର ଆତ୍ମାରୂପେ ସ୍ୱୀକାର କରି ବସ୍ତୁଧ୍ୱନି ଓ ଅଳଂକାରଧ୍ୱନିକୁ କାବ୍ୟାତ୍ମାରୂପେ ଗ୍ରହଣ କରି ନାହାନ୍ତି ।

ଜଗନ୍ନାଥ ଧ୍ୱନିକାରଙ୍କର ସୂକ୍ଷ୍ମରୁ ସ୍ଥୂଳଚିନ୍ତା ପକ୍ଷକୁ ଅବଲମ୍ବନ କରିଛନ୍ତି । କେବଳ ଧ୍ୱନିକୁ କାବ୍ୟରୂପେ ଗ୍ରହଣ କଲେ ଗୁଣୀଭୂତ ବ୍ୟଙ୍ଗ୍ୟ ଚିତ୍ର ଏ ଦୁଇଟି କାବ୍ୟ ମଧ୍ୟରେ ସ୍ଥାନ ପାଇଁ ପାରିବେ ନାହିଁ, ଏହି ଶଙ୍କାରେ ସେ କାବ୍ୟ ଲକ୍ଷଣକୁ ସବିବଧ ରଚନା ବ୍ୟାପକ କରିବାକୁ ଯାଇ "ରମଣୀୟାର୍ଥପ୍ରତିପାଦକଃ ଶବ୍ଦଃ କାବ୍ୟମ୍" ବୋଲି କାବ୍ୟର ଲକ୍ଷଣ କରିଅଛନ୍ତି ।

ଧ୍ୱନିକାର ସୂକ୍ଷ୍ମରୁ ସ୍ଥୂଳ ଓ ସ୍ଥୂଳରୁ ସୂକ୍ଷ୍ମ ଏହି ଉଭୟ ବିଧ ଚିନ୍ତାକୁ ସମ୍ପୂର୍ଣ୍ଣରୂପ ଦେଇଥିବା ହେତୁ ଜଗନ୍ନାଥ କିମ୍ବା ବିଶ୍ୱନାଥଙ୍କର କୌଣସି ନୂତନତା ନାହିଁ । ବ୍ରହ୍ମରୁ ଜଗତ୍ ପ୍ରପଞ୍ଚ ('ଏକୋଽହଂ ବହୁସ୍ୟାମ୍") ତଥା

ଜଗତର ବ୍ରହ୍ମସ୍ୱରୂପ ("ସର୍ବଂ ଖଲ୍ୱିଦଂ ବ୍ରହ୍ମ") ପର ଉକ୍ତ ପ୍ରଭୃତି ଶାସ୍ତ୍ର-ଦ୍ୱୟକୁ ଏମାନେ ସମନ୍ୱୟ ଦୃଷ୍ଟିରେ ନ ଦେଖି ବିଭିନ୍ନ ଦୃଷ୍ଟିରେ ଦେଖିଛନ୍ତି, ମାତ୍ର ଧ୍ୱନ୍ୟାଲୋକରେ ଉକ୍ତ ଦୁଇ ଶାସ୍ତ୍ରର ସମନ୍ୱୟ କରି ଯାଇଅଛି ।

## ଗ୍ରନ୍ଥକାରଙ୍କ ସାଧୁତା

ସାହିତ୍ୟିକ ପରମ୍ପରାରେ ଦୁର୍ଜନନିନ୍ଦା ଓ ସଜ୍ଜନ ପ୍ରଶଂସା ରହିଅଛି । କାଳକ୍ରମେ ମହାକାବ୍ୟ ଲକ୍ଷଣରେ ମଧ୍ୟ "କ୍ୱଚିନ୍ନିନ୍ଦା ଖଳାଦୀନାଂ ସତାଂ ଚ ଗୁଣକୀର୍ତ୍ତନମ୍" (ସାହିତ୍ୟଦର୍ପଣ) ସ୍ଥାନ ପାଇ ଦୃଢ଼ମୂଳ ହୋଇଅଛି । ଏଥିରୁ ପ୍ରାଚୀନ କବି-ସମାଜରେ ବିବାଦ ଥିବାର ଆଭାସ ମିଳେ । ଆଜିକାଲି ମଧ୍ୟ ଆଧୁନିକ ସାହିତ୍ୟ-ସେବୀଙ୍କ ମଧ୍ୟରେ ମତଭେଦ ଦେଖିବାକୁ ମିଳେ । ଏହିସବୁ ଅବାଞ୍ଛନୀୟ ପରିସ୍ଥିତିକୁ ଦୂର କରିବା ପାଇଁ ଧ୍ୱନିକାର ତାଙ୍କ ଗ୍ରନ୍ଥର ଉପସଂହାରରେ—

"ନ ବାଦଃ କର୍ତ୍ତବ୍ୟଃ କବିଭିରନବଦ୍ୟେ ସ୍ୱ ବିଷୟେ ସରସ୍ୱତ୍ୟୈବୈଷା ଘଟୟତି ।" ବୋଲି ଲେଖି କବିସୁଲଭ ବିବାଦର ସମାଧାନ କରିଅଛନ୍ତି ।

ବୃତ୍ତି ଅଂଶରେ ମଧ୍ୟ "ମହାତ୍ମନାଂ ଦୋଷୋଦ୍‌ଘୋଷଣମାତ୍ମନ ଏବ ଦୋଷୋଦ୍‌ଘୋଷଣମ୍" ବୋଲି ଉଲ୍ଲେଖ କରିଛନ୍ତି ଏବଂ ସ୍ୱୟଂ ଏହି ନୀତିକୁ ଅତି ସାବଧାନତା ସହ ପାଳନ କରିଅଛନ୍ତି । ଯଥା:—

"ବିବକ୍ଷା ତତ୍ପରତ୍ୱେନ ନାଙ୍ଗିତ୍ୱେନ କଥଂଚନ" ୨ ।

ଏହି କାରିକାର ବିବରଣରେ 'ନାଙ୍ଗିତ୍ୱେନ କଥଞ୍ଚନ" ସ୍ଥଳର ଉଦାହରଣ ଦର୍ଶାଇବା ଦ୍ୱାରା ଅନର୍ପିତ ଭାବେ ମଧ୍ୟ ଇତରର ଦୋଷ ଦର୍ଶାଇ ହୋଇଯିବ, ଏଥିପାଇଁ ସେ ତାଦୃଶ ଦୋଷ ଦୁଷ୍ଟ ସ୍ଥଳକୁ ଉଦାହରଣରୂପେ ନ ଦର୍ଶାଇ ଯେଉଁଠି ଅଙ୍ଗରୂପ ବିବକ୍ଷିତ ହେଲେ ମଧ୍ୟ ଅଳଂକାର ରସର ପୋଷକ ହୋଇ ପାରନ୍ତି, ସେହିଭଳି ଏକ ଉଦାହରଣର ଅନୁସନ୍ଧାନ କରିଅଛନ୍ତି । ଯଥା :—

"ଚକ୍ରାଭିଘାତ ପ୍ରସଭାଜ୍ଞୟୈବ ଚକାର ଯୋ ରାହୁବଧୂଜନସ୍ୟ ।
ଆଲିଙ୍ଗନୋଦ୍ଦାମ ବିଳାସବନ୍ଧ୍ୟଂ ରତୋତ୍ସବଂ ଚୁମ୍ବନମାତ୍ରଶେଷମ୍ ॥"

ଏହିଭଳି ମନୋବୃତ୍ତିସମ୍ପନ୍ନ ଲେଖକ ସଂସାରରେ ଅତି ଦୁର୍ଲ୍ଲଭ ।

## ଗ୍ରନ୍ଥର ସ୍ୱରୂପ ଓ କର୍ତ୍ତୃଭେଦ ବିଚାର

ଧ୍ୱନ୍ୟାଲୋକ ଗ୍ରନ୍ଥଟି କାରିକା ଓ ବୃତ୍ତି ଦୁଇ ଭାଗରେ ବିଭକ୍ତ । କାରିକାମାନଙ୍କରେ ଯେଉଁ ବିଷୟବସ୍ତୁର ଅବଧାରଣା କରାଯାଇଛି, ବୃତ୍ତିରେ ତାହାର ବିଶଦବିବରଣ, ତଥା ପରପକ୍ଷ ନିରସନପୂର୍ବକ ସ୍ୱପକ୍ଷ-ସ୍ଥାପନ ଏବଂ ଲକ୍ଷ୍ୟ ଲକ୍ଷଣ ସମନ୍ୱୟ କରାଯାଇଛି । ଉକ୍ତ କାରିକା ଓ ବୃତ୍ତି ଉଭୟ ଅଂଶର ଲେଖକ ଜଣେ କି ଦୁଇଜଣ ଏ ସମ୍ବନ୍ଧେ ଗୋଟିଏ ବିବାଦ ପରମ୍ପରା ରହିଅଛି ।

ସଂସ୍କୃତ ସଂସାରରେ ବହୁସୂତ୍ରଗ୍ରନ୍ଥ ଦେଖାଯାଏ, ଯେଉଁମାନଙ୍କର ବୃତ୍ତିକାର, ଭାଷ୍ୟକାର ମୂଳ ଲେଖକଙ୍କଠାରୁ ପୃଥକ୍ ବ୍ୟକ୍ତି, ପୁନଶ୍ଚ ଆଉ କେତେକ ସୂତ୍ରଗ୍ରନ୍ଥ ଦେଖାଯାଏ, ଯହିଁରେ ସୂତ୍ରକାର ଓ ବୃତ୍ତିକାର ଏକବ୍ୟକ୍ତି ଅଟନ୍ତି । ସମ୍ଭବତଃ କୌଟିଲ୍ୟ ବିଷ୍ଣୁଗୁପ୍ତ ଏହି ରୀତିର ଆବିଷ୍କର୍ତ୍ତା ଅଟନ୍ତି । ସେ କୌଟିଲୀୟ ଅର୍ଥଶାସ୍ତ୍ରକୁ ସୂତ୍ର ଓ ବୃତ୍ତିଭେଦରେ ରଚନା କରି ନିଜର ମନ୍ତବ୍ୟ ପ୍ରକାଶ କରିଛନ୍ତି ଯେ—

"ଦୃଷ୍ଟ୍ୱା ବିପ୍ରତିପତ୍ତିଂ ସୂତ୍ରେଷୁ ଭାଷ୍ୟକାରାଣାମ୍ ।
ସ୍ୱୟମେବ ବିଷ୍ଣୁଗୁପ୍ତଶ୍ଚକାର ସୂତ୍ରଂ ଚ ଭାଷ୍ୟଞ୍ଚ ।।" କୌ : ଅ :

ଆଲଂକାରିକ ସମ୍ପ୍ରଦାୟ ପ୍ରାୟଶଃ ତାଙ୍କର ରୀତି ଅନୁସରଣ କରିଛନ୍ତି । ବାମନ, ମଙ୍ଗୁକ, ମମ୍ମଟ, ବିଶ୍ୱନାଥ, ଜଗନ୍ନାଥ ପ୍ରଭୃତି ସୂତ୍ର ଓ ବୃତ୍ତିଭେଦରେ ନିଜ ନିଜର ଗ୍ରନ୍ଥ ରଚନା କରିଅଛନ୍ତି ।

ଧ୍ୱନ୍ୟାଲୋକର କାରିକାକାର ଓ ବୃତ୍ତିକାର ଭିନ୍ନ ଭିନ୍ନବ୍ୟକ୍ତି ଏହାର ସପକ୍ଷରେ ପ୍ରମାଣ :—

୧ । ସର୍ବପ୍ରଥମେ ଆଚାର୍ଯ୍ୟ ଅଭିନବ ଗୁପ୍ତ ତାଙ୍କ ଲୋଚନ ଟୀକାର ବହୁସ୍ଥଳରେ ଧ୍ୱନିକାର ବୃତ୍ତିକାର ଇତ୍ୟାଦି ଭେଦକ ଶବ୍ଦ ଦ୍ୱାରା କାରିକା-କାର ଓ ବୃତ୍ତିକାରଙ୍କୁ ଭିନ୍ନ ବ୍ୟକ୍ତି ରୂପେ ନିର୍ଦ୍ଦେଶ କରି ଅଛନ୍ତି । ଯଥା :—

"ଲକ୍ଷଣେଽନ୍ୟୈଃ କୃତେ ଚାସ୍ୟ ପକ୍ଷସଂସିଦ୍ଧିରେବ ନଃ" ଉ ୧ । ଏହି କାରିକାର ଟୀକାରେ ସେ ଲେଖିଛନ୍ତି "ଅତଏବ ମୂଳକାରିକା ସାକ୍ଷାନ୍ନିରାକରଣାର୍ଥା ନ ଶ୍ରୂୟତେ, ବୃତ୍ତିକୃତ୍ତୁ ନିରାକୃତମପି ପ୍ରମେୟଶଯ୍ୟା

ପୂରଣାପ୍ତ କଣ୍ଠେନ ତତ୍ପକ୍ଷମନୁଦ୍ୟ ନିରାକବୋତ ଯେଽଣୀତ୍ୟାଦିନା ।"
ଏହିପରି ବହୁସ୍ଥଳରେ ଲେଖାଅଛି ।

୨ । ସରଳ ସଂସ୍କୃତରେ ଲେଖା ଯାଇଥିବା କାରିକାମାନଙ୍କର ବ୍ୟାଖ୍ୟା କରାଯାଇଥିବା ସ୍ଥଳେ ବୃତ୍ତିପ୍ରବିଷ୍ଟ କଠିନ ଶ୍ଳୋକମାନଙ୍କର ବ୍ୟାଖ୍ୟା କରାଯାଇ ନାହିଁ । ଯଥା—କାରିକାତ୍ମକ "ପ୍ରତୀୟମାନଂ ବାଚ୍ୟେ" ଉ ୪ । ଇତ୍ୟାଦି ଶ୍ଳୋକର ବ୍ୟାଖ୍ୟାସତ୍ତ୍ୱେ "ନୈତ୍ୟାକ୍ଲିଷ୍ଟ" ଇତ୍ୟାଦି ବୃତ୍ତି ଶ୍ଳୋକର ବ୍ୟାଖ୍ୟାନ ନାହିଁ ।

୩ । (କ) ବହୁସ୍ଥଳରେ ପ୍ରତିପାଦ୍ୟ ବସ୍ତୁ ମୂଳ କାରିକାରେ ଅସ୍ପଷ୍ଟ ହେବାରୁ ବୃତ୍ତିରେ ପରିକର (ପରିପୂରକ) ଶ୍ଳୋକ ନିବେଶ ଦ୍ୱାରା ତାହାର ପୂରଣ କରାଯାଇଅଛି । ଯଦି ଉଭୟ ଅଂଶର ଲେଖକ ଜଣେ ବ୍ୟକ୍ତି ହୋଇଥାନ୍ତେ, ତେବେ ସେ ଆବଶ୍ୟକତା ଦୃଷ୍ଟିରୁ କାରିକା ସଂଖ୍ୟା ବୃଦ୍ଧି ନ କରି କାହିଁକି ପରିକର ଶ୍ଳୋକ ଲେଖିବାକୁ ଯାଇଥାନ୍ତେ ?

(ଖ) କାରିକା ଓ ପରିକର ଶ୍ଳୋକର ଲେଖକ ଜଣେ ବ୍ୟକ୍ତି ନ ହେବାରେ ଏହା ଏକ ପ୍ରମାଣ ଯେ ସରଳ କାରିକା ଶ୍ଳୋକମାନଙ୍କର ବ୍ୟାଖ୍ୟା ଥିବା ସ୍ଥଳେ କ୍ଲିଷ୍ଟ ପରିକର ଶ୍ଳୋକମାନଙ୍କର ମଧ୍ୟ କୁତ୍ରାପି ବ୍ୟାଖ୍ୟା ନାହିଁ ।

ଯଥା—"ଆଲୋକାର୍ଥୀ ଯଥା ଦୀପଶିଖାୟାଂ ଯତ୍ନବାନ୍ ଜନଃ"
ଏହି କାରିକାର ବ୍ୟାଖ୍ୟା ଥିବା ସ୍ଥଳେ—

"ବ୍ୟଙ୍ଗ୍ୟ ବ୍ୟଞ୍ଜକ ସମ୍ବନ୍ଧ-ନିବନ୍ଧନତୟା ଧ୍ୱନେଃ ।
ବାଚ୍ୟ ବାଚକ ଚାରୁତ୍ୱ ହେତ୍ୱନ୍ତଃପାତିତା କୁତଃ ॥"

ତଥା—"ଅନାଖ୍ୟେୟାଂଶ ଭାସିତ୍ୱଂ ନିର୍ବାଚ୍ୟାର୍ଥତୟା ଧ୍ୱନେଃ ।
ନ ଲକ୍ଷଣଂ ଲକ୍ଷଣଂ ତୁ ସାଧୀୟୋଽସ୍ୟ ଯଥୋଦିତମ୍ ॥"

ଇତ୍ୟାଦି କ୍ଲିଷ୍ଟ ପରିକର ଓ ସଂକ୍ଷିପ୍ତାର୍ଥକ ଶ୍ଳୋକମାନଙ୍କର ବ୍ୟାଖ୍ୟା କରାଯାଇ ନାହିଁ ।

୪ । ମଙ୍ଗଳାଚରଣ ଶ୍ଳୋକଟି କାରିକାଭାଗରେ ନ ରହି ବୃତ୍ତିଭାଗରେ ରହିଅଛି ।

୫ । କାରିକା ଓ ବୃତ୍ତି ମଧ୍ୟରେ ଭାଷାଗତ ପ୍ରଭେଦ ରହିଅଛି । କାରିକା ଭାଷା ସରଳ ଓ ବୃତ୍ତିଭାଷା ଅପେକ୍ଷାକୃତ କଠିନ ।

୬ । କେତେକ ସ୍ଥଳରେ କାରିକା ଅପେକ୍ଷା ବୃତ୍ତିରେ ନୂତନତା ରହିଛି । ଯଥା :—

(କ) ଗୁଣୀଭୂତ ବ୍ୟଙ୍ଗ୍ୟର ଧ୍ୱନିନିଷ୍ୟନ୍ଦସଂଜ୍ଞା କେବଳ ବୃତ୍ତିରେ ଅଛି ।

(ଖ) ଅର୍ଥଶକ୍ତ୍ୟୁତ୍ଥ ଧ୍ୱନିଭେଦ ନିରୂପଣରେ କବି ନିବଦ୍ଧ ବକ୍ତୃ-ପ୍ରୌଢ଼ୋକ୍ତିଭେଦ ନିର୍ଣ୍ଣୟ କାରିକାରେ ନଥାଇ କେବଳ ବୃତ୍ତିରେ ରହିଛି ।

(ଗ) ତୃତୀୟୋଦ୍ୟୋତରେ ନାନା ମତବାଦରେ ଧ୍ୱନି ସମର୍ଥିତ ହୋଇ ପାରିବ ବୋଲି ବୃତ୍ତିରେ ବିପୁଳ ଚେଷ୍ଟା କରି-ଯାଇଅଛି, କିନ୍ତୁ କାରିକା ଭାଗରେ ତାହାର ସ୍ୱଳ୍ପ ସୂଚନା ପର୍ଯ୍ୟନ୍ତ ନାହିଁ ।

୭ । ଉପସଂହାରରେ ବୃତ୍ତିକାର ସ୍ୱୟଂ ନିଜର ବ୍ୟାଖ୍ୟାତୃତ୍ୱ ସ୍ୱୀକାର କରିଛନ୍ତି ।

ଯଥା—"ତଦ୍ ବ୍ୟାକରୋତ୍ ସହୃଦୟୋଦୟଲାଭହେତୋ
ରାନନ୍ଦବର୍ଦ୍ଧନ ଇତି ପ୍ରଥିତାଭିଧାନଃ ।"

ଉପର୍ଯ୍ୟୁକ୍ତ କାରଣଗୁଡ଼ିକ ଧ୍ୱନ୍ୟାଲୋକର କାରିକାକାରଙ୍କଠାରୁ ବୃତ୍ତି-କାରଙ୍କୁ ପୃଥକ୍‌ରୂପେ ଦେଖାଇବାରେ ସହାୟତା କରୁଛି ।

ଆଉ କେତେକ କାରଣରୁ ଗ୍ରନ୍ଥର କାରିକାକାର ଓ ବୃତ୍ତିକାରଙ୍କ ମଧ୍ୟରେ ଭେଦ ନ ଥିବା ପରି ଜଣାଯାଏ । ଯଥା—

୧ । ଅଳଂକାର ଶାସ୍ତ୍ର ପରମ୍ପରାରେ ଲେଖକମାନେ କାରିକା ଲେଖି ସ୍ୱୟଂ ତାହାର ବୃତ୍ତି କରିଅଛନ୍ତି ।

୨ । "ତେନ ବ୍ରୂମଃ ସହୃଦୟମନଃ ପ୍ରୀତୟେ ତତ୍ସ୍ୱରୂପମ୍"
ଏହି କାରିକାଂଶର ବୃତ୍ତିଖଣ୍ଡରେ ଶିଷ୍ଟଭାଷାରେ ଲେଖା ଅଛି ଯେ "ସହୃଦୟାନାଂ ମନସ୍ୟାନନ୍ଦୋ ଲଭତାଂ ପ୍ରତିଷ୍ଠାମ୍" ଏଠି ଆନନ୍ଦ ଶବ୍ଦ ଏକ ପକ୍ଷରେ କାରିକା ପଠିତ ପ୍ରୀତି ଶବ୍ଦର ଅର୍ଥ ସ୍ୱରୂପରେ ରହିଅଛି ଏବଂ ଅନ୍ୟପକ୍ଷରେ ଗ୍ରନ୍ଥକାର ଆନନ୍ଦବର୍ଦ୍ଧନାଚାର୍ଯ୍ୟଙ୍କ ନାମ ସୂଚିତ ଅଛି ।

। ବୃତ୍ତିର କର୍ତ୍ତା ଆନନ୍ଦବର୍ଦ୍ଧନ ପ୍ରସିଦ୍ଧ ହୋଇ ରହିଥିବା ସ୍ଥଳେ କାରିକାକର୍ତ୍ତାଙ୍କ ନାମ ପର୍ଯ୍ୟନ୍ତ ମଧ୍ୟ ଶୁଣା ନାହିଁ । ବିଷୟବସ୍ତୁର ପ୍ରସିଦ୍ଧି ସଙ୍ଗେ ତାହାର ଆବିଷ୍କର୍ତ୍ତାଙ୍କ ନାମ ଲୁପ୍ତ ରହି ପାରନ୍ତା ନାହିଁ ।

୪ । ରାଜଶେଖର ଆନନ୍ଦ ବା ଆନନ୍ଦବର୍ଦ୍ଧନଙ୍କୁ ଧ୍ୱନିକାର ବୋଲି ଦର୍ଶାଇଛନ୍ତି :—

"ଧ୍ୱନିନାଽତିଗଭୀରେଣ କାବ୍ୟତତ୍ତ୍ୱ ନିବେଦିନା ।
ଆନନ୍ଦବର୍ଦ୍ଧନଃ କସ୍ୟ ନାସୀଦାନନ୍ଦବର୍ଦ୍ଧନଃ ॥"

(କାବ୍ୟ ମୀମାଂସା)—"ପ୍ରତିଭାବ୍ୟୁତ୍ପତ୍ତ୍ୟୋଃ ପ୍ରତିଭା ଶ୍ରେୟସୀତ୍ୟାନନ୍ଦଃ"
"ଅବ୍ୟୁତ୍ପତ୍ତିକୃତୋ ଦୋଷଃ ଶକ୍ତ୍ୟା ସଂବ୍ରିୟତେ କବେଃ"

୫ । ସାହିତ୍ୟ ଦର୍ପଣକାର ବିଶ୍ୱନାଥ ମଧ୍ୟ ଧ୍ୱନ୍ୟାଲୋକ କାରିକା ଓ ବୃତ୍ତି ଉଭୟର ଲେଖକଙ୍କୁ ଧ୍ୱନିକାର ବୋଲି କହିଛନ୍ତି, ଯଥା—

ଧ୍ୱନିକାରେଣୋକ୍ତଂ— "କାବ୍ୟସ୍ୟାତ୍ମା ଧ୍ୱନି" ଇତି ।

ଧ୍ୱନିକାରେଣାପ୍ୟୁକ୍ତଂ—"ନହି କବେରିତିବୃତ୍ତମାତ୍ର ନିର୍ବାହେଣାତ୍ମଲାଭଃ । ଇତିହାସାଦେରେବ ତତ୍ସିଦ୍ଧେଃ ।" ଏଥିରୁ କାରିକା ଓ ବୃତ୍ତି ଉଭୟର ଲେଖକ ଜଣେ ବ୍ୟକ୍ତି ବୋଲି ତାଙ୍କ ମତ ସ୍ପଷ୍ଟ ହେଉଅଛି ।

ଧ୍ୱନିବାଦର ବିରୋଧୀ ମନୋରଥ କବିଙ୍କର ସମୟ ନିରୂପିତ ହୋଇଗଲେ ସୂତ୍ରକାର ଓ ବୃତ୍ତିକାରଙ୍କ ମଧ୍ୟରେ ଭେଦାଭେଦ ସମସ୍ୟା ସ୍ୱତଃ ସମାହିତ ହୋଇଯିବ । କାରଣ ମନୋରଥ କବିଙ୍କ ଧ୍ୱନିବିରୋଧ ପ୍ରବୃତ୍ତିର ଖଣ୍ଡନ ନିମନ୍ତେ ଧ୍ୱନ୍ୟାଲୋକ ଗ୍ରନ୍ଥର ପ୍ରବୃତ୍ତି ଘଟିଥିବା ସମ୍ଭବ, ମନୋରଥ କବିଙ୍କ ଶ୍ଳୋକ ଓ ଧ୍ୱନ୍ୟାଲୋକ ପ୍ରଥମ ଶ୍ଳୋକର ସ୍ୱରୂପରୁ ତାହାର ସୂଚନା ମିଳେ । ମନୋରଥ କବିଙ୍କ ଶ୍ଳୋକ ଯଥା :—

"ଯସ୍ମିନ୍ନାସ୍ତି ନ ବସ୍ତୁ କିଂଚନ ମନଃ ପ୍ରହ୍ଲାଦି ସାଲଂକୃତି
ବ୍ୟୁତ୍ପନ୍ନୈରଚିତଂ ଚ ନୈବ ବଚନୈର୍ବକ୍ରୋକ୍ତିଶୂନ୍ୟଂଚ ଯତ୍ ।
କାବ୍ୟଂ ତଦ୍ଧ୍ୱନିନା ସମନ୍ୱିତମିତି ପ୍ରୀତ୍ୟା ପ୍ରଶଂସନ୍ ଜଡ଼ୋ
ନୋ ବିଦ୍ମୋଽଭିଦଧାତି କିଂ ସୁମତିନା ପୃଷ୍ଟଃ ସ୍ୱରୂପଂଧ୍ୱନେଃ ॥

ଧ୍ୱନ୍ୟା-ଉ ୧ ।

ଧ୍ୱନିକାରଙ୍କ ଉପକ୍ରମ ଶ୍ଳୋକ ଯଥା :—

"କାବ୍ୟସ୍ୟାତ୍ମା ଧ୍ୱନିରିତିବୁଧୈ ର୍ଯଃ ସମାମ୍ନାତପୂର୍ବ-
ସ୍ତସ୍ୟାଭାବଂ ଜଗଦୁରପରେ ଭକ୍ତିମାହୁସ୍ତମନ୍ୟେ
କେଚିଦ୍ୱାଚାଂ ସ୍ଥିତମବିଷୟେ ଇତି ତତ୍ତ୍ୱମୂଚୁସ୍ତଦୀୟଂ
ତେନ ବ୍ରୂମଃ ସହୃଦୟମନଃ ପ୍ରୀତୟେ ତତ୍ସ୍ୱରୂପମ୍ ।

ଉଲ୍ଲିଖିତ ଶ୍ଳୋକ ଦୁଇଟିରେ ଧ୍ୱନିବାଦ ସମ୍ବନ୍ଧେ ପ୍ରଶ୍ନୋତ୍ତରଭାବ ସମ୍ପୂର୍ଣ୍ଣରୂପେ ଚିତ୍ରିତ ହୋଇଅଛି ।

ମନୋରଥଙ୍କ ପ୍ରଶ୍ନ—

"ଜଡ଼ଃ ପୃଷ୍ଟଃସନ୍ ଧ୍ୱନେଃସ୍ୱରୂପଂ କିମ୍ ଅଭିଦଧାତି, ନୋ ବିଦ୍ମଃ ।

ଧ୍ୱନିକାରଙ୍କ ଉତ୍ତର—

"ସହୃଦୟ-ମନଃପ୍ରୀତୟେ ତତ୍ସ୍ୱରୂପଂ ବ୍ରୂମଃ ।

ଏଥିରୁ ଜଣାପଡ଼େ ଯେ ଧ୍ୱନ୍ୟାଲୋକ କାରିକାକାର ଓ ମନୋରଥ କବି ସମକାଳିକ ଅଟନ୍ତି । ଯଦି ବୃତ୍ତିକାର ଆନନ୍ଦବର୍ଦ୍ଧନାଚାର୍ଯ୍ୟ ଓ ମନୋରଥ କବି ସମକାଳିକ ବୋଲି ନିରୂପିତ ହେବେ, ତେବେ ସେହି ଆନନ୍ଦବର୍ଦ୍ଧନ ହିଁ କାରିକା ଓ ବୃତ୍ତି ଉଭୟ ଅଂଶର ଲେଖକ ବୋଲି ବୁଝିବାକୁ ହେବ । ଯଦି ଆନନ୍ଦବର୍ଦ୍ଧନଙ୍କଠାରୁ ମନୋରଥ ପ୍ରାଚୀନ ହୋଇଥିବେ, ତେବେ ଧ୍ୱନି କାରିକାକାର ବୃତ୍ତିକାର ଆନନ୍ଦବର୍ଦ୍ଧନଙ୍କଠାରୁ ନିଶ୍ଚୟ ପୃଥକ୍ ବୋଲି ବିବେଚିତ ହେବେ ।

ରାଜତରଙ୍ଗିଣୀ ମତରେ ଆନନ୍ଦବର୍ଦ୍ଧନ କାଶ୍ମୀରରାଜ ଅବନ୍ତି-ବର୍ମାଙ୍କ ସଭା-ପଣ୍ଡିତ ଥିଲେ । ମୋ ମତରେ ସିନ୍ଧୁଦେଶ ତାଙ୍କର ଜନ୍ମସ୍ଥାନ ଥିଲା । ସେ ସିନ୍ଧୁଭାଷାଭାଷୀ ପରିବାରରେ ଜନ୍ମ ଗ୍ରହଣ କରିଥିଲେ । କାରଣ

ଉକ୍ତ ବୈଚିତ୍ର୍ୟର ଉଦାହରଣ ଦେବାକୁ ଯାଇ ସେ ସୈନ୍ଧବୀ ଭାଷାର ଏକ ପଦ୍ୟ ଉଦ୍ଧାର କରିଛନ୍ତି । ଯଥା—

ମହ ମହ ଇତି ଭଣନ୍ତ ଓ ବଜ୍ଜଦି କାଲୋଜଣସ୍ସ ।
ତୋ ଇଣ ·ଦେଉ ଜଣଦଣ ଗୋଅରୀ ହୋଦି ମଣସୋ ॥

ଏହି କବିତାଟି ଗ୍ରନ୍ଥକାରଙ୍କ ସ୍ୱରଚିତ ଅଟେ । ପ୍ରାକୃତ ରଚନା ନିଜ ମାତୃଭାଷାରେ କରାଯାଇଥିବା ବେଶି ସମ୍ଭବ । ବିଭିନ୍ନ ପ୍ରାକୃତରେ କବି କବିତା ଲେଖିବାକୁ କୁଶଳ ହୋଇଥିଲେ ମଧ୍ୟ ଗୋଟିଏ ବିଶିଷ୍ଟ ଗ୍ରନ୍ଥରେ ନିଜ ମାତୃଭାଷା ପ୍ରତି ଆକୃଷ୍ଟ ହୋଇ ସୂଚନା ସ୍ୱରୂପ ଗୋଟିଏ ପଦ୍ୟ ଦର୍ଶାଇଥିବା ଅସମ୍ଭବ ମନେହୁଏ ନାହିଁ । ଏଣୁ କବିଙ୍କୁ ସିନ୍ଧୁ ଭାଷାଭାଷୀ ବୋଲି ଗ୍ରହଣ କରିବାକୁ ହେବ ।

## ଧ୍ୱନ୍ୟାଲୋକର କାଠିନ୍ୟ

ଧ୍ୱନ୍ୟାଲୋକ ଗ୍ରନ୍ଥଟି ସାଧାରଣତଃ ସରଳଭାଷାରେ ଲେଖା ଯାଇଥିଲେ ମଧ୍ୟ ସର୍ବସମ୍ମୁଖରେ ଦୁର୍ବୋଧ ବୋଲି ଆଖ୍ୟାପ୍ରାପ୍ତ । ଏହାର କାରଣ ଏହା ଯେ—

୧ । ଡହିଁରେ ଗୋଟିଏ ନୂତନ ଚିନ୍ତା ନୂତନ ଶୈଳୀରେ ପ୍ରତିପାଦିତ ହୋଇଅଛି ।

୨ । ଅବୁଝା ଲୋକକୁ ବୁଝାଇବାଭଳି ଗୋଟିଏ କଥାକୁ ବାରମ୍ବାର କୁହାଯାଇଛି ।

୩ । ବହୁସ୍ଥଳରେ ସର୍ବନାମ ପଦ ଦ୍ୱାରା ପୂର୍ବବସ୍ତୁର ନିର୍ଦ୍ଦେଶ କରାଯାଇଛି । ଏବଂ

୪ । ବିଷୟବସ୍ତୁକୁ ଦାର୍ଶନିକ ଶୈଳୀରେ ବିଚାର କରାଯାଇଛି ।

## ଧ୍ୱନ୍ୟାଲୋକରେ ଟୀକା ଗ୍ରନ୍ଥ

ଧ୍ୱନ୍ୟାଲୋକରେ ଆଚାର୍ଯ୍ୟ ଅଭିନବ ଗୁପ୍ତଙ୍କ ଲୋଚନ ଟୀକା ପୁରାତନ ଓ ପ୍ରାମାଣିକ । ତାହା ଆଲଂକାରିକ ଭଣ୍ଡାରର ସର୍ବସ୍ୱ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ତାହା ମୂଳଗ୍ରନ୍ଥଠାରୁ ଖୁବ୍ ବିସ୍ତୃତ ଓ କ୍ଲିଷ୍ଟ ।

ନିକଟ ଅତୀତରେ ଓଡ଼ିଶାର ବିଖ୍ୟାତ ପଣ୍ଡିତ ୬ ମଧୁସୂଦନ ତର୍କବାଚସ୍ପତି ଓ ବିହାରର ବଦରୀନାଥ ଶୁକ୍ଳ ଧ୍ୱନ୍ୟାଲୋକର ଗୋଟିଏ ଲେଖାଏଁ ଟୀକା ଲେଖିଛନ୍ତି ।

ଏସବୁ ସତ୍ତ୍ୱେ ଉଚ୍ଚଶ୍ରେଣୀର ଛାତ୍ରଙ୍କ ପକ୍ଷରେ ମଧ୍ୟ ଧ୍ୱନ୍ୟାଲୋକର କ୍ଲିଷ୍ଟତା ଅନୁଭୂତ ହେବାର ଦେଖି ସେମାନଙ୍କ ସାହାଯ୍ୟ ସକାଶେ ତଥା ଧ୍ୱନ୍ୟାଲୋକଭଳି ଗୋଟିଏ ମୌଳିକ ଗ୍ରନ୍ଥର ସମାବେଶ ଦ୍ୱାରା ଓଡ଼ିଆ ସାହିତ୍ୟ ଭଣ୍ଡାରକୁ ପୁଷ୍ଟ କରିବା ଉଦ୍ଦେଶ୍ୟରେ ମୁଁ ଧ୍ୱନ୍ୟାଲୋକ ଅନୁବାଦ କାର୍ଯ୍ୟରେ ପ୍ରବୃତ୍ତ ହୋଇଥିଲି । ଭାବାନୁବାଦ ସରଳମତିଗ୍ରାହ୍ୟରୂପେ ବିବେଚିତ ହୋଇଥିଲେ ମଧ୍ୟ ଆକ୍ଷରିକାନୁବାଦ ମୂଳ ଗ୍ରନ୍ଥ ସହିତ ପାଠକ-ମାନଙ୍କୁ ପରିଚିତ କରାଇ ଅପୂର୍ବ ଆନନ୍ଦ ଯୋଗାଇ ପାରିବ ବୋଲି ମୋର ବିଶ୍ୱାସ ।

## ଅନୁବାଦର ପ୍ରକୃତି

ଅନୁବାଦ ମଧ୍ୟରେ ଶବ୍ଦାର୍ଥର ସ୍ପଷ୍ଟୀକରଣ ସକାଶେ କ୍ୱଚିତ୍ କ୍ୱଚିତ୍ ବନ୍ଧନୀ ମଧ୍ୟରେ ମୂଳସଂସ୍କୃତ ଶବ୍ଦ ଲେଖାଯାଇଛି । ଯେଉଁଠି ଅତିରିକ୍ତ ଶବ୍ଦ ଦ୍ୱାରା ଅର୍ଥ ପ୍ରକାଶ କରାଯାଇଛି, ସେଠାରେ ତାଦୃଶ ଶବ୍ଦଗୁଡ଼ିକୁ ମଧ୍ୟ ବନ୍ଧନୀ ମଧ୍ୟଗତ କରାଯାଇଛି ।

ବୃତ୍ତିରେ କାରିକାଗୁଡ଼ିକର ଅର୍ଥ ପ୍ରକାଶିତ ହୋଇଥିବାରୁ କାରିକା ଓ ବୃତ୍ତି ଉଭୟର ଅନୁବାଦ ଲେଖିଲେ ବାହୁଲ ଉକ୍ତି ପରି ବିଷୟର ଆବୃତ୍ତି ମାତ୍ର ପ୍ରକାଶ ପାଇବ ଏହି ଭୟରେ କାରିକାର ଅର୍ଥ ଲେଖିବା ପରେ ବୃତ୍ତିର ଯେଉଁ ଅଂଶତକ ସେଥିରେ ଗତାର୍ଥ ହେଉଅଛି, ପୃଥକ୍‌ରୂପେ ତାହାର ଅର୍ଥ ଲେଖାଯାଇ ନାହିଁ । ଯେଉଁଠି ବୃତ୍ତିରେ କାରିକାର୍ଥ ଅପେକ୍ଷା ଅଧିକ କିଛି ପ୍ରତିପାଦିତ ହୋଇଅଛି କିମ୍ବା ଭାଷା ବା ପ୍ରତିପାଦନ ଭଙ୍ଗୀରୁ ସ୍ୱତନ୍ତ୍ରରୂପେ ଯାହାର ଅର୍ଥ ଲେଖିବାକୁ ଉଚିତ ମନେ କରିଛି, ସେହିଭଳି ବୃତ୍ତି ବା ବୃତ୍ତ୍ୟାଂଶର ଅର୍ଥ ଲେଖିଛି । ଯେଉଁଠି ବୃତ୍ତିର କାଠିନ୍ୟ ହେତୁ ପୃଥକ୍ ଅର୍ଥ ପ୍ରଦର୍ଶନ ଦ୍ୱାରା ପାଠକମାନଙ୍କୁ ପୁନରୁକ୍ତି ପରି ବୋଧ ହେବାର ଶଙ୍କା ରହିଛି ସେଠି ତାହାକୁ ବୃତ୍ତିର ଅଂଶ ବୋଲି ଚିହ୍ନିତ କରାଯାଇଛି ।

ପାଠକମାନଙ୍କ ସୁବିଧା ପାଇଁ ମଧ୍ୟେ ମଧ୍ୟେ ପ୍ରାକରଣିକ ବିଷୟର ସଂକ୍ଷିପ୍ତାର୍ଥ ଓ ସାରାର୍ଥ କ୍ୱଚିତ୍ ବିଶଦାର୍ଥ ମଧ୍ୟ ବନ୍ଧନୀ ମଧ୍ୟରେ ପ୍ରଦର୍ଶିତ ହୋଇଅଛି ।

ଗ୍ରନ୍ଥରେ ଧ୍ୱନି ଓ ଅଳଂକାରମାନଙ୍କର ଯେଉଁସବୁ ଉଦାହରଣମାନ ଦିଆଯାଇଅଛି ସେହି ଉଦାହରଣଗୁଡ଼ିକର ଅର୍ଥ ଲେଖିବା ପରେ ତନ୍ମଧ୍ୟରେ ନିର୍ଦ୍ଦିଷ୍ଟ ଧ୍ୱନି ବା ଅଳଂକାର କପରି ସ୍ଥାନ ପାଇ ପାରିଛି, ଏ ସମ୍ବନ୍ଧେ ସମନ୍ୱୟ ପ୍ରକ୍ରିୟା ଯଥାଶକ୍ତି ସଂଯୋଜନ କରାଯାଇଛି ।

ଯେଉଁଠି ଟୀକାକାରମାନଙ୍କ ମଧ୍ୟରେ ମତଭେଦ ଦେଖାଦେଇଛି, ସେଠି ତାହାର ସ୍ପଷ୍ଟ ସୂଚନା ଦିଆଯାଇଛି ।

ଅନୁବାଦଗତ ପାରିଭାଷିକ ଶବ୍ଦମାନଙ୍କର ବିଶେଷ ପରିଜ୍ଞାନ ନିମନ୍ତେ ଗ୍ରନ୍ଥଶେଷରେ ପାରିଭାଷିକ ଶବ୍ଦାର୍ଥ ଯୋଜନା ତଥା ଧ୍ୱନ୍ୟାଲୋକ ବ୍ୟବହୃତ ଅଳଂକାରମାନଙ୍କର ସୋଦାହରଣ ସ୍ୱରୂପ ନିର୍ଣ୍ଣୟ ପ୍ରଦର୍ଶିତ ହୋଇଅଛି ।

କାରିକା ଓ ବୃତ୍ତି ମଧ୍ୟରେ ଅକ୍ଷର ଭେଦ ରହି ପାରି ନାହିଁ, ତେବେ ଯେଉଁ ଶ୍ଲୋକଗୁଡ଼ିକର ଦକ୍ଷିଣ ପାର୍ଶ୍ୱରେ ସଂଖ୍ୟା ଦିଆଯାଇଛି ସେଗୁଡ଼ିକୁ କାରିକା ତଦ୍ଭିନ୍ନ ଅନ୍ୟସବୁ ବୃତ୍ତି ବୋଲି ବୁଝିବାକୁ ଅନୁରୋଧ ।

ସାହିତ୍ୟ ଏକାଡ଼େମି ଗ୍ରନ୍ଥଟିର ପ୍ରକାଶ ଭାର ଗ୍ରହଣ କରିଥିବାରୁ ତାହା ପ୍ରତି, ଏବଂ ପଣ୍ଡିତ ଶ୍ରୀ ନାରାୟଣ ମହାପାତ୍ର, ଶ୍ରୀ ଭ୍ରମରବର ସ୍ୱାଇଁ ଶ୍ରୀ ବାସୁଦେବ ରଥ ଓ ଶ୍ରୀ ବିପ୍ରଚରଣ ପାଢ଼ୀ ପ୍ରମୁଖ ଯେଉଁ ବନ୍ଧୁମାନେ ଏ କାର୍ଯ୍ୟରେ କାୟିକ ବାଚିକ ମାନସିକ ସାହାଯ୍ୟ ଅର୍ପଣ କରିଛନ୍ତି ସେମାନଙ୍କ ପ୍ରତି ଗଭୀର କୃତଜ୍ଞତା ଅର୍ପଣ କରି ବିଜ୍ଞ ପାଠକମାନଙ୍କଠାରେ ତ୍ରୁଟି ମାର୍ଜନା ନିମନ୍ତେ ନିବେଦନ ଜଣାଉଛି । ଇତି ।

ବିନୀତ

ତା ୩୦-୪-୧୯୬୩ ଅନୁବାଦକ

# ଧ୍ୱନ୍ୟାଲୋକଃ

## ପ୍ରଥମ ଉଦ୍ୟୋତଃ

ସ୍ୱେଚ୍ଛାକେସରିଣଃ ସ୍ୱଚ୍ଛସ୍ୱଚ୍ଛାୟାୟାସିତେନ୍ଦବଃ ।
ତ୍ରାୟନ୍ତାଂ ବୋ ମଧୁରିପୋଃ ପ୍ରପନ୍ନାର୍ତ୍ତିଚ୍ଛିଦୋ ନଖାଃ ॥

---

ଇଚ୍ଛାମତେ ସିଂହରୂପୀ ମଧୁରିପୁଙ୍କର
ସ୍ୱଚ୍ଛତାରେ ଚନ୍ଦ୍ରଜୟୀ କରଜ ନିକର ।
ଶରଣାଗତଜନଙ୍କ ଦୁଃଖବିନାଶନ
ସାହିତ୍ୟ ସେବୀଙ୍କୁ ହେଲେ କରୁ ପରିତ୍ରାଣ ।

(୧) କାବ୍ୟସ୍ୟାତ୍ମା ଧ୍ୱନିରିତି ବୁଧୈର୍ଯଃ ସମାମ୍ନାତପୂର୍ବ-
ସ୍ତସ୍ୟାଭାବଂ ଜଗଦୁରପରେ ଭାକ୍ତମାହୁସ୍ତମନ୍ୟେ ।
କେଚିଦ୍‌ବାଚାଂ ସ୍ଥିତମବିଷୟେ ତତ୍ତ୍ୱମୂଚୁସ୍ତଦୀୟଂ,
ତେନ ବ୍ରୂମଃ ସହୃଦୟମନଃପ୍ରୀତୟେ ତତ୍‌ସ୍ୱରୂପମ୍ ।୧।

ବୁଧୈଃ କାବ୍ୟତତ୍ତ୍ୱବିଦ୍‌ଭିଃ କାବ୍ୟସ୍ୟାତ୍ମା ଧ୍ୱନିରିତି ସଞ୍ଜ୍ଞିତଃ ପରମ୍ପରୟା ଯଃ ସମାମ୍ନାତଃ ତସ୍ୟ ସହୃଦୟଜନମନଃପ୍ରକାଶମାନସ୍ୟାପ୍ୟଭାବମନ୍ୟେ ଜଗଦୁଃ ।

(୨) ତଦଭାବବାଦିନାଂ ଚାମୀ ବିକଳ୍ପାଃ ସମ୍ଭବନ୍ତି ।

(୩) ତତ୍ର କେଚିଦାଚକ୍ଷୀରନ୍-ଶବ୍ଦାର୍ଥଶରୀରଂ ତାବତ୍‌କାବ୍ୟମ୍ ତତ୍ର ଚ ଶବ୍ଦଗତଶ୍ଚାରୁତ୍ୱହେତବୋଽନୁପ୍ରାସାଦୟଃ ପ୍ରସିଦ୍ଧା ଏବ । ଅର୍ଥଗତାଶ୍ଚୋପମାଦୟଃ । ବର୍ଣ୍ଣସଂଘଟନାଧର୍ମ୍ମାଶ୍ଚ ଯେ

---

୧ କାବ୍ୟର ଆତ୍ମା ଧ୍ୱନି, ଏହା କାବ୍ୟତତ୍ତ୍ୱଜ୍ଞ ପଣ୍ଡିତମାନେ ପୂର୍ବରୁ ପରମ୍ପରାକ୍ରମେ ବ୍ୟବହାର କରି ଆସୁଅଛନ୍ତି । ଅନ୍ୟ କେତେକ, ସେହି ଧ୍ୱନି ନାହିଁ ବୋଲି କହନ୍ତି, ଆଉ କେତେକ ଧ୍ୱନିକୁ ଭାକ୍ତ ( ଲାକ୍ଷଣିକ ଅର୍ଥ ) ବୋଲି କହନ୍ତି । ଆଉ କେତେକ କହନ୍ତି ଯେ ଧ୍ୱନିର ତତ୍ତ୍ୱ ବାଗ୍ ବିଷୟ ନୁହେ ଅର୍ଥାତ୍ ବଚନରେ ପ୍ରକାଶ କରି ହେବନାହିଁ । ଏହିପରି ଧ୍ୱନିର ସ୍ୱରୂପ ନିର୍ଣ୍ଣୟ ହୋଇ ପାରୁ ନ ଥିବାରୁ ସହୃଦୟମାନଙ୍କର ଆହ୍ଲାଦ ସମ୍ପାଦନ ପାଇଁ ସହୃଦୟମାନଙ୍କ ମନରେ ସ୍ୱତଃପ୍ରକାଶମାନ ଉକ୍ତ ଧ୍ୱନିର ସ୍ୱରୂପ କହୁଅଛୁଁ ।

୨ ଅଭାବବାଦୀମାନେ ଭିନ୍ନ ଭିନ୍ନ ପ୍ରକାରେ ଧ୍ୱନିର ଅଭାବ ଦର୍ଶାଇଥାଆନ୍ତି । ଯଥା :—୧ମ ପକ୍ଷ (ବିକଳ୍ପ)

୩ ଅଭାବବାଦୀମାନଙ୍କ ମଧ୍ୟରୁ କେତେକ କହନ୍ତି ଶବ୍ଦ ଓ ଅର୍ଥ କାବ୍ୟର ଶରୀର । ଶବ୍ଦଗତ ଚାରୁତ୍ୱ ହେତୁ ଅନୁପ୍ରାସ ଯମକାଦି (ଅଳଙ୍କାର

ମାଧୁର୍ଯ୍ୟାଦୟସ୍ତେଽପି ପ୍ରତୀୟନ୍ତେ । ତଦନତିରିକ୍ତବୃତ୍ତୟୋ ବୃତ୍ତୟୋଽପି ଯାଃ କୈଶ୍ଚିଦୁପନାଗରିକାଦ୍ୟାଃ ପ୍ରକାଶିତାଃ, ତା ଅପି ଗତାଃ ଶ୍ରବଣଗୋଚରମ୍ । ରୀତୟଶ୍ଚ ବୈଦର୍ଭୀ-ପ୍ରଭୃତୟଃ । ତଦ୍‌ବ୍ୟତିରିକ୍ତଃ କୋଽୟଂ ଧ୍ୱନିର୍ନାମେତି ।

(୪) ଅନ୍ୟେ ବ୍ରୂୟୁଃ :—ନାସ୍ତ୍ୟେବ ଧ୍ୱନିଃ । ପ୍ରସିଦ୍ଧପ୍ରସ୍ଥାନ-ବ୍ୟତିରେକିଣଃ କାବ୍ୟପ୍ରକାରସ୍ୟ କାବ୍ୟତ୍ୱହାନେଃ । ସହୃଦୟହୃଦୟାହ୍ଲାଦିଶବ୍ଦାର୍ଥମୟତ୍ୱମେବ କାବ୍ୟଲକ୍ଷଣମ୍ । ନ ଚୋକ୍ତପ୍ରସ୍ଥାନାତିରେକିଣୋ ମାର୍ଗସ୍ୟ ତତ୍‌ସମ୍ଭବତି ।

---

ନାମରେ ପ୍ରସିଦ୍ଧ) ଏବଂ ଅର୍ଥଗତ ଚାରୁତ୍ୱହେତୁ ଉପମାଦି ନାମରେ ଖ୍ୟାତ । ( ଏଣୁ ଶବ୍ଦ, ଅର୍ଥ କିମ୍ବା ସେମାନଙ୍କର ଚାରୁତ୍ୱ ହେଲେ ଧ୍ୱନି ନୁହେ ) ମାଧୁର୍ଯ୍ୟ ପ୍ରଭୃତି ବର୍ଣ୍ଣମାନଙ୍କର ସଙ୍ଘଟନ ଧର୍ମ ମଧ୍ୟ ଜଣାଅଛି । ଗୁଣ ଏବଂ ଅଳଙ୍କାରରେ ଅନ୍ତର୍ଭୁକ୍ତ ହେଉଥିଲେ ମଧ୍ୟ କେହି କେହି * ପରୁଷ, କୋମଳ ଓ ମଧ୍ୟମ ନାମକ ତିନିଗୋଟି ବୃତ୍ତି (ଉପନାଗରିକା-ଲଳିତ) ଆଦି ବୋଲି ପ୍ରକାଶ କରିବା ମଧ୍ୟ ଶୁଣାଅଛି । ବୈଦର୍ଭୀ, ଗୌଡ଼ୀ, ପାଞ୍ଚାଳୀ ବୋଲି ତିନିଗୋଟି ରୀତି ମଧ୍ୟ ଜଣାଅଛି । ଏହି ସବୁ ପ୍ରସିଦ୍ଧ ବସ୍ତୁ ଭିନ୍ନ ଧ୍ୱନି ବୋଲି ଅନ୍ୟ ପୃଥକ୍ ବସ୍ତୁ କଅଣ ଅଛି ? ଅର୍ଥାତ୍ ଧ୍ୱନି ନାହିଁ ।

୪ ଅନ୍ୟ ଅଭାବବାଦୀମାନେ କହନ୍ତି ଯେ ଧ୍ୱନି କଦାପି ନାହିଁ । କାରଣ ସହୃଦୟହୃଦୟାହ୍ଲାଦକାରୀ ଶବ୍ଦାର୍ଥସମୂହ କାବ୍ୟର ଲକ୍ଷଣ ସୁପ୍ରସିଦ୍ଧ (କାବ୍ୟଗତ) ଗୁଣାଳଙ୍କାର ପ୍ରଭୃତିରୁ ଭିନ୍ନ ଅନ୍ୟ କିଛି ଧ୍ୱନିକାବ୍ୟ ବୋଲି ନିରୂପଣ କରିବା ଦ୍ୱାରା ତହିଁରେ କାବ୍ୟତ୍ୱ ରହିବ ନାହିଁ, ଏଣୁ ଧ୍ୱନି କାବ୍ୟର ଆତ୍ମା ହୋଇ ନ ପାରେ । ଆଉ ପୂର୍ବୋକ୍ତ (ପ୍ରସ୍ଥାନ) ଗୁଣାଳଙ୍କାର ପ୍ରଭୃତିରୁ ଭିନ୍ନ (ମାର୍ଗ) ନୃତ୍ୟ ଗୀତାଦି

---

*ମମ୍ମଟ ଭଟ୍ଟ ବୃତ୍ତିବ୍ୟବହାର କରନ୍ତି ନାହିଁ । ଉଦ୍ଭଟାଦି ବୃତ୍ତି ବ୍ୟବହାର

ନ ଚ ତତ୍ସମୟାନ୍ତଃପାତିନଃ ସହୃଦୟାନ୍ କାଂଶ୍ଚିତ୍-ପରିକଳ୍ପ୍ୟ ତତ୍ପ୍ରସିଦ୍ଧ୍ୟା ଧ୍ୱନୌ କାବ୍ୟବ୍ୟପଦେଶଃ ପ୍ରବର୍ତ୍ତିତୋଽପି ସକଳବିଦ୍ୱନ୍ମନୋଗ୍ରାହିତାମବଲମ୍ବତେ ।

(୫) ପୁନରପରେ ତସ୍ୟାଭାବମନ୍ୟଥା କଥୟେୟୁଃ :—

ନ ସଂଭବତ୍ୟେବ ଧ୍ୱନିର୍ନାମାପୂର୍ବଃ କଶ୍ଚିତ୍ । କାମନୀୟକ-ମନତିବର୍ତ୍ତମାନସ୍ୟ ତସ୍ୟୋକ୍ତେଷ୍ୱେବ ଚାରୁତ୍ୱହେତୁଷ୍ୱନ୍ତ-ର୍ଭାବାତ୍ । ତେଷାମନ୍ୟତମସ୍ୟୈବ ବାଽପୂର୍ବସମାଖ୍ୟାମାତ୍ର-କରଣେ ଯତ୍କିଞ୍ଚନ କଥନଂ ସ୍ୟାତ୍ ।

---

ପର ଧ୍ୱନି ସମ୍ଭବ ହୋଇ ନ ପାରେ । ଯଦି କେତେକ ବ୍ୟକ୍ତି ସହୃଦୟ ଉପରେ କଳ୍ପିତ ହୋଇ ଆମ୍ଭେମାନେ ଉକ୍ତ ପ୍ରସ୍ଥାନରୁ ଭିନ୍ନ କାବ୍ୟ ଲକ୍ଷଣ ନିର୍ମାଣ କରିବା ବୋଲି ସ୍ଥିରକରି ( ସମୟ-ସଙ୍କେତ ବା ଚୁକ୍ତି ) ଲୁଗାକୁ ଖଣ୍ଡ ବୋଲି କହିବାଭଳି ଧ୍ୱନିକୁ କାବ୍ୟ ବୋଲି ମନମୁଖି ବ୍ୟବହାର କରନ୍ତି ; ତେବେ କୌଣସି ବିଜ୍ଞ ବ୍ୟକ୍ତି ତାହାଙ୍କ ମତକୁ ଗ୍ରହଣ କରିବେ ନାହିଁ । (ଓଲଟା ଏଭଳି ଅଯଥାବାଦୀଙ୍କୁ ପାଗଳ ବୋଲି ଉପେକ୍ଷା କରିବେ)

୫ ଆଉ ଦଳେ ଅଭାବବାଦୀ ଅନ୍ୟ ପ୍ରକାର ଧ୍ୱନିର ଅଭାବ ବର୍ଣ୍ଣନା କରନ୍ତି । (ପ୍ରାଚୀନ ଆଳଂକାରିକମାନେ ଗୁଣ; ଅଳଙ୍କାର ପ୍ରଭୃତି ଯେଉଁ ପ୍ରସିଦ୍ଧ ପ୍ରସ୍ଥାନ ଦର୍ଶାଇଛନ୍ତି ତାହାଠାରୁ ଭିନ୍ନ) ଧ୍ୱନି ନାମରେ ଅନ୍ୟ କିଛି ନୂତନ ବସ୍ତୁ ହୋଇ ନ ପାରେ । ଯଦି ବା ରମଣୀୟତାରୁ ଅଭିନ୍ନ ଧ୍ୱନି ବସ୍ତୁକୁ ସ୍ୱୀକାର କରାଯିବ ତେବେ ଗୁଣାଳଙ୍କାରାଦି ଚାରୁତ୍ୱ ହେତୁରେ ଉକ୍ତ ଧ୍ୱନିବସ୍ତୁ ସ୍ୱତଃ ଅନ୍ତର୍ଭୁକ୍ତ ହୋଇ ରହିଅଛି ।

ସେହି ଚାରୁତ୍ୱ ହେତୁ ମଧ୍ୟରୁ କୌଣସି ଗୋଟିକର ଧ୍ୱନି ବୋଲି ଅଭିନବ ନାମକରଣ କରାଗଲେ ସେଭଳି ନାମର କୌଣସି ଗୌରବ ନାହିଁ ।

(୬) କିଂ ଚ ବାଗ୍ବିକଳ୍ପାନାମାନନ୍ତ୍ୟାତ୍ ସମ୍ଭବତ୍ୟପି ବା କସ୍ମିଂଶ୍ଚିତ୍ କାବ୍ୟଲକ୍ଷଣବିଧାୟିଭିଃ ପ୍ରସିଦ୍ଧୈରପ୍ରଦର୍ଶିତେ ପ୍ରକାରଲେଶେ ଧ୍ୱନିର୍ଧ୍ୱନିରିତି ଯଦଳୀକସହୃଦୟତ୍ୱଭାବନାମୁକୁଳିତଲୋଚନୈର୍ନୃତ୍ୟତେ, ତତ୍ର ହେତୁଂ ନ ବିଦ୍ମଃ। ସହସ୍ରଶୋ ହି ମହାତ୍ମଭିରନ୍ୟୈରଲଙ୍କାରପ୍ରକାରାଃ ପ୍ରକାଶିତାଃ ପ୍ରକାଶ୍ୟନ୍ତେ ଚ। ନ ଚ ତେଷାମେଷା ଦଶା ଶ୍ରୂୟତେ।

(୭) ତସ୍ମାତ୍ ପ୍ରବାଦମାତ୍ରଂ ଧ୍ୱନିଃ। ନ ତ୍ୱସ୍ୟ କ୍ଷୋଦକ୍ଷମଂ ତତ୍ତ୍ୱଂ କିଞ୍ଚିଦପି ପ୍ରକାଶୟିତୁଂ ଶକ୍ୟମ୍।

---

୬ ଧ୍ୱନିଙ୍କ ଅଭିଧାବ୍ୟାପାର (ବାଗ୍ବିକଳ୍ପ)ର ଅସଂଖ୍ୟ ପ୍ରକାର ଭେଦ ସମ୍ଭବ ହୋଇପାରେ, ତାଦୃଶ କୌଣସି ପ୍ରକାର ଲେଶକୁ ଯାହାକୁ କି ପ୍ରାଚୀନ ପ୍ରସିଦ୍ଧ କାବ୍ୟଲକ୍ଷଣକାର ଆଲଙ୍କାରିକମାନେ ଦର୍ଶାଇ ନାହାନ୍ତି ତାକୁ ଧ୍ୱନି ଧ୍ୱନି ବୋଲି କହି ମିଥ୍ୟାରେ ନିଜକୁ ସହୃଦୟ ବୋଲି ଭାବି ଧ୍ୱନିବାଦୀମାନେ ଆନନ୍ଦରେ ନାଚୁଛନ୍ତି । ଆମ୍ଭେମାନେ ତାହାର କାରଣ କିଛି ବୁଝି ପାରୁନାହୁଁ । ଯେଣୁ ମହାତ୍ମାମାନେ ସହସ୍ର ପ୍ରକାର ଅଳଙ୍କାର ପ୍ରଭେଦ ଦର୍ଶାଇଛନ୍ତି ଓ ଦର୍ଶାଇ ପାରନ୍ତି । କିନ୍ତୁ ସେମାନଙ୍କର (ପ୍ରସିଦ୍ଧ ବସ୍ତୁକୁ ଧ୍ୱନି ଆଖ୍ୟା ଦେଇ ନୃତ୍ୟ କରୁଥିବା) ଏହି ଧ୍ୱନିବାଦୀମାନଙ୍କ ପରି ଏପରି (ଦଶା) ଅବସ୍ଥା ଦେଖି ଓ ଅସ୍ମାମାନଙ୍କୁ ଶୁଣାନାହିଁ ।

୭ * ଅତଏବ ଧ୍ୱନି ଏକ ପ୍ରବାଦ (ଛୁତ୍ରକୁଦା) ମାତ୍ର । କିନ୍ତୁ ତାହାର କୌଣସି କ୍ଷୋଦକ୍ଷମ (ଉପମର୍ଦ୍ଦ ସହ) ପ୍ରକାଶ ଯୋଗ୍ୟ ତତ୍ତ୍ୱ ନାହିଁ ।

[ ଧ୍ୱନି ଶୋଭା ହେତୁ ହେଲେ ଗୁଣାଲଙ୍କାରରୁ ଭିନ୍ନ ନୁହେଁ, ସେଥିରୁ ଭିନ୍ନ ଅନ୍ୟ କିଛି ହେଲେ ଶୋଭା ହେତୁ ନୁହେଁ, ଯଦି ବା ଶୋଭା ହେତୁ ହେବ, ତଥାପି ତାହା ଆଦରଣୀୟ ନୁହେଁ । ଏହି ତିନିଗୋଟି ମତ ଶିକୁଳିପରି ପରସ୍ପର ସମ୍ବନ୍ଧ । ]

---

* ଏହି ଉକ୍ତ ତ୍ରିବିଧ ଅଭାବବାଦୀଙ୍କ ମତ ।

(୮) ତଥା ଗ୍ରନ୍ଥେନ କୃତ ଏବାତ୍ର ଶ୍ଳୋକଃ :—

(୯) ଯସ୍ମିନ୍ନସ୍ତି ନ ବସ୍ତୁ କିଞ୍ଚନ ମନଃପ୍ରହ୍ଲାଦି ସାଳଂକୃତି, ବ୍ୟୁତ୍ପନ୍ନୈ ରଚିତଂ ଚ ନୈବ ବଚନୈର୍ବକ୍ରୋକ୍ତିଶୂନ୍ୟଂ ଚ ଯତ୍ । କାବ୍ୟଂ ତଦ୍ ଧ୍ୱନିନା ସମନ୍ୱିତମିତି ପ୍ରୀତ୍ୟାପ୍ରଶଂସଞ୍ଜଡୋ, ନୋ ବିଦ୍ମୋଽଭିଦଧାତି କିଂ ସୁମତିନା ପୃଷ୍ଟଃ ସ୍ୱରୂପଂ ଧ୍ୱନେଃ ।

(୧୦) 'ଭାକ୍ତମାହୁସ୍ତମନ୍ୟେ' ।
ଅନ୍ୟେ ତଂ ଧ୍ୱନିସଂଜ୍ଞିତଂ କାବ୍ୟାତ୍ମାନଂ ଗୁଣବୃତ୍ତି ରିତ୍ୟାହୁଃ ।

---

୮ ଅଭାବବାଦର ପୃଷ୍ଠପୋଷକରୂପେ ଗ୍ରନ୍ଥକାରଙ୍କ ସମସାମୟିକ ମନୋରଥ ନାମକ ଅନ୍ୟ ଏକ କବିଙ୍କର ଗୋଟିଏ ଶ୍ଳୋକ ଅଛି ଯଥା— ଯସ୍ମିନ୍ନସ୍ତି —

୯ ଯହିଁରେ ମନର ଆହ୍ଲାଦକାରୀ ଅଳଙ୍କାର (ଅର୍ଥାଳଙ୍କାର) ଆଦି କୌଣସି ବସ୍ତୁ ନାହିଁ ଏବଂ ଯାହା ବ୍ୟୁତ୍ପନ୍ନ (ପ୍ରୌଢ଼) କଥନ ଦ୍ୱାରା ରଚିତ ନୁହେ ଅର୍ଥାତ୍ ଯହିଁରେ ଯମକାଦି ଶବ୍ଦାଳଙ୍କାର ନାହିଁ, ଆଉ ପୁଣି ଯାହା ବକ୍ରୋକ୍ତି ( ପଦମାନଙ୍କର ଉତ୍କୃଷ୍ଟ ସଙ୍ଘଟନା ) ଶୂନ୍ୟ, ବସ୍ତୁତଃ ଯାହାକି ଆଦୌ କାବ୍ୟ ନୁହେ ତା'କୁ ଜଡ଼ଧ୍ୱନିବାଦୀମାନେ ଧ୍ୱନିଯୁକ୍ତ କାବ୍ୟ ବୋଲି ପ୍ରଶଂସା କରନ୍ତି । ଯଦି ସେମାନଙ୍କୁ ବିଜ୍ଞବ୍ୟକ୍ତି-ମାନେ ଧ୍ୱନିର ସ୍ୱରୂପ ପଚାରିବେ ତେବେ ସେମାନେ କ'ଣ ଉତ୍ତର ଦେବେ, ତାହା ଆମ୍ଭେମାନେ ଜାଣି ପାରୁନାହୁଁ ।

୧୦ ଆଉ ଏକପ୍ରକାର ଅଭାବବାଦୀ ଉକ୍ତ କାବ୍ୟର ଆତ୍ମା ଧ୍ୱନିକୁ ଭାକ୍ତ ବୋଲି କହନ୍ତି । [ ଅଭିଧେୟ ଅର୍ଥର ସାରୂପ୍ୟ ସାମୀପ୍ୟାଦି ସମ୍ବନ୍ଧ-ବଶତଃ ଶବ୍ଦ ଅନ୍ୟ ଏକ ଅର୍ଥ ବୁଝାଉଥିଲେ (ଯଥା:—ସିଂହୋ ମାଣବକଃ ଏଠାରେ ଶୌର୍ଯାତିଶଯ୍ୟ ) ତାକୁ ଭକ୍ତି ବା ଲକ୍ଷଣା ବୋଲାଯାଏ । ଏଥିରେ ମୁଖ୍ୟ ଅର୍ଥର ଭଙ୍ଗ ହେଉଥିବାରୁ ତାହାର ନାମ ଭକ୍ତି ଓ ତାହାଦ୍ୱାରା ବୋଧ ଅର୍ଥ ଭାକ୍ତ ଅଟେ । ]

(୧୧) ଯଦ୍ୟପି ଧ୍ୱନିଶବ୍ଦସଂକୀର୍ତ୍ତନେନ କାବ୍ୟଲକ୍ଷଣବିଧାୟିଭିର୍ଗୁଣବୃତ୍ତିରନ୍ୟା ବା ନ କଶ୍ଚିତ୍ ପ୍ରକାରଃ ପ୍ରକାଶିତଃ, ତଥାପି ଅମୁଖ୍ୟବୃତ୍ତ୍ୟା କାବ୍ୟେଷୁ ବ୍ୟବହାରଂ ଦର୍ଶୟତା ଧ୍ୱନିମାର୍ଗୋ ମନାକ୍ ସ୍ପୃଷ୍ଟ ଇତି ପରିକଲ୍ପ୍ୟୈବମୁକ୍ତମ୍— 'ଭକ୍ତମାହୁସ୍ତମନ୍ୟେ' ଇତି ।

(୧୨) କେଚିତ୍ପୁନର୍ଲକ୍ଷଣକରଣଶାଲୀନବୁଦ୍ଧୟୋ ଧ୍ୱନେସ୍ତତ୍ତ୍ୱଂ ଗିରାମଗୋଚରଂ ସହୃଦୟହୃଦୟସଂବେଦ୍ୟମେବ ସମାଖ୍ୟାତବନ୍ତଃ ।

(୧୩) ତେନୈବଂବିଧାସୁ ବିମତିଷୁ ସ୍ଥିତାସୁ ସହୃଦୟମନଃପ୍ରୀତୟେ ତତ୍ସ୍ୱରୂପଂ ବ୍ରୂମଃ ।

---

୧୧ ଯଦ୍ୟପି କାବ୍ୟର ଲକ୍ଷଣକର୍ତ୍ତା ଭଟ୍ଟୋଦ୍ଭଟ ବାମନ ପ୍ରଭୃତି ଗୁଣବୃତ୍ତିକୁ କିମ୍ବା ଗୁଣଅଳଂକାରାଦି ପ୍ରକାରକୁ ଧ୍ୱନି ନାମ ଦେଇନାହାନ୍ତି, ତଥାପି * ସେମାନେ ଅମୁଖ୍ୟ ଅର୍ଥରୂପେ କାବ୍ୟରେ ଧ୍ୱନିର ବ୍ୟବହାର ଦର୍ଶାଇ ଥିବାରୁ ଧ୍ୱନିସ୍ୱରୂପ ନ ଜାଣିଲେହେଁ ତା'ର ମାର୍ଗକୁ ଈଷତ୍ ସ୍ପର୍ଶ କରୁଅଛନ୍ତି । ଯଥା ଲିଖିତ ପାଠକମାନଙ୍କର ସ୍ୱରୂପ ଜ୍ଞାନ ନ ହେଲେ ମଧ୍ୟ ଉଚ୍ଚାରଣ ଥାଏ । ଏଣୁ ଧ୍ୱନିକୁ ସେମାନେ ଭକ୍ତ ବୋଲି କହନ୍ତି ବୋଲି ଆମ୍ଭେ କହୁଅଛୁଁ ।

୧୨ ଆଉ କେତେକ କାବ୍ୟଲକ୍ଷଣ କରଣରେ ପଟୁ (ଅର୍ଥାତ୍ ଅପଟୁ) କହନ୍ତି ଯେ, ଧ୍ୱନିର ତତ୍ତ୍ୱ ବଚନ ଗୋଚର ନୁହେଁ, ଅର୍ଥାତ୍ ବଚନରେ ପ୍ରକାଶ କରାଯାଇ ହେବ ନାହିଁ, କିନ୍ତୁ ତାହା ସହୃଦୟମାନଙ୍କର ଏବଂ ସଂବେଦ୍ୟ ମାତ୍ର ।

୧୩ ଧ୍ୱନି ସମ୍ବନ୍ଧରେ ଏହିପରି (୫ ଗୋଟି) ବିରୁଦ୍ଧମତ ରହିଅଛି, ଏଥିରୁ ପ୍ରଥମ ୩ ଗୋଟି ଅଭାବବାଦ, ଚତୁର୍ଥ ଦଳ ଧ୍ୱନିସ୍ୱରୂପ ଜାଣୁ-

---

* ସେମାନଙ୍କ ମତରେ ଶବ୍ଦର ମୁଖ୍ୟ ଓ ଅମୁଖ୍ୟ ଭେଦରେ ଦୁଇଟି ମାତ୍ର ଅର୍ଥ, ତୃତୀୟପକ୍ଷ ନାହିଁ ।

(୧୪) ତସ୍ୟ ହି ଧ୍ୱନେଃ ସ୍ୱରୂପଂ ସକଳସତ୍କବିକାବ୍ୟୋପ
ନିଷଦ୍ ଭୂତମତିରମଣୀୟମଣୀୟସୀଭିଶ୍ଚିରନ୍ତନକାବ୍ୟଲକ୍ଷଣ-
ବିଧାୟିନାଂ ବୁଦ୍ଧିଭିରନୁନ୍ମୀଲିତପୂର୍ବମ୍, ଅଥ ଚ ରାମାୟଣ-
ମହାଭାରତପ୍ରଭୃତିନି ଲକ୍ଷ୍ୟେ ସର୍ବତ୍ର ପ୍ରସିଦ୍ଧବ୍ୟବହାରଂ
ଲକ୍ଷୟତାଂ ସହୃଦୟାନାମାନନ୍ଦୋ ମନସି ଲଭତାଂ ପ୍ରତିଷ୍ଠା-
ମିତି ପ୍ରକାଶ୍ୟତେ ।

(୧୫) ତତ୍ର ଧ୍ୱନେରେବ ଲକ୍ଷୟିତୁମାରବ୍ଧସ୍ୟ ଭୂମିକାଂ
ରଚୟିତୁମିଦମୁଚ୍ୟତେ ।—

---

ଥିଲେହେଁ ଫାଙ୍କି ଦେଉଛନ୍ତି ଏବଂ ପଞ୍ଚମ ଦଳ ଧ୍ୱନିକୁ ମାନୁଥିଲେ ହେଁ ଲକ୍ଷଣ କରି ଜାଣୁ ନାହାନ୍ତି ] ଏଣୁ ଆମ୍ଭେ ସହୃଦୟମାନଙ୍କର ପ୍ରୀତି ସମ୍ପାଦନ ନିମନ୍ତେ ଧ୍ୱନିର ସ୍ୱରୂପ କହୁଅଛୁଁ ।

୧୪ ସେ ଧ୍ୱନିର ସମସ୍ତ ସତ୍‌କବିଙ୍କ କାବ୍ୟମାନଙ୍କରେ ଉପନିଷଦ ତତ୍ତ୍ୱରୁ ଅତି ଗୂଢ଼, ଅତି ସୂକ୍ଷ୍ମମତି ପ୍ରାଚୀନ କାବ୍ୟ ଲକ୍ଷଣ କର୍ତ୍ତାମାନଙ୍କ ଦ୍ୱାରା ଅପ୍ରକାଶିତ, ହୁଏତ ରାମାୟଣ ମହାଭାରତ ପ୍ରଭୃତି ଶ୍ରେଷ୍ଠକାବ୍ୟ-ମାନଙ୍କରେ ସର୍ବତ୍ର ସହୃଦୟମାନଙ୍କ ଦ୍ୱାରା ପରିଲକ୍ଷିତ ହୁଏ । [ସୁତରାଂ ଧ୍ୱନି ଉକ୍ତ ଅଭାବବାଦମାନଙ୍କ ମତରୁ ଭିନ୍ନ ସ୍ୱରୂପ ଓ ସହୃଦୟମାନଙ୍କ ଦ୍ୱାରା ଅନୁଭୂତ] ଏଣୁ ସେହି ସହୃଦୟମାନଙ୍କ ହୃଦୟରେ କାବ୍ୟର ଶ୍ରେଷ୍ଠଫଳ ଆନନ୍ଦର ପ୍ରତିଷ୍ଠା ପାଇଁ, (ପକ୍ଷାନ୍ତରେ) ସ୍ୱୟଂ ଗ୍ରନ୍ଥକର୍ତ୍ତା ଆନନ୍ଦ (ଆନନ୍ଦବର୍ଦ୍ଧନାଚାର୍ଯ୍ୟ) ସହୃଦୟଙ୍କ ହୃଦୟରେ ସ୍ଥାନ ପାଇବା ପାଇଁ ଉକ୍ତ ଧ୍ୱନିର ସ୍ୱରୂପ ପ୍ରକାଶ କରୁଅଛନ୍ତି ।

୧୫ ଯେପରି କୋଠିଏ ଘର ତିଆରି କରିବାକୁ ହେଲେ ପ୍ରଥମେ ନିଅଁ (ଭୂମିକା) ପକାଯାଏ, ସେହିପରି ଧ୍ୱନିକାର ଧ୍ୱନିର ଲକ୍ଷଣ କରିବାକୁ ଯାଇ ତାର ଭୂମିକାସ୍ୱରୂପ ବାଚ୍ୟାର୍ଥକୁ ଉଲ୍ଲେଖ କରୁଅଛନ୍ତି—(ବାଚ୍ୟାର୍ଥ ଉପରେ ଲକ୍ଷ୍ୟ ବ୍ୟଙ୍ଗ୍ୟ ପ୍ରଭୃତି ଅର୍ଥ ପ୍ରତିଷ୍ଠିତ ହେଉଥିବାରୁ ଏଠାରେ ତାହାକୁ ଭୂମିକା ବୋଲି କୁହାଯାଇଛି) ।

(୧୬) 'ଯୋଽର୍ଥଃ ସହୃଦୟଶ୍ଳାଘ୍ୟଃ କାବ୍ୟାତ୍ମେତି ବ୍ୟବସ୍ଥିତଃ ।
ବାଚ୍ୟପ୍ରତୀୟମାନାଖ୍ୟୌ ତସ୍ୟ ଭେଦାବୁଭୌ ସ୍ମୃତୌ ।୨।

(୧୭) କାବ୍ୟସ୍ୟ ହି ଲଳିତୋଚିତସନ୍ନିବେଶଚାରୁଣଃ ଶରୀରସ୍ୟେବାତ୍ମା ସାରରୂପତୟା ସ୍ଥିତଃ ସହୃଦୟଶ୍ଳାଘ୍ୟୋ ଯୋଽର୍ଥସ୍ତସ୍ୟ ବାଚ୍ୟଃ ପ୍ରତୀୟମାନଶ୍ଚେତି ଦ୍ୱୌ ଭେଦୌ ।

(୧୮) 'ତତ୍ର ବାଚ୍ୟଃ ପ୍ରସିଦ୍ଧୋ ଯଃ ପ୍ରକାରୈରୁପମାଦିଭିଃ ।
ବହୁଧା ବ୍ୟାକୃତଃ ସୋଽନ୍ୟୈଃ କାବ୍ୟଲକ୍ଷ୍ମବିଧାୟିଭିଃ ।୩।

ତତୋ ନେହ ପ୍ରତନ୍ୟତେ କେବଲମନୂଦ୍ୟତେ ପୁନର୍ଯଥୋପଯୋଗମିତି ।

---

୧୬ ଯେଉଁ ସହୃଦୟ ଶ୍ଳାଘ୍ୟ ଅର୍ଥ କାବ୍ୟର ଆତ୍ମା ବୋଲି ପୂର୍ବରୁ ବ୍ୟବସ୍ଥିତ (ନିରୂପିତ) ହୋଇ ରହିଅଛି, ତାହାର ବାଚ୍ୟ ଓ ପ୍ରତୀୟମାନ ରୂପରେ ଦୁଇଗୋଟି ଭେଦ ସ୍ଥିରୀକୃତ ହୋଇଅଛି । [ଏଠାରେ ବାଚ୍ୟ ସହିତ ପ୍ରତୀୟମାନର ଉଲ୍ଲେଖ ଦ୍ୱାରା ପ୍ରତୀୟମାନ ମଧ୍ୟ ବାଚ୍ୟପରି ସୁପ୍ରସିଦ୍ଧ ବୋଲି ସୂଚନା ଦିଆଯାଇଛି ମାତ୍ର, କିନ୍ତୁ ବାଚ୍ୟ ଅର୍ଥ କାବ୍ୟର ଆତ୍ମା ନୁହେଁ]

୧୭ କାବ୍ୟ ଲଳିତ (ଗୁଣାଳଙ୍କାର) ଓ ଉଚିତ (ରସଧ୍ୱନି) ର ସମାବେଶ ହେତୁ ରମଣୀୟ ହୋଇଥାଏ । ଶରୀର ମଧ୍ୟରେ ଆତ୍ମାପରି କାବ୍ୟ ମଧ୍ୟରେ ଯେଉଁ ସହୃଦୟ ଶ୍ଳାଘ୍ୟ ଅର୍ଥ ଥାଏ ତାହା ବାଚ୍ୟ ଓ ପ୍ରତୀୟମାନ ଭେଦରେ ଦ୍ୱିବିଧ ।

୧୮ ଉକ୍ତ ଦୁଇଗୋଟି ଅର୍ଥ ମଧ୍ୟରୁ ସୁପ୍ରସିଦ୍ଧ ବାଚ୍ୟ ଅର୍ଥଟି ଗୁଣ ଏବଂ ଉପମାଦି ଅଳଙ୍କାରସ୍ୱରୂପ, ତାକୁ ଅନ୍ୟ ଆଳଙ୍କାରିକମାନେ ବିସ୍ତୃତ ଭାବେ ବର୍ଣ୍ଣନା କରିଅଛନ୍ତି, ତେଣୁ ଏଠାରେ ଉକ୍ତ ବାଚ୍ୟ ଅର୍ଥର ବିସ୍ତାର କରାଯାଉନାହିଁ, କେବଳ ଆବଶ୍ୟକତା ଦୃଷ୍ଟିରୁ ଅନୁବାଦ ମାତ୍ର କରାଗଲା ।

(୧୯) ପ୍ରତୀୟମାନଂ ପୁନରନ୍ୟଦେବ
ବସ୍ତ୍ୱସ୍ତି ବାଣୀଷୁ ମହାକବୀନାମ୍ ।
ଯତ୍ତତ୍ ପ୍ରସିଦ୍ଧାବୟବାତିରିକ୍ତଂ
ବିଭାତି ଲାବଣ୍ୟମିବାଙ୍ଗନାସୁ । ୪ ।

(୨୦) ପ୍ରତୀୟମାନଂ ପୁନରନ୍ୟଦେବ ବାଚ୍ୟାଦ୍‌ବସ୍ତ୍ୱସ୍ତି ବାଣୀଷୁ ମହାକବୀନାମ୍ । ଯତ୍ତତ୍‌ସହୃଦୟହୃଦୟସୁ ପ୍ରସିଦ୍ଧଂ ପ୍ରସିଦ୍ଧେଭ୍ୟୋଽଲଂକୃତେଭ୍ୟଃ ପ୍ରତୀତେଭ୍ୟୋ ଽବୟବେ-ଭ୍ୟୋ ବ୍ୟତିରିକ୍ତତ୍ୱେନ ପ୍ରକାଶତେ ଲାବଣ୍ୟମିବାଙ୍ଗନାସୁ । ଯଥା ହ୍ୟଙ୍ଗନାସୁ ଲାବଣ୍ୟଂ ପୃଥଙ୍‌ନିର୍ବର୍ଣ୍ୟମାନଂ ନିଖିଳାବୟ-ବବ୍ୟତିରେକି କିମପ୍ୟନ୍ୟଦେବ ସହୃଦୟଲୋଚନାମୃତଂ ତତ୍ତ୍ୱାନ୍ତରଂ ତଦ୍ୱଦେବ ସୋଽର୍ଥଃ ।

(୨୧) ସ ହ୍ୟର୍ଥୋ ବାଚ୍ୟସାମର୍ଥ୍ୟାକ୍ଷିପ୍ତଂ ବସ୍ତୁମାତ୍ରମଲଂକାରା ରସାଦୟଶ୍ଚେତ୍ୟନେକପ୍ରଭେଦପ୍ରଭିନ୍ନୋ ଦର୍ଶୟିଷ୍ୟତେ ।

---

୧୯ ଅଙ୍ଗନାମାନଙ୍କଠାରେ ଲାବଣ୍ୟ ଯେପରି ହସ୍ତ ପାଦ ପ୍ରଭୃତି ପ୍ରସିଦ୍ଧ ଅବୟବମାନଙ୍କରୁ ଭିନ୍ନ ହୋଇ ସ୍ୱତନ୍ତ୍ରଭାବେ ସର୍ବାଙ୍ଗବ୍ୟାପୀରୂପେ ଶୋଭାପାଏ, ସେହିପରି ପ୍ରତୀୟମାନ ଅର୍ଥଟି ମହାକବିମାନଙ୍କ ରଚନା ମଧ୍ୟରେ ପ୍ରସିଦ୍ଧ ଗୁଣାଳଙ୍କାରରୁ ପୃଥଗ୍‌ଭାବେ ସହୃଦୟହୃଦୟାହ୍ଲାଦକାରୀ ରୂପେ ରହିଥାଏ ।

୨୦ କାଣୀ କୁଜୀ ନୋହିଥିବା ତଥା ନାନା ଅଳଙ୍କାର ଲଗାଇଥିବା ସ୍ତ୍ରୀକୁ ମଧ୍ୟ ଲାବଣ୍ୟହୀନା ବୋଲି କୁହାଯାଇ ପାରେ, ଏବଂ କାଣୀ କୁଜୀ ଇତ୍ୟାଦି ଦୋଷଯୁକ୍ତା ଅଳଙ୍କାରହୀନା ସ୍ତ୍ରୀକୁ ମଧ୍ୟ କ୍ୱଚିତ୍ ଲାବଣ୍ୟଯୁକ୍ତା ବୋଲି ବୋଲଯାଏ । ସୁତରାଂ ଲାବଣ୍ୟ ସମସ୍ତ ଅଙ୍ଗ ପ୍ରତ୍ୟଙ୍ଗ ଓ ଭୂଷଣା-ଚ୍ଛାଦନରୁ ପୃଥକ୍, ତଥା ଧ୍ୱନି ଶବ୍ଦ ଅର୍ଥ, ଗୁଣ ଓ ଅଳଙ୍କାରାଦିରୁ ପୃଥକ୍ ।

୨୧ ଉକ୍ତ ପ୍ରତୀୟମାନ ଅର୍ଥ ବାଚ୍ୟ ଅର୍ଥର ସାମର୍ଥ୍ୟରୁ ଆକ୍ଷିପ୍ତ । ତାହା ବସ୍ତୁ, ଅଳଙ୍କାର ରସାଦି ଭେଦରେ, [ପୁନଶ୍ଚ ବସ୍ତୁ ପ୍ରଭୃତିର

(୨୨) ସର୍ବେଷ୍ଟ ଚ ଶ୍ରେଷ୍ଠ ପ୍ରକାରେଷ୍ଟ ତସ୍ୟ ବାଚ୍ୟାଦନ୍ୟତ୍ୱମ୍।

(୨୩) ତଥା ହ୍ୟାଦ୍ୟସ୍ତାବଭ୍ ପ୍ରଭେଦୋ ବାଚ୍ୟାଦ୍ଦୂରଂ ବଭେ-ଦବାନ୍। ସ ହି କଦାଚିଦ୍‌ବାଚ୍ୟେ ବିଧିରୂପେ ପ୍ରତିଷେଧରୂପଃ।

ଯଥା—

(୨୪) 'ଭମ ଧମ୍ମିଅ ବୀସଦ୍ଧୋ ସୋ ସୁଣଓ ଅଜ୍ଜ ମାରିଓ ଦେଣ।
ଗୋଲାଣଇକଚ୍ଛକୁଡ଼ଙ୍ଗବାସିଣା ଦରିଅସୀହେଣ'।
(ଭ୍ରମ ଧାର୍ମିକ ! ବିଶ୍ରବ୍ଧଃ, ସ ଶୁନକୋଽଦ୍ୟ ମାରିତସ୍ତେନ।
ଗୋଦାନଦୀକଚ୍ଛକୁଞ୍ଜବାସିନା ଦୃପ୍ତସିଂହେନ')। ଇତି ଛାୟା

---

ସ୍ୱରୂପ ଭେଦ ନେଇ ] ବହୁପ୍ରକାର ହୁଏ । ଆଗରେ ତାହା ସବୁ ଦେଖାଇବୁ ।

୨୨ ପ୍ରତୀୟମାନ ଅର୍ଥର ସମସ୍ତ ପ୍ରକାର ଅର୍ଥାତ୍ ବସ୍ତୁ, ଅଳଙ୍କାର, କମ୍ବା ରସାଦି, ବାଚ୍ୟ ଅର୍ଥରୁ ଭିନ୍ନ ଅଟେ, ତାହା କେବେ ବାଚ୍ୟ ହୋଇ ନ ପାରେ [ ପ୍ରତୀୟମାନ ଅର୍ଥ ବାଚ୍ୟଠାରୁ କପର ଭିନ୍ନ ଗୋଟି ଗୋଟି କରି ତାହାର ଉଦାହରଣ ଦିଆଗଲା ]

୨୩ ପ୍ରଥମ ପ୍ରକାର ବସ୍ତୁଧ୍ୱନି ବାଚ୍ୟରୁ ଅତ୍ୟନ୍ତ ଭିନ୍ନ । କୌଣସି ସ୍ଥଳରେ ବାଚ୍ୟାର୍ଥ ବିଧିରୂପ ହୋଇଥିଲେ, ପ୍ରତୀୟମାନ ଅର୍ଥ ପ୍ରତିଷେଧ ରୂପ ହୁଏ । ଯଥା—

୨୪ ହେ ଧାର୍ମିକ ବ୍ରାହ୍ମଣ ! ଗୋଦାବରୀକୂଳବାସୀ ଉଦ୍ଧତ (ଦୃପ୍ତ) ସିଂହ ସେହି, କୁକୁରଟିକୁ ( ଯେଉଁ କୁକୁର ବଗିଚାରୁ ଫୁଲ ତୋଳିଲାବେଳେ ତୁମକୁ କାମୁଡ଼ି ଗୋଡ଼ାଉଥିଲା ) ଆଜ ମାରିଛି, ଏଣୁ ନିର୍ଭୟରେ ଭ୍ରମଣ କର ।

ଉଲ୍ଲିଖିତ ବାକ୍ୟଟିରେ "ଭ୍ରମଣ କର" ବୋଲି ଉକ୍ତି ହୋଇ-ଥିବାରୁ ତାହାର ବାଚ୍ୟ ଅର୍ଥ ବିଧିରୂପ ଅଟେ । କିନ୍ତୁ ପ୍ରକଟଣାର

(୨୫) କ୍ୱଚିଦ୍‌ବାଚ୍ୟେ ପ୍ରତିଷେଧରୂପେ ବିଧିରୂପୋ ଯଥା:—

(୨୬) 'ଅତ୍ତା ଏତ୍ଥ ଣିମଜ୍ଜଇ ଏତ୍ଥ ଅହ୍ନଂ ଦିଅସଅଂ ପଲୋଏହି
ମା ପହିଅ ରତ୍ତିଅନ୍ଧଅ ସେଜ୍ଜାଏ-ମହ ଣ ମଜ୍ଜିହିସି ।
(ଶ୍ୱଶ୍ରୂରତ୍ର ନିମଜ୍ଜତି, ଅତ୍ରାହଂ ଦିବସକଂ ପ୍ରଲୋକୟ ।

---

ପର୍ଯ୍ୟାଲୋଚନାରେ ବାକ୍ୟଟିର ଅର୍ଥ ଅନ୍ୟରୂପେ ପ୍ରତୀତ ହୁଏ । ଜଣେ ବ୍ରାହ୍ମଣ ପ୍ରତିଦିନ ଗୋଟିଏ ବ୍ୟଭିଚାରିଣୀର ଉଦ୍ୟାନରୁ ପୁଷ୍ପାଦି ନେଉଥିବାରୁ ଓ କୁକୁରେ କାମୁଡ଼ି ପକାଉଥିଲେ ମଧ୍ୟ ତାକୁ ତର୍ଜ୍ଜନା ଦେଖାଇ ପୁଷ୍ପ ଚୟନରୁ ବିରତ ନ ହେବାରୁ ଦିନେ ସେ ବ୍ୟଭିଚାରିଣୀ କୁକୁରଟିକୁ ନିଜ ଘରେ ଲୁଚାଇ ଦେଇ ବ୍ରାହ୍ମଣକୁ ଉକ୍ତ ଶ୍ଳୋକ କହୁଅଛି । ଏଥିରେ ସ୍ୱଭାବତଃ ଭୀରୁ ବ୍ରାହ୍ମଣ ଗୋଦାବରୀ କୂଳରୁ ଆସି ସିଂହ କୁକୁର ମାରିଥିବା ଶୁଣି ନିଶ୍ଚୟ ଭୟଗ୍ରସ୍ତ ହେବ, ଏବଂ ସିଂହର ଦୁଷ୍ପ୍ରବୃତ୍ତି ଓ ଶ୍ୱାନର ସଦ୍ୟୋ ହତ୍ୟା ଭୟକୁ ବଢ଼ାଇବ ; ବ୍ରାହ୍ମଣ କୁକୁରକୁ ସିନା ଡରୁନାହିଁ କିନ୍ତୁ ସିଂହକୁ ନିଶ୍ଚୟ ଡରିବ । ସୁତରାଂ ଏହାର ଧ୍ୱନ୍ୟମାନ ଅର୍ଥ ହେଉଛି, ହେ ଧର୍ମ୍ମପ୍ରାଣ ବ୍ରାହ୍ମଣ ! ତୁମ୍ଭେ କାହିଁକି ଏଠାକୁ ଆସି ପ୍ରାଣ ହରାଇବ, ଅତଏବ ଶୀଘ୍ର ଚାଲିଯାଅ, ବଗିଚାରେ ଭ୍ରମଣ କରନାହିଁ, ପୁନଶ୍ଚ ଆଉ ଆସିବ ନାହିଁ । ସୁତରାଂ ଏଠାରେ ଧ୍ୱନ୍ୟମାନ ଅର୍ଥର ସ୍ୱରୂପ "ଭ୍ରମଣ କରନାହିଁ" ବୋଲି ନିଷେଧ ସ୍ୱରୂପ ହେଲା । ଅତଏବ ୨୦ ରେ ବାଚ୍ୟ ଅର୍ଥ ବିଧିରୂପ ଓ ପ୍ରତୀୟମାନ ଅର୍ଥ ନିଷେଧସ୍ୱରୂପ । ଏ ଉଭୟଙ୍କ ମଧ୍ୟରେ ଅତ୍ୟନ୍ତ ପ୍ରଭେଦ ଅଛି । ଏଥିରେ କାହାରି ହେଲେ ବୈମତ୍ୟ ନାହିଁ ।

୨୫ କୌଣସି ସ୍ଥଳରେ ବାଚ୍ୟାର୍ଥ ନିଷେଧରୂପକ ଓ ପ୍ରତୀୟମାନ ଅର୍ଥ ବିଧିରୂପକ ଅଟେ । ଯଥା—

୨୬ ଜଣେ ଆଶ୍ରୟପ୍ରାର୍ଥୀ ପଥିକକୁ ପ୍ରୋଷିତଭର୍ତ୍ତୃକା ଚତୁରୀ କହୁଅଛି, 'ହେ ପଥିକ ! ଶାଶୂ ଏଠାରେ ନିଦ୍ରାଗ୍ରସ୍ତ ନିଦରେ ଶୁଅନ୍ତି, ମୁଁ ଏଠାରେ ଶୁଏ, ଦିନଥାଉଁ ଦେଖିଥାଅ, ତୁମେ ତ ଅନ୍ଧାରକଣା, ରାତିରେ ଆମ ଶେଜରେ ଶୋଇବ ନାହିଁ ।

ମାଂ ପଥିକ ! ରାନ୍ଧ୍ୟନ୍ଧକଂ ! ଶଯ୍ୟାୟାମାବୟୋର୍ମାଂଙ୍କ୍ଷୀଃ ।
( ଇତିଚ୍ଛାୟା )

(୨୭) କ୍ୱଚଦ୍‌ବାଚ୍ୟେ ବିଧିରୂପେଽନୁଭୟରୂପୋ ଯଥା—
'ବଚ୍ଛ ମହ ଚ୍ଚିଅ ଏକ୍‌କେଇ ହୋନ୍ତୁ ଣୀସାସରୋଇଅବ୍‌ବାଈଂ ।
ମା ତୁଜ୍ଝ ବ ତୀଅ ବଣା ଦକ୍ଖିଣ୍‌ଣହଅସ୍‌ସ ଜାଅନ୍ତୁ ।'

(୨୮) ବ୍ରଜ ମମୈବୈକସ୍ୟା ଭବନ୍ତୁ ନିଶ୍ୱାସରୋଦତବ୍ୟାନ
ମା ତବାପି ତୟା ବନା ଦାକ୍ଷିଣ୍ୟହତସ୍ୟ ଜନିଷତ ।
(ଇତିଚ୍ଛାୟା)

---

[ଏଠାରେ ପ୍ରୋଷିତପତିକା ତରୁଣୀକୁ ଦେଖି ପଥିକ ପ୍ରବୃଦ୍ଧ-ମଦନାତୁର ହୋଇଅଛି । ତରୁଣୀ ମଧ୍ୟ ପଥିକର ଭାବ ବୁଝି ପାରିଛି । ନିଜ ପଥିକର ଅନୁଚିତ ସମସ୍ତ କାରଣକୁ ଲକ୍ଷ୍ୟକରି ଅନ୍ଧାରକଣା ବୋଲି ସମ୍ବୋଧନ କରୁଛି ଏବଂ ଦିନ ଥାଉଁ ନିଜର ଶୟନ ସ୍ଥାନ ଦେଖାଇ, ଶାଶୂର ଗାଢ଼ ନିଦ୍ରା ତଥା ଆମ ଶେଯରେ ଶୋଇବ ନାହିଁ ବୋଲି କହିବା-ଦ୍ୱାରା ନିଷେଧ ମୁଖରେ ସାଦର ନିମନ୍ତ୍ରଣ ଜଣାଉଅଛି ।

ଏଠାରେ ବାଚ୍ୟ ଅର୍ଥ "ଆମ ଶେଯରେ ଶୋଇବ ନାହିଁ" ବୋଲି ନିଷେଧ ସ୍ୱରୂପ, କିନ୍ତୁ ପ୍ରତୀୟମାନ ଅର୍ଥ "ମୋ ଶେଯରେ ଶୋଇବ" ବୋଲି ବିଧିସ୍ୱରୂପ ଅଟେ । ]

୨୭ । କୌଣସି ସ୍ଥଳରେ ବାଚ୍ୟ ଅର୍ଥ ବିଧିରୂପ କିନ୍ତୁ ପ୍ରତୀୟମାନ ଅର୍ଥ ଅନୁଭୟରୂପ ଅର୍ଥାତ୍ ବିଧିରୂପ ନୁହେ କିମ୍ବା ନିଷେଧରୂପ ନୁହେ ଯଥା—

୨୮ । ଅନ୍ୟ ନାୟିକା ନିକଟକୁ ଯିବାପାଇଁ ସ୍ୱାମୀ ପ୍ରତି ଖଣ୍ଡିତା-ନାୟିକାର ଉକ୍ତି :— ଯାଅ । (ତୁମ ବିଚ୍ଛେଦରେ) ମୋ ଜଣକର କେବଳ ଦୀର୍ଘନିଃଶ୍ୱାସ, ଶୋକ ହେଉଥାଉ, କିନ୍ତୁ ଦାକ୍ଷିଣ୍ୟ ( ସବୁ ସ୍ତ୍ରୀଙ୍କଠାରେ ସମାନ ଅନୁରାଗ ) ହେତୁ ଏଠାରୁ ଯାଇ ନ ପାରିବାରୁ ତୁମର କାନ୍ତା-ବିଚ୍ଛେଦବଶତଃ ଦୀର୍ଘଶ୍ୱାସ, ଶୋକ ପ୍ରଭୃତି ଯାହା ସବୁ ହେଉଛି, ତାହା

(୨୯) କ୍ୱଚିଦ୍‌ବାଚ୍ୟେ ପ୍ରତିଷେଧରୂପେଽନୁଭୟରୂପୋ ଯଥା-

'ଦେ ଆ ପସିଅ ଣିବତ୍ତସୁ ମୁହସସିଜୋହ୍ନାବିଲୁତ୍ତତମଣି-
ବହେ !।
ଅହିସାରିଆଣଂ ବିଗ୍‌ଘଂ କରେସି ଅଣ୍ଣାଣଂ-ବି ହଆସେ'।

(୩୦) (ପ୍ରାର୍ଥୟେ ତାବତ୍ ପ୍ରସୀଦ ନିବର୍ତ୍ତସ୍ୱ ମୁଖଶଶିଜ୍ୟୋତ୍ସ୍ନା-
ବିଲୁପ୍ତତମୋନିବହେ !।
ଅଭିସାରିକାଣାଂ ବିଘ୍ନଂ କରୋଷ୍ୟନ୍ୟାସାମପି ହତାଶେ ?॥
( ଇତିଚ୍ଛାୟା )

---

ନ ହେଉ । ଅର୍ଥାତ୍ ତୁମ୍ଭେ ଯିବାଦ୍ୱାରା ମୋ ଜଣକର ଦୁଃଖ, ତୁମ୍ଭେ ଥିବା ଦ୍ୱାରା ତୁମ୍ଭେ ଓ ତୁମ୍ଭ ନାୟିକା ଦୁଇଜଣଙ୍କର ଦୁଃଖ, ଏଣୁ ଯାଅ ।

[ ଏଠାରେ ବାଚ୍ୟ ଅର୍ଥ "ଯାଅ" ଏହା ବିଧିରୂପ । କିନ୍ତୁ ପ୍ରତୀୟମାନ ଅର୍ଥ ତହିଁରୁ ଭିନ୍ନ । ତୁମ୍ଭେ ଏଠାରେ ଥାଇ ଦୁଃଖ ଅନୁଭବ କରୁଛ ବୋଲି କହିବା ଦ୍ୱାରା ତୁମ୍ଭେ ପ୍ରମାଦବଶତଃ ଅନ୍ୟ ନାୟିକାର ସଙ୍ଗମ କରିନାହଁ, ପରନ୍ତୁ ଗାଢ଼ ଅନୁରାଗରେ ତୁମ୍ଭେ କେବଳ ଦାକ୍ଷିଣ୍ୟ ଦେଖାଇବା ବାହାନାରେ ଏଠାକୁ ଆସିଛ, କିନ୍ତୁ ମୋ ଠାରେ ଅନୁରାଗ ନାହିଁ । ଅତଏବ ତୁମ୍ଭେ ଶଠନାୟକ । ଏଠାରେ କ୍ରୋଧାନ୍ଧା ଖଣ୍ଡିତାର ଅଭିପ୍ରାୟ "ଯାଅ" ବୋଲି ବିଧିରୂପ ନୁହେ ବା "ନ ଯାଅ" ବୋଲି ନିଷେଧ-ରୂପ ନୁହେ, କିନ୍ତୁ ଖଣ୍ଡିତାର ତର୍ଜ୍ଜନ ଗର୍ଜନାଦି (କ୍ରୋଧାଭି-ପ୍ରାୟ) ପ୍ରତୀୟମାନ ଅର୍ଥ । ତାହା ଅନୁଭୟ ରୂପ ।

୨୯ । କୌଣସି ସ୍ଥଳରେ ବାଚ୍ୟ ଅର୍ଥ ନିଷେଧରୂପ କିନ୍ତୁ ପ୍ରତୀୟ-ମାନ ଅର୍ଥ ଅନୁଭୟ ରୂପ ଅଟେ । ଯଥା—

୩୦ । [ନାୟକର ଗୋତ୍ର ସ୍ଖଳନାଦି ଅପରାଧରୁ ଗୃହତ୍ୟାଗ କରି ଚାଲି ଯାଉଥିବା ନାୟିକାକୁ ନାୟକର ଉକ୍ତି । ]

(୩୧) କ୍ୱଚଦ୍‌ବାଚ୍ୟାଦ୍‌ବିଭିନ୍ନ ବିଷୟତ୍ୱେନ ବ୍ୟବସ୍ଥାପିତୋ ଯଥା—

'କସ୍ସ ବ ଣ ହୋଇ ରୋସୋ ଦଠ୍ଠୂଣ ପିଆଏ ସବ୍‌ବଣଂ ଅହରଂ ।

ସଭମରପଉମଗ୍‌ଘାଇଣି ! ବାରିଅବାମେ !, ସହସୁ ଏହ୍‌ଣିମ୍' ।

(୩୨) କସ୍ୟ ବା ନ ଭବତି ରୋଷୋ ଦୃଷ୍ଟ୍ୱା ପ୍ରିୟାୟାଃ ସବ୍ରଣମଧରମ୍ ।

ସଭ୍ରମରପଦ୍ମାଘ୍ରାୟିଣି ! ବାରିତବାମେ ! ସହସ୍ୱେଦାନୀମ୍ ।

( ଇତିଚ୍ଛାୟା )

ମୁଁ ପ୍ରାର୍ଥନା କରୁଛି, ପ୍ରସନ୍ନ ହୁଅ, ଫେରିଆସ, (ନିବର୍ତ୍ତସ୍ୱ) ତୁମରି ମୁଖ ଚନ୍ଦ୍ରସ୍ୱରୂପ । ଏହି ମୁଖଚନ୍ଦ୍ରର କିରଣ ନିବିଡ ଅନ୍ଧକାରକୁ ନାଶ କରୁଛି । ହେ ହତାଶେ ! ଫେରିଯିବା ଦ୍ୱାରା କେବଳ ନିଜର ବିଘ୍ନ କରୁନାହିଁ ଅନ୍ୟ ଅଭିସାରିକାମାନଙ୍କର ମଧ୍ୟ ବିଘ୍ନ କରୁଛ ।

[ଏଠାରେ "ଫେରିଆସ" ବୋଲି କହିବା ଦ୍ୱାରା ଗମନ ନିଷେଧ ବାଚ୍ୟ ହୋଇଅଛି କିନ୍ତୁ ପ୍ରକରଣାଦି ପର୍ଯ୍ୟାଲୋଚନା କଲେ ମୋ ଘରକୁ ଫେରି ଏପରି ନିଷେଧରୂପ, କିମ୍ବା ତୁମ ଘରକୁ ଯିବା ଏପରି ବିଧିରୂପ ମଧ୍ୟ ସମ୍ଭବ ହୋଇପାରେ । ସୁତରାଂ ଏଠାରେ ପ୍ରତୀୟମାନ ଅର୍ଥ 'ନାୟକର ଧୃଷ୍ଟତା' ତାହା ବିଧିରୂପ କିମ୍ବା ନିଷେଧରୂପ ନୁହେ ।

ଏ ଶ୍ଳୋକରେ ପ୍ରତୀୟମାନ ଅର୍ଥ ଧୃଷ୍ଟତା ତାହା ଫେରିଆସ (ନିବର୍ତ୍ତସ୍ୱ) ବୋଲି ବାଚ୍ୟ ଅର୍ଥରେ ବିଶ୍ରାନ୍ତ ହେଉଥିବାରୁ ଗୁଣୀଭୂତ ବ୍ୟଙ୍ଗ୍ୟ କିନ୍ତୁ ଧ୍ୱନି ନୁହେ । ]

୩୧ । କୌଣସି ସ୍ଥଳରେ ବାଚ୍ୟ ଅର୍ଥ ଏକ ନିର୍ଦ୍ଦିଷ୍ଟ ବିଷୟକ କିନ୍ତୁ ପ୍ରତୀୟମାନ ଅର୍ଥ ନାନା ବିଷୟକ । ଯଥା—

୩୨ । [କୌଣସି ନବୀନା ନାୟିକା ଇତର ପୁରୁଷ ସମ୍ଭୋଗଜନ୍ୟ କ୍ଷତଚିହ୍ନାଧର ହୋଇଅଛି । ତାର ସ୍ୱାମୀ ତାର ନିକଟବର୍ତ୍ତୀ ହେବାରୁ ସେ ନାୟିକାର ବାଚ୍ୟତା ପରିହାର ନିମନ୍ତେ ଜଣେ ଚତୁରା ସଖୀ କହୁଅଛି । ]

(୩୩) ଅନ୍ୟେ ଚୈବଂପ୍ରକାରା ବାଚ୍ୟାଦ୍‌ବିଭେଦେନ ପ୍ରତୀୟମାନଭେଦାଃ ସମ୍ଭବନ୍ତି । ତେଷାଂ ଦିଙ୍‌ମାତ୍ରମେତତ୍ ପ୍ରଦର୍ଶିତମ୍ ।

(୩୪) ଦ୍ୱିତୀୟୋଽପି ପ୍ରଭେଦୋ ବାଚ୍ୟାଦ୍‌ବିଭିନ୍ନଃ ସପ୍ରପଞ୍ଚମଗ୍ରେ ଦର୍ଶୟିଷ୍ୟତେ ।

(୩୫) ତୃତୀୟସ୍ତୁ ରସାଦିଲକ୍ଷଣଃ ପ୍ରଭେଦୋ ବାଚ୍ୟସାମର୍ଥ୍ୟାକ୍ଷିପ୍ତଃ ପ୍ରକାଶତେ । ନ ତୁ ସାକ୍ଷାଚ୍ଛବ୍ଦବ୍ୟାପାରବିଷୟ ଇତି ବାଚ୍ୟାଦ୍‌ବିଭିନ୍ନ ଏବ ।

---

ପ୍ରିୟତମାର ଖଣ୍ଡିତ ଅଧରସ୍ଥଳ ଦେଖିଲେ କେଉଁ ସ୍ୱାମୀର ମନରେ କ୍ରୋଧ ଜାତ ହେବ ନାହିଁ ? ମନାକଲେ ତ ମାନିଲୁ ନାହିଁ । ଭ୍ରମରଯୁକ୍ତ ପଦ୍ମ ଶୁଙ୍ଘିଲୁ । ଏବେ ସହ । (ସମ୍ଭାଳ) ।

[ ଏଠାରେ ବାଚ୍ୟ ଅର୍ଥ ଦୁଃଶୀଳଣୀ ସଖୀ ବିଷୟକ, କିନ୍ତୁ ସ୍ୱାମୀ ବିଷୟରେ ଏହାର ଅପରାଧ ନାହିଁ । ସଖୀ ସମ୍ବନ୍ଧରେ "ସହ" ପ୍ରତିବେଶିନୀଙ୍କ ବିଷୟରେ ସଖୀର ଦୋଷ ନାହିଁ ।

ଚୌର୍ଯ୍ୟ କାମୁକ ବିଷୟରେ 'ପୁନର୍ବାର ଏପରି ପ୍ରକଟ ଦନ୍ତଦଂଶନ ବିଧେୟ ନୁହେଁ, ତଟସ୍ଥ ବିଦଗ୍ଧଙ୍କ ପକ୍ଷେ ମୁଁ ଏପରି ଚତୁରତାରେ ସଖୀକୁ ରକ୍ଷା କଲି, ସପତ୍ନୀମାନଙ୍କ ବିଷୟରେ (ପ୍ରିୟୁଙ୍କ ଦ୍ୱାରା) ସଖୀର ସୌଭାଗ୍ୟାତିଶୟ ବର୍ଣ୍ଣନ ପ୍ରଭୃତି ଏଠାରେ ବାଚ୍ୟ ଅର୍ଥ ଏକମାତ୍ର ସଖୀବିଷୟକ କିନ୍ତୁ ପ୍ରତୀୟମାନ ଅର୍ଥ ସଖୀ, ତାର ସ୍ୱାମୀ, ଜାର, ତଟସ୍ଥ, ପ୍ରତିବେଶିନୀ, ସପତ୍ନୀ ପ୍ରଭୃତି ବହୁ ବିଷୟକ ।]

୩୩ । ପ୍ରତୀୟମାନ ଅର୍ଥରେ ଅନ୍ୟ ସବୁ ପ୍ରକାର ମଧ୍ୟ ଏହିପରି ବାଚ୍ୟରୁ ଅତ୍ୟନ୍ତ ଭିନ୍ନ । ତାହାର ଦିଙ୍‌ମାତ୍ର ପ୍ରଦର୍ଶିତ ହେଲା ।

୩୪ । ଦ୍ୱିତୀୟ ପ୍ରକାର ଅଳଙ୍କାର ଧ୍ୱନି ମଧ୍ୟ ବାଚ୍ୟରୁ ଅତ୍ୟନ୍ତ ଭିନ୍ନ । ତାହା ପରେ ବିସ୍ତରଭାବେ ଦେଖାଇବୁଁ ।

୩୫ । ତୃତୀୟ ପ୍ରକାର ରସାଦି (ରସ, ରସାଭାସ, ଭାବସନ୍ଧି ଶବଳତା ଭାବୋଦୟ ଭାବପ୍ରଶମ) ଧ୍ୱନି ବାଚ୍ୟ ସାମର୍ଥ୍ୟରୁ ଆକ୍ଷିପ୍ତ ହୁଏ କିନ୍ତୁ

(୩୬) ତଥା ହି ବାଚ୍ୟତ୍ୱଂ ତସ୍ୟ ସ୍ୱଶବ୍ଦନିବେଦିତତ୍ୱେନ ବା ସ୍ୟାତ୍, ବିଭାବାଦିପ୍ରତିପାଦନମୁଖେନ ବା ।

(୩୭) ପୂର୍ବସ୍ମିନ୍ ପକ୍ଷେ ସ୍ୱଶବ୍ଦନିବେଦିତତ୍ୱାଭାବେ ରସାଦୀନାମପ୍ରତୀତିପ୍ରସଙ୍ଗଃ ।

(୩୮) ନ ଚ ସର୍ବତ୍ର ତେଷାଂ ସ୍ୱଶବ୍ଦନିବେଦିତତ୍ୱମ୍ । ଯତ୍ରାପ୍ୟସ୍ତି ତତ୍ ତତ୍ରାପି ବିଶିଷ୍ଟବିଭାବାଦିପ୍ରତିପାଦନମୁଖେନୈବୈଷାଂ ପ୍ରତୀତିଃ । ସ୍ୱଶବ୍ଦେନ ସା କେବଲମନୂଦ୍ୟତେ, ନ ତୁ ତତ୍କୃତା । ବିଷୟାନ୍ତରେ ତଥା ତସ୍ୟା ଅଦର୍ଶନାତ୍ ।

---

ଯେତେବେଳେ ଶବ୍ଦରେ ପ୍ରକାଶ କରି ହୁଏନାହିଁ, ଏଣୁ ସେ ବାଚ୍ୟ ଅର୍ଥରୁ ନିଶ୍ଚୟ ପୃଥକ୍ । (ବସ୍ତୁଧ୍ୱନି ଓ ଅଲଙ୍କାରଧ୍ୱନି ଶବ୍ଦରେ ବାଚ୍ୟ ହୋଇପାରେ ଅର୍ଥାତ୍ ଅମୁକ ବସ୍ତୁଧ୍ୱନି ହେଲାବୋଲି କୁହାଯାଇ ପାରେ କିନ୍ତୁ ରସଧ୍ୱନି ଯେତେବେଳେ ସ୍ୱଶବ୍ଦରେ ବାଚ୍ୟହୋଇ ନ ପାରେ ।)

(୩୬) ଯଦି ବା ରସାଦିକୁ ବାଚ୍ୟ ବୋଲି କହିବା ତେବେ ସ୍ୱନାମ ଶବ୍ଦ ରସ କିମ୍ବା ଶୃଙ୍ଗାର, ବୀର, ଇତ୍ୟାଦି ଶବ୍ଦରେ ସେ ବାଚ୍ୟ ହେଉଛି ! କିମ୍ବା ବିଭାବ ଅନୁଭାବ ବ୍ୟଭିଚାରୀଭାବଙ୍କ ପ୍ରତିପାଦନ ଦ୍ୱାରା ବାଚ୍ୟ ହେଉଛି ?

(୩୭) ପ୍ରଥମ ପକ୍ଷରେ ଯଦି ଶୃଙ୍ଗାରାଦି ଶବ୍ଦରେ ସେହି ସେହି ରସର ପ୍ରତୀତି ହୁଅନ୍ତା, ତେବେ ଶୃଙ୍ଗାରାଦି ଶବ୍ଦର କଥନ ବିନା ଶୃଙ୍ଗାରାଦି ରସର ପ୍ରତୀତି ହୁଅନ୍ତା ନାହିଁ ।

(୩୮) ବସ୍ତୁତଃ ସର୍ବତ୍ର (ଶୂନ୍ୟଂ ବାସଗୃହଂ ଇତ୍ୟାଦିରେ) ଶୃଙ୍ଗାରାଦି ଶବ୍ଦଦ୍ୱାରା ରସ ପ୍ରକାଶିତ ହେଉନାହିଁ । ଯେଉଁ କେତେକ ସ୍ଥଳରେ ବା ରସାଦିର ସ୍ୱଶବ୍ଦଦ୍ୱାରେ ଅଭିଧାନ ରହିଅଛି (ଆଲେକ୍ୟ କୋମଳକପୋଳ ଇତ୍ୟାଦି) । ସେଠାରେ ବିଶିଷ୍ଟ ବିଭାବ ଅନୁଭାବ ବ୍ୟଭିଚାରିଭାବମାନଙ୍କର ପ୍ରତିପାଦନଦ୍ୱାରାହିଁ ରସ ପ୍ରତୀତି ହେଉଅଛି । କିନ୍ତୁ ଶୃଙ୍ଗାରାଦି ଶବ୍ଦରେ ନୁହେ । ଶୃଙ୍ଗାରାଦି ଶବ୍ଦରେ ବିଭାବାଦି ଚର୍ବଣାସିଦ୍ଧରସର କେବଳ

(୩୯) ନହି କେବଲଶୃଙ୍ଗାରାଦିଶବ୍ଦମାତ୍ରଭାଜି ବିଭାବାଦି-
ପ୍ରତିପାଦନରହିତେ କାବ୍ୟେ ମନାଗପି ରସବତ୍ତ୍ୱ-
ପ୍ରତୀତିରସ୍ତି ।

(୪୦) ଯତଶ୍ଚ ସ୍ୱାଭିଧାନମନ୍ତରେଣ କେବଲେଭ୍ୟୋଽପି
ବିଭାବାଦିଭ୍ୟୋ ବିଶିଷ୍ଟେଭ୍ୟୋ ରସାଦୀନାଂ ପ୍ରତୀତିଃ ।
କେବଲାଚ୍ଚ ସ୍ୱାଭିଧାନାଦପ୍ରତୀତିଃ । ତସ୍ମାଦନ୍ୱୟବ୍ୟତି-
ରେକାଭ୍ୟାମଭିଧେୟସାମର୍ଥ୍ୟାକ୍ଷିପ୍ତତ୍ୱମେବ ରସାଦୀ-
ନାମ୍ । ନତ୍ୱଭିଧେୟତ୍ୱଂ କଥଞ୍ଚିତ୍ । ଇତି ତୃତୀୟୋଽପି
ପ୍ରଭେଦୋ ବାଚ୍ୟାଦ୍‌ଭିନ୍ନ ଏବେତି ସ୍ଥିତମ୍ ।

---

ଅନୁବାଦ ମାତ୍ର ହୁଏ । ( ଅନୁବାଦର ଅର୍ଥ ପୁନରୁକ୍ତି ) ଉକ୍ତରୂପ
ସ୍ଥଳରେ ସ୍ୱଶବ୍ଦରେ ରସାଦିର ପ୍ରତୀତି ହେଉଛି ବୋଲି କହିହେବ ନାହିଁ
କାରଣ ଅନ୍ୟସ୍ଥଳ (ଶୂନ୍ୟଂ ବାସଗୃହଂ) ମାନଙ୍କରେ ଶୃଙ୍ଗାରାଦି ଶବ୍ଦ
ନ ଥିଲେ ମଧ୍ୟ ରସ ପ୍ରତୀତ ହେଉଅଛି ।

(୩୯) 'ଚନ୍ଦ୍ରମଣ୍ଡଳମାଲୋକ୍ୟ ଶୃଙ୍ଗାରେ ମଗ୍ନମନ୍ତରମ୍' 'ଶୃଙ୍ଗାରବୀର-
କରୁଣାଦ୍ଭୁତହାସ୍ୟଭୟାନକାଃ' । ଇତ୍ୟାଦି ସ୍ଥଳରେ ଶୃଙ୍ଗାରାଦି ଶବ୍ଦ
ଥିଲେ ମଧ୍ୟ ବିଭାବାଦିର ପ୍ରତିପାଦନ ନ ଥିବାରୁ ଟିକିଏ ହେଲେ ରସର
ପ୍ରତୀତି ନାହିଁ ।

(୪୦) ଏଣୁ କେବଳ ବିଶିଷ୍ଟ ବିଭାବାଦି ପ୍ରତିପାଦନଦ୍ୱାରା ରସାଦିର ପ୍ରତୀତି
ହୁଏ । କିନ୍ତୁ ଶୃଙ୍ଗାରାଦି ଶବ୍ଦଦ୍ୱାରା ପ୍ରତୀତ ହୁଏନାହିଁ । ଅତଏବ ଅନ୍ୱୟ
ଓ ବ୍ୟତିରେକ, ( ଶୃଙ୍ଗାରାଦି ନାମ କଥନ ବିନା ରସପ୍ରତୀତି—ଅନ୍ୱୟ,
ଶୃଙ୍ଗାରାଦି ନାମ କଥନସତ୍ତ୍ୱେ ରସର ଅପ୍ରତୀତି ବ୍ୟତିରେକ ) ଦୃଷ୍ଟାନ୍ତରେ
ତୃତୀୟପ୍ରକାର ରସାଦିଧ୍ୱନି ବାଚ୍ୟଅର୍ଥର ସାମର୍ଥ୍ୟଦ୍ୱାରା ଆକ୍ଷିପ୍ତ ହୁଏ, କିନ୍ତୁ
କେବେହେଲେ କୌଣସି ପ୍ରକାରେ ବାଚ୍ୟ ହୁଏ ନାହିଁ । ସୁତରାଂ ତାହା
ମଧ୍ୟ ବାଚ୍ୟରୁ ଭିନ୍ନ ।

(୪୧) ବାଚ୍ୟେନ ତ୍ୱସ୍ୟ ସହୈବ ପ୍ରତୀତିରତ୍ରୈବଗ୍ରେ ଦର୍ଶୟି-ଷ୍ୟତେ ।

(୪୨) କାବ୍ୟସ୍ୟାତ୍ମା ସ ଏବାର୍ଥସ୍ତଥା ଚାଦିକବେଃ ପୁରା ।
କ୍ରୌଞ୍ଚଦ୍ୱନ୍ଦ୍ୱବିୟୋଗୋତ୍ଥଃ ଶୋକଃ ଶ୍ଳୋକତ୍ୱମାଗତଃ ।୫।

ବିବିଧବାଚ୍ୟବାଚକରଚନାପ୍ରପଞ୍ଚଚାରୁଣଃ କାବ୍ୟସ୍ୟ ସ ଏବାର୍ଥଃ ସାରଭୂତଃ । ତଥାଚାଦିକବେର୍ବାଲ୍ମୀକେର୍ନିହତ-ସହଚରୀବିରହକାତରକ୍ରୌଞ୍ଚ୍ୟାକ୍ରନ୍ଦଜନିତଃ ଶୋକ ଏବ ଶ୍ଳୋକତୟା ପରିଣତଃ ।

ଶୋକୋ ହି କରୁଣରସସ୍ଥାୟିଭାବଃ ପ୍ରତୀୟମାନ ରୂପ ଏବେତି ପ୍ରତିପାଦିତମ୍ ।

---

(୪୧) ଉକ୍ତ ରସାଦି, ବାଚ୍ୟ ଅର୍ଥର ସମକାଳରେ ପ୍ରକଟିତ ହୁଏ । (ଏଠାରେ ବାଚ୍ୟ ପ୍ରତୀତି ଓ ବ୍ୟଙ୍ଗ୍ୟ ପ୍ରତୀତିର କ୍ରମ ଥିଲେ ମଧ୍ୟ ଶୀଘ୍ର ପ୍ରତୀତି ହେତୁ ଲକ୍ଷ୍ୟ କରାଯାଇ ପାରେ ନାହିଁ । ଏଣୁ ତାକୁ ଅସଂଲକ୍ଷ୍ୟ-କ୍ରମ ବ୍ୟଙ୍ଗ୍ୟ ବୋଲାଯାଏ] ତାହା ଦ୍ୱିତୀୟ ଉଦ୍ୟୋତରେ ଦେଖାଇବୁ ।

(୪୨) ସେହି (ରସାଦିରୂପ) ପ୍ରତୀୟମାନ ଅର୍ଥ (ବିବିଧ ଶବ୍ଦାର୍ଥ ଯୋଜନା ଓ ରଚନା ଭଙ୍ଗୀରେ ମନୋହର ହୋଇଥିବା ) କାବ୍ୟର ଆତ୍ମା । ଆଦିକବି ବାଲ୍ମୀକିଙ୍କର କ୍ରୌଞ୍ଚୀ ବିରହକାତର କ୍ରୌଞ୍ଚକ୍ରନ୍ଦନ ଜନିତ ଶୋକ । (କରୁଣ ସ୍ଥାୟୀଭାବ) ଶ୍ଳୋକରୂପକୁ ପ୍ରାପ୍ତ ହୋଇଅଛି ।

ଶ୍ଳୋକ ଯଥା :—ମା ନିଷାଦ ପ୍ରତିଷ୍ଠାଂ ତ୍ୱମଗମଃ ଶାଶ୍ୱତୀଃ ସମାଃ
ଯତ୍କ୍ରୌଞ୍ଚମିଥୁନାଦେକମବଧୀଃ କାମମୋହିତମ୍ ।

(୪୩) ପ୍ରତୀୟମାନସ୍ୟ ଚାନ୍ୟପ୍ରଭେଦଦର୍ଶନେଽପି ରସ-ଭାବମୁଖେନୈବୋପଲକ୍ଷଣମ୍ ; ପ୍ରାଧାନ୍ୟାତ୍ ।

(୪୪) ସରସ୍ୱତୀ ସ୍ୱାଦୁ ତଦର୍ଥବସ୍ତୁ
ନିଃଷ୍ୟନ୍ଦମାନା ମହତାଂ କବୀନାମ୍ ।
ଅଲୋକସାମାନ୍ୟମଭିବ୍ୟନକ୍ତି
ପରିସ୍ଫୁରନ୍ତଂ ପ୍ରତିଭାବିଶେଷମ୍ ॥ ୬ ॥

ଭାରତୀ ତଦ୍ ବସ୍ତୁତତ୍ତ୍ୱଂ ନିଷ୍ୟନ୍ଦମାନା ମହତାଂ କବୀନାଂ ଅଲୋକସାମାନ୍ୟଂ ପ୍ରତିଭାବିଶେଷଂ ପରିସ୍ଫୁରନ୍ତ-ମଭିବ୍ୟନକ୍ତି ।

(୪୫) 'ୟେନାସ୍ମିନ୍ନତିବିଚିତ୍ରକବିପରମ୍ପରାବାହିନି ସଂସାରେ କାଳିଦାସ ପ୍ରଭୃତୟୋ ଦ୍ୱିତ୍ରାଃ ପଞ୍ଚଷା ବା ମହାକବୟ ଇତି ଗଣ୍ୟନ୍ତେ ।

---

(୪୩) ପ୍ରତୀୟମାନ ଅର୍ଥର ବସ୍ତୁଧ୍ୱନି, ଅଲଙ୍କାରଧ୍ୱନିରୂପକ ଅନ୍ୟ ପ୍ରଭେଦ ଥିଲେ ମଧ୍ୟ ରସାଦି ଧ୍ୱନି ସେମାନଙ୍କ ଉପରେ ପ୍ରଧାନ । ଏଣୁ ଉପଲକ୍ଷଣ ବିଧିରେ ରସାଦି କାବ୍ୟର ଆତ୍ମା ବୋଲି ଦର୍ଶାଇବା ଦ୍ୱାରା ଅନ୍ୟ, ବସ୍ତୁ ଓ ଅଲଙ୍କାର ମଧ୍ୟ କାବ୍ୟର ଆତ୍ମା ବୋଲି ପ୍ରଦର୍ଶିତ ହେଲା ।

(୪୪) ସହୃଦୟହୃଦୟାହ୍ଲାଦକ (ସ୍ୱାଦୁ) ସେହି ପ୍ରତୀୟମାନ ଅର୍ଥର ତତ୍ତ୍ୱ (ବସ୍ତୁ)କୁ ସ୍ୱୟଂ କ୍ଷରଣ କରୁଥିବା ମହାକବିମାନଙ୍କର ସରସ୍ୱତୀ (ବାକ୍‌ପ୍ରବାହ) ସେମାନଙ୍କର ସ୍ଫୁରି ଉଠିଥିବା ଅଲୌକିକ ପ୍ରତିଭା (ନବ ନବ ବସ୍ତୁ ନିର୍ମାଣକ୍ଷମା ବୁଦ୍ଧି)କୁ ପ୍ରକାଶ କରେ ।

(୪୫) ଏଣୁ ଅତି ବିଚିତ୍ର କବିପରମ୍ପରାବାହି ସଂସାରରେ କାଳିଦାସ ପ୍ରଭୃତି ଦୁଇ ତିନିଜଣ କିମ୍ବା ପାଞ୍ଚ ଛଜଣ ମହାକବି ବୋଲି ଗଣାଯାଉ ଅଛନ୍ତି ।

୪୬ । ଇଦଂ ତ୍ବପରଂ ପ୍ରତୀୟମାନସ୍ୟାର୍ଥସ୍ୟ ସଦ୍ଭାବ-
ସାଧନଂ ପ୍ରମାଣମ୍ ।

୪୭ । ‘ଶବ୍ଦାର୍ଥ ଶାସନଜ୍ଞାନମାତ୍ରେଣୈବ ନ ବେଦ୍ୟତେ ।
ବେଦ୍ୟତେ ସ ତୁ କାବ୍ୟାର୍ଥତତ୍ତ୍ୱଜ୍ଞୈରେବ କେବଲମ୍ ।୭।
ଶବ୍ଦାର୍ଥଶାସନଜ୍ଞାନମାତ୍ରେଣୈ ପରଂ ନ ବେଦ୍ୟତେ
ସୋଽର୍ଥୋ ଯସ୍ମାତ୍ କେବଲଂ କାବ୍ୟାର୍ଥତତ୍ତ୍ୱଜ୍ଞୈରେବ
ଜ୍ଞାୟତେ । *

୪୮ । ଯଦ୍ଦ ଚ ବାଚ୍ୟରୂପ ଏବାସାବର୍ଥଃ ସ୍ୟାତ୍, ତଦ୍-
ବାଚ୍ୟବାଚକସ୍ୱରୂପପରିଜ୍ଞାନାଦେବ ତତ୍ପ୍ରତୀତିଃ ସ୍ୟାତ୍ ।
ଅଥ ଚ ବାଚ୍ୟବାଚକଲକ୍ଷଣମାତ୍ରକୃତଶ୍ରମାଣାଂ କାବ୍ୟ-
ତତ୍ତ୍ୱାର୍ଥଭାବନାବିମୁଖାନାଂ ସ୍ୱରଶ୍ରୁତ୍ୟାଦିଲକ୍ଷଣମିବ ପ୍ରଗୀ-
ତାନାଂ ଗାନ୍ଧର୍ବଲକ୍ଷଣବିଦାମଗୋଚର ଏବାସାବର୍ଥଃ ।

---

୪୬ । ପ୍ରତୀୟମାନ ଅର୍ଥର ଅସ୍ତିତ୍ୱ ସାଧନପାଇଁ ଆଉ ଗୋଟିଏ ପ୍ରମାଣ ଦିଆଯାଉଛି । ଯଥା—

୪୭ । ଉକ୍ତ ପ୍ରତୀୟମାନ ଅର୍ଥ କେବଳ ଶବ୍ଦ, ଅର୍ଥ, ଅନୁଶାସନ, ଜ୍ଞାନ ବଳରେ ଅର୍ଥାତ୍ କେବଳ ବ୍ୟାକରଣ ଓ ଅଭିଧାନ ଜ୍ଞାନରେ ବୁଝାଯାଏ ନାହିଁ । କିନ୍ତୁ କେବଳ କାବ୍ୟ ତତ୍ତ୍ୱଜ୍ଞାନ ବଳରେ ଜଣାଯାଏ ।

୪୮ । ଯଦି ଏହି ଅର୍ଥ ବାଚ୍ୟ (ଅଭିଧାବୃତ୍ତି ବୋଧ୍ୟ) ହୋଇଥାନ୍ତା, ତେବେ ବାଚ୍ୟବାଚକଜ୍ଞାନବଳରେ ବୁଝା ପଡ଼ନ୍ତା । ଅଥଚ ଯେଉଁମାନେ କେବଳ ବାଚ୍ୟବାଚକଜ୍ଞାନ ଅର୍ଜନ କରି ଅଛନ୍ତି କିନ୍ତୁ କାବ୍ୟତତ୍ତ୍ୱ ପରି-ଶୀଳନ କରି ନାହାନ୍ତି ସେମାନେ, ଏହି ସହୃଦୟ ଅର୍ଥକୁ ଜାଣି ପାରନ୍ତି ନାହିଁ । ଯେପରି ଗାନ୍ଧର୍ବ ଶାସ୍ତ୍ରରୁ କେବଳ ଲକ୍ଷଣ ମୁଖସ୍ଥ କରି ଉତ୍ତମ-ରୂପେ ଗାନଶିକ୍ଷା କରି ନ ଥିବା ଗାୟକମାନେ ସ୍ୱର ଶ୍ରୁତି * ପ୍ରଭୃତିର ପ୍ରକୃତ ଲକ୍ଷଣ ଜାଣି ନ ପାରନ୍ତି ।

---

* ପ୍ରତୀୟମାନ କେବଳ ସ୍ୱରୂପଭେଦରେ ବାଚ୍ୟଠାରୁ ଭିନ୍ନ ନୁହେଁ, ଭିନ୍ନ ସାମଗ୍ରୀରେ ମଧ୍ୟ ବୋଧ ହୁଏ । ସ୍ୱର ସାତପ୍ରକାର, ଶ୍ରୁତି ୨୨ପ୍ରକାର ।

୪୯ । ଏବଂ ବାଚ୍ୟବ୍ୟତିରେକିତଣୋ ବ୍ୟଙ୍ଗ୍ୟସ୍ୟ ସଦ୍ଭାବଂ ପ୍ରତିପାଦ୍ୟ ପ୍ରାଧାନ୍ୟଂ ତସ୍ୟୈବେତି ପ୍ରତିପାଦୟତି—

୫୦ । 'ସୋଽର୍ଥସ୍ତଦ୍‌ବ୍ୟକ୍ତିସାମର୍ଥ୍ୟଯୋଗୀ ଶବ୍ଦଶ୍ଚ କଶ୍ଚନ । ଯତ୍ନତଃ ପ୍ରତ୍ୟଭିଜ୍ଞେୟୌ ତୌ ଶବ୍ଦାର୍ଥୌ ମହାକବେଃ' ।୮। ସ ବ୍ୟଙ୍ଗ୍ୟୋଽର୍ଥସ୍ତତ୍‌ପ୍ରକାଶନସାମର୍ଥ୍ୟଯୋଗୀ ଶବ୍ଦଶ୍ଚ କଶ୍ଚନ, ନ ସର୍ବଃ । ତାବେବ ଶବ୍ଦାର୍ଥୌ ମହାକବେଃ ପ୍ରତ୍ୟଭିଜ୍ଞେୟୌ ।

୫୧ । ବ୍ୟଙ୍ଗ୍ୟବ୍ୟଞ୍ଜକାଭ୍ୟାମେବ ସୁପ୍ରଯୁକ୍ତାଭ୍ୟାଂ ମହାକବିତ୍ୱଲାଭୋ ମହାକବୀନାମ୍, ନ ବାଚ୍ୟବାଚକରଚନାମାତ୍ରେଣ ।

୫୨ । ଇଦାନୀଂ ବ୍ୟଙ୍ଗ୍ୟବ୍ୟଞ୍ଜକୟୋଃ ପ୍ରାଧାନ୍ୟେଽପି ଯଦ୍‌ବାଚ୍ୟବାଚକାବେବ ପ୍ରଥମମୁପାଦଦତେ କବୟସ୍ତଦପି ଯୁକ୍ତମେବେତ୍ୟାହ—

---

୪୯ । ଉକ୍ତ ସୂତ୍ରରେ ବ୍ୟଞ୍ଜନାବୃତ୍ତିଗମ୍ୟ ଉକ୍ତ (ବ୍ୟଙ୍ଗ୍ୟ) ଅର୍ଥ ବାଚ୍ୟ ଅର୍ଥ ଠାରୁ ପୃଥକ୍ ବୋଲି ପ୍ରତିପାଦନ କରି ତାହା (ବାଚ୍ୟ ଅପେକ୍ଷା) ପ୍ରଧାନ ବୋଲି ଗ୍ରନ୍ଥକାର ଦର୍ଶାଉଛନ୍ତି ।

୫୦ । ମହାକବିମାନଙ୍କର ସେହି ପ୍ରତୀୟମାନ ଅର୍ଥ ଓ ସେ ଅର୍ଥକୁ ପ୍ରକାଶ କରିପାରିବାଭଳି ବ୍ୟଞ୍ଜକ ଶବ୍ଦ ଏ ଉଭୟଙ୍କୁ ଯତ୍ନପୂର୍ବକ ଅନୁଶୀଳନ କରିବା ଉଚିତ ।

୫୧ । କବିମାନେ ବ୍ୟଙ୍ଗ୍ୟ ଅର୍ଥ ଓ ବ୍ୟଞ୍ଜକ ଶବ୍ଦ ଉତ୍ତମ ରୂପେ ପ୍ରୟୋଗ କରି ପାରିଲେ ମହାକବି ହୁଅନ୍ତି କିନ୍ତୁ କେବଳ ବାଚ୍ୟବାଚକ ପ୍ରୟୋଗରେ ମହାକବି ହୋଇ ପାରନ୍ତି ନାହିଁ ।

୫୨ । ବ୍ୟଙ୍ଗ୍ୟ ବ୍ୟଞ୍ଜକ ପ୍ରଧାନ ହେଲେ ମଧ୍ୟ କବିମାନେ ପ୍ରଥମେ ବାଚ୍ୟବାଚକ ଗ୍ରହଣ କରିଥାନ୍ତି । ତାହା ମଧ୍ୟ ଉପଯୁକ୍ତ ।

୫୩ । 'ଆଲୋକାର୍ଥୀ ଯଥା ଦୀପଶିଖାୟାଂ ଯତ୍ନବାନ୍ ଜନଃ ।
ତଦୁପାୟତୟା, ତଦ୍‌ବଦର୍ଥେ ବାଚ୍ୟେ ତଦାଦୃତଃ' । ୯ ।
ଯଥା ହ୍ୟାଲୋକାର୍ଥୀ ସନ୍ନପି ଦୀପଶିଖାୟାଂ ଯତ୍ନବାନ୍‌ଜନୋ ଭବତି ତଦୁପାୟତୟା । ନହି ଦୀପଶିଖାମନ୍ତରେଣାଲୋକଃ ସମ୍ଭବତି । ତଦ୍‌ବଦ୍‌ବ୍ୟଙ୍ଗ୍ୟମର୍ଥଂ ପ୍ରତ୍ୟାଦୃତୋ ଜନୋ ବାଚ୍ୟେଽର୍ଥେ ଯତ୍ନବାନ୍ ଭବତି ।

୫୪ । ଅନେନ ପ୍ରତିପାଦକସ୍ୟ କବେର୍ବ୍ୟଙ୍ଗ୍ୟମର୍ଥଂ ପ୍ରତି ବ୍ୟାପାରୋ ଦର୍ଶିତଃ ।

୫୫ । ପ୍ରତିପାଦ୍ୟସ୍ୟାପି ତଂ ଦର୍ଶୟିତୁମାହ—

୫୬ । 'ଯଥା ପଦାର୍ଥଦ୍ୱାରେଣ ବାକ୍ୟାର୍ଥଃ ସମ୍ପ୍ରତୀୟତେ ।
ବାଚ୍ୟାର୍ଥପୂର୍ବିକା ତଦ୍‌ବତ୍‌ପ୍ରତିପତ୍ତସ୍ୟ ବସ୍ତୁନଃ ।୧୦।
ଯଥା ହି ପଦାର୍ଥଦ୍ୱାରେଣ ବାକ୍ୟାର୍ଥାବଗମଃ ତଥା ବାଚ୍ୟାର୍ଥ-ପ୍ରତୀତିପୂର୍ବିକା ବ୍ୟଙ୍ଗ୍ୟସ୍ୟାର୍ଥସ୍ୟ ପ୍ରତିପତ୍ତିଃ ।

---

୫୩ । ଲୋକ, ଆଲୋକ ଇଚ୍ଛାକଲେ ଯେମନ୍ତ ଦୀପଶିଖାରେ ଯତ୍ନ କରେ, କାରଣ ଦୀପଶିଖା ବିନା ଆଲୋକ ସମ୍ଭବ ହେବ ନାହିଁ । ସେହିପରି ବ୍ୟଙ୍ଗ୍ୟ ଅର୍ଥରେ ଆଦରବାନ୍ କବି ପ୍ରଥମେ ବାଚ୍ୟ ଅର୍ଥରେ ଯତ୍ନକରିଥାଆନ୍ତି କାରଣ – ବାଚ୍ୟ ବ୍ୟଙ୍ଗ୍ୟର କାରଣ ।

୫୦ । ଏଣୁ ବ୍ୟଙ୍ଗ୍ୟ ଅର୍ଥ ପ୍ରକାଶପାଇଁ କବି ବାଚ୍ୟବାଚକ ପ୍ରୟୋଗ ବ୍ୟବସ୍ଥା କରିଥାଆନ୍ତି ବୋଲି କୁହାଗଲା ।

୫୫ । ପ୍ରତିପାଦ୍ୟ ବାଚ୍ୟ ଅର୍ଥ ମଧ୍ୟ ବ୍ୟଙ୍ଗ୍ୟ ଅର୍ଥ ପ୍ରକାଶର ନିମିତ୍ତ ହୁଏ ।

୫୬ । ଯେପରି ପ୍ରତ୍ୟେକ ପଦମାନଙ୍କର ଅର୍ଥଜ୍ଞାନଦ୍ୱାରା ବାକ୍ୟାର୍ଥ ଜ୍ଞାନ ହୁଏ, ସେହିପରି ବାଚ୍ୟ ଅର୍ଥର ଜ୍ଞାନପୂର୍ବକ ସେହି ପ୍ରତୀୟମାନ ବସ୍ତୁର ବୋଧ (ପ୍ରତିପତ୍ତି) ହୁଏ ।

୫୭ । ଇଦାନୀଂ ବାଚ୍ୟାର୍ଥ ପ୍ରତୀତିପୂର୍ବକତ୍ୱେଽପି ତତ୍ପ୍ରତୀତେର୍ବ୍ୟଙ୍ଗ୍ୟସ୍ୟାର୍ଥସ୍ୟ ପ୍ରାଧାନ୍ୟଂ ଯଥା ନ ବ୍ୟାଲୁପ୍ୟତେ ତଥା ଦର୍ଶୟତି—

୫୮ । 'ସ୍ୱସାମର୍ଥ୍ୟବଶେନୈବ ବାକ୍ୟାର୍ଥଂ ପ୍ରତିପାଦୟନ୍, ଯଥା ବ୍ୟାପାରନିଷ୍ପତ୍ତୌ ପଦାର୍ଥୋ ନ ବିଭାବ୍ୟତେ' । ୧୧ ।

ଯଥା ସ୍ୱସାମର୍ଥ୍ୟବଶେନୈବ ବାକ୍ୟାର୍ଥଂ ପ୍ରକାଶୟନ୍ନପି ପଦାର୍ଥୋ ବ୍ୟାପାରନିଷ୍ପତ୍ତୌ ନ ବିଭାବ୍ୟତେ ବିଭକ୍ତତୟା ।

'ତଦ୍ୱତ୍ ସଚେତସାଂ ସୋଽର୍ଥୋ ବାକ୍ୟାର୍ଥବିମୁଖାତ୍ମନାମ୍ ।
ବୁଦ୍ଧୌ ତତ୍ତ୍ୱାର୍ଥଦର୍ଶିନ୍ୟାଂ ଝଟିତ୍ୟେବାବଭାସତେ । ୧୨ ।

୫୯ । ଏବଂ ବାଚ୍ୟବ୍ୟତିରେକିଣୋ ବ୍ୟଙ୍ଗ୍ୟସ୍ୟାର୍ଥସ୍ୟ ସଦ୍ଭାବଂ ପ୍ରତିପାଦ୍ୟ ପ୍ରକୃତ ଉପଯୋଜୟନ୍ନାହ—

---

(ଏଠାରେ ସମ୍ୟକ୍ ଭାବେ ଭାଷାଜ୍ଞାନ ନ ହୋଇଥିବା ବ୍ୟକ୍ତିର ଅର୍ଥଜ୍ଞାନ ନ ହେଲାପରି ସମ୍ୟକ୍ ଭାବେ କାବ୍ୟତତ୍ତ୍ୱ ପରିଶୀଳନ ନ କରିଥିବା ବ୍ୟକ୍ତିର ବ୍ୟଙ୍ଗ୍ୟାର୍ଥ ଜ୍ଞାନ ହୋଇ ପାରେ ନାହିଁ ବୋଲି ସୂଚନା ଦିଆଯାଇଛି । )

୫୭ । ବାଚ୍ୟ ଅର୍ଥ ପ୍ରଥମେ ଅବଗତ ହେଉଥିଲେ ମଧ୍ୟ ବ୍ୟଙ୍ଗ୍ୟ ଅର୍ଥର ପ୍ରାଧାନ୍ୟକୁ ଲୋପ କରିପାରେ ନାହିଁ ।

୫୮ । ଯେପରି ପଦମାନଙ୍କର ଅର୍ଥଗୁଡ଼ିକ ସ୍ୱସାମର୍ଥ୍ୟ (ଆକାଂକ୍ଷା-ଯୋଗ୍ୟତା ସାନ୍ନିଧ୍ୟାଦି) ବଶତଃ ବାକ୍ୟାର୍ଥକୁ ପ୍ରତିପାଦନ କରି ବାକ୍ୟାର୍ଥ ଅବଗତ ମଧ୍ୟରେ ସ୍ୱୟଂ ଭିନ୍ନ ଭିନ୍ନ ଭାବେ ଅବଗତ ହୁଅନ୍ତି ନାହିଁ, ସେହିପରି ବାଚ୍ୟ ଅର୍ଥରେ ସନ୍ତୁଷ୍ଟ ହେଉ ନଥିବା ସହୃଦୟମାନଙ୍କର ତତ୍ତ୍ୱାର୍ଥଦର୍ଶିନୀ ଚିତ୍ତବୃତ୍ତିରେ ଉକ୍ତ ପ୍ରତୀୟମାନ ଅର୍ଥ ଝଟିତି ପ୍ରତିଫଳିତ ହୁଏ ।

୫୯ । ବ୍ୟଙ୍ଗ୍ୟର ଅସ୍ତିତ୍ୱ ଓ ଉତ୍କର୍ଷ ପ୍ରତିପାଦନ କରି ବର୍ତ୍ତମାନ ଧ୍ୱନିର ଲକ୍ଷଣ କହୁଅଛନ୍ତି —

୭୦ । "ଯତ୍ରାର୍ଥଃ ଶବ୍ଦୋ ବା ତମର୍ଥମୁପସର୍ଜ୍ଜନୀକୃତ ସ୍ୱାର୍ଥୌ । *
ବ୍ୟଙ୍କ୍ତଃ କାବ୍ୟବିଶେଷଃ ସ ଧ୍ୱନିରିତି ସୂରିଭିଃ କଥିତଃ ।"୧୩।
ଯତ୍ରାର୍ଥୋ ବାଚ୍ୟବିଶେଷୋ ବାଚକବିଶେଷଃ ଶବ୍ଦୋ ବା
ତମର୍ଥଂ ବ୍ୟଙ୍କ୍ତଃ, ସ କାବ୍ୟବିଶେଷୋ ଧ୍ୱନିରି

୭୧ । ଅନେନ ବାଚ୍ୟବାଚକଚାରୁତ୍ୱହେତୁଭ୍ୟ ଉପମାଽଽ-
ଦିଭ୍ୟୋଽନୁପ୍ରାସାଦିଭ୍ୟଶ୍ଚ ବିଭକ୍ତ ଏବ ଧ୍ୱନେର୍ବିଷୟ ଇତି
ଦର୍ଶିତମ୍ ।

---

୭୦ । ଯେଉଁ କାବ୍ୟରେ ବାଚକ ଶବ୍ଦ ଓ ବାଚ୍ୟଅର୍ଥ ନିଜକୁ (ସ୍ୱାର୍ଥ) ଗୌଣ (ଉପସର୍ଜନ) କରି ବ୍ୟଞ୍ଜନାବୃତ୍ତି ଦ୍ୱାରା ବ୍ୟଙ୍ଗ ଅର୍ଥକୁ ପ୍ରକାଶ କରନ୍ତି, ସେହି କାବ୍ୟକୁ ପଣ୍ଡିତମାନେ ଧ୍ୱନି କାବ୍ୟ ବୋଲି କହିଅଛନ୍ତି ।

("ଧ୍ୱନତୀତି ଧ୍ୱନିଃ" ଏହି ବ୍ୟୁତ୍ପତ୍ତିରେ ବାଚକ ଶବ୍ଦ ଓ ବାଚ୍ୟ ଅର୍ଥ ଧ୍ୱନି । "ଧ୍ୱନ୍ୟତେ ଇତି ଧ୍ୱନିଃ" ଏହି ବ୍ୟୁତ୍ପତ୍ତିରେ ବ୍ୟଙ୍ଗ ଅର୍ଥ ଧ୍ୱନି, "ଧ୍ୱନନଂ ଧ୍ୱନିଃ" ଏ ବ୍ୟୁତ୍ପତ୍ତିରେ ବ୍ୟଞ୍ଜନାବ୍ୟାପାର ମଧ୍ୟ ଧ୍ୱନିପଦବାଚ୍ୟ କିନ୍ତୁ ଏହି କାରିକାରେ ପ୍ରଧାନତଃ ଉକ୍ତ ସମୁଦାୟ—ସ୍ୱରୂପ କାବ୍ୟକୁ ଧ୍ୱନି ବୋଲି ନିର୍ଦ୍ଦେଶ କରାଯାଇଛି । ଏଠାରେ "ବ୍ୟଙ୍କ୍ତଃ" ବୋଲି ଦ୍ୱିବଚନ ପ୍ରୟୋଗ କରାଯିବାର ଅଭିପ୍ରାୟ ଏହି ଯେ-ଯେଉଁଠି ଶବ୍ଦ ବ୍ୟଞ୍ଜକ ସେଠାରେ ଅର୍ଥ ସହକାରୀ, ଯେଉଁଠି ଅର୍ଥ ବ୍ୟଞ୍ଜକ ସେଠାରେ ଶବ୍ଦ ମଧ୍ୟ ସହକାରୀ । )

୭୧ । ଏହାଦ୍ୱାରା ବାଚ୍ୟ ଚାରୁତ୍ୱହେତୁ (ଅର୍ଥାଲଙ୍କାର) ଉପମା ପ୍ରଭୃତି ଓ ବାଚକଚାରୁତ୍ୱହେତୁ (ଶବ୍ଦାଲଙ୍କାର) ଅନୁପ୍ରାସ ପ୍ରଭୃତିରୁ ଧ୍ୱନି ପୃଥକ୍ ବୋଲି ପ୍ରଦର୍ଶିତ ହେଲା ।

---

* ଶବ୍ଦପକ୍ଷେ-ଉପସର୍ଜନୀକୃତଃ ସ୍ୱସ୍ୟ ଶବ୍ଦସ୍ୟ ଅର୍ଥୋ ଯେନ ସଃ । ଅର୍ଥପକ୍ଷେ-ଉପସର୍ଜନୀକୃତଃ ସ୍ୱଃ ଅର୍ଥୋ ଯେନ ସଃ । ଇତି ଶେଷଃ ।

୭୨ । ଯଦପ୍ୟୁକ୍ତମ୍-'ପ୍ରସିଦ୍ଧପ୍ରସ୍ଥାନାତିକ୍ରମିଣୋ ମାର୍ଗସ୍ୟ କାବ୍ୟତ୍ୱହାନେର୍ଧ୍ୱନିର୍ନାସ୍ତି' ଇତି, ତଦପ୍ୟଯୁକ୍ତମ୍ । ଯତୋ ଲକ୍ଷଣକୃତାମେବ ସ କେବଲଂ ନ ପ୍ରସିଦ୍ଧଃ, ଲକ୍ଷ୍ୟେ ତୁ ପରୀକ୍ଷ୍ୟମାଣେ ସ ଏବ ସହୃଦୟହୃଦୟାହ୍ଲାଦକାରି କାବ୍ୟ-ତତ୍ତ୍ୱମ୍ । ତତୋଽନ୍ୟଚ୍ଚିତ୍ରମେବେତ୍ୟଗ୍ରେ ଦର୍ଶୟିଷ୍ୟାମଃ ।

୭୩ । ଯଦପ୍ୟୁକ୍ତମ୍—'କାମନୀୟକମନତିବର୍ତ୍ତମାନସ୍ୟ ତସ୍ୟୋକ୍ତାଲଙ୍କାରାଦିପ୍ରକାରେଷ୍ୱନ୍ତର୍ଭାବଃ' ଇତି ତଦପ୍ୟସମୀଚୀନମ୍ । ଯତୋ ବାଚ୍ୟବାଚକମାତ୍ରାଶ୍ରୟିଣି ପ୍ରସ୍ଥାନେ ବ୍ୟଙ୍ଗ୍ୟ-ବ୍ୟଞ୍ଜକସମାଶ୍ରୟେଣ ବ୍ୟବସ୍ଥିତସ୍ୟ ଧ୍ୱନେଃ କଥମନ୍ତର୍ଭାବଃ ।

୭୪ । ବାଚ୍ୟବାଚକଚାରୁତ୍ୱହେତବୋ ହି ତସ୍ୟାଙ୍ଗଭୂତାଃ; ନ ତୁ ତଦେକରୂପା ଏବେତି ପ୍ରତିପାଦୟିଷ୍ୟମାଣତ୍ୱାତ୍ ।

---

୭୨ । ଯେଉଁ ଅଭାବବାଦୀମାନେ କହନ୍ତି ଯେ ଧ୍ୱନି ଗୁଣାଲଙ୍କାରାଦି ପ୍ରସିଦ୍ଧବସ୍ତୁରୁ ଭିନ୍ନ ହେଲେ ତାହାଠାରେ କାବ୍ୟତ୍ୱ ରହିବ ନାହିଁ, ତାହା ମଧ୍ୟ ଅଯୁକ୍ତ । ଧ୍ୱନି ଲକ୍ଷଣକାରମାନଙ୍କ ପକ୍ଷରେ କେବଳ ପ୍ରସିଦ୍ଧ ନୁହେ । କିନ୍ତୁ ଲକ୍ଷସ୍ଥଳ କାବ୍ୟମାନଙ୍କରେ ପରୀକ୍ଷା କରାଯିବାରେ ମଧ୍ୟ ତାହା ( ଧ୍ୱନି ) କେବଳ ସହୃଦୟମାନଙ୍କର ଆହ୍ଲାଦକାରୀ କାବ୍ୟତତ୍ତ୍ୱ ବୋଲି ପ୍ରମାଣିତ ଉକ୍ତ ଧ୍ୱନିବର୍ଜିତ କାବ୍ୟ, ବସ୍ତୁତଃ କାବ୍ୟ ନୁହେ, କିନ୍ତୁ ଚିତ୍ର ମାତ୍ର । ଏହା ଆଗକୁ ଦର୍ଶାଇବୁ ।

୭୩ । ଯେଉଁ ଅଭାବବାଦୀମାନେ କହନ୍ତି ଯେ 'ରମଣୀୟତାରୁ ଧ୍ୱନି ଅଭିନ୍ନ ସୁତରାଂ ତାହା ଗୁଣାଲଙ୍କାରାଦିରେ ଅନ୍ତର୍ଭୁକ୍ତ' ତାହା ମଧ୍ୟ ଅସଙ୍ଗତ । କାରଣ-ପ୍ରସ୍ଥାନ ଯେ ଗୁଣାଲଙ୍କାର ପ୍ରଭୃତି ସେ କେବଳ ବାଚ୍ୟ ଓ ବାଚକକୁ ଆଶ୍ରୟ କରି ରହିଅଛନ୍ତି କିନ୍ତୁ ଧ୍ୱନି, ବ୍ୟଙ୍ଗ ଓ ବ୍ୟଞ୍ଜକକୁ ଆଶ୍ରୟ କରି ରହିଅଛି । ସୁତରାଂ ଧ୍ୱନି କପରି ଅଲଙ୍କାରାଦିରେ ଅନ୍ତର୍ଭୁକ୍ତ ହେବ ।

୭୪ । ବାଚ୍ୟ ବାଚକ ଚାରୁତ୍ୱ ହେତୁ ଉପମା ଅନୁପ୍ରାସ ପ୍ରଭୃତି ଧ୍ୱନିର ଅଙ୍ଗସ୍ୱରୂପ ଓ ଧ୍ୱନି ଅଙ୍ଗୀ ସ୍ୱରୂପ, ଏହା, ପରେ ପ୍ରତିପାଦିତ ହେବ ।

୭୫ । ପରିକରଶ୍ଳୋକଶ୍ଚାତ୍ର –

'ବ୍ୟଙ୍ଗ୍ୟବ୍ୟଞ୍ଜକସମ୍ବନ୍ଧନିବନ୍ଧନତୟା ଧ୍ୱନେଃ ।
ବାଚ୍ୟବାଚକଚାରୁତ୍ୱହେତ୍ୱନ୍ତଃପାତିତା କୁତଃ ।'

୭୬ । ନ ଯତ୍ର ପ୍ରତୀୟମାନସ୍ୟାର୍ଥସ୍ୟ ବୈଶଦ୍ୟେନା । ପ୍ରତୀତିଃ, ସ ନାମ ମା ଭୂଦ୍ଧ୍ୱନେର୍ବିଷୟଃ । ଯତ୍ର ତୁ ପ୍ରତୀତିରସ୍ତି ଯଥା ସମାସୋକ୍ତ୍ୟାକ୍ଷେପାନୁକ୍ତନିମିତ୍ତବିଶେଷୋକ୍ତିପର୍ଯ୍ୟାୟୋକ୍ତାପହ୍ନୁତିଦୀପକସଙ୍କରାଲଙ୍କାରାଦୌ, ତତ୍ର ଧ୍ୱନେରନ୍ତର୍ଭାବୋ ଭବିଷ୍ୟତୀତ୍ୟାଦି ନିରାକର୍ତ୍ତୁମଭିହିତମ୍ 'ଉପସର୍ଜ୍ଜନୀକୃତସ୍ୱାର୍ଥୌ' ଇତି ।

---

୭୫ । ଏ ସମ୍ବନ୍ଧରେ ପରିକର (ସମର୍ଥକ) ଶ୍ଳୋକ ଯଥା—ଧ୍ୱନି ବ୍ୟଙ୍ଗ ବ୍ୟଞ୍ଜକ ସମ୍ବନ୍ଧକୁ ଆଶ୍ରୟ କରି ରହିଛି ସେ ବାଚ୍ୟ ବାଚକଚାରୁତ୍ୱ ହେତୁ ଉପମାନୁପ୍ରାସାଦିରେ କପରି ଅନ୍ତର୍ଭୁକ୍ତ ହେବ ?

୭୬ । ଯେଉଁଠାରେ ପ୍ରତୀୟମାନ ଅର୍ଥ ବିଶଦ (ସ୍ପଷ୍ଟ) ଭାବେ ପ୍ରତୀତ ହେଉ ନାହିଁ ତାହା ଧ୍ୱନିର ବିଷୟ ନ ହେଉ । ଯେଉଁଠି ବା ସମାସୋକ୍ତି, ଆକ୍ଷେପ, ବିଶେଷୋକ୍ତି, ପର୍ଯ୍ୟାୟୋକ୍ତି, ଅପହ୍ନୁତି, ଦୀପକ, ସଙ୍କର ଅଳଙ୍କାର ପ୍ରଭୃତିରେ ଧ୍ୱନି ସ୍ପଷ୍ଟ ପ୍ରତୀତ ହେଉଛି ସେଠାରେ ଧ୍ୱନି ଉକ୍ତ ଅଳଙ୍କାରରେ ଅନ୍ତର୍ଭୁକ୍ତ ହେଉଛି, ଅଭାବବାଦୀଙ୍କର ଏପରି ଶଙ୍କା ନିରାକରଣ କରିବାପାଇଁ ଧ୍ୱନି ଲକ୍ଷଣରେ "ଉପସର୍ଜ୍ଜନୀକୃତସ୍ୱାର୍ଥୌ" ବୋଲି କହିଅଛନ୍ତି । ଯେଉଁଠି ଅର୍ଥ ଓ ଶବ୍ଦ ଦ୍ୱୟ ଗୌଣ ହୋଇ ବ୍ୟଞ୍ଜନାବୃତ୍ତି ଦ୍ୱାରା ବ୍ୟଙ୍ଗ ଅର୍ଥକୁ ବ୍ୟକ୍ତ କରନ୍ତି ତାହାହିଁ ଧ୍ୱନି । ଏତଦ୍ଦ୍ୱାରା ଧ୍ୱନି ସମାସୋକ୍ତି ପ୍ରଭୃତି ଅଳଙ୍କାରରେ କପରି ଅନ୍ତର୍ଭୁକ୍ତ ହେବ । କାରଣ ବ୍ୟଙ୍ଗ୍ୟଅର୍ଥ ପ୍ରଧାନ ହେଲେ ଧ୍ୱନି ହୁଏ । କିନ୍ତୁ ସମାସୋକ୍ତି ପ୍ରଭୃତିରେ ବ୍ୟଙ୍ଗ ଅର୍ଥର ପ୍ରାଧାନ୍ୟ ରହୁନାହିଁ ଓଲଟି ବାଚ୍ୟଅର୍ଥର ପ୍ରାଧାନ୍ୟ ରହୁଅଛି ।

(ଏ ସବୁ ସ୍ଥଳରେ ବ୍ୟଙ୍ଗ ଅର୍ଥ ପୁନରପି ବାଚ୍ୟଅର୍ଥର ଅନୁପ୍ରାଣକ

**ଅର୍ଥୋ ଗୁଣୀକୃତାତ୍ମା, ଗୁଣୀକୃତାଭିଧେୟଃ ଶବ୍ଦୋ ବା ଯତ୍ରାର୍ଥାନ୍ତରମଭିବ୍ୟନକ୍ତି ସ ଧ୍ୱନିରିତି । ତେଷୁ କଥଂ ତସ୍ୟାନ୍ତର୍ଭାବଃ । ବ୍ୟଙ୍ଗ୍ୟପ୍ରାଧାନ୍ୟେ ହି ଧ୍ୱନିଃ । ନ ଚୈତତ୍ ସମାସୋକ୍ତ୍ୟାଦିଷ୍ୱସ୍ତି ।**

**୭୭ । ସମାସୋକ୍ତୌ ତାବତ୍—**

**"ଉପୋଢ଼ରାଗେଣ ବିଲୋଲତାରକଂ**
**ତଥା ଗୃହୀତଂ ଶଶିନା ନିଶାମୁଖମ୍ ।**
**ଯଥା ସମସ୍ତଂ ତିମିରାଂଶୁକଂ ତୟା**
**ପୁରୋଽପି ରାଗାଦ୍ଗଳିତଂ ନ ଲକ୍ଷିତମ୍ ।**

---

ହୋଇଥିବାରୁ ଓ ବାଚ୍ୟ ମୁଖରେ ଉକ୍ତ ବ୍ୟଙ୍ଗ ଗୂଢ଼ତା ପ୍ରକାଶ ପାଉଥିବାରୁ ଉକ୍ତ ବ୍ୟଙ୍ଗ୍ୟ ଗୁଣୀଭୂତ ହୁଏ ।

ସମାସୋକ୍ତି ପ୍ରଭୃତି ସ୍ଥଳରେ ପ୍ରଥମେ ବାଚ୍ୟ ଅର୍ଥ ଦ୍ୱିତୀୟରେ ବ୍ୟଙ୍ଗ୍ୟ ବସ୍ତୁ ଓ ପର୍ଯ୍ୟନ୍ତରେ ରସଧ୍ୱନି ଥାଏ । ସେଠାରେ ଏହି ମଧ୍ୟମ ବ୍ୟଙ୍ଗ ବସ୍ତୁ ରସୋନ୍ମୁଖ ନ ହୋଇ ପୁନରପି ବାଚ୍ୟ ଅର୍ଥର ସଂସ୍କାରକ ହୋଇ ଥିବାରୁ ତାହା ଗୁଣୀଭୂତ ବ୍ୟଙ୍ଗ । )

୭୭ । ଯଥା – ସମାସୋକ୍ତି ଅଳଙ୍କାରରେ—

(ବାଚ୍ୟାର୍ଥ)— ଚନ୍ଦ୍ର ସକମ୍ପତାରକାଙ୍ଗଯୁକ୍ତ ନିଶାମୁଖ-(ସନ୍ଧ୍ୟାକାଳ) କୁ ନିଜର ଉଦୟକାଳିକ ଅରୁଣିମାରେ ଏପରି ଭାବେ ପ୍ରକାଶ କଲେ ଯେ, ଯେପରି ପୂର୍ବଦିଗରେ ବସ୍ତ୍ରସଦୃଶ ଆଚ୍ଛାଦକ ସମସ୍ତ ଅନ୍ଧକାର (ରକ୍ତିମାରେ) ବିଗଳିତ ହୋଇଗଲା, ସୁତରାଂ ଲୋକେ ତାକୁ ରାତି ବୋଲି ଲକ୍ଷ୍ୟକରି ପାରିଲେ ନାହିଁ ।

ବ୍ୟଙ୍ଗ୍ୟାର୍ଥ—ଚନ୍ଦ୍ରନାୟକ ଚଞ୍ଚଳଲୋଚନା ନିଶାରୂପିଣୀ ନାୟିକାର ମୁଖକୁ ଅତ୍ୟନ୍ତ ପ୍ରେମରେ ଏପରିଭାବେ ଚୁମ୍ବନ କଲେ ଯେ, ଯେପରି ପ୍ରେମରେ ସମୁଦାୟ ନେଳୀ ପାଟ ଶାଢ଼ୀଟି (ତିମିରାଂଶୁକ) ଆଲିଙ୍ଗନ ପୂର୍ବରୁ (ପୁରଃ) ଖସିଗଲା । କିନ୍ତୁ ନାୟିକା ତାହା ଲକ୍ଷକରି ପାରିଲା ନାହିଁ ।

୬୮ । ଇତ୍ୟାଦୌ ବ୍ୟଙ୍ଗ୍ୟେନାନୁଗତଂ ବାଚ୍ୟମେବ ପ୍ରାଧାନ୍ୟେନ ପ୍ରତୀୟତେ ।

୬୯ । ସମାରୋପିତନାୟିକାନାୟକବ୍ୟବହାରୟୋ ର୍ନିଶା-ଶଶିନୋରେବ ବାକ୍ୟାର୍ଥତ୍ୱାତ୍ ।

୭୦ । ଆକ୍ଷେପେଽପି ବ୍ୟଙ୍ଗ୍ୟବିଶେଷାକ୍ଷେପିଣୋ ବାଚ୍ୟ-ସ୍ୟୈବ ଚାରୁତ୍ୱଂ । ପ୍ରାଧାନ୍ୟେନ ବାକ୍ୟାର୍ଥ ଆକ୍ଷେପୋକ୍ତି-ସାମର୍ଥ୍ୟାଦେବ ଜ୍ଞାୟତେ ।

୭୧ । ତଥ ଶବ୍ଦୋପାରୂଢରୂପୋ ବିଶେଷାଭିଧାନେଚ୍ଛୟା-ପ୍ରତିଷେଧରୂପୋ ଯ ଆକ୍ଷେପଃ ସ ଏବ ବ୍ୟଙ୍ଗ୍ୟବିଶେଷ-ମାକ୍ଷିପନ୍ ମୁଖ୍ୟଂ କାବ୍ୟଶରୀରମ୍ ।

---

୬୮ । ଏହିଭଳି ସ୍ଥଳମାନଙ୍କରେ ବାଚ୍ୟ ଅର୍ଥ ବ୍ୟଙ୍ଗ୍ୟ ଅର୍ଥ ଦ୍ୱାରା ପରିପୁଷ୍ଟ ହୋଇ ପ୍ରଧାନ ଭାବେ ପ୍ରକାଶ ପାଉଛି ।

୬୯ । ଯଥା—ଏଠାରେ ଚନ୍ଦ୍ରୋଦୟକାଳୀନ ସନ୍ଧ୍ୟାର ପ୍ରାକୃତିକ ଚିତ୍ର ବାଚ୍ୟ ଅର୍ଥ ଓ ତାହା ପ୍ରାକରଣିକ । ତହିଁରେ ନିଶା ଓ ଶଶୀର ନାୟିକା ନାୟକ ବ୍ୟବହାର ଆରୋପ ବ୍ୟଙ୍ଗ୍ୟ । ବ୍ୟଙ୍ଗ୍ୟ ଅର୍ଥଟି ସ୍ୱତନ୍ତ୍ର ଭାବେ କାବ୍ୟର ଚାରୁତା ସମ୍ପାଦନ ନ କରି ରାତ୍ରି ଓ ଚନ୍ଦ୍ରରୂପକ କାବ୍ୟାର୍ଥର ଚାରୁତାକୁ ଅଭିବୃଦ୍ଧି କରୁଥିବାରୁ ତାହା ଗୁଣୀଭୂତ ବ୍ୟଙ୍ଗ୍ୟ, କିନ୍ତୁ ଧ୍ୱନି ନୁହେ । (ଅତଏବ ଏଠାରେ ଅତିବ୍ୟାପ୍ତି ଦୋଷ ଘଟୁନାହିଁ ।)

୭୦ । ଆକ୍ଷେପ ଅଳଙ୍କାରରେ—

ଆକ୍ଷେପ-ଅଳଙ୍କାର ବକ୍ଷ୍ୟମାଣବିଷୟ ଓ ଉକ୍ତବିଷୟ ଭେଦରେ ଦୁଇପ୍ରକାର । ପ୍ରଥମ ଆକ୍ଷେପରେ ବାଚ୍ୟ ଅର୍ଥ ବ୍ୟଙ୍ଗ୍ୟ ବସ୍ତୁକୁ ଆକ୍ଷେପ କରେ । ସେଠାରେ ବ୍ୟଙ୍ଗ୍ୟ ଆକ୍ଷିପ୍ତ ହେଲେ ମଧ୍ୟ ବାଚ୍ୟ ଅର୍ଥର ହିଁ ଚାରୁତା, ପ୍ରଧାନତଃ ତାହା (ବାଚ୍ୟ ଅର୍ଥ) ହିଁ କାବ୍ୟାର୍ଥ ।

୭୧ । ଦ୍ୱିତୀୟ ଉକ୍ତବିଷୟ ଆକ୍ଷେପରେ ଶବ୍ଦଦ୍ୱାରା ପ୍ରକାଶିତ ବସ୍ତୁର ବିଶେଷ ଅଭିଧାନ ଇଚ୍ଛାରେ ନିଷେଧ କରାଯାଇ ଥାଏ । ସେଠାରେ ବାଚ୍ୟ

୭୨ । ଗୁରୁତ୍ୱୋତ୍କର୍ଷନିବନ୍ଧନା ହି ବାଚ୍ୟବ୍ୟଙ୍ଗ୍ୟୟୋଃ ପ୍ରାଧାନ୍ୟବିବକ୍ଷା ।

୭୩ । ଯଥା—

'ଅନୁରାଗବତୀ ସନ୍ଧ୍ୟା ଦିବସସ୍ତତ୍‌ପୁରଃସରଃ
ଅହୋ ଦୈବଗତିଃ କୀଦୃକ୍ ତଥାପି ନ ସମାଗମଃ ।'

୭୪ । ଅତ୍ର ସତ୍ୟାମପି ବ୍ୟଙ୍ଗ୍ୟପ୍ରତୀତୌ ବାଚ୍ୟସ୍ୟୈବ ଗୁରୁତ୍ୱମୁତ୍‌କର୍ଷବଦିତି ତସ୍ୟୈବ ପ୍ରାଧାନ୍ୟବିବକ୍ଷା ।

---

ଅର୍ଥ ଦ୍ୱାରା ବ୍ୟଙ୍ଗ୍ୟ ବିଶେଷ ଆକ୍ଷିପ୍ତ ହେଲେ ମଧ୍ୟ ବାଚ୍ୟାର୍ଥହିଁ ବାକ୍ୟାର୍ଥୀଭୂତ ମୁଖ୍ୟ କାବ୍ୟଶରୀର ।

୭୨ । ବାଚ୍ୟ ଓ ବ୍ୟଙ୍ଗ୍ୟ ମଧ୍ୟରେ ଯାହା ଦ୍ୱାରା ଅଧିକ ଗୁରୁତା ଉପଲବ୍ଧ ହେବ, ତାହା ପ୍ରଧାନ ହେବ ଏହା ଶାସ୍ତ୍ର ସିଦ୍ଧ ।

୭୩ । ଯଥା—ସନ୍ଧ୍ୟା ଅନୁରାଗବତୀ ହୋଇଛି, ଦିବସ ତାର ଆଗେ ଆଗେ ଚାଲିଛି ତଥାପି ଦୁହିଁଙ୍କର ସମାଗମ ହେଉ ନାହିଁ । ଅହୋ ବିଧାତାର ଘଟନା କେଡ଼େ ବିଚିତ୍ର ।

୭୪ । ଏଠାରେ ବାଚ୍ୟ ଅର୍ଥ "ସନ୍ଧ୍ୟା ଦିବସ ସମାଗମାଭାବ" ଉପରେ ଅନୁରାଗଯୁକ୍ତା ନାୟିକା ସହିତ ସମୀପବର୍ତ୍ତୀ ନାୟକର ସଙ୍ଗମାଭାବ ବ୍ୟବହାର, ଆରୋପିତ ହୋଇ ସମାସୋକ୍ତି ଅଲଙ୍କାର ହେଉଅଛି ।

ଏବଂ ବ୍ୟଙ୍ଗ୍ୟ ଅର୍ଥ ନାୟକ ନାୟିକା ବ୍ୟବହାର ପ୍ରତୀତ ହେଉଥିଲେ ମଧ୍ୟ ସନ୍ଧ୍ୟା ଦିବସ ରୂପ ବାଚ୍ୟ ଅର୍ଥର ହିଁ ଗୁରୁତା ଓ ପ୍ରାଧାନ୍ୟ ସ୍ଥିର ହେଉଛି ।

(ବାମନଙ୍କ ମତରେ ଏ ଶ୍ଳୋକରେ ଆକ୍ଷେପ ଅଲଙ୍କାର, ସେ ପକ୍ଷରେ ମଧ୍ୟ 'ଅହୋ, ଦୈବଗତି କପରି' ଏହି ବାଚ୍ୟ ଦ୍ୱାରା ଆକ୍ଷିପ୍ତ ବ୍ୟଙ୍ଗ୍ୟ ଅର୍ଥର ମଧ୍ୟ ବାଚ୍ୟ ଅପେକ୍ଷା ଗୁରୁତା ନାହିଁ ଏଣୁ ତାର ପ୍ରାଧାନ୍ୟ ନାହିଁ ।

ଭାମହଙ୍କ ମତରେ ଏ ଶ୍ଳୋକରେ ସମାସୋକ୍ତି ଅଲଂକାର ହେଉଅଛି, ସମାସୋକ୍ତି ହେଉ ବା ଆକ୍ଷେପ ହେଉ, ସର୍ବଥା ଅଲଙ୍କାରରେ ବ୍ୟଙ୍ଗ୍ୟ ଅର୍ଥ ବାଚ୍ୟ ଅର୍ଥର ମୁଖାପେକ୍ଷୀ ହେଉଅଛି ଏହା ଗ୍ରନ୍ଥକାରଙ୍କର ମତ )

୭୫ । ଯଥା ଚ ଦୀପକାପହ୍ନୁତ୍ୟାଦୌ ବ୍ୟଙ୍ଗ୍ୟତ୍ୱେନୋପମାୟାଃ ପ୍ରତୀତାବପି ପ୍ରାଧାନ୍ୟେନାବିବକ୍ଷିତତ୍ୱାନ୍ନ ତୟା ବ୍ୟପଦେଶସ୍ତଦ୍ୱଦତ୍ରାପି ଦ୍ରଷ୍ଟବ୍ୟମ୍ ।

୭୬ । ଅନୁକ୍ତନିମିତ୍ତାୟାମପି ବିଶେଷୋକ୍ତୌ—

'ଆହୂତୋଽପି ସହାୟୈରେମୀତ୍ୟୁକ୍ତ୍ୱା ବିମୁକ୍ତନିଦ୍ରୋଽପି ।
ଗନ୍ତୁମନା ଅପି ପଥିକଃ ସଙ୍କୋଚଂ ନୈବ ଶିଥିଲୟତି ।'

୭୭ । ଇତ୍ୟାଦୌ ବ୍ୟଙ୍ଗ୍ୟସ୍ୟ ପ୍ରକରଣସାମର୍ଥ୍ୟାତ୍ ପ୍ରତୀତିମାତ୍ରମ୍ । ନ ତୁ ତତ୍ପ୍ରତୀତିନିମିତ୍ତା କାଚିଚ୍ଚାରୁତ୍ୱନିଷ୍ପତ୍ତିରିତି ନ ପ୍ରାଧାନ୍ୟମ୍ ।

---

୭୫ - ଯେପରି ଦୀପକ ଓ ଅପହ୍ନୁତି ପ୍ରଭୃତିରେ ଉପମା ଅଳଙ୍କାର ବ୍ୟଙ୍ଗ୍ୟ ହେଉଥିଲେ ମଧ୍ୟ ତା'ର ପ୍ରାଧାନ୍ୟ ବିବକ୍ଷିତ ହୋଇ ନ ଥିବାରୁ, ତାହା ଦ୍ୱାରା (ଉପମା ଦ୍ୱାରା) ବ୍ୟପଦେଶ ନ ହୋଇ ଦୀପକାଦି ନାମରେ ଅଭିଧାନ କରା ଯାଉଛି ଏଠାରେ ମଧ୍ୟ ସେହି ନ୍ୟାୟ । ଅର୍ଥାତ୍ ବାଚ୍ୟଅର୍ଥ (ଅଳଙ୍କାର) ର ହିଁ ପ୍ରାଧାନ୍ୟ ।

୭୬ । ଅନୁକ୍ତନିମିତ୍ତବିଶେଷୋକ୍ତିରେ—

ନିଦ୍ରା ଭାଙ୍ଗି ଯାଉଥିଲେ ମଧ୍ୟ, ଯିବାପାଇଁ ମନ ଥିଲେ ମଧ୍ୟ, ସହଗାମୀମାନଙ୍କ ଦ୍ୱାରା "ଆସ ଯିବା" ବୋଲି ଆହୂତ ହେଲେ ମଧ୍ୟ, "ହେଁ" "(ଓଁ)" (ଯାଉଛି) ବୋଲି କହିଲେ ମଧ୍ୟ ପଥିକ ଆଳସ୍ୟ (ସଙ୍କୋଚକୁ) ଶିଥିଳ କରୁନାହିଁ ।

୭୭ । (ଭଟ୍ଟୋଦ୍ଭଟ ଏ ଶ୍ଳୋକକୁ ଅନୁକ୍ତନିମିତ୍ତବିଶେଷୋକ୍ତିର ଉଦାହରଣ ରୂପେ ବ୍ୟବହାର କରି ଶୀତବ୍ୟଥାକୁ ଅନୁକ୍ତ ହେତୁରୂପେ ଦର୍ଶାଇ ଥିବାରୁ, ଗ୍ରନ୍ଥକାର ତାହାଙ୍କ ମତ ଅନୁସାରେ ଏଠାରେ ବାଚ୍ୟର ପ୍ରାଧାନ୍ୟ ଦର୍ଶାଇଛନ୍ତି) ଏଠାରେ ପ୍ରକରଣ ସାମର୍ଥ୍ୟରୁ ଆଳସ୍ୟର ହେତୁ ଶୀତବ୍ୟଥା ବ୍ୟଙ୍ଗ୍ୟରୂପେ ସୂଚିତ ହେଉଅଛି ମାତ୍ର । କିନ୍ତୁ ସେ ପ୍ରତୀତିରେ କିଛିହେଲେ ରୁଚିରତା ନାହିଁ । ଏଣୁ ତା'ର ପ୍ରାଧାନ୍ୟ ନାହିଁ ।

୭୮ । ପର୍ଯ୍ୟାୟୋକ୍ତେଽପି ଯଦ ପ୍ରାଧାନ୍ୟେନ ବ୍ୟଙ୍ଗ୍ୟତ୍ୱମ୍, ତଦ୍ଭବତୁ ନାମ ତସ୍ୟ ଧ୍ୱନାବନ୍ତର୍ଭାବଃ । ନ ତୁ ଧ୍ୱନେସ୍ତତ୍ରାନ୍ତର୍ଭାବଃ । ତସ୍ୟ ମହାବିଷୟତ୍ୱେନାଙ୍ଗିତ୍ୱେନ ଚ ପ୍ରତିପାଦୟିଷ୍ୟମାଣତ୍ୱାତ୍ ।

୭୯ । ନ ପୁନଃ ପର୍ଯ୍ୟାୟୋକ୍ତେ ଭାମହୋଦାହୃତସଦୃଶେ ବ୍ୟଙ୍ଗ୍ୟସ୍ୟୈବ ପ୍ରାଧାନ୍ୟମ୍ । ବାଚ୍ୟସ୍ୟ ତଦୁପସର୍ଜନୀଭାବେନାବିବକ୍ଷିତତ୍ୱାତ୍ ।

୮୦ । ଅପହ୍ନୁତିଦୀପକୟୋଃ ପୁନର୍ବାଚ୍ୟସ୍ୟ ପ୍ରାଧାନ୍ୟଂ ବ୍ୟଙ୍ଗ୍ୟସ୍ୟାନୁଯାୟିତ୍ୱଂ ପ୍ରସିଦ୍ଧମେବ ।

୮୧ । ସଙ୍କରାଲଙ୍କାରେଽପି ଯଦାଽଲଙ୍କାରୋଽଲଙ୍କାରାନ୍ତରଚ୍ଛାୟାମନୁଗୃହ୍ଣାତି ତଦା ବ୍ୟଙ୍ଗ୍ୟସ୍ୟ ପ୍ରାଧାନ୍ୟେନାବିବକ୍ଷିତତ୍ୱାନ୍ନ ଧ୍ୱନିବିଷୟତ୍ୱମ୍ ।

---

୭୮ । ପର୍ଯ୍ୟାୟୋକ୍ତରେ ମଧ୍ୟ ଯଦି ବ୍ୟଙ୍ଗ୍ୟ ଅର୍ଥର ପ୍ରାଧାନ୍ୟ ଥାଏ, ତେବେ ତାହା ଧ୍ୱନି ମଧ୍ୟରେ ଅନ୍ତର୍ଭୁକ୍ତ ହେଉ, ମାତ୍ର ଧ୍ୱନି ତହିଁରେ (ଅଳଙ୍କାରରେ) ଅନ୍ତର୍ଭୁକ୍ତ ହୋଇ ପାରିବ ନାହିଁ । କାରଣ-ଧ୍ୱନି ବ୍ୟାପକ (ମହାବିଷୟ) ଓ ଅଙ୍ଗୀ, କିନ୍ତୁ ଅଳଙ୍କାର ବ୍ୟାପ୍ୟ ଓ ଅଙ୍ଗ ।

୭୯ । ଅଥଚ ଭାମହଙ୍କ "ପର୍ଯ୍ୟାୟୋକ୍ତଂ ଯଦନ୍ୟେନ ପ୍ରକାରେଣାଭିଧୀୟତେ" ଏହି ଲକ୍ଷଣାନୁରୂପ ପର୍ଯ୍ୟାୟୋକ୍ତ ସ୍ଥଳରେ ବ୍ୟଙ୍ଗର ପ୍ରାଧାନ୍ୟ ରହୁନାହିଁ । ଯେଣୁ ସେଠାରେ ବାଚ୍ୟ ଅର୍ଥ ଗୌଣଭାବେ ଉକ୍ତ ହେଉନାହିଁ ।

୮୦ । ଅପହ୍ନୁତି ଓ ଦୀପକରେ ମଧ୍ୟ ବାଚ୍ୟରହିଁ ପ୍ରାଧାନ୍ୟ, ବ୍ୟଙ୍ଗ୍ୟ ଉପମା ବାଚ୍ୟ-ଦୀପକାଦିର ଅନୁଗାମୀ ମାତ୍ର । ଅର୍ଥାତ୍ ବାଚ୍ୟ ଦୀପକାଦିର ବ୍ୟଙ୍ଗସାମ୍ୟ ପ୍ରଭୃତି ଠାରୁ ଅଧିକ ଗୁରୁତା, ଏହା ସୁପ୍ରସିଦ୍ଧ । ଏଣୁ ସେଠାରେ ଉପମାଧ୍ୱନି ନାହିଁ ।

୮୧ । ସଙ୍କରାଲଙ୍କାରରେ ମଧ୍ୟ ଧ୍ୱନି ଅନ୍ତର୍ଭୁକ୍ତ ହେଉନାହିଁ । ସଙ୍କରାଲଙ୍କାର ତ୍ରିବିଧ । ଅଙ୍ଗାଙ୍ଗୀଭାବସଙ୍କର, ସନ୍ଦେହସଙ୍କର ଓ ଏକାଶ୍ରୟାନୁପ୍ରବେଶସଙ୍କର ।

୮୨ । ଅଲଙ୍କାରଦ୍ୱୟସମ୍ଭାବନାୟାଂ ତୁ ବାଚ୍ୟବ୍ୟଙ୍ଗ୍ୟୟୋଃ ସମଂ ପ୍ରାଧାନ୍ୟମ୍ ।

୮୩ । ଅଥ ବାଚ୍ୟୋପସର୍ଜନୀଭାବେନ ବ୍ୟଙ୍ଗ୍ୟସ୍ୟ ତତ୍ରାବସ୍ଥାନମ୍, ତଦା ସୋଽପି ଧ୍ୱନିବିଷୟୋଽସ୍ତୁ, ନତୁ ସ ଏବ ଧ୍ୱନିରିତି ବକ୍ତୁଂ ଶକ୍ୟମ୍ । ପର୍ଯ୍ୟାୟୋକ୍ତନିର୍ଦ୍ଦିଷ୍ଟନ୍ୟାୟାତ୍ ।

୮୪ । ଅପିଚ ସଙ୍କରାଲଙ୍କାରସ୍ୟ ସଙ୍କରୋକ୍ତିରେବ ଧ୍ୱନିସମ୍ଭାବନାଂ ନିରାକରୋତି ।

---

ଅଙ୍ଗାଙ୍ଗିଭାବ ସଙ୍କରରେ ଏକ ଅଲଙ୍କାର ଅନ୍ୟ ଅଲଙ୍କାରର ଅଙ୍ଗ ହେଲେ ସେଠାରେ ବ୍ୟଙ୍ଗ୍ୟ, ଅଙ୍ଗଭୂତ ଅଲଙ୍କାର ପ୍ରଧାନରୂପେ ବିବକ୍ଷିତ ହୋଇ ନ ଥିବାରୁ ତାହା ଧ୍ୱନି ନୁହେଁ ।

୮୨ । ସନ୍ଦେହ ସଙ୍କରରେ ମଧ୍ୟ ସମ୍ଭାବନା ଦୋଟିକୁ ଆସୁଥିବା ଉଭୟ ଅଲଙ୍କାରର ତୁଲ୍ୟପ୍ରାଧାନ୍ୟ ଥାଏ । ଏଣୁ ସେଠାରେ ଗୋଟିଏ ଅଲଙ୍କାରକୁ ବାଚ୍ୟ ଓ ଅନ୍ୟଟିକୁ ବ୍ୟଙ୍ଗ୍ୟ ବୋଲି ବିବେଚନା କଲେ ମଧ୍ୟ ତୁଲ୍ୟ ପ୍ରାଧାନ୍ୟ ହେତୁ ଧ୍ୱନି ହୁଏନାହିଁ ; ଗୁଣୀଭୂତବ୍ୟଙ୍ଗ୍ୟ ହୋଇଥାଏ ।

୮୩ । ଯେଉଁଠି ବ୍ୟଙ୍ଗ୍ୟ ଅଲଙ୍କାର, ବାଚ୍ୟ ଅଲଙ୍କାରକୁ ଉପସର୍ଜନ ଭାବେ ରଖି ଅପେ ପ୍ରଧାନ ଭାବେ ଥାଏ, ସେଠାରେ ସେପରି ବ୍ୟଙ୍ଗ୍ୟ ଅଲଙ୍କାର, ଧ୍ୱନିର ବିଷୟ । ଅର୍ଥାତ୍ ସେଠାରେ ଅଲଙ୍କାର ଧ୍ୱନି ହୁଏ । ଏହାବୋଲି ସେତକମାନ ଧ୍ୱନିର ସ୍ଥଳ ବୋଲି କୁହାଯାଇ ନପାରେ । କାରଣ ଧ୍ୱନି ମହାବିଷୟ କିନ୍ତୁ ଅଲଙ୍କାର ସ୍ୱଳ୍ପବିଷୟ ଇତ୍ୟାଦି ପର୍ଯ୍ୟାୟୋକ୍ତ ସ୍ଥଳରେ ଦର୍ଶିତ ହୋଇଅଛି ।

୮୪ । ଆଉ ପୁଣି ସଙ୍କରାଲଙ୍କାରରେ କ୍ଷୀରନୀରମିଶ୍ରଣପରି ସଙ୍କର ଭାବେ ( ମିଶ୍ରିତ ଭାବେ ) ଅଲଙ୍କାରମାନଙ୍କର ସ୍ଥିତି କୁହାଯାଇଥାଏ । ତନ୍ମଧ୍ୟରେ ପ୍ରଧାନ ଅପ୍ରଧାନ ନିରୂପଣ କରିବା କିପରି ସମ୍ଭବ ହେବ ? ଏଣୁ ସେଥିରେ ଧ୍ୱନି ସମ୍ଭାବନା ନାହିଁ ।

୮୫ । ଅପ୍ରସ୍ତୁତପ୍ରଶଂସାୟାମପି ଯଦା ସାମାନ୍ୟବିଶେଷ-ଭାବାନ୍ନିମିତ୍ତନିମିତ୍ତିଭାବାଦ୍ବା । ବିଧୀୟମାନସ୍ୟାପ୍ରସ୍ତୁତସ୍ୟ ପ୍ରତୀୟମାନେନ ପ୍ରସ୍ତୁତେନାଭିସମ୍ବନ୍ଧଃ, ତଦାଭିଧୀୟ-ମାନପ୍ରତୀୟମାନୟୋଃ ସମମେବ ପ୍ରାଧାନ୍ୟମ୍ ।

୮୬ । ଯଦା ତାବତ୍ ସାମାନ୍ୟସ୍ୟାପ୍ରସ୍ତୁତସ୍ୟାଭିଧୀୟମାନ-ସ୍ୟ ପ୍ରାକରଣିକେନ ବିଶେଷେଣ ପ୍ରତୀୟମାନେନ ସମ୍ବନ୍ଧ-ସ୍ତଦା ବିଶେଷପ୍ରତୀତୌ ସତ୍ୟାମପି ପ୍ରାଧାନ୍ୟେନ ତତ୍ସାମା-ନ୍ୟେନାବିନାଭାବାତ୍ ସାମାନ୍ୟସ୍ୟାପି ପ୍ରାଧାନ୍ୟମ୍ ।

୮୭ । ଯଦାପି ବିଶେଷସ୍ୟ ସାମାନ୍ୟନିଷ୍ଠତ୍ୱଂ ତଦାପି ସାମା-ନ୍ୟସ୍ୟ ପ୍ରାଧାନ୍ୟେ ସାମାନ୍ୟେ ସର୍ବବିଶେଷାଣାମନ୍ତର୍ଭାବାଦ୍ ବିଶେଷସ୍ୟାପି ପ୍ରାଧାନ୍ୟମ୍ ।

---

୮୫ । ଅପ୍ରସ୍ତୁତପ୍ରଶଂସା ଅଳଙ୍କାରରେ ଅପ୍ରସ୍ତୁତ ବାଚ୍ୟ ହୋଇଥାଏ । ଏବଂ ପ୍ରସ୍ତୁତ, ଗମ୍ୟ ( ବ୍ୟଙ୍ଗ୍ୟ ) ହୋଇଥାଏ । ଅପ୍ରସ୍ତୁତପ୍ରଶଂସା ୫ ପ୍ରକାର । ସେ ସମସ୍ତ ପ୍ରକାରରେ ଅପ୍ରସ୍ତୁତ ବାଚ୍ୟ ଅର୍ଥ ଓ ପ୍ରସ୍ତୁତ ବ୍ୟଙ୍ଗ୍ୟ ଅର୍ଥ ଦୁଇଟିର ସମପ୍ରାଧାନ୍ୟ ଥିବାରୁ ସେଠାରେ ଧ୍ୱନି ନାହିଁ ।

୮୬ । ଯେଉଁଠାରେ ସାମାନ୍ୟରୂପ ଅପ୍ରସ୍ତୁତ ବାଚ୍ୟ ହୋଇଛି ଓ ତତ୍-ସମ୍ବନ୍ଧବିଶେଷରୂପ ପ୍ରସ୍ତୁତ, ପ୍ରଧାନରୂପେ ବ୍ୟଙ୍ଗ୍ୟ ହୋଇ ବିବକ୍ଷିତ ହୋଇଛି, ସେଠାରେ ବିଶେଷର ସାମାନ୍ୟ ସହ ଅବିନାଭାବ ସମ୍ବନ୍ଧ ଥିବାରୁ ବାଚ୍ୟ ସାମାନ୍ୟର ମଧ୍ୟ ପ୍ରାଧାନ୍ୟ ରହୁଛି । ଏଣୁ ବାଚ୍ୟ ଓ ବ୍ୟଙ୍ଗ୍ୟର ସମ ପ୍ରାଧାନ୍ୟ ।

୮୭ । ଯେଉଁଠି ବା ବିଶେଷ ଅପ୍ରସ୍ତୁତବାଚ୍ୟ ହୋଇଛି ଓ ତହିଁରୁ ସାମାନ୍ୟରୂପ ପ୍ରସ୍ତୁତ ଗମ୍ୟ ହୋଇଛି, ସେଠାରେ ଗମ୍ୟ ସାମାନ୍ୟ ପ୍ରଧାନ-ରୂପେ ବିବକ୍ଷିତ ହୁଅନ୍ତେ ସାମାନ୍ୟରେ ସମସ୍ତ ବିଶେଷର ଅନ୍ତର୍ଭାବ ହେଉ-ଥିବାରୁ ବାଚ୍ୟ ବିଶେଷ ମଧ୍ୟ ଅନ୍ତର୍ଭୁକ୍ତ ହେଉଅଛି ଓ ତାର ପ୍ରାଧାନ୍ୟ ରହୁ-ଅଛି । ଏଣୁ ଏଠାରେ ମଧ୍ୟ ସମପ୍ରାଧାନ୍ୟ ।

୮୮ । କମତ୍ତ୍ୱକମିତ୍ତ୍ୱଭେବ ତୁଲ୍ୟମେବ ନ୍ୟାୟ୍ୟଃ ।

୮୯ । ଯଦା ତୁ ସାରୂପ୍ୟମାତ୍ରବଶେନାପ୍ରସ୍ତୁତପ୍ରଶଂସାୟାମପ୍ରକୃତପ୍ରକୃତୟୋଃ ସମ୍ବନ୍ଧସ୍ତଦାଽପ୍ୟପ୍ରସ୍ତୁତସ୍ୟ ସରୂପସ୍ୟାଭିଧୀୟମାନସ୍ୟ ପ୍ରାଧାନ୍ୟେନାବିବକ୍ଷାୟାଂ ଧ୍ୱନାବେବାନ୍ତଃପାତଃ । ଇତରଥା ତ୍ୱଲଙ୍କାରତ୍ୱମେବ ।

୯୦ । ତଦୟମତ୍ର ସଂକ୍ଷେପଃ :—

୯୧ । ବ୍ୟଙ୍ଗ୍ୟସ୍ୟ ଯତ୍ରାପ୍ରାଧାନ୍ୟଂ ବାଚ୍ୟମାତ୍ରାନୁଯାୟିନଃ ।
ସମାସୋକ୍ତ୍ୟାଦୟସ୍ତତ୍ର ବାଚ୍ୟାଲଂକୃତୟଃ ସ୍ଫୁଟାଃ ॥

୯୨ । ବ୍ୟଙ୍ଗ୍ୟସ୍ୟ ପ୍ରତିଭାମାତ୍ରେ ବାଚ୍ୟାର୍ଥାନୁଗମେଽପି ବା ।
ନ ଧ୍ୱନିର୍ଯତ୍ର ବା ତସ୍ୟ ପ୍ରାଧାନ୍ୟଂ ନ ପ୍ରତୀୟତେ ॥

---

୮୮ । କାର୍ଯ୍ୟକାରଣଭାବ ଅପ୍ରସ୍ତୁତପ୍ରଶଂସାରେ ମଧ୍ୟ ଅନ୍ତ ନ୍ୟାୟତଃ ବାଚ୍ୟ ଓ ବ୍ୟଙ୍ଗ୍ୟର ତୁଲ୍ୟ ପ୍ରାଧାନ୍ୟ ହେଉଅଛି ।

୮୯ । ଯେଉଁଠାରେ କେବଳ ସାରୂପ୍ୟସମ୍ବନ୍ଧବଶତଃ ଅପ୍ରସ୍ତୁତପ୍ରଶଂସା ହୋଇଥାଏ ସେଠାରେ ବାଚ୍ୟ ଅପ୍ରସ୍ତୁତ ସରୂପର ପ୍ରାଧାନ୍ୟ ବିବକ୍ଷା ନଥିବାରୁ, ବ୍ୟଙ୍ଗ୍ୟ ପ୍ରସ୍ତୁତସରୂପ ପ୍ରଧାନ ହୋଇ ଧ୍ୱନିରେ ଅନ୍ତର୍ଭୁକ୍ତ ହେବ ।

ଅନ୍ୟଥା ତାହା ଅଲଙ୍କାର ହେବ, କିନ୍ତୁ ଧ୍ୱନି ହେବ ନାହିଁ ।
ବ୍ୟାଜସ୍ତୁତି ପ୍ରଭୃତିରେ ମଧ୍ୟ ବ୍ୟଙ୍ଗ୍ୟ ଅର୍ଥ ଅପ୍ରଧାନ ହେତୁ ଧ୍ୱନି ନୁହେ ।

୯୦ । ତେଣୁ ସଂକ୍ଷେପରେ କୁହାଯାଉଅଛି ଯେ :—

୯୧ । ଯେଉଁଠାରେ ବ୍ୟଙ୍ଗ୍ୟ ଅର୍ଥ ଅପ୍ରଧାନଭାବେ ଥାଇ କେବଳ ବାଚ୍ୟ ଅର୍ଥର ପୁଷ୍ଟିସାଧନ କରୁଥାଏ ( ବାଚ୍ୟମାତ୍ରାନୁଯାୟୀ ) ସେଠାରେ ଧ୍ୱନି ହୁଏ ନାହିଁ, କିନ୍ତୁ ସମାସୋକ୍ତି ପ୍ରଭୃତି ବାଚ୍ୟ ଅଲଙ୍କାର ହୁଏ ଏହା ସ୍ପଷ୍ଟ ।

୯୨ । ବ୍ୟଙ୍ଗ୍ୟ ଅସ୍ପଷ୍ଟ ଭାବେ ପ୍ରତୀତ ହେଲେ କିମ୍ବା ବାଚ୍ୟ ଅର୍ଥର ଅନୁଗତ ହେଲେ କିମ୍ବା ସ୍ପଷ୍ଟଭାବେ ବ୍ୟଙ୍ଗ୍ୟର ପ୍ରାଧାନ୍ୟ ପ୍ରତୀତ ନ ହେଲେ ସେଠାରେ ଧ୍ୱନି ହୁଏ ନାହିଁ (ଏ ସବୁ ସ୍ଥଳରେ ବ୍ୟଙ୍ଗ୍ୟ ଥିଲେ ମଧ୍ୟ ଅପ୍ରାଧାନ୍ୟ, ସମପ୍ରାଧାନ୍ୟ, ସନ୍ଦିଗ୍ଧପ୍ରାଧାନ୍ୟ ଓ ଅସ୍ପଷ୍ଟ ପ୍ରତୀତ ହେତୁ ଧ୍ୱନି ହୋଇ ପାରେ ନାହିଁ )।

୯୩ । ତତ୍ପରାବେବ ଶବ୍ଦାର୍ଥୌ ଯତ୍ର ବ୍ୟଙ୍ଗ୍ୟଂ ପ୍ରତିସ୍ଥିତୌ ।
ଧ୍ୱନେଃ ସ ଏବ ବିଷୟୋ ମନ୍ତବ୍ୟଃ ସଙ୍କରୋଜ୍ଝିତଃ ॥
୯୪ । ତସ୍ମାନ୍ନ ଧ୍ୱନେରନ୍ୟତ୍ରାନ୍ତର୍ଭାବଃ । ଇତଶ୍ଚ ନାନ୍ତର୍ଭାବଃ
ଯତଃ କାବ୍ୟବିଶେଷୋଽଙ୍ଗୀ ଧ୍ୱନିରିତି କଥିତଃ । ତସ୍ୟ ପୁନ-
ରଙ୍ଗାନି-ଅଲଙ୍କାରା ଗୁଣା ବୃତ୍ତୟଶ୍ଚେତି ପ୍ରତିପାଦୟିଷ୍ୟନ୍ତେ ।
୯୫ । ନଚାବୟବ ଏବ ପୃଥଗ୍ଭୂତୋଽବୟବୀତି ପ୍ରସିଦ୍ଧଃ ।
ଅପୃଥଗ୍ଭାବେ ତୁ ତଦଙ୍ଗତ୍ୱଂ ତସ୍ୟ । ନ ତୁ ତତ୍ତ୍ୱମେବ ।
୯୬ । ଯତ୍ରାପି ବା ତତ୍ତ୍ୱମ୍, ତତ୍ରାପି ଧ୍ୱନେର୍ମହାବିଷୟତ୍ୱାନ୍ନ
ତନ୍ନିଷ୍ଠତ୍ୱମେବ ।

---

୯୩ । କିନ୍ତୁ ଯେଉଁଠାରେ ଶବ୍ଦ ଓ ଅର୍ଥ, ବ୍ୟଙ୍ଗ୍ୟ ଅର୍ଥ ପ୍ରକାଶ କରିବା ପାଇଁ ତତ୍ପର ହୋଇଥିବେ ଅର୍ଥାତ୍ ନିଜକୁ ଉପସର୍ଜ୍ଜନ କରି ବ୍ୟଙ୍ଗ୍ୟ ଅର୍ଥ ପ୍ରକାଶ କରୁଥିବେ ତାହା ଧ୍ୱନିର ବିଷୟ ହେବ । ତାଦୃଶ ସ୍ଥଳରେ ବ୍ୟଙ୍ଗ୍ୟ ଅନ୍ୟ ଅଲଙ୍କାର ରୂପ ଧାରଣ କରିପାରେ ନାହିଁ । (ସଂକରୋଜ୍ଝିତଃ)

୯୪ । ତେଣୁ ଧ୍ୱନି ଅନ୍ୟାନ୍ୟ ଗୁଣାଲଙ୍କାରାଦିରେ ଅନ୍ତର୍ଭୁକ୍ତ ହୋଇ ପାରିବ ନାହିଁ । ଆଉ ପୁଣି ଧ୍ୱନିକାବ୍ୟ ଅଙ୍ଗୀ ବୋଲି କୁହାଯାଇ ଅଛି । ଅଲଙ୍କାର ଗୁଣ ଓ ବୃତ୍ତି ତାହାର ଅଙ୍ଗବୋଲି ପ୍ରତିପାଦନ କରାଯିବ । ଏଣୁ ଅଙ୍ଗୀଧ୍ୱନି ଅଙ୍ଗ ଅଲଙ୍କାରାଦିରେ ଅନ୍ତର୍ଭୁକ୍ତ ହୋଇ ନ ପାରେ ।

୯୫ । ପୁନଶ୍ଚ ଅବୟବ ପୃଥଗ ଭାବେ ଅବୟବୀ ବୋଲି ପ୍ରସିଦ୍ଧ ହୋଇ ପାରେ ନାହିଁ । ଏଣୁ ଅଲଙ୍କାର ବିଶେଷ, ପୃଥକ୍ ଭାବେ ଧ୍ୱନି ପଦବାଚ୍ୟ ହୋଇ ନ ପାରେ । ସମୁହ ଭାବରେ ମଧ୍ୟ ଅଲଙ୍କାର, ଧ୍ୱନି ହୋଇପାରେ ନାହିଁ, କାରଣ ସେଠାରେ ସକଳ ସମ୍ପ୍ରଦାୟୀ ମାନଙ୍କର ସଦ୍ଭାବ ଥିବା ହେତୁ ପ୍ରତୀୟମାନର ମଧ୍ୟ ସଦ୍ଭାବ ଅଛି । ସୁତରାଂ ସେଠାରେ ଅଲଙ୍କାର ପ୍ରଧାନ ନ ହୋଇ ପ୍ରତୀୟମାନର ଅଙ୍ଗ ହୁଏ । କିନ୍ତୁ ଧ୍ୱନି (ତତ୍ତ୍ୱମ୍) ହୁଏ ନାହିଁ ।

୯୬ । ଯେଉଁଠି ବା ଅଲଙ୍କାର ଧ୍ୱନି - ରୂପ ଧାରଣ କରୁଛି ସେଠାରେ ମଧ୍ୟ ଅଲଙ୍କାର ଧ୍ୱନି ଅବସ୍ଥିତନଷ୍ଟ (ବାଚ୍ୟ ଅଲଙ୍କାର ବିଶେଷର ଅନ୍ତର୍ଭୁକ୍ତ), ନୁହଇ, କାରଣ ଧ୍ୱନି ବ୍ୟାପକ ଓ ଅଙ୍ଗୀ, ଅଲଙ୍କାର ବ୍ୟାପ୍ୟ ଓ ଅଙ୍ଗ ।

୯୭ । 'ସୂରିଭିଃ କଥିତଃ' ଇତି ବିଦ୍ବଦୁପଜ୍ଞେୟମୁକ୍ତିର୍ନଚ୍ଛ ଯଥାକଥଞ୍ଚିତ୍ ପ୍ରବୃତ୍ତେତି ପ୍ରତିପାଦ୍ୟତେ ।

୯୮ । ପ୍ରଥମେ ହି ବିଦ୍ବାଂସୋ ବୈୟାକରଣାଃ, ବ୍ୟାକରଣ ମୂଲତ୍ୱାତ୍ ସର୍ବବିଦ୍ୟାନାମ୍ ।

୯୯ । ତେ ଚ ଶ୍ରୂୟମାଣେଷୁ ବର୍ଣ୍ଣେଷୁ ଧ୍ୱନିରିତି ବ୍ୟବହରନ୍ତି ।

୧୦୦ । ତଥୈବାନ୍ୟୈସ୍ତନ୍ମତାନୁସାରିଭିଃ ସୂରିଭିଃ କାବ୍ୟତତ୍ତ୍ୱାର୍ଥଦର୍ଶିଭିର୍ବାଚ୍ୟବାଚକସମ୍ମିଶ୍ରଃ ଶବ୍ଦାତ୍ମା କାବ୍ୟମିତି ବ୍ୟପଦେଶ୍ୟୋ ବ୍ୟଞ୍ଜକତ୍ୱସାମ୍ୟାଦ୍ ଧ୍ୱନିରିତ୍ୟୁକ୍ତଃ ।

---

୯୭ । ଧ୍ୱନି ଲକ୍ଷଣରେ 'ସୂରିଭିଃ କଥିତଃ' ବୋଲି କହିବାର ଉଦ୍ଦେଶ୍ୟ ଏହି ଯେ, ବିଦ୍ୱାନ୍‌ମାନେ ଏହି ଧ୍ୱନିକୁ ପ୍ରଥମେ ପ୍ରତିପାଦନ କରିଅଛନ୍ତି । କିନ୍ତୁ ଯଥାକଥଞ୍ଚିତ୍ ରୂପେ ଏହା ପ୍ରବର୍ତ୍ତି ନାହିଁ ।

୯୮ । ବେଦାଦି ସମସ୍ତ ବିଦ୍ୟା ବ୍ୟାକରଣ-ମୂଳକ । କାରଣ-ବ୍ୟାକରଣରେ ବ୍ୟୁତ୍ପତ୍ତି ନ ହେଲେ କୌଣସି ଶାସ୍ତ୍ରରେ ପ୍ରବେଶ କରିହେବ ନାହିଁ । ଏଣୁ ବୈୟାକରଣ ମାନେ ଶ୍ରେଷ୍ଠ ବିଦ୍ୱାନ୍ ।

୯୯ । ସେମାନେ ଶ୍ରୂୟମାଣ ବର୍ଣ୍ଣକୁ ଧ୍ୱନି ବୋଲି କହନ୍ତି । ଶ୍ରୂୟମାଣ ବର୍ଣ୍ଣ ଅର୍ଥ ହେଉଛି ଶବ୍ଦଜ ଶବ୍ଦ ଅର୍ଥାତ୍ ଘଣ୍ଟାନାଦ ପ୍ରାୟ ଅନୁରଣନାତ୍ମକ ନାଦ ।

ଉକ୍ତିହିଃ—

ଯଃ ସଂଯୋଗବିଯୋଗାଭ୍ୟାଂ କରଣୈରୁପଜନ୍ୟତେ
ସ ସ୍ଫୋଟଃ ଶବ୍ଦଜାଃ ଶବ୍ଦାଧ୍ୱନୟୋଽନ୍ୟୈରୁଦାହୃତାଃ ॥

୧୦୦ । ସେହିପରି ବୈୟାକରଣଙ୍କ ମତାନୁସାରୀ ଅନ୍ୟ କାବ୍ୟତତ୍ତ୍ୱଦର୍ଶୀ ପଣ୍ଡିତମାନେ ବାଚ୍ୟ ବାଚକ ମିଶ୍ରିତ ଶବ୍ଦାତ୍ମକ କାବ୍ୟକୁ ବ୍ୟଞ୍ଜକ ହିସାବରେ ଧ୍ୱନି ବୋଲି କହନ୍ତି (ଲୋଚନକାରଙ୍କ ମତରେ ବ୍ୟଞ୍ଜକତା ହେତୁ ୧ ବାଚ୍ୟ (ଅର୍ଥ), ୨-ବାଚକ (ଶବ୍ଦ), ଓ ୩-ସମିଶ୍ରଃ ଅର୍ଥାତ୍ ବ୍ୟଙ୍ଗ୍ୟ ଅର୍ଥ ଏବଂ ୪-କାବ୍ୟର ଆତ୍ମାସ୍ୱରୂପ ଚାରି ବ୍ୟାପାର ଏ ସବୁ ହେଁ ଧ୍ୱନି ।)

୧୦୧ । ନ ଚୈବଂ ବିଧସ୍ୟ ଧ୍ୱନେର୍ବକ୍ଷ୍ୟମାଣପ୍ରଭେଦସ୍ତଦ୍-
ଭେଦସଙ୍କଳନୟା ମହାବିଷୟସ୍ୟ ଯତ୍ ପ୍ରକାଶନମ୍,
ତଦପ୍ରସିଦ୍ଧାଲଙ୍କାରବିଶେଷମାତ୍ର ପ୍ରତିପାଦନେନ ତୁଲ୍ୟ-
ମିତି ତଦ୍ଭାବିତଚେତସାଂ ଯୁକ୍ତ ଏବାତ୍ର ସଂରମ୍ଭଃ ।

୧୦୨ । ତଦେବଂ ଧ୍ୱନେସ୍ତାବଦଭାବବାଦିନଃ ପ୍ରତ୍ୟୁକ୍ତାଃ ।

୧୦୩ । ଅସ୍ତି ଧ୍ୱନିଃ । ସ ଚାସାବବିବକ୍ଷିତବାଚ୍ୟ ବିବକ୍ଷିତାନ୍ୟ-
ପରବାଚ୍ୟଶ୍ଚେତି ଦ୍ୱିବିଧଃ ସାମାନ୍ୟେନ ।

୧୦୪ । ଅବିବକ୍ଷିତବାଚ୍ୟଧ୍ୱନିମୁଦାହରତି —

ସୁବର୍ଣ୍ଣପୁଷ୍ପାଂ ପୃଥିବୀଂ ଚିନ୍ୱନ୍ତି ପୁରୁଷାସ୍ତ୍ରୟଃ ।
ଶୂରଶ୍ଚ କୃତବିଦ୍ୟଶ୍ଚ ଯଶ୍ଚ ଜାନାତି ସେବିତୁମ୍ ॥

---

୧୦୧ । ଧ୍ୱନିର ପ୍ରଭେଦ ଓ ପ୍ରତ୍ୟେକ ଭେଦର ଭେଦ ଆଗକୁ କଳ୍ପନା କରାଯିବ । ଏତବିଧ ସକଳ ଲକ୍ଷ୍ୟବ୍ୟାପୀ ମହାବିଷୟ ଧ୍ୱନିର ପ୍ରକାଶନ, ପ୍ରସିଦ୍ଧ ଅଲଙ୍କାର ବିଶେଷ ପ୍ରତିପାଦନ ସହିତ ତୁଲ୍ୟ ନୁହେଁ ।

ଏଣୁ ଧ୍ୱନିବାଦୀ ମାନଙ୍କର ଧ୍ୱନି ପ୍ରକାଶ ପ୍ରୟାସ ଉପଯୁକ୍ତ । ( ସେମାନଙ୍କ ଠାରେ କୌଣସି ପ୍ରକାର ଈର୍ଷାଭାବ ପୋଷଣ କରିବା ଉଚିତ ନୁହେଁ ) ।

୧୦୨ । ଏହାଦ୍ୱାରା ବିବିଧ ଧ୍ୱନ୍ୟଭାବବାଦୀମାନଙ୍କୁ ଯଥାର୍ଥ ଉତ୍ତର ଦିଆଗଲା । ଅର୍ଥାତ୍ ସେମାନଙ୍କ ମତ ଖଣ୍ଡନ କରାଗଲା ।

୧୦୩ । ଅତଏବ ଧ୍ୱନି ଅଛି, ଏବଂ ସେ ଧ୍ୱନି ସାମାନ୍ୟତଃ ଅବିବକ୍ଷିତ ବାଚ୍ୟ ଓ ବିବକ୍ଷିତାନ୍ୟପରବାଚ୍ୟ ଭେଦରେ ଦ୍ୱିବିଧ । ଯହିଁରେ ବାଚ୍ୟ ଅର୍ଥ ବକ୍ତାର ଅଭିପ୍ରେତ ହୋଇ ନ ଥାଏ, ତାହା ଅବିବକ୍ଷିତ ବାଚ୍ୟ ଅର୍ଥାତ୍ ଲକ୍ଷଣାମୂଳ । ଯହିଁରେ ବାଚ୍ୟ ଅର୍ଥଟି ବିବକ୍ଷିତ କିନ୍ତୁ ସେ ଅନ୍ୟ ପର (ବ୍ୟଙ୍ଗ୍ୟ ପର) ହୁଏ, ସେ ବିବକ୍ଷିତାନ୍ୟପରବାଚ୍ୟ ଅର୍ଥାତ୍ ଅଭିଧାମୂଳ ଧ୍ୱନି ।

୧୦୪ । ଅବିବକ୍ଷିତବାଚ୍ୟ ଧ୍ୱନିର ଉଦାହରଣ :—

ବଳବାନ୍ ଲୋକ, ବିଦ୍ୱାନ ଲୋକ ଓ ଯେ ସେବାକର ଜାଣେ ଏହି

୧୦୬ । ଦ୍ୱିତୀୟସ୍ତ୍ୱସ୍ୟାପି —

" ଶିଖରିଣି କ୍ୱ ନୁ ନାମ କିୟଚ୍ଚିରଂ
କମଭିଧାନ- ମସାବକରୋତ୍ତପଃ ।
ସୁମୁଖି ! ଯେନ ତବାଧର ପାଟଳଂ
ଦଶତି ବିମ୍ବଫଳଂ ଶୁକଶାବକଃ " ॥

---

ତନି ଜଣ ଲୋକ ସୁବର୍ଣ୍ଣ ପୁଷ୍ପ ପୃଥିବୀରୁ ଚୟନ କରନ୍ତି ।

ଏଠାରେ ବାଚ୍ୟ ଅର୍ଥ ପୃଥିବୀର ସୁବର୍ଣ୍ଣ ପୁଷ୍ପ ଚୟନ, ସ୍ୱାର୍ଥରେ ଅସମ୍ଭବ ହେତୁ ମୂଳଅସମ୍ଭବିଭଞ୍ଜନତା ରୂପ ଅର୍ଥରେ ପରିଣତ ହେଲା । ଏ ଲକ୍ଷଣା-ର ପ୍ରୟୋଜନ ହେଉଛନ୍ତି ଶୂର, କୃତବିଦ୍ୟ ଓ ସେବକ ମାନଙ୍କର ପ୍ରାଶସ୍ତ୍ୟ । ଯାହା ଶବ୍ଦ ବାଚ୍ୟ ନ ହୋଇ ବ୍ୟଞ୍ଜନା ବୃତ୍ତିରେ ପ୍ରକାଶିତ ହୋଇ ଅଛି । ଏଠାରେ ଶବ୍ଦ ପ୍ରଥମତଃ ବ୍ୟଞ୍ଜକ, ଅର୍ଥ ସହକାରୀ ଭାବରେ ବ୍ୟଞ୍ଜକ । ଏଥିରେ ବାଚ୍ୟ ଅର୍ଥ ବିବକ୍ଷିତ ହୋଇ ନଥିବାରୁ ଏହା ଅବିବକ୍ଷିତ ବାଚ୍ୟ ଧ୍ୱନି ।

୧୦୪ । ବିବକ୍ଷିତାନ୍ୟପର ବାଚ୍ୟ ଧ୍ୱନିର ଉଦାହରଣ :—

ନାୟକ ନାୟିକାକୁ ବିମ୍ବଫଳ ଦଶନ କରୁଥିବା ଶୁକକୁ ନିର୍ଦ୍ଦେଶ କରି କହୁଛନ୍ତି, ହେ ତରୁଣି ! ଏହି ଶୁକଶାବକ କେଉଁ ପର୍ବତରେ କେତେ ଦୀର୍ଘକାଳ ପର୍ଯ୍ୟନ୍ତ କି ନାମକ ତପସ୍ୟା କରିଥିଲା. ଯାହା ଦ୍ୱାରା କି ସେ ତୁମ୍ଭ ଅଧର ପରି ପାଟଳ ବର୍ଣ୍ଣ ହୋଇଥିବା ବିମ୍ବଫଳକୁ ଦଂଶନ କରୁଅଛି—(ଆସ୍ୱାଦନ କରୁଛି)

ତୁମ୍ଭ ଅଧରର ପାଟଳ ବର୍ଣ୍ଣରେ ନିଜକୁ ସମୃଦ୍ଧ ମନେ କରୁଥିବା ବିମ୍ବ-ଫଳକୁ ତୁମ୍ଭ ସମ୍ବନ୍ଧରୁ ଶୁକ ଆସ୍ୱାଦନ କରୁଛି । ଏଣୁ ସେ ଶ୍ରୀଶୈଳାଦି ବିଲ-କ୍ଷଣ କେଉଁ ପର୍ବତରେ, ଓ ଦିବ୍ୟ କଳ୍ପ ସହସ୍ରାଦି କାଳରେ ପଞ୍ଚାଗ୍ନି ତପ ପ୍ରଭୃତିରୁ ବିଲକ୍ଷଣ ତପସ୍ୟା କରିଛି ।

ଏଠାରେ ନାୟକ ନାୟିକାକୁ ଏପରି କହିବାଦ୍ୱାରା ଅନୁରାଗବନ୍ତ— ନାୟକକୃତ ତୁମ୍ଭର ଅଧରାସ୍ୱାଦନ ପୁଣ୍ୟାତିଶୟ ଲଭ୍ୟ ବୋଲି "ନାୟିକା ସ୍ତୁତି" ବ୍ୟଙ୍ଗ୍ୟ ହୋଇଅଛି । ଏହି "ସ୍ତୁତି" ବାଚ୍ୟ ଠାରୁ ପ୍ରଧାନ ହୋଇଥିବାରୁ ଧ୍ୱନି ଏଠାରେ ମଧ୍ୟ ଶବ୍ଦ ଅର୍ଥ ବ୍ୟଞ୍ଜନାବୃତ୍ତି ଓ ବ୍ୟଙ୍ଗ୍ୟ ସ୍ତୁତିରେ ଧ୍ୱନି ।

୯୦୭ । ଯଦପ୍ୟୁକ୍ତଂ ଭକ୍ତିର୍ଧ୍ୱନିରତ, ତତ୍ ପ୍ରତିସମାଧୀୟତେ ।

୧୦୭ । ଭକ୍ତ୍ୟା ବିଭର୍ତ୍ତି ନୈକତ୍ୱଂ ରୂପଭେଦାଦୟଂ ଧ୍ୱନିଃ ।
ଅୟମୁକ୍ତପ୍ରକାରେ ଧ୍ୱନିର୍ଭକ୍ତ୍ୟା ନୈକତ୍ୱଂ ବିଭର୍ତି ଭିନ୍ନ-
ରୂପତ୍ୱାତ୍ ॥

୧୦୮ । ବାଚ୍ୟବ୍ୟତିରେକେଣ ସ୍ୟାର୍ଥସ୍ୟ ବାଚ୍ୟବାଚକାଭ୍ୟାଂ
ତାତ୍ପର୍ଯ୍ୟେଣ ପ୍ରକାଶନଂ ଯତ୍ର ବ୍ୟଙ୍ଗ୍ୟପ୍ରାଧାନ୍ୟେ ସ ଧ୍ୱନିଃ ।
ଉପଚାରମାତ୍ରଂ ତୁ ଭକ୍ତିଃ ॥

୧୦୯ । ମା ଚୈତତ୍ ସ୍ୟାଦ୍ ଭକ୍ତିର୍ଲକ୍ଷଣଂ ଧ୍ୱନେରିତ୍ୟାହ--

---

୧୦୬ । ଭକ୍ତିବାଦୀମାନେ ଯାହାକୁ ଭକ୍ତିକୁ ଧ୍ୱନି ବୋଲି କହନ୍ତି, ତାହାର
ପ୍ରତିସମାଧାନ (ଖଣ୍ଡନ) କରାଯାଉଛି :—

୧୦୭ । ଏହି ଧ୍ୱନି ସ୍ୱରୂପତଃ ଭକ୍ତି ଠାରୁ ଭିନ୍ନ । ଏଣୁ ଭକ୍ତି ଧ୍ୱନି ନୁହେ ।

୧୦୮ । ଯେଉଁଠି ବାଚ୍ୟ ବାଚକ ଦୁହେଁ ବ୍ୟଙ୍ଗ୍ୟପର ହୋଇ (ତାତ୍ପର୍ଯ୍ୟେଣ) ବାଚ୍ୟ ଅର୍ଥରୁ ପୃଥଗ୍ଭୂତ ବ୍ୟଙ୍ଗ୍ୟ ଅର୍ଥକୁ ପ୍ରକାଶ କରନ୍ତି, ସେଠାରେ ଯେ ବ୍ୟଙ୍ଗ୍ୟ ଅର୍ଥ ପ୍ରଧାନ ହୋଇଥିଲେ ଧ୍ୱନି ହୁଏ । କିନ୍ତୁ ଭକ୍ତି କେବଳ ଆରୋପ (ଉପଚାର) ମାତ୍ରକ । ଯଥା "ଗଙ୍ଗାୟାଂ ଘୋଷଃ" ଏହି ସ୍ଥଳରେ ତଟରେ ଗଙ୍ଗାର ଆରୋପ ମାତ୍ର ହୋଇଅଛି । ଅତଏବ ଭକ୍ତି ଠାରୁ ଧ୍ୱନି ସ୍ୱରୂପତଃ ଭିନ୍ନ ହୋଇ ଥିବାରୁ ଭକ୍ତି ଧ୍ୱନି ହୋଇ ନ ପାରେ ॥

(ଲକ୍ଷଣାର ପ୍ରୟୋଜନ ଯଥା "ଗଙ୍ଗାୟାଂ ଘୋଷଃ" ଇତ୍ୟାଦିରେ ଶୀତତ୍ୱ ପାବନତ୍ୱାଦି, ଧ୍ୱନିର ବିଷୟ । କିନ୍ତୁ ଲକ୍ଷଣା ଧ୍ୱନି ନୁହେ । ଭକ୍ତି ହେଉଛି ଲକ୍ଷଣାର ନାମାନ୍ତର, ଏଣୁ ସେ ଧ୍ୱନି ନୁହେ । କାରଣ ଲକ୍ଷଣା ଓ ଲକ୍ଷଣାର ପ୍ରୟୋଜନ ଏ ଉଭୟ କିପରି ଏକବସ୍ତୁ ହେବେ ? ଏଣୁ ଭକ୍ତି ଧ୍ୱନି ନୁହେ । ).

୧୦୯ । ଆଉ ପୁଣି ଏହି ଭକ୍ତି ଧ୍ୱନିର ଲକ୍ଷଣ ନୁହେ ।

୧୧୦ । ଅତିବ୍ୟାପ୍ତେରଥାବ୍ୟାପ୍ତେର୍ନ ଚାସୌ
ଲକ୍ଷ୍ୟତେ ତୟା । ୧୪

ନୈବ ଭକ୍ତ୍ୟା ଧ୍ୱନିର୍ଲକ୍ଷ୍ୟତେ । କଥମ୍ ? ଅତିବ୍ୟାପ୍ତେରବ୍ୟାପ୍ତେଶ୍ଚ ॥ ତତ୍ରାତିବ୍ୟାପ୍ତିର୍ଧ୍ୱନିବ୍ୟତିରେକେଽପି ବିଷୟେ ଭକ୍ତେଃ ସମ୍ଭବାତ୍ ॥

୧୧୧ । ଯତ୍ର ହି ବ୍ୟଙ୍ଗକୃତଂ ମହତ୍ ସୌଷ୍ଠବଂ ନାସ୍ତି ତତ୍ରାପ୍ୟୁପଚରିତଶବ୍ଦବୃତ୍ତ୍ୟା ପ୍ରସିଦ୍ଧ୍ୟନୁରୋଧ ପ୍ରବର୍ତ୍ତିତବ୍ୟବହାରାଃ କବୟୋ ଦୃଶ୍ୟନ୍ତେ ।

୧୧୨ । ଯଥା :—

ପରିମ୍ଲାନଂ ପୀନସ୍ତନଜଘନସଙ୍ଗାଦୁଭୟତ୍
ସ୍ତନୋର୍ମଧ୍ୟସ୍ୟାନ୍ତଃ ପରିମିଳନମପ୍ରାପ୍ୟ ହରିତମ୍ ।

---

୧୧୦ । ଅତିବ୍ୟାପ୍ତି ଓ ଅବ୍ୟାପ୍ତି ଦୋଷ ହେତୁ ଧ୍ୱନି ଭକ୍ତି ଦ୍ୱାରା ଲକ୍ଷିତ ହେଉନାହିଁ । ଅଲକ୍ଷ୍ୟରେ ଲକ୍ଷଣର ପ୍ରାପ୍ତି ଅତିବ୍ୟାପ୍ତି ଯଥା — ଧ୍ୱନି ନଥିବା ସ୍ଥଳରେ ଭକ୍ତି ଅଛି । ଲକ୍ଷ୍ୟରେ ଲକ୍ଷଣର ଅପ୍ରାପ୍ତି ଅବ୍ୟାପ୍ତି । ଯଥା— ଯେଉଁ ସ୍ଥାନରେ ଧ୍ୱନି ଅଛି ସେଠାରେ ଭକ୍ତି ନାହିଁ ।

ଅତିବ୍ୟାପ୍ତି ସ୍ଥଳ ଯଥା :—

୧୧୧ । ଯେଉଁଠାରେ ବ୍ୟଙ୍ଗ୍ୟ (ପ୍ରୟୋଜନ) ର ଗୁରୁତ୍ୱାତିଶଯ୍ୟ (ମହତ୍ ସୌଷ୍ଠବ) ନାହିଁ, ସେଭଳି ସ୍ଥଳରେ ମଧ୍ୟ କବିମାନେ ଲକ୍ଷଣାବୃତ୍ତି ବ୍ୟବହାର କରି ପରମ୍ପରା ରକ୍ଷା କରି ଥାଆନ୍ତି । (ଯଦି ଲକ୍ଷଣାର ଧ୍ୱନି ପ୍ରକାଶ ଉଦ୍ଦେଶ୍ୟ ଥାଆନ୍ତା, ତେବେ ଧ୍ୱନି ନଥିବା ସ୍ଥଳରେ କବିମାନେ ଲକ୍ଷଣା ବ୍ୟବହାର କରୁନଥାନ୍ତେ । )

ମର୍ମ — ଭକ୍ତି ବା ଲକ୍ଷଣା ବୃତ୍ତି ଧ୍ୱନି ନୁହେଁ, କିମ୍ବା ତାହା ଦ୍ୱାରା ଧ୍ୱନି ଲକ୍ଷିତ ହେଉ ନାହିଁ ॥

୧୧୨ । ଯଥା ରତ୍ନାବଳୀରେ ବିରହ ତାପ ବର୍ଣ୍ଣନା ଶ୍ଳୋକ —
ପଦ୍ମ ପତ୍ରର ଶେଯଟି ପୃଥୁଳ ସ୍ତନ ଓ ପୃଥୁଳ ଜଘନ ଦ୍ୱାରା ଘୃଷି ହୋଇ

ଇଦଂ ବ୍ୟସ୍ତନ୍ୟାସଂ ଶ୍ଲଥଭୁଜଲତା-କ୍ଷେପବଲନୈଃ
କୃଶାଙ୍ଗ୍ୟାଃ ସନ୍ତାପଂ ବଦତି ବିସିନୀ-ପତ୍ରଶୟନମ୍ ॥

୧୧୩ । ଯଥା—

ଚୁମ୍ବିଜ୍ଜଇ ଅସହୁତ୍ତଂ ଅବରୁନ୍ଧିଜ୍ଜଇ ସହସ୍ସହୁତ୍ତମ୍ମି ।
ବିରମିଅ ପୁଣୋ ରମିଜ୍ଜଇ ପିଓ ଜଣୋ ଣତ୍ଥି
ପୁନରୁତ୍ତମ୍ ॥

ଶତକୃତ୍ୱୋଽବରୁଧ୍ୟତେ ସହସ୍ରକୃତ୍ୱଶ୍ଚୁମ୍ବ୍ୟତେ ।
ବିରମ୍ୟ ପୁନାରମ୍ୟତେ ପ୍ରିୟୋ ଜନୋ
ନାସ୍ତି ପୁନରୁକ୍ତମ୍ [ ଇତଚ୍ଛାୟା ]

---

ମଳିନ ହୋଇଅଛି । ଶଯ୍ୟାର ମଧ୍ୟ ଓ ଅନ୍ତ ଦୁଇ ତରଫରେ ଅଙ୍ଗ ସମ୍ପର୍କ ନ ପାଇ ପତ୍ର ମାନଙ୍କର ସ୍ୱାଭାବିକ ହରିତ ବର୍ଣ୍ଣ ( ଅକ୍ଷୁର୍ଣ୍ଣ ) ରହିଅଛି । ଶକ୍ତ ଅଭାବରୁ ଶ୍ଲଥ (ଢିଲା ପଡ଼ିଥିବା) ଭୁଜଲତାଦ୍ୱୟର ପ୍ରକ୍ଷେପ ଓ ଚାଳନାରେ ପତ୍ର ଗୁଡ଼ିକ ଓଲଟ ପାଲଟ ହୋଇ ଯାଇଅଛି । ମୋଟ ଉପରେ ପଦ୍ମପତ୍ର ଶଯ୍ୟାଟି କୃଶାଙ୍ଗୀର ସନ୍ତାପକୁ କହି ଦେଉଅଛି ।

ଏଠାରେ ଶଯ୍ୟାର କଥନ (ବଦତି) ଲାକ୍ଷଣିକ ଶବ୍ଦ । ସେ ଶବ୍ଦର ଲକ୍ଷ୍ୟାର୍ଥ ହେଉଛି ଜ୍ଞାପନ । " ସ୍ଫୁଟୀ କରଣ " ହେଉଛି ଲକ୍ଷଣାର ପ୍ରୟୋଜନ । ଏ ପ୍ରୟୋଜନରେ ଗୂଢ଼ତା ନ ଥିବାରୁ ଏହା ଧ୍ୱନି ନୁହେ ॥

୧୧୩ ଯଥା —

ନାୟିକା ତାହାର ପ୍ରିୟକୁ ଶତବାର ଚୁମ୍ବନ କରୁଛି ଓ ସହସ୍ର ବାର ଆଲିଙ୍ଗନ ( ଅବରୋଧ ) କରୁଛି, ରମଣ କରି ସାରିବା ପରେ ମଧ୍ୟ ପୁନର୍ବାର ରମଣ କରୁଛି । ଏଥିରେ ପୁନରୁକ୍ତି ନାହିଁ ।

ଏଠାରେ ଚୁମ୍ବନାଦିର ଉକ୍ତି ସମ୍ଭାବନା ନ ଥିବାରୁ ପୁନରୁକ୍ତି ଶବ୍ଦ ସ୍ୱାର୍ଥ ତ୍ୟାଗ କରି ଲକ୍ଷଣା ବୃତ୍ତିରେ ଅନୁପାଦେୟତାରୂପ ଅର୍ଥକୁ ବୁଝାଉଛି । ଏଠାରେ 'ଅଧିକ ଫଳଶାଳିତା", ଲକ୍ଷଣାର ପ୍ରୟୋଜନ । ଏହି ପ୍ରୟୋଜନ ରୂପକ ବ୍ୟଙ୍ଗ୍ୟ ମଧ୍ୟ ଧ୍ୱନି ନୁହେ ।

୧୧୪ । କୁବିଆଓ ପସଣ୍ଣାଓ ଓରୁଣ୍ଣମୁହୀଓ ବିହସମାଣାଓ ।
ଜହ ଗହିଓ ତହ ହିଅଅଂ ହରନ୍ତି ଉଚ୍ଛିନ୍ନମହିଳାଓ ॥
କୁପିତାଃ ପ୍ରସନ୍ନା ଅବରୁଦିତ-ବଦନା ବିହସନ୍ତ୍ୟଃ ।
ଯଥା ଗୃହୀତାସ୍ତଥା ହୃଦୟଂ ହରନ୍ତି ସ୍ୱୈରିଣ୍ୟୋ ମହିଳାଃ ।
[ ଇତିଚ୍ଛାୟା ]

୧୧୫ । ତଥା—
ଅଜ୍ଜାଏଁ ପହାରୋ ଣବଲଦାଏ ଦିଣ୍ଣୋ ପିଏଣ
ଥଣବଟ୍ଠେ ମିଉଓ ବି ଦୂସହୋ ବ୍ବିଅ ଜାଓ ହିଅଏ-
ସବକ୍କୀଣମ୍ ।
ଆର୍ଯ୍ୟାୟାଃ ପ୍ରହାରୋ ନବଲତୟା ଦତ୍ତଃ ପ୍ରିୟେଣ
ସ୍ତନପୃଷ୍ଠେ । ମୃଦୁକୋଽପି ଦୁଃସହ ଇବ ଜାତୋ
ହୃଦୟେ ସପତ୍ନୀନାମ୍ ॥ ( ଇତିଚ୍ଛାୟା ) ॥

---

୧୧୪ । ସ୍ୱୈରିଣୀ ମହିଳା ମାନେ କୁପିତା ହୋଇଥାନ୍ତୁ ବା ପ୍ରସନ୍ନା ହୋଇଥାନ୍ତୁ, କାନ୍ଦୁଥାନ୍ତୁ ବା ହସୁଥାନ୍ତୁ ତାଙ୍କୁ ଗ୍ରହଣ କଲା ମାତ୍ରେ ସେମାନେ ହୃଦୟ ହରଣ କରି ନିଅନ୍ତି ।

ଏଠାରେ ଗ୍ରହଣ ଶବ୍ଦର "ଉପାଦାନ" ଲକ୍ଷ୍ୟାର୍ଥ ଓ ହରଣ ଶବ୍ଦର " ତଦଧୀନତା ପ୍ରାପ୍ତି ଲକ୍ଷ୍ୟାର୍ଥ ", ଏବଂ ଏଥି ଜନେ ଅନୁସାତ୍ କରଣ ଓ " ଈବଶତା " ପ୍ରୟୋଜନ । ଏ ଉଭୟ ପ୍ରୟୋଜନରେ ମଧ୍ୟ ଗୂଢ଼ତ୍ୱାଭାବ ନଥିବାରୁ ସେ ଦୁହେଁ ଧ୍ୱନି ନୁହନ୍ତି ॥

୧୧୫ । ବଲ୍ଲଭ, ସାନ ଭାର୍ଯ୍ୟାର ସ୍ତନ ଉପରେ ନୂତନ ଲତାରେ ପ୍ରହାର ଦେଲା । ସେ ପ୍ରହାର ମୃଦୁ ହେଲେ ମଧ୍ୟ ସପତ୍ନୀ ମାନଙ୍କ ହୃଦୟରେ ଦୁଃସହ ହୋଇ ପଡ଼ିଲା ।

ଏଥିରେ ଦାନ ଶବ୍ଦର ମୁଖ୍ୟାର୍ଥ ବାଧିତ ହୋଇ ଦାନ ସାଧ୍ୟ ଫଳବତ୍ତ୍ୱ ରୂପ ଅର୍ଥକୁ ଲକ୍ଷଣା ବୃତ୍ତିରେ ବୁଝାଉଛି, ପ୍ରହାରର " ଉପଭୋଗ୍ୟତା " ପ୍ରୟୋଜନ । ଏହା ମଧ୍ୟ ଅଦରଣୀୟ ହୋଇ ନଥିବାରୁ ଧ୍ୱନି ନୁହେଁ ।

୧୧୬ । ତଥା :—

ଯଗର୍ଥେ ଯଃ ପୀଡାମନୁଭବତ ଭଙ୍ଗେଽପି ମଧୁରୋ
ଯଦୀୟଃ ସର୍ବେଷାମିହଖଲୁ ବିକାରୋଽପ୍ୟଭିମତଃ ॥
ନସଂପ୍ରାପ୍ତୋବୃଦ୍ଧିଂ ଯଦ ସ ଭୃଶମକ୍ଷେତ୍ରପତିତଃ
କିମିକ୍ଷୋ ର୍ଦୋଷୋଽସୌ ନପୁନରଗୁଣାୟା ମରୁଭୁବଃ ।
ଇତ୍ୟତ୍ରେକ୍ଷୁପକ୍ଷେଽନୁଭବତି ଶବ୍ଦଃ ॥

୧୧୭ । ନଚୈବଂବିଧଃ କଦାଚିଦପି ଧ୍ୱନେର୍ବିଷୟଃ ।

---

୧୧୬ । ଯେଉଁ ଅଖୁ ପର ସକାଶେ ପୀଡା ( ପେଡ଼ା ହେବା ଲକ୍ଷଣା ) ଅନୁଭବ କରୁଛି ( ଅନ୍ୟ ପକ୍ଷରେ ) ଯେଉଁ ମହା ପୁରୁଷ ପର ସକାଶେ ପୀଡା ଅନୁଭବ କରନ୍ତି ଏବଂ ଯେ ( ଅଖୁ ଓ ମହାପୁରୁଷ ) ଭାଙ୍ଗିଗଲେ ମଧ ମଧୁର ( ମହାପୁରୁଷ ପକ୍ଷରେ ତାଙ୍କ ପ୍ରତି କୃତଘ୍ନ ଆଚରଣ କଲେ ମଧ ସେ ଅନୁକୂଳ ) ଯାହାର (ଅଖୁ ପକ୍ଷେ) ଗୁଡ଼, ଚିନି, ମିଶ୍ରି ପ୍ରଭୃତି ସବୁ ବିକାର ( ଅନ୍ୟ ପକ୍ଷରେ ) କୋପାଦି ବିକାର ମଧ ସମସ୍ତଙ୍କର ସ୍ପୃହଣୀୟ, ସେ ଅଖୁ ଯଦି ଖରାପ ଭୂମିରେ ପଡ଼ି ବଢି ନ ପାରିଲା ( ଅନ୍ୟ ପକ୍ଷରେ ) ସେ ମହାପୁରୁଷ ମନ୍ଦ ସ୍ଥାନରେ ରହିବା ହେତୁ ଅଭ୍ୟୁଦୟ — ଲାଭ କରି ନ ପାରିଲେ, ତେବେ କଅଣ ତାହା ଅଖୁର ଦୋଷ ? ( ପକ୍ଷାନ୍ତରେ ) ମହା ପୁରୁଷଙ୍କର ଦୋଷ ? କିନ୍ତୁ ନିର୍ଗୁଣ ମରୁଭୂମିର ଦୋଷ ନୁହେ ? ( ପକ୍ଷାନ୍ତରେ ) ସେ ଅସ୍ଥାନର ଦୋଷ ନୁହେ ॥ ?

ଏ ଶ୍ଲୋକରେ ଅଖୁ ପକ୍ଷରେ "ଅନୁଭବ ( ଅନୁଭବତି ) ରେ ଲକ୍ଷଣିକ" ଅନୁଭବ ଶବ୍ଦର ଅର୍ଥ, ଜ୍ଞାନ; ତାହା ଅଖୁ ପକ୍ଷେ ସମ୍ଭବ ନୁହେ । ସୁତରାଂ ପୀଡା ଅନୁଭବର "ପେଡା ହେବା ହେଉଛି ଲକ୍ଷ୍ୟାର୍ଥ, କ୍ଲାନ୍ତାବତ୍ତ୍ୱ (କଷ୍ଟପ୍ରାପ୍ତି) ପ୍ରୟୋଜନ । ତାହା ଅଦାବମ୍ବଦ-ନହେବା ହେତୁ ଧ୍ୱନି ନୁହେ ।

୧୧୭ । ଏହିପରି ଗୂଢ଼ତା ହୀନ ପ୍ରୟୋଜନ, କେବେହେଲେ ଧ୍ୱନି ହୁଅନ୍ତି ନାହିଁ ।

୧୧୮ । ଯତଃ :—

ଉକ୍ତ୍ୟନ୍ତରେଣାଶକ୍ୟଂ ଯତ୍ତଚାରୁତ୍ୱଂ ପ୍ରକାଶୟନ
ଶବ୍ଦୋ ବ୍ୟଞ୍ଜକତାଂ ବିଭ୍ରତ୍ ଧ୍ୱନ୍ୟୁକ୍ତେ ର୍ବିଷୟୀଭବେତ ॥

୧୧୯ । ଅବଗୈଦାହୃତେ ବିଷୟେ ନୋକ୍ତ୍ୟନ୍ତ-
ରାଶକ୍ୟ-ଚାରୁତ୍ୱବ୍ୟକ୍ତିହେତୁଃ ଶବ୍ଦଃ ।

୧୨୦ । କିଂଚ :— ଓଁ

ରୂଢ଼ା ଯେ ବିଷୟେଽନ୍ୟତ୍ର ଶବ୍ଦାଃ ସ୍ୱବିଷୟାଦପି ।
ଲାବଣ୍ୟାଦ୍ୟାଃ ପ୍ରଯୁକ୍ତାସ୍ତେ ନ ଭବନ୍ତି ପଦଂ ଧ୍ୱନେଃ ॥ ୧୬

---

୧୧୮ । ଯେଣୁ —

ଧ୍ୱନି ଭିନ୍ନ ଅନ୍ୟ କୌଣସି ପ୍ରକାର ଉକ୍ତିରେ ଯେଉଁ ଚାରୁତାକୁ ପ୍ରକାଶ କରି ହେବ ନାହିଁ, ତାଦୃଶ ଚାରୁତାକୁ ବ୍ୟଞ୍ଜିତ ହୋଇ ପ୍ରକାଶ କରୁଥିଲେ ଧ୍ୱନିର ବିଷୟ ହୁଏ । ( ଶବ୍ଦ, ଅର୍ଥ, ବ୍ୟଞ୍ଜନାବ୍ୟାପାର ଓ କାବ୍ୟ ସବୁରେ ଧ୍ୱନି ଶବ୍ଦ ବାଚ୍ୟ ହୋଇ ଥିବାରୁ ଏଠାରେ କେବଳ "ଶବ୍ଦ ଧ୍ୱନିର ବିଷୟ ହୁଏ ବୋଲି କୁହା ଯାଇଥିଲେ ମଧ୍ୟ ଉକ୍ତ ଶବ୍ଦ ଚାରିଗୋଟିକୁ ବୁଝି-ବାକୁ ହେବ । )

୧୧୯ । ଉଦାହୃତ ସ୍ଥଳ ମାନଙ୍କରେ ଅନ୍ୟ ଉକ୍ତିର ପ୍ରକାଶର ଅଯୋଗ୍ୟ ଚାରୁତ୍ୱକୁ ବ୍ୟଞ୍ଜିତ କରୁଥିବା ଭିନ୍ନ ଶବ୍ଦ ନାହିଁ ।

୧୨୦ । ଗ୍ରନ୍ଥକାର ପ୍ରୟୋଜନ ମୂଳଲକ୍ଷଣା, ଧ୍ୱନି ନୁହେ ବୋଲି କହିନ କରି ରୂଢ଼ି- ମୂଳା ଲକ୍ଷଣାକୁ ମଧ୍ୟ ଖଣ୍ଡନ କରୁ ଅଛନ୍ତି —

ଯେଉଁ ଲାବଣ୍ୟ ପ୍ରଭୃତି ଶବ୍ଦ ଲବଣ ରସ ଯୁକ୍ତତ୍ୱାଦି ନିଜ ନିଜ ଅର୍ଥକୁ ଛାଡ଼ି ରମଣୀୟତ୍ୱାଦି ଅର୍ଥରେ ରୂଢ଼ ହୋଇ ଅଛନ୍ତି, ସେହି ଶବ୍ଦ ଭିନ୍ନ ପର-ମ୍ପରା କ୍ରମେ ଖ୍ୟାତ ହୋଇ ପ୍ରୟୋଗ କରାଯାଉଅଛନ୍ତି, ତାହା ସବୁ ମଧ୍ୟ ଧ୍ୱନିର ସ୍ଥାନ ନୁହେ ॥

୧୨୧ । ତେଷୁଚୋପଚରିତଶବ୍ଦବୃତ୍ତିରସ୍ତୀତି । ତଥାବିଧେ ଚ ବିଷୟେ କ୍ୱଚିତ୍ ସମ୍ଭବନ୍ନପି ଧ୍ୱନିବ୍ୟବହାରଃ ପ୍ରକାରାନ୍ତରେଣ ପ୍ରବର୍ତ୍ତତେ । ନ ତଥାବିଧଶବ୍ଦମୁଖେନ ॥

୧୨୨ ଅପି ଚ—

ମୁଖ୍ୟାଂବୃତ୍ତିଂ ପରିତ୍ୟଜ୍ୟ ଗୁଣବୃତ୍ତ୍ୟାର୍ଥ ଦର୍ଶନମ୍ ।
ଯଦୁଦ୍ଦିଶ୍ୟ ଫଳଂ ତତ୍ର ଶବ୍ଦୋ ନୈବ ସ୍ଖଳଦ୍ଗତିଃ । ୧୭ ।

---

୧୨୧ । ଲାବଣ୍ୟ ପ୍ରଭୃତି ରୂଢ ଶବ୍ଦ ବ୍ୟବହାର କରି ଯାଇ ଥିବା ସ୍ଥଳରେ କେବଳ ଅପେକ୍ଷିତ ଗୌଣୀ ବୃତ୍ତି ରହିଅଛି ।

ଯଦି ତାଦୃଶ ସ୍ଥଳରେ ( ଶ୍ଳୋକ ମାନଙ୍କରେ ) ଧ୍ୱନି ଥିବା ସମ୍ଭବ ହୁଏ, ତେବେ ତାହା, ଭିନ୍ନ ପ୍ରକାରରେ ହେବ । ଅର୍ଥାତ୍ ସମସ୍ତ ବାଚ୍ୟାର୍ଥର ବ୍ୟଞ୍ଜକତା ହେତୁ ଧ୍ୱନି ରହି ପାରେ, କିନ୍ତୁ କେବଳ ଲାବଣ୍ୟାଦି ରୂଢ଼ ଶବ୍ଦ ଯୋଗୁଁ ଧ୍ୱନି ରହି ନ ପାରେ ॥

୧୨୨ । ଅତ୍ର ପୁଣି ଯେଉଁ ପ୍ରୟୋଜନ ( ଫଳ ) ଉଦ୍ଦେଶ୍ୟରେ ମୁଖ୍ୟ ବୃତ୍ତି (ଅଭିଧା) କୁ ପରିତ୍ୟାଗ କରି ଲକ୍ଷଣା ବୃତ୍ତି (ଭକ୍ତି ବା ଗୁଣବୃତ୍ତି) ଦ୍ୱାରା ଅର୍ଥ ପ୍ରକାଶ କରି ଯାଉଛି, ସେହି ପ୍ରୟୋଜନକୁ ବୁଝାଇବା ଲାଗି ଲକ୍ଷଣିକ ଶବ୍ଦ ବାଧିତ (ସ୍ଖଳଦ୍ଗତି) ହୁଏ ନାହିଁ :—

ଯଥା ଗଙ୍ଗା ଶବ୍ଦ ଶୀତତ୍ୱ ପାବନତ୍ୱାତିଶୟକୁ ବୁଝାଇବାରେ ବାଧିତ ନୁହେଁ ॥ ବିଶେଷ ଅର୍ଥ — ······ (ଏଣୁ ପ୍ରୟୋଜନ ପ୍ରତୀତି ପାଇଁ ପ୍ରନଷ୍ଟ ଲକ୍ଷଣା ଆଶ୍ରୟ କରି ଯାଇ ପାରିବ ନାହିଁ, କାରଣ ଏଠାରେ ଲକ୍ଷଣାର ମୂଳ ହେତୁ "ମୁଖ୍ୟାର୍ଥ ବାଧ" ହେଉ ନାହିଁ ॥

ଯଦି ଗୁରୁତ୍ୱାତିଶୟ ବିଶିଷ୍ଟ ଅର୍ଥ ପ୍ରକାଶ ପାଇଁ ଲକ୍ଷଣା କରି ଯାଏ, ଯଥା—

ଗଙ୍ଗାୟାଂ ଘୋଷଃ, ଏଠାରେ " ଶୀତତ୍ୱ ପାବନତ୍ୱାତିଶୟ ବିଶିଷ୍ଟ ତଟ " କୁ ଲକ୍ଷ୍ୟାର୍ଥ କରି ଯାଏ, ତେବେ ସେଠାରେ ଗଙ୍ଗାଦି ଶବ୍ଦ ତାଦୃଶ ଲକ୍ଷ୍ୟାର୍ଥ ବୁଝାଇବାରେ ନିଶ୍ଚୟ ସ୍ଖଳଦ୍ଗତି ହେବେ ନାହିଁ, ଏଣୁ ଲକ୍ଷଣା ଦ୍ୱାରା ଧ୍ୱନି ଅବଗତ ହୋଇ ପାରିବ । କିନ୍ତୁ ଏପରି ପ୍ରୟୋଗ କରିବା ଦୋଷ ॥ କାରଣ ପ୍ରୟୋଜନ ବିଶିଷ୍ଟ- ଲକ୍ଷ୍ୟ ଅର୍ଥକୁ ଲକ୍ଷ୍ୟ କଲେ ସେଥି ପାଇଁ ପୁଣି ପ୍ରୟୋଜନ ଏବଂ ସେ ପ୍ରୟୋଜନ ସହିତ ଅର୍ଥକୁ ଲକ୍ଷ୍ୟ କଲେ ପୁନରପି ସେଥିପାଇଁ ପ୍ରୟୋଜନ, ଏହିପରି ଉତ୍ତରୋତ୍ତର କଳ୍ପନା କରିବାରେ ଅନବସ୍ଥା ଦୋଷ ହେବ ॥ ତେଣୁ କେହି ଏପରି ସ୍ଥଳ ପ୍ରୟୋଗ କରନ୍ତି ନାହିଁ ) ।

୧୬୩ । ତଦ୍ଧ୍ୱ ଗ୍ଙ୍ଗୁରତ୍ୱାଦତଶୟବିଶିଷ୍ଟାର୍ଥପ୍ରକାଶନଲକ୍ଷଣେ ପ୍ରୟୋଜନେ କର୍ତ୍ତବ୍ୟେ ଯଦ ଶବ୍ଦସ୍ୟାମୁଖ୍ୟତା ତଦାତସ୍ୟ ପ୍ରୟୋଗେ ଦୁଷ୍ଟତୈବସ୍ୟାତ୍ । ନଚୈବମ୍ ।

୧୬୪ । ତସ୍ମାତ୍--

ବାଚକତ୍ୱାଶ୍ରୟେଣୈବ ଗୁଣବୃତ୍ତିର୍ବ୍ୟବସ୍ଥିତା ।
ବ୍ୟଞ୍ଜକତ୍ୱୈକ ମୂଳସ୍ୟ ଧ୍ୱନେଃ ସ୍ୟାଲ୍ଲକ୍ଷଣଂ କଥମ୍ ॥ ୧୮

୧୬୫ । ତସ୍ମାଦନ୍ୟୋ ଧ୍ୱନିରନ୍ୟାଚ ଗୁଣବୃତ୍ତିଃ ।

୧୬୬ । ଅବ୍ୟାପ୍ତିରପ୍ୟସ୍ୟ ଲକ୍ଷଣସ୍ୟ । ନହି ଧ୍ୱନି ପ୍ରଭେଦୋ

---

୧୬୩ ଗୁରୁତ୍ୱାତଶୟ ବଶିଷ୍ଟ ପ୍ରୟୋଜନର ଅବଗତ ନିମନ୍ତେ ଶବ୍ଦର ମୁଖ୍ୟ ଅର୍ଥ ବାଧିତ ହୁଏ ନାହିଁ (ଗଙ୍ଗାୟାଂ ଘୋଷଃ) ଏଠାରେ ଶୀତତ୍ୱପାବନତ୍ୱାଦ ବୋଧନରେ ଗଙ୍ଗା ଶବ୍ଦ ବାଧିତାର୍ଥ ନୁହେ, ଯଦ ପ୍ରୟୋଜନ ବୁଝାଇବାରେ ଲାକ୍ଷଣିକ ଶବ୍ଦ ବାଧିତାର୍ଥ ହୁଏ ( ଯଥା ଗଙ୍ଗେ ଘୋଷଃ, ଇତ୍ୟାଦ ) ତେବେ ତାଦୃଶ ପ୍ରୟୋଗ ଦୋଷଯୁକ୍ତ । କାରଣ କେବଳ ବ୍ୟଙ୍ଗ୍ୟ ଅର୍ଥ ( ପ୍ରୟୋଜନ ) କୁ ବୁଝାଇବା ପାଇଁ ଲକ୍ଷଣାବୃତ୍ତି କରାଯାଇ ଥାଏ ।

୧୬୦ । ଯେଣୁ ଲକ୍ଷଣାବୃତ୍ତି ଅଭିଧାର ପୁଚ୍ଛଭୂତା ତେଣୁ ଗୁଣବୃତ୍ତି ଲକ୍ଷଣା (ବାଚକତ୍ୱ) କୁ ଆଶ୍ରୟ କରୁଛନ୍ତି । କିନ୍ତୁ ଧ୍ୱନି ଏକମାତ୍ର ବ୍ୟଞ୍ଜକତାକୁ ଆଶ୍ରୟ କରି ପ୍ରବର୍ତ୍ତିଛି । ସୁତରାଂ ଗୁଣବୃତ୍ତି କପରି ଧ୍ୱନିର ଲକ୍ଷଣ ହେବ ?

୧୬୫ ଏଣୁ ଧ୍ୱନି ପୃଥକ୍ ଓ ଗୁଣବୃତ୍ତି ପୃଥକ୍ ।

୧୬୬ ଅବ୍ୟାପ୍ତି ସ୍ଥଳ ଯଥା:—

ପୁନଶ୍ଚ ଧ୍ୱନିକୁ ଗୁଣବୃତ୍ତି ବୋଲି କହିବାରେ ଅବ୍ୟାପ୍ତି ଦୋଷ ଘଟୁଅଛି । (ବିବକ୍ଷିତାନ୍ୟପରବାଚ୍ୟ ଧ୍ୱନି ଏବ ଧ୍ୱନିର ଅଉ ଅନେକ ପ୍ରଭେଦରେ ଲକ୍ଷଣାର ସମ୍ପର୍କ ନାହିଁ) ।

ଯଦବା ତୁମ୍ଭେ କହିବ ଯେ "ସୁବର୍ଣ୍ଣପୁଷ୍ପା" ଇତ୍ୟାଦ ସ୍ଥଳରେ ମୂଳ ଧ୍ୱନିରେ ଲକ୍ଷଣା, ଧ୍ୱନିକୁ ପ୍ରକାଶ କରୁଛି, ସୁତରାଂ ତାହା ଧ୍ୱନିର ଲକ୍ଷଣ ହେଉ, ତାହା ମଧ୍ୟ ଅବ୍ୟାପ୍ତି ଦୋଷରୁ ତ୍ରାଣ ପାଇବ ନାହିଁ

ବିବକ୍ଷିତାନ୍ୟପରବାଚ୍ୟଲକ୍ଷଣଃ, ଅନେ୍ୟଚ ବହୁବଃ ପ୍ରକାରାଃ ଭକ୍ତ୍ୟା ବ୍ୟାପ୍ୟନ୍ତେ । ତସ୍ମାଭକ୍ତିର ଲକ୍ଷଣମ୍ ॥

୧୬୭ । କସ୍ୟଚିଦ୍ ଧ୍ୱନିଭେଦସ୍ୟ ସା ତୁ ସ୍ୟାଦୁପଲକ୍ଷଣମ୍ ।

ସା ପୁନର୍ଭକ୍ତି ର୍ବକ୍ଷ୍ୟମାଣପ୍ରଭେଦମଧ୍ୟାଦନ୍ୟତମସ୍ୟ ଭେଦସ୍ୟ

---

ଲକ୍ଷରେ ଲକ୍ଷଣ ବ୍ୟାପ୍ତ ନ ହେବାକୁ ଅବ୍ୟାପ୍ତି ବୋଲଯାଏ । ଅତଏବ ଯେଉଁଠି ଯେଉଁଠି ଧ୍ୱନି ସେଇଠି ସେଇଠି ଲକ୍ଷଣା ଏହିପରି ବ୍ୟାପ୍ତି ଗ୍ରହିଲେ, ଲକ୍ଷଣା ଭକ୍ତିନୁହଁ । "ଶିଖରିଣିକ୍ୱନୁ ନାମ" ଇତ୍ୟାଦି ବିବକ୍ଷିତାନ୍ୟପର ବାଚ୍ୟ ଧ୍ୱନିରେ ଲକ୍ଷଣାର ସତ୍ତା ଦେଖାଯାଉ ନାହିଁ କିନ୍ତୁ ଧ୍ୱନି ଅଛି । ଆଉ ପୁଣି ଧ୍ୱନିର ଅନ୍ୟ ପ୍ରଭେଦ ମାନଙ୍କରେ ଲକ୍ଷଣାର ସତ୍ତା ରହୁନାହିଁ । ରସାଦି ଧ୍ୱନିରେ ଅଭିଧା ଓ ବ୍ୟଞ୍ଜନାର କ୍ରମପ୍ରତୀତି ଘଟେନ୍ତି ନାହିଁ, ଏଣୁ ତାହା ଅସଂଲକ୍ଷ୍ୟ କ୍ରମ ।

ଆଉ ପୁଣି ରସାଦି ପ୍ରତୀତି ପାଇଁ ମୁଖ୍ୟ ଅର୍ଥ ବାଧିତ ହେଉ ନାହିଁ । ( ଅଭିଧେୟାର୍ଥ ବାଧିତ ହେଲେ ପରେ ଲକ୍ଷଣା ପ୍ରବର୍ତ୍ତେ ) ଏସ୍ଥଳରେ କାବ୍ୟର ମୁଖ୍ୟ ଅର୍ଥ ବିଭାବାଦିଙ୍କୁ ବାଧିତ କରି ଭକ୍ତି ପ୍ରବର୍ତ୍ତିତ କରିବା ହାସ୍ୟକର ବ୍ୟାପାର, ସୁତରାଂ ଏହା ଅସମ୍ଭବ ।

ଅତଏବ ଅତିବ୍ୟାପ୍ତି ଓ ଅସମ୍ଭବ, ଦ୍ୱିବିଧ ଦୋଷଯୁକ୍ତ ହେତୁ ଭକ୍ତି ଧ୍ୱନିର ଲକ୍ଷଣ ନୁହେଁ ।

" (ସୁବର୍ଣ୍ଣପୁଷ୍ପା" ଇତ୍ୟାଦି ଅବିବକ୍ଷିତ ବାଚ୍ୟଧ୍ୱନି ସ୍ଥଳରେ ଲକ୍ଷଣା ଦ୍ୱାରା ବ୍ୟଙ୍ଗ୍ୟ ବୋଧ ହେଉଛି ବୋଲି ଯାହା କୁହାଗଲା ତାହା "ତୁଷ୍ୟତୁ ଦୁର୍ଜନଃ" ନ୍ୟାୟ, ବସ୍ତୁତଃ ସେଠାରେ ମଧ୍ୟ ଲକ୍ଷଣା ବ୍ୟଙ୍ଗବୋଧିକା ନୁହେ । କାରଣ ମୁଖ୍ୟାର୍ଥ ବଧାଦି ଲକ୍ଷଣା ସାମଗ୍ରୀକୁ ଅପେକ୍ଷା ନକରି ସ୍ୱତ ସେଠାରେ ବ୍ୟଙ୍ଗ୍ୟାର୍ଥ ଉଦ୍ଭାସିତ ହେଉଅଛି । ଯଥା "ଗଙ୍ଗାୟାଂ ଘୋଷଃ" ଏଥିରେ ଗଙ୍ଗାଶବ୍ଦ "ଶୀତତ୍ୱ ପାବନତ୍ୱାତିଶୟ" ବ୍ୟଙ୍ଗକୁ ସ୍ୱତଃ ବୁଝାଏ ॥ ଏଠାରେ ତଟରୂପ ଅର୍ଥପାଇଁ କେବଳ ଲକ୍ଷଣା କିନ୍ତୁ ବ୍ୟଙ୍ଗରୂପ ପ୍ରୟୋଜନ ପ୍ରତୀତି ପାଇଁ ନୁହେଁ ) ॥

୧୬୭ । ଭକ୍ତିଧ୍ୱନିର କୌଣସି ଏକ ପ୍ରଭେଦର ( ଅବିବକ୍ଷିତ ବାଚ୍ୟର ) ଉପଲକ୍ଷଣ ହେଉ ?

ଯଦ ନାମୋପଲକ୍ଷଣତୟା ସମ୍ଭାବ୍ୟେତ, ଯଦ ଚ ଗୁଣବୃ- ତ୍ତ୍ୟୈବ ଧ୍ୱନିର୍ଲକ୍ଷ୍ୟତ ଇତ୍ୟୁଚ୍ୟେତ, ତଦଭିଧାବ୍ୟାପାରେଣ ତଦ୍ଗତରେ୍ୱଃଲଂକାରବର୍ଗଃ ସମଗ୍ର ଏବ ଲକ୍ଷିତ ଇତ ପ୍ରତ୍ୟେକମଲଂକାରାଣାଂ ଲକ୍ଷଣକରଣବୈୟର୍ଥ୍ୟପ୍ରସଙ୍ଗଃ ।

୧୨୮ କ୍ରଂଚ –

**ଲକ୍ଷଣେଽନ୍ୟୈଃ କୃତେ ଚାସ୍ୟ ପକ୍ଷସଂସିଦ୍ଧିରେବ ନଃ ॥ ୧୯**

---

"ସ୍ୱ ବୋଧକତ୍ୱେସତି ସ୍ୱେତରବୋଧକତ୍ୱମ୍ ଉପଲକ୍ଷଣମ୍" ଉପଲକ୍ଷଣ ନିଜକୁ ବୁଝାଇବା ସଙ୍ଗେ ସଙ୍ଗେ ନିଜ ଭିନ୍ନ ଅନ୍ୟକୁ ମଧ୍ୟ ବୁଝାଇଥାଏ । ଏହି ରୀତିରେ ଉକ୍ତ ଲକ୍ଷ୍ୟାର୍ଥକୁ ବୁଝାଇବା ସଙ୍ଗେ ସଙ୍ଗେ, ବ୍ୟଙ୍ଗ୍ୟ ପ୍ରୟୋଜନକୁ ମଧ୍ୟ ବୁଝାଉ" ଏପରି ଯଦି ସମ୍ଭାବନା କରିବ, କିମ୍ବା ଉକ୍ତଦ୍ୱାରା ଧ୍ୱନି ଲକ୍ଷିତ ହେଉଛି ବୋଲି ଯଦି କହିବ, ତେବେ ତାହା ହେବ ନାହିଁ ।

କାରଣ ଅଭିଧାବ୍ୟାପାରରେ ତ ଧ୍ୱନିଭିନ୍ନ—

( ତଦ୍ଗତର ) ସମଗ୍ର ଅଳଙ୍କାରବର୍ଗ ଲକ୍ଷିତ ହେଉ ଅଛନ୍ତି, ଅର୍ଥାତ୍ ବାଚ୍ୟବାଚକଭାବରେ ଅଳଙ୍କାରମାନଙ୍କରେ ଓତପ୍ରୋତଭାବ ରହିଅଛି ; ତେବେ ବୈୟାକରଣ ଓ ମୀମାଂସକମାନଙ୍କ ଦ୍ୱାରା ନିରୂପିତ ଅଭିଧାବୃତ୍ତି ତ ସବୁ-ଅଳଙ୍କାରମାନଙ୍କୁ ବୁଝାନ୍ତି, ଆଳଙ୍କାରିକମାନେ କାହିଁକି ବୃଥାରେ ପ୍ରତ୍ୟେକ ଅଳଙ୍କାରର ଭିନ୍ନ ଭିନ୍ନ ଲକ୍ଷଣ କରୁଅଛନ୍ତି ? 'ଅତଏବ ଉକ୍ତ ଧ୍ୱନିର ଲକ୍ଷଣ ବା ଉପଲକ୍ଷଣ ବୋଲି ନେଇ ଧ୍ୱନିର ସ୍ୱତନ୍ତ୍ର ଲକ୍ଷଣ ନିର୍ମାଣରେ ଚେଷ୍ଟା କରିବା ଉଚିତ ନୁହେ ॥

୧୨୮ । ଅଥପୁଣି—

ଯଦିବା କହିବସେ ଅନ୍ୟମାନେତ ଧ୍ୱନିର ଲକ୍ଷଣ ନିର୍ମାଣ କରିଅଛନ୍ତି, 'ତୁମ୍ଭେ କାହିଁକି ପିଷ୍ଟପେଷଣରୂପରେ ବୃଥା ଚେଷ୍ଟା କରୁଛ ? ତେବେ ଆମ୍ଭର ମତ (ପକ୍ଷ) ସିଦ୍ଧହେଲା, ଯେଣୁ "ଧ୍ୱନିଅଛି" ଏହାହିଁ ଆମ୍ଭର ଅଭିମତ ॥ ତାହା

କୃତେଽପି ବା ପୂର୍ବମେବାନୌ—ଧ୍ୱନିଲକ୍ଷଣେ ପକ୍ଷ-ସଂସିଦ୍ଧିରେବ ନଃ । ଯସ୍ମାଦ୍ ଧ୍ୱନିରସ୍ତୀତି ନଃ ପକ୍ଷଃ । ସ ଚ ପ୍ରାଗେବ ସଂସିଦ୍ଧ ଇତ ଅଯତ୍ନ ସମ୍ପନ୍ନ-ସମୀହିତାର୍ଥାଃ ସଂବୃତ୍ତାଃ ସ୍ମଃ ॥

୧୨୯ । ଯେଽପି ସହୃଦୟହୃଦୟସମ୍ବେଦ୍ୟମନାଖ୍ୟେୟ-ମେବ ଧ୍ୱନେରାତ୍ମାନମାମ୍ନାସିଷୁସ୍ତେଽପି ନ ପରୀକ୍ଷ୍ୟ,ବାଦିନଃ

୧୩୦ । ଯତ ଉକ୍ତ୍ୟା ନୀତ୍ୟା ବକ୍ଷ୍ୟମାଣୟା ଚ ଧ୍ୱନେଃ ସାମାନ୍ୟବିଶେଷଲକ୍ଷଣେ ପ୍ରତିପାଦିତେଽପି ଯଦ୍ୟନାଖ୍ୟେୟ-ତ୍ୱଂ ତତ୍ ସର୍ବେଷାମେବ ବସ୍ତୂନାଂ ତତ୍ ପ୍ରସକ୍ତମ୍ ।

---

ଯାହା ପୂର୍ବରୁ ସିଦ୍ଧହୋଇ ରହିଛି ତେବେ ବିନା ଯତ୍ନରେ ଆମ୍ଭର ମନୋରଥ ପୂର୍ଣ୍ଣ ହେଲା ॥

୧୨୯ । ଯେଉଁମାନେ କହନ୍ତି କି ଧ୍ୱନି କେବଳ ସହୃଦୟହୃଦୟୈକ-ଗୋଚର, କିନ୍ତୁ ବଚନର ବିଷୟ ନୁହେ, ସେମାନେ ବସ୍ତୁତଃ ପରୀକ୍ଷା ପୂର୍ବକ କହୁ ନଥାନ୍ତି ।

୧୩୦ କାରଣ ଆମ୍ଭେ ଏହି ଗ୍ରନ୍ଥରେ ପ୍ରଥମ ଉଦ୍ୟୋତରେ ଧ୍ୱନିର ସାମାନ୍ୟ ଲକ୍ଷଣ "ଯତ୍ରାର୍ଥଃ ଶବ୍ଦୋ ବା" ପ୍ରତିପାଦନ କରି ଅଛୁଁ, ଏବଂ ଦ୍ୱିତୀୟୋଦ୍ୟୋତରେ ଧ୍ୱନିର ଅବାନ୍ତର ପ୍ରଭେଦ ସଂକଳନରୂପ ବିଶେଷ ଲକ୍ଷଣ ପ୍ରତିପାଦନ କରିବୁଁ । ଉଭୟଥା ଲକ୍ଷଣ କଲେ ମଧ୍ୟ ଯଦି ଧ୍ୱନିକୁ ଅନିର୍ବଚନୀୟ ବୋଲି କୁହାଯିବ, ତେବେ ସମସ୍ତ ବସ୍ତୁ ଲକ୍ଷଣରେ ମଧ୍ୟ ସେହି ଦଶା ଘଟିବ, ଅର୍ଥାତ୍ ଯେତେ ବୁଝାଇଲେ ମଧ୍ୟ ବୁଝାଯାଇ ଥିଲେ ମଧ୍ୟ "ବୁଝା ଯାଉନାହିଁ ବୋଲି କହିବା ।" "ଗଜନିମୀଳନ" ସଦୃଶ ।

୧୩୧ । ଯତ୍ତ ପୁନର୍ଧ୍ୱନେରତିଶୟୋକ୍ତ୍ୟାଽନୟା କାବ୍ୟାନ୍ତରାତିଶାୟି ତୈଃ ସ୍ୱରୂପମାଖ୍ୟାୟତେ ତତ୍ ତତୋଽପି ଯୁକ୍ତାଭିଧାୟିନ ଏବ ॥

---

୧୩୧ । ଯତ୍ତ ଏହି ଅନାଖ୍ୟେୟତାବାଦୀମାନେ କହିବେ—ଧ୍ୱନିହୀନ ଅନ୍ୟ ଶବ୍ଦାର୍ଥ କାବ୍ୟ ଅପେକ୍ଷା ଧ୍ୱନିକାବ୍ୟର ମହତ୍ତ୍ୱ ପ୍ରତିପାଦନ ପାଇଁ ଆମ୍ଭେମାନେ ଅତିଶୟୋକ୍ତି ଭଙ୍ଗୀରେ ଧ୍ୱନିକୁ ଅନାଖ୍ୟେୟ ସ୍ୱରୂପ ବୋଲି କହୁଅଛୁଁ, ତାହାହେଲେ ସେମାନେ ହେଉଛନ୍ତି ଯଥାର୍ଥବକ୍ତା (ଯୁକ୍ତାଭିଧାୟୀ) କାରଣ ଆମ୍ଭର ମଧ୍ୟ ତାହାହିଁ ଅଭିପ୍ରାୟ ॥

ଇତି ପ୍ରଥମ ଉଦ୍ୟୋତଃ ।

# ଦ୍ୱିତୀୟ ଉଦ୍ୟୋତଃ



୧ । ଏବମବିବକ୍ଷିତବାଚ୍ୟ-ବିବକ୍ଷିତାନ୍ୟପରବାଚ୍ୟତ୍ୱେନ ଧ୍ୱନିର୍ଦ୍ୱିପ୍ରକାରଃ ପ୍ରକାଶିତଃ । ତତ୍ରାଽବିବକ୍ଷିତବାଚ୍ୟସ୍ୟ ପ୍ରଭେଦପ୍ରତିପାଦନାୟ ଇଦମୁଚ୍ୟତେ ।

୨ । ଅର୍ଥାନ୍ତରେ ସଂକ୍ରମିତମତ୍ୟନ୍ତଂ ବା ତିରସ୍କୃତମ୍ ।
ଅବିବକ୍ଷିତବାଚ୍ୟସ୍ୟ ଧ୍ୱନେର୍ବାଚ୍ୟଂ ଦ୍ୱିଧା ମତମ୍ ॥ ୧

---

୧ । ଅବିବକ୍ଷିତବାଚ୍ୟ ଓ ବିବକ୍ଷିତାନ୍ୟପରବାଚ୍ୟ ଭେଦରେ ଧ୍ୱନି ଦୁଇ ପ୍ରକାର ବୋଲି ପ୍ରଥମ ଉଦ୍ୟୋତରେ ପ୍ରକାଶିତ ହୋଇଅଛି । ବର୍ତ୍ତମାନ ଧ୍ୱନିର ବହୁପ୍ରକାର ଅବାନ୍ତରଭେଦ ପ୍ରତିପାଦନ କଲାବେଳେ (ତହିଁ) ଅବିବକ୍ଷିତବାଚ୍ୟ ଧ୍ୱନିର ପ୍ରଭେଦ ଦର୍ଶାଇବାପାଇଁ କୁହାଯାଉଛି ।:—

୨ । ଅବିବକ୍ଷିତବାଚ୍ୟଧ୍ୱନିର ବାଚ୍ୟ (ଯେଉଁ ବାଚ୍ୟ ସ୍ୱୟଂ ଅବିବକ୍ଷିତ ହୋଇ ଧ୍ୱନି ପ୍ରକାଶ କରୁଅଛି ତାହା) ଅର୍ଥାନ୍ତରସଂକ୍ରମିତ ଓ ଅତ୍ୟନ୍ତତିରସ୍କୃତ ଭେଦରେ ଦୁଇ ପ୍ରକାର ।

୩ । ତଥାବଧାଭ୍ୟାଂ ଚ ତାଭ୍ୟାଂ ବ୍ୟଙ୍ଗ୍ୟତସ୍ଥୈକ
ବଂଶତଃ ।

୪ । ଅର୍ଥାନ୍ତରସଂକ୍ରମିତବାଚ୍ୟୋ ଯଥା:—

୫ ସ୍ନିଗ୍ଧଶ୍ୟାମଳକାନ୍ତିଲିପ୍ତବିୟତୋ-
ବେଲ୍ଲଦ୍‌ବଲାକା ଘନା ।
ବାତାଃ ଶୀକରିଣଃ ପୟୋଦସୁହୃଦା-
ମାନନ୍ଦକେକାଃ କଳାଃ ।
କାମଂସନ୍ତୁ ଦୃଢ଼ଂ କଠୋରହୃଦୟୋ-
ରାମୋଽସ୍ମି ସର୍ବଂସହେ ।
ବୈଦେହୀ ତୁ କଥଂ ଭବିଷ୍ୟତି ହହା-
ହା ଦେବି ଧୀରା ଭବ ।

---

୩ । ବ୍ୟଞ୍ଜକବାଚ୍ୟ ଅର୍ଥର ଉକ୍ତ ଅର୍ଥାନ୍ତରସଂକ୍ରମିତ ଓ ଅତ୍ୟନ୍ତ-ତିରସ୍କୃତ ନାମକ ଦୁଇଗୋଟି ଭେଦଦ୍ୱାରା ବ୍ୟଙ୍ଗ୍ୟ ଅର୍ଥ ମଧ୍ୟ ଦୁଇ ପ୍ରକାର ହୋଇଅଛି ।

୪ । ବାଚ୍ୟ ଅର୍ଥ ଉପପାଦ୍ୟମାନ ହେଉଥିଲେହେଁ ସେତିକରେ ଉପଯୋଗ ପୂରଣ ନହେବା ହେତୁ ଧର୍ମାନ୍ତର ସଂଯୁକ୍ତ ହୋଇ ଅର୍ଥ ବୁଝାଇଲେ ତାକୁ ଅର୍ଥାନ୍ତରସଂକ୍ରମିତ ବୋଲଯାଏ ।

୫ । ଯଥା:—

ମେଘମାଳା ଚିକ୍‌କଣ ଶ୍ୟାମଳ କାନ୍ତିରେ ଆକାଶକୁ ଲିପି ଦେଇଛନ୍ତି । ତାହାଁ ଉପରେ ବଲାକାମାନେ (ବୁଲବୁଲ) ଉଡ଼ୁଅଛନ୍ତି । ସମୀରଣ, ଶୀକର (ଜଳକଣା) ବାହୀ ହୋଇଅଛି । ମେଘବନ୍ଧୁ ମୟୂରମାନଙ୍କର ଆନନ୍ଦଭରା କେକା ଧ୍ୱନି ସହିତ ନୃତ୍ୟ ଚାଲିଛି । ଏହା ସବୁ ଯେତେ ଇଚ୍ଛା ତେତେ ଅଧିକ ହୁଅନ୍ତୁ । ମୁଁ କଠୋରହୃଦୟ ରାମ, ସବୁ ସହିପାରେ ( ସହିବ ) କିନ୍ତୁ ବୈଦେହୀ କଅଣ ହେବେ ଅହା ? ହେ ଦେବି ! ଧୈର୍ଯ୍ୟ ଅବଲମ୍ବନ କର ॥

୬ । ଇତ୍ୟେବ ରାମଶବ୍ଦଃ ।

୭ । ଅନେନ ହି ବ୍ୟଙ୍ଗ୍ୟଧର୍ମାନ୍ତରପରିଣତଃ ସଂଜ୍ଞୀ ପ୍ରତ୍ୟାୟ୍ୟତେ, ନ ସଂଜ୍ଞିମାତ୍ରମ୍ ॥

୮ । ଯଥାଚ ମମୈବ ବିଷମବାଣଲୀଲାୟାମ୍—

ତାଲା ଜାଅନ୍ତି ଗୁଣା ଜାଲା ତେ ସହିଅଏହିଁ ଘେପ୍ପନ୍ତି ।
ରଇ କିରଣାନୁଗ୍ଗହିଆଇଁ ହୋନ୍ତି କମଲାଇଁ କମଲାଇଁ ॥
ତଦା ଜାୟନ୍ତେ ଗୁଣା ଯଦା ତେ ସହୃଦୟୈର୍ଗୃହ୍ୟନ୍ତେ
ରବିକିରଣାନୁଗୃହୀତାନି ଭବନ୍ତି କମଲାନି କମଲାନି ॥
[ ଇତଚ୍ଛାୟା ]

---

୬ । ଏଠାରେ ଶିରଚ୍ଛେଦୀତକ ବର୍ଣ୍ଣାବଳୀର ସମସ୍ତ ତାଡ଼ନା ମୋତେ (ସମସ୍ତ) ବିଚଳିତ କରି ପାରିବ ନାହିଁ ମୁଁ ସବୁ ସହିବି, କାରଣ ମୁଁ, କଠୋର ହୃଦୟ ରାମ । ଏଣୁ ବ୍ୟଞ୍ଜକ "ରାମ" ଶବ୍ଦ ଦଶରଥାପତ୍ୟରୂପ କେବଳ ବାଚ୍ୟ ଅର୍ଥକୁ ନ ବୁଝାଇ ବନବାସ .ରାଜ୍ୟନିର୍ବାସନାଦି ଅଶେଷ କଷ୍ଟସହିଷ୍ଣୁତାରୂପ ଧର୍ମ ସହିତ ଦଶରଥାପତ୍ୟରୂପ ଅର୍ଥକୁ ବୁଝାଉଅଛି ।

୭ । ଏ ଶ୍ଳୋକରେ ରାମ ଶବ୍ଦ ଦ୍ୱାରା (ଅନେନ) ପ୍ରତୀୟମାନ ଧର୍ମରେ ପରିଣତ ହୋଇ ରାମ ସଂଜ୍ଞାବାନ୍ ଦଶରଥ ପୁତ୍ର ପ୍ରତୀତ ହେଉ ଅଛନ୍ତି । କିନ୍ତୁ କେବଳ ଦଶରଥ ପୁତ୍ର ରାମ ପ୍ରତୀତ ହେଉ ନାହାନ୍ତି ।

୮ । ଅଥବା—ମୋକୃତ ବିଷମବାଣଲୀଳାରେ ଯଥା :—

ସେତେବେଳେ ଗୁଣମାନେ ଜାତ ହୁଅନ୍ତି ଅର୍ଥାତ୍ ଗୁଣରୂପେ ବିବେଚିତ ହୁଅନ୍ତି, ଯେତେବେଳେ ତାଙ୍କୁ ସହୃଦୟମାନେ ଗ୍ରହଣ କରନ୍ତି ।

ରବିଙ୍କ କିରଣରେ ଅନୁଗୃହୀତ ହେଲେ ପଦ୍ମମାନେ (ପ୍ରକୃତରେ) ପଦ୍ମ ହୁଅନ୍ତି ।

୯ । ଇତ୍ୟତ୍ର ଦ୍ୱିତୀୟଃ କମଲଶବ୍ଦଃ ।

୧୦ । ଅତ୍ୟନ୍ତତିରସ୍କୃତବାଚ୍ୟୋ ଯଥାଽଦିକବେର୍ବାଲ୍ମୀକେଃ—

ରବିସଂକ୍ରାନ୍ତସୌଭାଗ୍ୟସ୍ତୁଷାରାବୃତମଣ୍ଡଳଃ ।
ନିଃଶ୍ୱାସାନ୍ଧ ଇବାଦର୍ଶଶ୍ଚନ୍ଦ୍ରମା ନ ପ୍ରକାଶତେ ॥ ଇତି

୧୧ । ଅତ୍ରାନ୍ଧଶବ୍ଦଃ ।

---

୯ । ଏଠାରେ ଦ୍ୱିତୀୟ ପଦ (କମଳ) ଶବ୍ଦ ସୌନ୍ଦର୍ଯ୍ୟ ସୌରଭ୍ୟାଦି ଅଶେଷ ଧର୍ମାନ୍ତରରେ ବିଶିଷ୍ଟ ହୋଇ ଅବଗତ ହେଉଅଛି, କେବଳ ପଦ୍ମର ସଂଜ୍ଞା ମାତ୍ର ରୂପେ ଅବଗତ ହେଉନାହିଁ ।

୧୦ । ଯେଉଁଠି ବାଚ୍ୟ ଅର୍ଥ ଅନୁପ-ପଦ୍ୟମାନ ହୋଇ, ନିଜେ ହେତୁ-ସ୍ୱରୂପ ଅନ୍ୟ ଅର୍ଥକୁ ପ୍ରକାଶ କରି ପଳାୟନ କରେ ତାହା ଅତ୍ୟନ୍ତତିରସ୍କୃତ-ବାଚ୍ୟ । ଉଦାହରଣ ଯଥା— ( ଆଦିକବି ବାଲ୍ମୀକିଙ୍କର ) "ହେମନ୍ତ ବର୍ଣ୍ଣନରେ ପଞ୍ଚବଟୀରେ ରାମଚନ୍ଦ୍ରଙ୍କର ଉକ୍ତି"—ଚନ୍ଦ୍ର ସମ୍ପ୍ରତିକାଳ ଅଂଦରପାବତାରୂପ, ନିଜର ସୌଭାଗ୍ୟକୁ ରବିଙ୍କଠାରେ ଅର୍ପଣ କରି ତୁଷାର ମଣ୍ଡଳରେ ଆଚ୍ଛାଦିତହୋଇ ନିଃଶ୍ୱାସରେ ଅନ୍ଧହୋଇଥିବା ଦର୍ପଣପରି ଶୋଭା ପାଉ-ନାହାନ୍ତି ।

୧୧ । ଏଠାରେ ବ୍ୟଞ୍ଜକ "ଅନ୍ଧ"ଶବ୍ଦର ନଷ୍ଟଦୃଷ୍ଟିରୂପ ମୁଖ୍ୟ ଅର୍ଥ ଦର୍ପଣରେ ବାଧିତ ହେବାରୁ ସେ ସ୍ୱାର୍ଥତ୍ୟାଗକରି "ଅପ୍ରକାଶ" ରୂପ ଲକ୍ଷ୍ୟାର୍ଥକୁ ବୋଧ କରାଉଅଛି । ଲକ୍ଷଣାର ପ୍ରୟୋଜନ ସ୍ୱରୂପ ଅପ୍ରକାଶାତିଶଯ୍ୟ ଏଠାରେ ବ୍ୟଙ୍ଗ୍ୟ ।

୧୨ । ଗଅଣଂ ଚ ମତ୍ତମେହ୍ନଂ ଧାରାଲ୍ଳକଅକ୍କୁଣାଇଁ ଅବଣାଇଁ ।
ଣିରହଙ୍କାରମିଅଙ୍କା ଏରନ୍ତି ନୀଲାଓ ବ ଣିସାଓ ॥
ଗଗନଂ ଚ ମତ୍ତମେଘଂ ଧାରାଲୁଳିତାର୍ଜ୍ଜୁନାନି ଚ ବନାନି ।
ନିରହଙ୍କାରମୃଗାଙ୍କା ହରନ୍ତି ନୀଲା ଅପି ନିଶାଃ ॥
( ଇତିଚ୍ଛାୟା )

୧୩ । ଅବମ ତ୍ରନିରହଙ୍କ ।ରଶଙ୍ଗୌ ।

୧୪ । ଅସଂଲକ୍ଷ୍ୟକ୍ରମୋଦ୍ୟୋତଃ କ୍ରମେଣ ଦ୍ୟୋତିତଃ
ପରଃ । ବିବକ୍ଷିତାଭିଧେୟସ୍ୟ ଧ୍ୱନେରାତ୍ମା ଦ୍ୱିଧା ମତଃ ॥ ୨ ॥

---

୧୨ । ଗଗନ ଉନ୍ମତ୍ତ ମେଘଯୁକ୍ତ, ବନସ୍ଥଳୀର ଅର୍ଜ୍ଜୁନ ବୃକ୍ଷଗୁଚ୍ଛିକ ବୃଷ୍ଟି ଜଳଧାରାରେ ଅସ୍ତବ୍ୟସ୍ତ । ନିଶା ନିରହଂକାର ଚନ୍ଦ୍ରଯୁକ୍ତା ଓ କୃଷ୍ଣବର୍ଣ୍ଣା ହୋଇଅଛି । ତଥାପି ଏମାନେ ମନ ହରଣ କରୁଅଛନ୍ତି ।

୧୩ । ଏଠାରେ "ମତ୍ତ" ଓ "ନିରହଂକାର" ଶବ୍ଦ ଦୁଇଟି ଅତ୍ୟନ୍ତ-ତିରସ୍କୃତବାଚ୍ୟ ।

"ମତ୍ତ"ଶବ୍ଦ ମେଘ ବିଷୟରେ କ୍ଷୀବରୂପ ମୁଖ୍ୟାର୍ଥରେ ବାଧିତହୋଇ 'ଅନିୟନ୍ତ୍ରିତ ଗାମି' ରୂପକ ଲକ୍ଷଣାର୍ଥକୁ ପ୍ରକାଶ କରୁଛି । ସୁତରାଂ ଲକ୍ଷଣାର ପ୍ରୟୋଜନ ସ୍ୱରୂପ ଅସାଧୁଚାର୍ଯ୍ୟପରତା-ଦୁର୍ନିବାରତା ପ୍ରଭୃତି ଏଠାରେ ବ୍ୟଙ୍ଗ୍ୟ ।

ଏହିପରି "ନିରହଂକାର" ଶବ୍ଦ ମଧ୍ୟ ଚନ୍ଦ୍ର ବିଷୟରେ ବାଧିତ, ତାହାର ଲକ୍ଷ୍ୟାର୍ଥ "ଅନାଦରଣୀୟତ୍ୱ" । ପାରତନ୍ତ୍ର୍ୟ-ବିଚ୍ଛାୟତ୍ୱ-ମେଘାବୃତତ୍ୱ-ଅନ୍ଧକାରନିରାକରଣାକ୍ଷମତ୍ୱାଦି ବ୍ୟଙ୍ଗ୍ୟ ।

୧୪ । ବିବକ୍ଷିତାନ୍ୟପରବାଚ୍ୟର ଅସଂଲକ୍ଷ୍ୟକ୍ରମବ୍ୟଙ୍ଗ୍ୟ ଓ ସଂଲକ୍ଷ୍ୟକ୍ରମ ବ୍ୟଙ୍ଗ୍ୟ ଭେଦରେ ଦୁଇଗୋଟି ବିଭାଗ ॥

୧୫ । ମୁଖ୍ୟତୟା ପ୍ରକାଶମାନୋ ବ୍ୟଙ୍ଗ୍ୟୋଽର୍ଥୋ ଧ୍ୱନେରାତ୍ମା ॥
ସ ଚ ବାଚ୍ୟାର୍ଥାପେକ୍ଷୟା । କଶ୍ଚିଦଲକ୍ଷ୍ୟକ୍ରମତୟା
ପ୍ରକାଶତେ କଶ୍ଚିତ୍ କ୍ରମେଣ ଇତି ଦ୍ୱିଧା ମତଃ ।

୧୬ । ତତ୍ର —

୧୭ । ରସଭାବତଦାଭାସ ଭାବଶାନ୍ତ୍ୟାଦିରକ୍ରମଃ ।
ଧ୍ୱନେରାତ୍ମାଙ୍ଗିଭାବେନ ଭାସମାନୋ ବ୍ୟବସ୍ଥିତଃ ॥ ୩ ॥

୧୮ । ରସାଦିରର୍ଥୋ ହି ସହୈବ ବାଚ୍ୟେନାବଭାସତେ ।
ସ ଚାଙ୍ଗିତ୍ୱେନାବଭାସମାନୋ ଧ୍ୱନେରାତ୍ମା ॥

---

୧୫ । ବ୍ୟଙ୍ଗ୍ୟ ଅର୍ଥ ପ୍ରଧାନଭାବରେ ପ୍ରକାଶିତ ହେଲେ ଧ୍ୱନି ହୁଏ । ତାହା ବାଚ୍ୟ ଅର୍ଥ ଅପେକ୍ଷା ଅଲକ୍ଷ୍ୟକ୍ରମଭାବରେ ପ୍ରକାଶିତ ହେଲେ, ଅର୍ଥାତ୍ ବାଚ୍ୟ ବ୍ୟଙ୍ଗ୍ୟ ପ୍ରତୀତି ମଧ୍ୟରେ ବ୍ୟବଧାନ ଲକ୍ଷ୍ୟହୋଇ ନପାରି ସମକାଳରେ ପ୍ରତୀତ ହେଲେ ଅସଂଲକ୍ଷ୍ୟକ୍ରମ ନାମ ଧାରଣ କରେ । ତାହା ରସାଦିଧ୍ୱନି, ଯେଉଁଠି ବାଚ୍ୟ ବ୍ୟଙ୍ଗ୍ୟ ପ୍ରତୀତି ମଧ୍ୟରେ କ୍ରମ ଲକ୍ଷ୍ୟ କରିହୋଇ ପାରେ ଅର୍ଥା

ପ୍ରଥମେ ବାଚ୍ୟ ପ୍ରତୀତି ଓ ତଦନନ୍ତର ବ୍ୟଙ୍ଗ୍ୟ ପ୍ରତୀତି ହୁଏ ତାହା ସଂଲକ୍ଷ୍ୟକ୍ରମଧ୍ୱନି ଅର୍ଥାତ୍ ବସ୍ତୁଧ୍ୱନି ଓ ଅଳଙ୍କାରଧ୍ୱନି ।

୧୬ । ଅସଂଲକ୍ଷ୍ୟକ୍ରମ ଓ ସଂଲକ୍ଷ୍ୟକ୍ରମ ଦୁହିଁଙ୍କ ମଧ୍ୟରେ—

୧୭ । ଶୃଙ୍ଗାରାଦିରସ, ନିର୍ବେଦାଦିଭାବ, ରସାଭାସ, ଭାବାଭାସ, ଭାବଶାନ୍ତି, ଭାବୋଦୟ, ଭାବସନ୍ଧି ଓ ଭାବଶବଳତା ହେଉଛନ୍ତି ଅଲକ୍ଷ୍ୟକ୍ରମ-ବ୍ୟଙ୍ଗ୍ୟ, ଏମାନେ ପ୍ରତୀତିସ୍ୱରୂପ ଓ ଆସ୍ୱାଦରୁ ଅତିରିକ୍ତ ନୁହନ୍ତି । ଏଣୁ ଏମାନଙ୍କ ଅନୁଭବ ଦଶାରେ କ୍ରମ ଲକ୍ଷ କରି ହୁଏ ନାହିଁ । ( ରସାସ୍ୱାଦ ବ୍ରହ୍ମାସ୍ୱାଦସ୍ୱରୂପ ଓ ଅଖଣ୍ଡ ଏଣୁ ରସାସ୍ୱାଦ ସମୟରେ ତଦିତରଜ୍ଞାନ ନ ଥାଏ । ଏଣୁ ବାଚ୍ୟ ବ୍ୟଙ୍ଗ୍ୟ ଦୁହିଙ୍କର କ୍ରମ ପ୍ରତୀତି ରହିବା ଅସମ୍ଭବ ) ।

୧୮ । ଏହି ରସ-ଭାବାଦି, ବାଚ୍ୟ ଅର୍ଥର ଅବଗତି ସହିତ ଅବଗତ ହୋଇଥାନ୍ତି । ସେମାନେ ଅଙ୍ଗିଭାବରେ (ପ୍ରଧାନରୂପେ) ଉଦ୍ଭାସିତ ହେଉଥିଲେ ଅସଂଲକ୍ଷ୍ୟକ୍ରମଧ୍ୱନି ଆଖ୍ୟା ଧାରଣ କରନ୍ତି ।

୧୯ । ଇଦାନୀଂ ରସବଦଲଂକାରାତ୍ ଅଲକ୍ଷ୍ୟକ୍ରମବ୍ୟଙ୍ଗ୍ୟସ୍ୟ ଧ୍ୱନେର୍ବିଭକ୍ତାବିଷୟଂ ଇତି ପ୍ରଦର୍ଶ୍ୟତେ ।

୨୦ । ବାଚ୍ୟବାଚକଚାରୁତ୍ୱହେତୂନାଂ ବିବିଧାତ୍ମନାମ୍ ।
ରସାଦିପରତା ଯତ୍ର ସ ଧ୍ୱନେର୍ବିଷୟୋ ମତଃ ॥ ୪ ॥

ରସଭାବତଦାଭାସତତ୍ପ୍ରଶମଲକ୍ଷଣଂ ମୁଖ୍ୟମର୍ଥମନୁବର୍ତ୍ତମାନା ଯତ୍ର ଶବ୍ଦାର୍ଥାଲଙ୍କାରା ଗୁଣାଶ୍ଚ ପରସ୍ପରଂ ଧ୍ୱନ୍ୟପେକ୍ଷୟା ବିଭିନ୍ନରୂପା ବ୍ୟବସ୍ଥିତାସ୍ତତ୍ର କାବ୍ୟେ ଧ୍ୱନିରିତି ବ୍ୟପଦେଶଃ ।

୨୧ । ପ୍ରଧାନେଽନ୍ୟତ୍ର ବାକ୍ୟାର୍ଥେ ଯତ୍ରାଙ୍ଗନ୍ତୁ ରସାଦୟଃ ।
କାବ୍ୟେ ତସ୍ମିନ୍ନଲଂକାରୋ ରସାଦିରିତି ମେ ମତଃ ॥ ୫

ଯଦ୍ୟପି ରସବଦଲଂକାରସ୍ୟାନ୍ୟୈର୍ଦର୍ଶିତୋ ବିଷୟସ୍ତଥାପି ଯସ୍ମିନ୍ କାବ୍ୟେ ପ୍ରଧାନତୟାଽନ୍ୟୋଽର୍ଥୋ

---

୧୯ । ବର୍ତ୍ତମାନ ରସବଦଲଂକାର ଓ ଅସଂଲକ୍ଷ୍ୟକ୍ରମବ୍ୟଙ୍ଗ୍ୟ ଧ୍ୱନିର ସ୍ଥଳଭେଦ ପ୍ରଦର୍ଶନ କରାଯାଉଛି ।

୨୦ । ଯେଉଁ କାବ୍ୟରେ ନାନାବିଧ ବାଚ୍ୟ-ବାଚକ-ଚାରୁତ୍ୱହେତୁ ଅର୍ଥାତ୍ ଶବ୍ଦାଲଂକାର ଓ ଗୁଣ ପ୍ରଭୃତି ପରସ୍ପର ସାପେକ୍ଷ ହୋଇ ରସର ପୋଷକରୂପେ ପ୍ରଯୁକ୍ତ ହୋଇଥାନ୍ତି ତାହା କେବଳ ଧ୍ୱନିର ବିଷୟ ।

ରସାଦି ପରତାର ତାତ୍ପର୍ଯ୍ୟ :—ବାଚ୍ୟ ବାଚ୍ୟାର୍ଥ ଦ୍ୱାରା, ବାଚକ—ଗୁଣାଦି ବ୍ୟଞ୍ଜିତ ହେବା ଦ୍ୱାରା, ଅଳଙ୍କାର ଶବ୍ଦାର୍ଥ ଶୋଭା ସମ୍ପାଦନଦ୍ୱାରା ବିଭିନ୍ନଭାବେ ରସର ଉପକାର କରିଥାନ୍ତି । ଏମାନେ ପରସ୍ପର ସାପେକ୍ଷ ହୋଇ ରସକୁ ପୁଷ୍ଟକରିବାକୁ, ରସାଦିପରତା ବୋଲଯାଏ ।

୨୧ । ଯେଉଁ କାବ୍ୟରେ ଅନ୍ୟ ରସଭାବାଦି ଅର୍ଥ ପ୍ରଧାନ ଭାବେ ବାକ୍ୟାର୍ଥୀଭୂତ ହୋଇଥାଏ ଏବଂ ରସାଦିମାନେ ଅଙ୍ଗ ସ୍ୱରୂପ ରହି ଉକ୍ତ ପ୍ରଧାନ ବାକ୍ୟାର୍ଥକୁ ପୁଷ୍ଟକରୁଥାନ୍ତି । ସେ ସ୍ଥଳରେ ଉକ୍ତ ପୋଷକ ରସାଦି ଅଳଂକାର ହୁଅନ୍ତି । ଶୃଙ୍ଗାରାଦି ରସମାନେ ଗୁଣୀଭୂତ (ଅଙ୍ଗ) ହେଲେ ରସବଦଲଂକାର

ବାକ୍ୟାର୍ଥୀଭୂତେ ହ୍ରସ୍ୟ ଗୃଙ୍ଗାରେ ଯେ ରସାଦୟସ୍ତେ ରସାଦେରଲଂକାରସ୍ୟାଙ୍ଗତ୍ୱେ ମାମକୀନଃ ପକ୍ଷଃ ।

୬୨ । ତଦ୍ୟଥା—

ଗୃଙ୍ଗାରସ୍ୟ ପ୍ରେୟୋଽଲଂକାରସ୍ୟ ବାକ୍ୟାର୍ଥତ୍ୱେଽପି ରସାଦୟୋଽଙ୍ଗଭୂତା ଦୃଶ୍ୟନ୍ତେ ॥

---

ନାମ ଧାରଣ କରନ୍ତି । ନୃପ ଦେବାଦିବିଷୟକ ରତିଭାବ ମୁଖ୍ୟୀଭୂତ ହେଲେ ପ୍ରେୟ, ରସାଭାସ, ଗୁଣୀଭୂତ ହେଲେ ଊର୍ଜସ୍ୱୀ, ଭାବପ୍ରଶମ ଅଙ୍ଗ ହେଲେ ସମାହିତ ଏବଂ ଭାବୋଦୟ ଭାବଶାନ୍ତି ଓ ଭାବଶବଳତା ଅଙ୍ଗହେଲେ ଭାବୋଦୟ ଅଳଙ୍କାର, ଭାବଶାନ୍ତି ଅଳଙ୍କାର ଓ ଭାବଶବଳତା ଅଳଙ୍କାର ବୋଲନ୍ତି । ଏହା ମୋର ମତ, ଅନ୍ୟମାନେ ରସାଦ୍ୟଲଂକାରର ବିଷୟମାର୍ଗ ଦେଖାଇଥିଲେ ମଧ୍ୟ ମୁଁ ତାଙ୍କ ମତରେ ଏକମତ ନୁହଁ ॥

୬୨ । ରସବଦାଦି ଅଳଙ୍କାରର ସ୍ଥଳ ଯଥା:—

ନୃପଦେବାଦିବିଷୟକ ଶୃଙ୍ଗାର ପ୍ରଧାନ ହୋଇ ବାକ୍ୟାର୍ଥ ହୋଇଥିଲେ ରସାଦିମାନେ ଉକ୍ତ ବାକ୍ୟାର୍ଥୀଭୂତ ଶୃଙ୍ଗାରର ଅଙ୍ଗ ହୋଇ ହେବା ଦେଖାଯାଏ ।

( ଭାମହଙ୍କ ମତ ଅନୁରୋଧରେ ) —ଗୁରୁ-ଦେବ-ନୃପତି-ପୁତ୍ରାଦିବିଷୟକ ପ୍ରୀତି ବର୍ଣ୍ଣନ ପ୍ରେୟୋଽଲଂକାର । ଶୃଙ୍ଗାର ସ୍ଥଳରେ ଉକ୍ତ ପ୍ରେୟୋଽଲଂକାର ପ୍ରଧାନ ହୋଇ ବାକ୍ୟାର୍ଥୀଭୂତ ହୋଇଥିଲେ ରସାଦିମାନେ ତାହାର ଅଙ୍ଗ ହୋଇ ରହିବା ଦେଖାଯାଏ ।

(ଉଦ୍ଭଟଙ୍କ ମତ ଅନୁସାରେ):—ରତ୍ୟାଦିଭାବର ବର୍ଣ୍ଣନ ଭାବାଲଂକାର ତାହାର ନାମାନ୍ତର ପ୍ରେୟୋଽଲଙ୍କାର ।

ଶୃଙ୍ଗାର ସ୍ଥଳରେ ଅର୍ଥାତ୍ ଯେଉଁଠି ଶୃଙ୍ଗାର ପ୍ରଧାନ ହୋଇ ବାକ୍ୟାର୍ଥ ହୋଇଥାଏ । ସେଠାରେ ରସବଦଲଂକାର ଓ ଭାବାଲଂକାର ଦୁହେଁ ହୁଅନ୍ତି ।

ଲୋଚନକାର, ଭାମହ ଓ ଉଦ୍ଭଟଙ୍କ ମତାନୁସାରେ ବୃତ୍ତି ପଙ୍କ୍ତିର ଏହିପରି ଦ୍ୱିବିଧ ଅର୍ଥ କରିଅଛନ୍ତି ।

୨୩ । ସ ଚ ରସାଦରଲଂକାରଃ ଶୁଦ୍ଧଃ ସଙ୍କୀର୍ଣ୍ଣୋ ବା ।

୨୪ । ତତ୍ରାଦ୍ୟୋ ଯଥା—

କିଂ ହାସ୍ୟେନ ନମେ ପ୍ରୟାସ୍ୟସି ପୁନଃ ପ୍ରାପ୍ତଶ୍ଚିରାଦ୍ଦର୍ଶନଂ
କେୟଂ ନିଷ୍କରୁଣ ! ପ୍ରବାସରୁଚିତା କେନାସି ଦୂରୀକୃତଃ ।
ସ୍ୱପ୍ନାନ୍ତେଷ୍ୱିତି ତେ ବଦନ୍ ପ୍ରିୟତମବ୍ୟାସକ୍ତକଣ୍ଠଗ୍ରହୋ
ବୁଦ୍ଧ୍ୱା ରୋଦିତି ରିକ୍ତବାହୁବଲୟସ୍ତାରଂ ରିପୁସ୍ତ୍ରୀଜନଃ ॥

୨୫ । ଇତ୍ୟେବ କରୁଣରସସ୍ୟ ଶୁଦ୍ଧସ୍ୟାଙ୍ଗଭାବାତ୍ ସ୍ଫୁଟମେବ ରସବଦଲଂକାରତ୍ୱମ୍ ।

---

୨୩ । ରସବତ୍ ଅଳଂକାର ଶୁଦ୍ଧ ଓ ସଂକୀର୍ଣ୍ଣ ଭେଦରେ ଦୁଇ ପ୍ରକାର ।

୨୪ । ଶୁଦ୍ଧ ରସବଦଲଂକାରର ଉଦାହରଣ ।

ହେ ରାଜନ୍ ! ତୁମର ଶତ୍ରୁ ସ୍ତ୍ରୀଗଣ ସ୍ୱପ୍ନରେ ସ୍ୱାମୀଙ୍କୁ ଆଗତ ଦେଖି "ମୋତେ ଅନାଦରକର ବହୁକାଳ ଦେଖା ଦେଉନାହଁ, ବର୍ତ୍ତମାନ ଏ ଅନୁତାପିତ ହାସ୍ୟରେ ପ୍ରୟୋଜନ କଣ ? ହେ ନିର୍ଦ୍ଦୟ ତୁମ୍ଭେ କାହିଁକି ? ଅର୍ଥାତ୍ ବିନା ପ୍ରବାସ କାରଣ ବିନା ଏଭଳି ପ୍ରବାସପ୍ରିୟ ହେଲ ? ପୂର୍ବରୁ ମୋର ତୁମ୍ଭଠାରେ ବା ତୁମ୍ଭର ମୋଠାରେ ଗୋଟି ସ୍ଖଳନାଦ କିଛି ଅପକାରଣତ ଘଟିନାହିଁ, କେଉଁ କାରଣରୁ ଦୂର ହେଲ ? ଏହିପରି ନାନା କଥା କହି ପ୍ରିୟତମଙ୍କୁ କଣ୍ଠାଲିଙ୍ଗନ କରିବା ଅବସ୍ଥାରେ ନିଦ୍ରାଭଙ୍ଗ ହେବାରୁ ପ୍ରିୟତମ ଶୂନ୍ୟ ବାହୁମଣ୍ଡଳକୁ ଦେଖି କିମ୍ବା ବୈଧବ୍ୟ ହେତୁ ବଳୟହୀନ ବାହୁକୁ ଦେଖି ଦୀର୍ଘ ସ୍ୱରରେ କ୍ରନ୍ଦନ କରୁଅଛନ୍ତି ।

୨୫ । ଏଠାରେ ଶୁଦ୍ଧ କରୁଣରସ ରାଜସ୍ତୁତିରୂପ ସ୍ତୁତିର ଅଙ୍ଗ ହୋଇଥିବାରୁ ସ୍ପଷ୍ଟଭାବେ ରସବଦଲଙ୍କାର ହେଉଅଛି ।

---

× ଏଠାରେ ବା ଶବ୍ଦ ସମୁଚ୍ଚୟାର୍ଥକ ।

୨୬ । ଏବମେବଂବିଧେ ବିଷୟେ ରସାନ୍ତରାଣାଂ ସ୍ୱସ୍ୱ ଏବାଙ୍ଗଭାବଃ ॥

୨୭ । ସଙ୍କୀର୍ଣ୍ଣୋ ରସାଦିରଙ୍ଗଭୂତୋ ଯଥା —

କ୍ଷିପ୍ତୋ ହସ୍ତାବଲଗ୍ନଃ ପ୍ରସଭମଭିହତୋଽପ୍ୟାଦଦାନୋଽଂଶୁକାନ୍ତଂ ।
ଗୃହ୍ଣନ୍ କେଶେଷ୍ୱପାସ୍ତଶ୍ଚରଣନିପତିତୋ ନେକ୍ଷିତଃ ସଂଭ୍ରମେଣ ।
ଆଲିଙ୍ଗନ୍ ଯୋଽବଧୂତସ୍ତ୍ରିପୁରଯୁବତିଭିଃ ସାଶ୍ରୁନେତ୍ରୋତ୍ପଳାଭିଃ ।
କାମୀବାର୍ଦ୍ରାପରାଧଃ ସ ଦହତୁ ଦୁରିତଂ ଶାମ୍ଭବୋ ବଃ ଶରାଗ୍ନିଃ ॥

---

୨୬ :— ଏହି ପରି ଅନ୍ୟ ରସମାନେ ମଧ୍ୟ ବାକ୍ୟାର୍ଥୀଭୂତ ଅନ୍ୟ ରସ-ଭାବାଦିର ଅଙ୍ଗ ହୋଇ ପାରନ୍ତି ।

୨୭ । ସଙ୍କୀର୍ଣ୍ଣ ରସାଦ୍ୟଲଂକାରର ଉଦାହରଣ— (ତ୍ରିପୁରଦାହବର୍ଣ୍ଣନା) ଶିବଙ୍କର ଶର ବହ୍ନି ସଦ୍ୟୋଽପରାଧ ଯୁକ୍ତ ଶଠ କାମୁକ ପରି ତ୍ରିପୁର ଦୈତ୍ୟର ଯୁବତୀ ମାନେ ତାକୁ ଛିଞ୍ଚାଡ଼ିଲେ ( ଏକାନ୍ତରେ ଘଉଡ଼ିଲେ ) ମଧ୍ୟ ସେ ହାତରେ ଲାଗି ଯାଉଛନ୍ତି (ଶଠ ଯୁବତୀଙ୍କ ହାତକୁ ଧରି ପକାଉଛନ୍ତି) । ଆଘାତ ଦେଲେ ମଧ୍ୟ ବସ୍ତ୍ରର କାନିରେ ଲାଗି ଯାଉଛନ୍ତି (ଶଠ—କାନି ଧରି ପକାଉଛନ୍ତି), ମୁଣ୍ଡବାଳକୁ ଧରି ପକାଇବାରୁ ଯୁବତୀ ମାନଙ୍କ ଦ୍ୱାରା ଅପସାରିତ - ହୋଇ ସେମାନଙ୍କ ପାଦରେ ପଡ଼ି ଯାଉଛନ୍ତି (ଶଠ- ଅନୁନୟ ପାଇଁ ପାଦ ତଳେ ପଡୁଛନ୍ତି) ମାତ୍ର ସେମାନେ ଭୟ ସଂଭ୍ରମ ( ଉଦ୍‌ବେଗ ) ବଶତଃ ଦେଖି ପାରୁ ନାହାନ୍ତି ( ଶଠପକ୍ଷେ ଭ୍ରମବଶତଃ ସୁଦ୍ଧା ଗ୍ରହଣ ନାହାନ୍ତି ), ଦେହରେ ବ୍ୟାପିବାରୁ ( ଶଠ- ଆଲିଙ୍ଗନ କରିବାରୁ ) ଅଶ୍ରୁପୂର୍ଣ୍ଣନୟନା ତ୍ରିପୁର କାମିନୀଙ୍କ ଦ୍ୱାରା ସର୍ବାଙ୍ଗକମ୍ପପୂର୍ବକ ଅପସାରିତ, ( ଶଠ ତିରସ୍କୃତ ) ହେଉଅଛନ୍ତି । ସେହି ଶିବଙ୍କ ବହ୍ନି ତୁମ୍ଭମାନଙ୍କ ପାପ ରାଶିକୁ ଦହନ କରୁ ।

୨୮ । ଇତ୍ୟତ୍ର ହି ତ୍ରିପୁରରିପୁପ୍ରଭାବାତିଶୟସ୍ୟ ବାକ୍ୟାର୍ଥତ୍ୱେ, ଈର୍ଷ୍ୟାବିପ୍ରଲମ୍ଭସ୍ୟ ଶ୍ଳେଷସହିତସ୍ୟାଙ୍ଗଭାବ ଇତି, ଏବଂବିଧ ଏବ ରସବଦାଦ୍ୟଲଂକାରସ୍ୟ ନ୍ୟାଯ୍ୟୋ ବିଷୟଃ ।

୨୯ । ଅତଏବ ଚେର୍ଷ୍ୟାବିପ୍ରଲମ୍ଭକରୁଣୟୋରଙ୍ଗତ୍ୱେନ ବ୍ୟବସ୍ଥାନାତ୍ ସମାବେଶୋ ନ ଦୋଷଃ । ଯତ୍ର ହି ରସସ୍ୟ ବାକ୍ୟାର୍ଥୀଭାବସ୍ତତ୍ର କଥମଲଂକାରତ୍ୱମ୍ ? ଅଲଂକାରୋ ହି ଚାରୁତ୍ୱହେତୁଃ ପ୍ରସିଦ୍ଧଃ । ନ ତ୍ୱସାବାତ୍ମୈବାତ୍ମନଶ୍ଚାରୁତ୍ୱହେତୁଃ ।

୩୦ । ତଥା ଚାୟମତ୍ର ସଂକ୍ଷେପଃ —

ରସଭାବାଦିତାତ୍ପର୍ଯ୍ୟମାଶ୍ରିତ୍ୟ ବିନିବେଶନମ୍ ।
ଅଲଂକୃତୀନାଂ ସର୍ବାସାମଲଂକାରତ୍ୱସାଧନମ୍ ॥

---

୨୮ । ଏ ଶ୍ଳୋକରେ ତ୍ରିପୁରରିପୁଙ୍କର ପ୍ରଭାବାତିଶୟ ବାକ୍ୟାର୍ଥ । ଶ୍ଳେଷରୁ ଅଙ୍ଗ ( ଅଥବା ଶ୍ଳିଷ୍ଟ କରୁଣ ସହିତ ) ଈର୍ଷ୍ୟାବିପ୍ରଲମ୍ଭ ଶୃଙ୍ଗାର, ବାକ୍ୟାର୍ଥର ପୁଷ୍ଟି ସାଧନ କରୁଥିବା ହେତୁ ଅଙ୍ଗ । ଏଣୁ ଏହା ରସବଦଲଙ୍କାରର ସମ୍ଭବ ସ୍ଥଳ ।

୨୯ । ଏଠାରେ ( ଈର୍ଷ୍ୟାବିପ୍ରଲମ୍ଭ ) ଶୃଙ୍ଗାର ଓ କରୁଣ ରସ ପରସ୍ପର ବିରୋଧୀ ହୋଇ ଥିଲେ ହେଁ ଅଙ୍ଗସ୍ୱରୂପ ରହିଥିବାରୁ ଦୋଷ ନୁହେଁ । ଯେଉଁଠି ରସ ସ୍ୱୟଂ ବାକ୍ୟାର୍ଥୀଭୂତ ହୋଇଥାଏ ସେଠାରେ ସେ ଅଲଙ୍କାର ହୁଏ ନାହିଁ, କିନ୍ତୁ ଅଲଂକାର୍ଯ୍ୟ ହୁଏ । କାରଣ ଅଲଙ୍କାର ଶୋଭାଧାୟକ ରୂପେ ପ୍ରସିଦ୍ଧ । କିନ୍ତୁ ରସାଦି ଆତ୍ମା । ଆତ୍ମା ଆତ୍ମାର ଶୋଭାଧାୟକ ହୁଏ ନାହିଁ । ଏଣୁ ବାକ୍ୟାର୍ଥୀଭୂତ ରସାଦି ଅଲଙ୍କାର ନୁହନ୍ତି ।

୩୦ :— ଏହା ସଂକ୍ଷେପତଃ ଜାଣିବାକୁ ହେବ ଯେ —
ରସଭାବାଦିର ପୁଷ୍ଟିସାଧକ ରୂପେ ( ତାତ୍ପର୍ଯ୍ୟେଣ ) ଉପମାଦି ଅଲଙ୍କାର

୩୧ । ତସ୍ମାଦ୍ୟତ୍ର ରସାଦୟୋ ବାକ୍ୟାର୍ଥୀଭୂତାଃ ସ ସର୍ବଃ ନ ରସାଦେରଲଂକାରସ୍ୟ ବିଷୟଃ ; ସ ଧ୍ୱନେଃ ପ୍ରଭେଦଃ । ତସ୍ୟୋପମାଦୟୋଽଲଂକାରାଃ । ଯତ୍ର ତୁ ପ୍ରାଧାନ୍ୟେନାର୍ଥାନ୍ତରସ୍ୟ ବାକ୍ୟାର୍ଥୀଭାବେ ରସାଦିଭିଶ୍ଚାରୁତ୍ୱନିଷ୍ପତ୍ତିଃ କ୍ରିୟତେ ସ ରସାଦେରଲଂକାରତାୟା ବିଷୟଃ ।

୩୨ । ଏବଂ ଧ୍ୱନେରୁପମାଦୀନାଂ ରସବଦଲଂକାରସ୍ୟ ଚ
ବିଭକ୍ତବିଷୟତା ଭବତି ॥

---

ପ୍ରଯୁକ୍ତ ( ବିନିବେଶିତ ) ହେଲେ ଅଳଙ୍କାର ହୁଅନ୍ତି ।

(ଅଳଙ୍କାର ଶୋଭାଧାୟକ ବୋଲି ଶବକୁ ଅଳଙ୍କୃତ କରିପାରେ ନାହିଁ କିନ୍ତୁ ଜୀବନ୍ତ ଶରୀରକୁ ଅଳଂକୃତ କରିବେ, ତଥା ଜୀବନ୍ତ ( ରସାଦିମୂଳକ ) କାବ୍ୟକୁ ଅଳଙ୍କାରମାନେ ଅଳଂକୃତ କରନ୍ତି । ଏଥିରୁ ଉପମାଦି ମାନଙ୍କର ଅଳଙ୍କାରତ୍ୱ, )

୩୧ :— ( ତସ୍ମାତ୍ )

ଯେଉଁଠି ରସାଦି ମାନେ ବାକ୍ୟାର୍ଥୀଭୂତ ହୋଇଥାନ୍ତି ସେଠାରେ ସେମାନେ ରସବଦାଦି ଅଳଙ୍କାର ହୁଅନ୍ତି ନାହିଁ, କିନ୍ତୁ ରସାଦିଧ୍ୱନି ହୁଅନ୍ତି । ସେ ଧ୍ୱନି, କାବ୍ୟର ଆତ୍ମା ହେତୁ ଉପମାଦି ଅଳଙ୍କାର ମାନେ ତାକୁ ଅଳଂକୃତ କରନ୍ତି । କିନ୍ତୁ ଯେଉଁ ସ୍ଥଳରେ ପ୍ରଧାନ ଭାବେ ଅନ୍ୟ ( ରସାଦି ) ଅର୍ଥ ବାକ୍ୟାର୍ଥୀଭୂତ ହୁଏ, ସେଠାରେ ବାକ୍ୟାର୍ଥୀଭୂତ ରସାଦି ଭିନ୍ନ ଅନ୍ୟ ରସାଦି ଯଦି ମୁଖ୍ୟ ବାକ୍ୟାର୍ଥର ଚାରୁତ୍ୱ ସମ୍ପାଦନ କରୁଥାନ୍ତି, ତେବେ ଉକ୍ତ ଚାରୁତ୍ୱ ସମ୍ପାଦକ ରସାଦି, ରସବଦାଦି ଅଳଂକାର ହୁଅନ୍ତି ।

୩୨ । ଉକ୍ତ ରୀତିରେ ଧ୍ୱନି, ଉପମାଦି ଅଳଂକାର ଓ ରସବଦଲଙ୍କାର ପରସ୍ପର ପୃଥକ୍ ପୃଥକ । ଯଥା :—

ପ୍ରଧାନୀଭୂତ ବ୍ୟଙ୍ଗ୍ୟ, ଧ୍ୱନି; ଧ୍ୱନିର ଶୋଭାଧାୟକ ଉପମାଦି, ଅଳଙ୍କାର, ଗୁଣୀଭୂତ-ରସାଦି, ରସବଦାଦି ଅଳଙ୍କାର ଅଟନ୍ତି ।

୩୩ । ଯଦି ତୁ "ଚେତନାନାଂ ବାକ୍ୟାର୍ଥୀଭାବେ ରସାଦ୍ୟଲଂକାରସ୍ୟ ବିଷୟ:" ଇତ୍ୟୁଚ୍ୟତେ, ତର୍ହି ଉପମାଦୀନାଂ ପ୍ରବିରଳବିଷୟତା ନିର୍ବିଷୟତା ବାଽଭିହିତା ସ୍ୟାତ୍ ॥ ଯସ୍ମାଦଚେତନବସ୍ତୁବୃତ୍ତେ ବାକ୍ୟାର୍ଥୀଭୂତେ ପୁନଶ୍ଚେତନବସ୍ତୁବୃତ୍ତାନ୍ତଯୋଜନୟା ଯଥା କଥଂଚିଦ୍ ଭବିତବ୍ୟମ୍ ।

୩୪ । ଅଥ ସତ୍ୟାମପି ତସ୍ୟାଂ ଯତ୍ରାଚେତନାନାଂ ବାକ୍ୟାର୍ଥୀଭାବୋ ନାସୌ ରସବଦଲଂକାରସ୍ୟ ବିଷୟ ଇତ୍ୟୁଚ୍ୟତେ ॥ ତତ୍ ମହତଃ କାବ୍ୟପ୍ରବନ୍ଧସ୍ୟ ରସନିଧାନଭୂତସ୍ୟ ନୀରସତ୍ୱମଭିହିତଂ ସ୍ୟାତ୍ ।

---

୩୩ । ପର ମତରେ ରସବଦଲଙ୍କାର ସ୍ୱରୂପ ଉଦ୍ଧାର କରି ତହିଁରେ ନିଜର ଅରୁଚି ଦେଖାଉ ଅଛନ୍ତି :— ଯଦି ଚେତନ ବସ୍ତୁବର୍ଣ୍ଣନା ବାକ୍ୟାର୍ଥ ହେଲେ ରସାଦ୍ୟଲଙ୍କାରର ବିଷୟ ବୋଲି କୁହାଯାଏ, ତେବେ ଉପମାଦି ଅଳଙ୍କାର ପ୍ରବିରଳ ବିଷୟ ବା ନିର୍ବିଷୟ ହେବ । କାରଣ ଅଚେତନ ବସ୍ତୁ ବୃତ୍ତାନ୍ତ ନଦ୍ୟାଦି ବର୍ଣ୍ଣନ ବାକ୍ୟାର୍ଥୀଭୂତ ହେଲେ, ତହିଁରେ ଚେତନବସ୍ତୁ ବୃତ୍ତାନ୍ତ ଯୋଗଚ୍ଛେଦୋ ଦ୍ୱାରା ଯେକୌଣସି ପ୍ରକାରେ 'ବିଭାବାଦିରୂପରେ' ରସବଦଲଙ୍କାର ହୋଇ ଯିବ । ( ଅତଏବ ଚେତନ ଓ ଅଚେତନ ଉଭୟ ବସ୍ତୁ-ବର୍ଣ୍ଣନ ସ୍ଥଳରେ ରସବଦଲଙ୍କାର ରହିବା ହେତୁ ଉପମାଦିଙ୍କର ସ୍ଥାନ କୁଆପି ରହିବ ନାହିଁ ।

୩୪ । ଚେତନ ବୃତ୍ତାନ୍ତ ଯୋଗ ହେଲେ ମଧ୍ୟ, ଯେଉଁଠି ଅଚେତନ ବସ୍ତୁବୃତ୍ତାନ୍ତ ବାକ୍ୟାର୍ଥୀଭୂତ ହୋଇ ଥାଏ ତାହା, ରସବଦଲଙ୍କାରର ସ୍ଥାନ ନୁହେ ବୋଲି ଯଦି କହିବ ତେବେ ରସର ନିଧାନ ସ୍ୱରୂପ ମହାକାବ୍ୟ ପ୍ରବନ୍ଧ ମାନଙ୍କର ରସହୀନତା ଅଭିହିତ ହେବ, ଯେଣୁ ତୁମ୍ଭ ମତରେ ଯେଉଁଠି ରସବଦଲଙ୍କାର ଅଛି ସେଠାରେ ରସଅଛି, ଯେଉଁଠି ରସବଦଲଙ୍କାର ନାହିଁ ସେଠାରେ ରସ ନାହିଁ, ତେଣୁ ରସାଦ୍ୟଲଙ୍କାର ଶୂନ୍ୟ ଅଚେତନ ବସ୍ତୁବର୍ଣ୍ଣନା ନୀରସ ହୋଇ ଯିବ " ( ମାତ୍ର ବସ୍ତୁତଃ ତାହା ନୁହେ ) " ଯଥା:—

୩୫ । ଯଥା—

ତରଙ୍ଗଭ୍ରୂଭଙ୍ଗା କ୍ଷୁଭିତବିହଗଶ୍ରେଣିରଶନା
ବିକର୍ଷନ୍ତୀ ଫେନଂ ବସନମିବ ସଂରମ୍ଭଶିଥିଳମ୍ ।
ଯଥାବିଦ୍ଧଂ ଯାତି ସ୍ଖଳିତମଭିସନ୍ଧାୟ ବହୁଶୋ
ନଦୀରୂପେଣେୟଂ ଧ୍ରୁବମସହନା ସା ପରିଣତା ॥

୩୬ । ଯଥା ବା—

ତନ୍ୱୀ ମେଘଜଳାର୍ଦ୍ରପଲ୍ଲବତୟା ଧୌତାଧରେବାଶ୍ରୁଭିଃ
ଶୂନ୍ୟେବାଭରଣୈଃ ସ୍ୱକାଳବିରହାଦ୍ ବିଶ୍ରାନ୍ତପୁଷ୍ପୋଦ୍ଗମା ।
ଚିନ୍ତାମୌନମିବାଶ୍ରିତା ମଧୁକୃତାଂ ଶବ୍ଦୈର୍ବିନା ଲକ୍ଷ୍ୟତେ
ଚଣ୍ଡୀ ମାମବଧୂୟ ପାଦପତିତଂ ଜାତାନୁତାପେବ ସା ॥

---

୩୫—ଉର୍ବଶୀ ବିରହରେ ଉନ୍ମାଦଗ୍ରସ୍ତ ପୁରୁରବାଙ୍କର ଉକ୍ତି—ନଦୀ-ତରଙ୍ଗ, କ୍ରୋଧାନ୍ଧା ଉର୍ବଶୀଙ୍କ ଭ୍ରୂଭଙ୍ଗ ସଦୃଶ, ଇତସ୍ତତଃ ଚଳିତ ବିହଗ-ଶ୍ରେଣୀ ତାଙ୍କର ଅଣ୍ଟାସୂତା, ସେ କୋପ ଆବେଗବଶତଃ ଫିଟି ପଡ଼ି ଯାଇ-ଥିବା ଲୁଗା ସ୍ୱରୂପ ଫେନ ରାଶିକୁ ଘୋଷାରି ନେଉଛନ୍ତି । ବହୁବାର ଗୋଟିଏ ସ୍ଖଳନାଦି ଅପରାଧକୁ ଅଭିସନ୍ଧି କରି ପଳାଉଛନ୍ତି (ଯଥାବିଦ୍ଧଂ) ଦଉଡ଼ୁଛନ୍ତି, (ନଦୀପକ୍ଷରେ) ନଦୀ ନାନା ଖାଲ ଢିପ ହେତୁ ଉଚ୍ଚାବଚଗତି ହୋଇ ବହିଯାଉ ଅଛି । ଅତଏବ ଇଏ ସେହି (ମୋର ପ୍ରିୟା) ଉର୍ବଶୀ, କୋପା-କ୍ରାନ୍ତା ହୋଇ ନିଶ୍ଚୟ ନଦୀ ରୂପରେ ପରିଣତ ହୋଇଅଛି ।

୩୬ । ଯଥା ବା—

ଏହି କୃଶାଙ୍ଗୀ ଲତା, ବର୍ଷା ଜଳରେ ପତ୍ରଗୁଡ଼ିକ ଓଦା ହୋଇଥିବା ହେତୁ ଲୋତକରେ ଧୌତାଧରା ହୋଇଛି, ବସନ୍ତକାଳ ଅତୀତ ହେବାରୁ ପୁଷ୍ପହୀନା ହୋଇ ଅଳଙ୍କାର ରହିତା ହୋଇଛି । ମଧୁକରମାନଙ୍କର ଶବ୍ଦ ନ ଥିବାରୁ ଚିନ୍ତାରେ ମୌନବ୍ରତ ଅବଲମ୍ବନ କଲା ପରି ପରିଲକ୍ଷିତ ହେଉଅଛି । ଅତଏବ ଦୋଷ ପରିହାର ପାଇଁ ପାଦତଳେ ପଡ଼ିଥିବା ମୋତେ ସେହି ଚଣ୍ଡୀ ଉର୍ବଶୀ ପରିତ୍ୟାଗ କରି ଲତା ରୂପରେ ଅନୁତାପଗ୍ରସ୍ତା ହୋଇ ରହିଛନ୍ତି କି ? ।

୩୭ । ଯଥା ବା—

ତେଷାଂ ଗୋପବଧୂବିଳାସସୁହୃଦାଂ ରାଧାରହଃସାକ୍ଷିଣାଂ
କ୍ଷେମଂ ଭଦ୍ର କଳିନ୍ଦଶୈଳତନୟାତୀରେ ଲତାବେଶ୍ମନାମ୍ ।
ବିଚ୍ଛିନ୍ନେ ସ୍ମରତଳ୍ପକଳ୍ପନମୃଦୁଚ୍ଛେଦୋପଯୋଗେଽଧୁନା
ତେ ଜାନେ ଜରଠୀଭବନ୍ତି ବିଗଳନ୍ନୀଳତ୍ୱିଷଃ ପଲ୍ଲବାଃ ॥

୩୮ । ଇତ୍ୟେବମାଦୌ ବିଷୟେ ଅଚେତନାନାଂ ବାକ୍ୟାର୍ଥୀଭାବେଽପି ଚେତନବସ୍ତୁ-ବୃତ୍ତାନ୍ତ ଯୋଜନାଽସ୍ତ୍ୟେବ । ଅଥ ଯତ୍ର ଚେତନବସ୍ତୁବୃତ୍ତାନ୍ତଯୋଜନାଽସ୍ତି ତତ୍ର ରସାଦିରଳଂକାରଃ । ତଦେବଂ ସତି ଉପମାଦୟୋ ନିର୍ବିଷୟାଃ ପ୍ରବିରଳବିଷୟା ବା ସ୍ୟୁଃ । ଯସ୍ମାନ୍ନାସ୍ତ୍ୟେବାସା

---

୩୭—ଶ୍ରୀକୃଷ୍ଣ ଗୋପପୁରରୁ ଆଗତ ଉଦ୍ଧବଙ୍କୁ ଗୋପପୁର ବୃତ୍ତାନ୍ତ ପଚ୍ଚାରୁ ଅଛନ୍ତି । ହେ ଭଦ୍ର ! ମୋର ପରମ ପ୍ରେମାସ୍ପଦ, ଗୋପୀମାନଙ୍କର ବିଳାସ ବନ୍ଧୁ, ରାଧାଙ୍କର ରହଃ କ୍ରୀଡ଼ାର ସାକ୍ଷୀଭୂତ, ଯମୁନାତଟବର୍ତ୍ତୀ ସେହି ଲତାଗୃହମାନଙ୍କର ମଙ୍ଗଳ (କ୍ଷେମ) ତ ?, ବର୍ତ୍ତମାନ ଆମ୍ଭର ମଦନ-ଶଯ୍ୟା ପାଇଁ ମୃଦୁଚ୍ଛେଦ ବନ୍ଦ ହୁଅନ୍ତେ ପଲ୍ଲବଗୁଡ଼ିକ ସ୍ୱାଭାବିକ ନୀଳବର୍ଣ୍ଣ ତ୍ୟାଗ କରି ରୁଣ୍ଡିଳିଆ ହୋଇଯିବେଣି, କିମ୍ବା (ପାଚିଲ ପଡ଼ି ଯିବେଣି) ବୋଲି ମନେହେଉଛି । (ଅଥବା) ମଦନଶଯ୍ୟା ପାଇଁ ଗଛମାନଙ୍କରୁ ପତ୍ର ଖୁଣ୍ଟା ନ ହେବାରୁ ପଲ୍ଲବଗୁଡ଼ିକ ସ୍ୱାଭାବିକ କୋମଳତ୍ୱାଦି ସହିତ ନୀଳବର୍ଣ୍ଣକୁ ତ୍ୟାଗ କରି ବୁଢ଼ା ହେବେଣି ।

୩୮—ଏହିସବୁ ସ୍ଥଳମାନଙ୍କରେ ଅଚେତନ ବସ୍ତୁ ବୃତ୍ତାନ୍ତ ବାକ୍ୟାର୍ଥୀଭୂତ ହେଲେ ମଧ୍ୟ ତହିଁରେ ଚେତନ ବସ୍ତୁ ବୃତ୍ତାନ୍ତ ଯୋଗ କରାଯାଇଅଛି । ହଁଏ ତ ଯଦି ଚେତନ ବସ୍ତୁ ଯୋଜନା ସ୍ଥଳରେ ରସାଦ୍ୟଳଙ୍କାର ରହିବ, ତେବେ ଉପମା ପ୍ରଭୃତି ଅଳଙ୍କାର କେଉଁଠାରେ ରହିବ ? ସୁତରାଂ

ବଚେତନବସ୍ତୁବୃତ୍ତାନ୍ତୋ ଯତ୍ର ଚେତନବସ୍ତୁବୃତ୍ତାନ୍ତ-
ଯୋଜନା ନାସ୍ତ୍ୟନ୍ତତୋ ବିଭାବତ୍ୱେନ ॥

୩୯ । ତସ୍ମାଦଙ୍ଗତ୍ୱେନ ଚ ରସାଦୀନାମଲଂକରତା । ଯଃ
ପୁନରଙ୍ଗୀ ରସୋ ଭାବୋ ବା ସର୍ବାକାରମଲଂକାର୍ଯ୍ୟଃ ସ
ଧ୍ୱନେରାତ୍ମେତି ॥

୪୦ । କିଂଚ—

ତମର୍ଥମବଲମ୍ବନ୍ତେ ଯେଽଙ୍ଗିନଂ ତେ ଗୁଣାଃ ସ୍ମୃତାଃ ।
ଅଙ୍ଗାଶ୍ରିତାସ୍ତ୍ୱଲଂକାରା ମନ୍ତବ୍ୟାଃ କଟକାଦିବତ୍ ॥ ୬ ॥

---

ଉପମାଦି ଅଲଙ୍କାରମାନେ ସ୍ଥାନହୀନ ହେବେ । କାରଣ ଏଭଳି ଅଚେତନ ବସ୍ତୁ ବୃତ୍ତାନ୍ତ ନାହିଁ, ଯହିଁରେ କି ଚେତନ ବସ୍ତୁ ବୃତ୍ତାନ୍ତ ଯୋଗ କରା ନ ଯାଇଛି । କୌଣସିଠାରେ ସାକ୍ଷାତରେ ଚେତନ ବୃତ୍ତାନ୍ତ ନ ଥିଲେ ମଧ୍ୟ ବିଭାବାଦି ରୂପରେ ମଧ୍ୟ ଚେତନ ବୃତ୍ତାନ୍ତ ଯୋଗ କରାଯାଇଅଛି, ଯଥା ଜଡ଼ବସ୍ତୁ ଚନ୍ଦ୍ରାଦିର ବର୍ଣ୍ଣନା ଉଦ୍ଦୀପନ ବିଭାବରୂପେ ଚେତନ ବୃତ୍ତାନ୍ତକୁ ଆକ୍ଷେପ (ଆକର୍ଷଣ) କରୁଅଛି ।

୩୯—ଏଣୁ ଏହି ଭଳି ମତାବଲମ୍ବୀମାନଙ୍କ ରୀତିରେ ରସବଦାଦ୍ୟ-ଲଙ୍କାର ନିରୂପଣ କରିବା ଉଚିତ ନୁହେଁ । କିନ୍ତୁ ଆମ୍ଭ ମତରେ ରସାଦିମାନେ ଯେଉଁଠି ଅଙ୍ଗ ହେବେ ସେଠାରେ ରସବଦାଦି ଅଲଂକାର ହେବେ । ଯେଉଁଠି ସେମାନେ ଅଙ୍ଗୀ ହେବେ ସେଠାରେ ଧ୍ୱନି ସ୍ୱରୂପ ଧାରଣ କରି ଉପମାଦି ଅଲଙ୍କାର ଦ୍ୱାରା ଅଲଂକାର୍ଯ୍ୟ ହେବେ କିନ୍ତୁ ଅଲଂକାର ହେବେ ନାହିଁ ।

୪୦—ଯେଉଁମାନେ ସେହି ରସାଦିଲକ୍ଷଣ ଅଙ୍ଗୀ ଅର୍ଥକୁ ଅବଲମ୍ବନ (ଆଶ୍ରୟ) କରନ୍ତି, ସେମାନଙ୍କୁ ଗୁଣ ବୋଲିଯାଏ, ଏହି ଗୁଣ ମନୁଷ୍ୟଠାରେ ଶୌର୍ଯ୍ୟ ପାଣ୍ଡିତ୍ୟାଦି ପରି । ଯେଉଁମାନେ ଉକ୍ତ ଅଙ୍ଗୀ ରସାଦିର ଅଙ୍ଗସ୍ୱରୂପ ବାଚ୍ୟବାଚକମାନଙ୍କୁ ଆଶ୍ରୟ କରିବେ, ସେମାନଙ୍କୁ ଅଲଙ୍କାର ବୋଲି

ଯେ ତମର୍ଥଂ ରସାଦିଲକ୍ଷଣମଙ୍ଗିନଂ ସନ୍ତମବଲମ୍ବନ୍ତେ
ତେ ଗୁଣାଃ ଶୌର୍ଯ୍ୟାଦିବତ୍ ॥ ବାଚ୍ୟବାଚକ ଲକ୍ଷଣା
ନ୍ୟଙ୍ଗାନି ଯେ ପୁନସ୍ତଦାଶ୍ରିତାସ୍ତେଽଲଂକାରା ମନ୍ତବ୍ୟାଃ
କଟକାଦିବତ୍ ॥

୪୧ । ତଥାଚ—

ଶୃଙ୍ଗାର ଏବ ମଧୁରଃ ପରଃ ପ୍ରହ୍ଲାଦନୋ ରସଃ ।
ତନ୍ମୟଂ କାବ୍ୟମାଶ୍ରିତ୍ୟ ମାଧୁର୍ଯ୍ୟଂ ପ୍ରତିତିଷ୍ଠତି ॥ ୭ ॥

ଶୃଙ୍ଗାର ଏବ ରସାନ୍ତରାପେକ୍ଷୟା ମଧୁରଃ ପ୍ରହ୍ଲାଦ-
ହେତୁତ୍ୱାତ୍ । ତତ୍ପ୍ରକାଶନପର-ଶବ୍ଦାର୍ଥତୟା କାବ୍ୟସ୍ୟ
ସ ମାଧୁର୍ଯ୍ୟଲକ୍ଷଣୋ ଗୁଣଃ ।

---

ଜାଣିବାକୁ ହେବ । ଏହି ଉପମାଦି ଅଳଙ୍କାର ମନୁଷ୍ୟ ଦେହରେ କଟକ-ହାରାଦି ସ୍ୱରୂପ, କାବ୍ୟଶରୀରକୁ ଅଳଂକୃତ କରିଥାନ୍ତି ।

୪୧—ଶୃଙ୍ଗାରରସ ଅନ୍ୟ ରସ ଅପେକ୍ଷା ଅତ୍ୟନ୍ତ ଆନନ୍ଦଦାୟକ, ସୁତରାଂ ତାହା ମଧୁର । ଏଣୁ ଶୃଙ୍ଗାରମୟ କାବ୍ୟକୁ ମାଧୁର୍ଯ୍ୟ ଗୁଣ ଆଶ୍ରୟ କରି ରହିଥାଏ । ମାଧୁର୍ଯ୍ୟଗୁଣ ବସ୍ତୁତଃ ଶୃଙ୍ଗାରରସରେ ରହୁଥିଲେ ହେଁ ମଧୁର ରସ (ଶୃଙ୍ଗାର)ର ବ୍ୟଞ୍ଜକ ଶବ୍ଦ ଓ ଅର୍ଥରେ ଉପଚରିତ ହୁଏ, ଅର୍ଥାତ୍ ଶବ୍ଦ ଓ ଅର୍ଥର ମଧୁର ଶୃଙ୍ଗାରରସ ଅଭିବ୍ୟକ୍ତ କରି ପାରିବା ସାମର୍ଥ୍ୟ, ମାଧୁର୍ଯ୍ୟଗୁଣ ।

ତାତ୍ପର୍ଯ୍ୟାର୍ଥ—(ଶୃଙ୍ଗାରକୁ ମଧୁର ବୋଲି କହିବାର ଉଦ୍ଦେଶ୍ୟ ହେଉଛି ଯେ, ରତିରେ ଦେବତା ମନୁଷ୍ୟ ପଶୁ ସମସ୍ତଙ୍କର ଅବଚ୍ଛିନ୍ନ ବାସନାପ୍ରବାହ ରହିଅଛି । ଏଣୁ ସମସ୍ତେ ତାକୁ ହାର୍ଦ୍ଦିକ ଅନୁଭବ କରନ୍ତି । ଯତି ମଧ୍ୟ ତାହାର ଚମତ୍କାରତା ଅନୁଭବ କରେ । ଏଣୁ ତାହା ସମସ୍ତଙ୍କର ଆନନ୍ଦ-ଦାୟକ ସୁତରାଂ ମଧୁର । ଉକ୍ତ ମଧୁର ରସକୁ ଆଶ୍ରୟ କରି ରହିଥିବା ହେତୁ ଉକ୍ତ ଗୁଣର ନାମ ମାଧୁର୍ଯ୍ୟ ଗୁଣ । ବସ୍ତୁତଃ ଶୃଙ୍ଗାରାଦି ସକଳ-ରସରେ ମାଧୁର୍ଯ୍ୟଗୁଣ ରହୁଥିଲେହେଁ ଶୃଙ୍ଗାରର ପ୍ରାଧାନ୍ୟ ହେତୁ କାରିକାରେ କେବଳ ଶୃଙ୍ଗାରର ନାମ ଉଲ୍ଲେଖ କରାଯାଇଛି ମାତ୍ର ।)

୪୨ । ଶ୍ରବ୍ୟତ୍ୱଂ ପୁନରୋଜସୋଽପି ସାଧାରଣମେତ୍ତ ॥

୪୩ । ଶୃଙ୍ଗାରେ ବିପ୍ରଲମ୍ଭାଖ୍ୟେ କରୁଣେ ଚ ପ୍ରକର୍ଷବତ୍ ।
ମାଧୁର୍ଯ୍ୟମାର୍ଦ୍ରତାଂ ଯାତି ଯତସ୍ତତ୍ରାଧିକଂ ମନଃ ॥ ୮ ॥
ବିପ୍ରଲମ୍ଭଶୃଙ୍ଗାରକରୁଣୟୋସ୍ତୁ ମାଧୁର୍ଯ୍ୟମେବ ପ୍ରକର୍ଷବତ୍ ।
ସହୃଦୟହୃଦୟାବର୍ଜନାତିଶୟନିମିତ୍ତତ୍ୱାଦିତି ॥

୪୪ । ରୌଦ୍ରାଦୟୋ ରସା ଦୀପ୍ତ୍ୟା ଲକ୍ଷ୍ୟନ୍ତେ କାବ୍ୟବର୍ତ୍ତିନଃ ।
ତଦ୍ବ୍ୟକ୍ତିହେତୂ ଶବ୍ଦାର୍ଥା-ବାଶ୍ରିତ୍ୟୋଜୋ ବ୍ୟବସ୍ଥିତମ୍ ॥୯ ।

---

୪୨ — ଭାମହ କହନ୍ତି ଯେ "ଶ୍ରବ୍ୟଂ ନାତି ସମସ୍ତାର୍ଥ କାବ୍ୟଂ ମଧୁରମିଷ୍ୟତେ" ଅଧିକ ସମାସଶୂନ୍ୟ ଶ୍ରବ୍ୟ ଶବ୍ଦନିବନ୍ଧନରୁ ମାଧୁର୍ଯ୍ୟ ଗୁଣ ହୁଏ । ବୃତ୍ତିକାର ତାଙ୍କ ମତ ଖଣ୍ଡନ କରିବାକୁ କହୁଛନ୍ତି ଯେ, ଶ୍ରବ୍ୟତ୍ୱ ପ୍ରଭୃତି ମାଧୁର୍ଯ୍ୟ ଗୁଣର ଲକ୍ଷଣ "ଯୋ ଯଃ ଶସ୍ତ୍ରଂ ବିଭର୍ତ୍ତି" ଇତ୍ୟାଦି ଓଜୋ ଗୁଣବିଶିଷ୍ଟ କାବ୍ୟରେ ମଧ୍ୟ ରହିଅଛି । ଏଣୁ ଅତିବ୍ୟାପ୍ତି ଦୋଷରେ ଦୁଷ୍ଟ ହେବା ହେତୁ ଭାମହଙ୍କ ଲକ୍ଷଣ ଠିକ୍ ନୁହେ ।

୪୩—ବିପ୍ରଲମ୍ଭ ଶୃଙ୍ଗାର ଓ କରୁଣ ରସରେ ମାଧୁର୍ଯ୍ୟ ଗୁଣ ପ୍ରକର୍ଷ ସାଧନ କରେ; ସମ୍ଭୋଗ-ଶୃଙ୍ଗାର ଅପେକ୍ଷା ବିପ୍ରଲମ୍ଭରେ ଓ ତଦପେକ୍ଷା କରୁଣରେ ଅଧିକ ଉତ୍କର୍ଷ ସମାଦାନ କରେ, ଯେହେତୁ ସେସବୁ ରସରେ ସହୃଦୟମାନଙ୍କ ମନ ଅଧିକ ଆର୍ଦ୍ର ହୁଏ । ଯଥା; ସମ୍ଭୋଗଶୃଙ୍ଗାର ଆସ୍ୱାଦରେ ଚିତ୍ତ ସ୍ୱାଭାବିକ କାଠିନ୍ୟ ତ୍ୟାଗ କରେ, ବିପ୍ରଲମ୍ଭାସ୍ୱାଦରେ କ୍ରୋଧାଦିକୃତ ଦୀପ୍ତି ସହିତ ସ୍ୱାଭାବିକ କାଠିନ୍ୟକୁ ତ୍ୟାଗ କରେ ଏବଂ କରୁଣ ରସରେ, ବିସ୍ମୟହାସାଦିରେ ଅନୁରାଗିତା ଓ କ୍ରୋଧାଦିକୃତ ଦୀପ୍ତି ସହିତ ସ୍ୱାଭାବିକ କାଠିନ୍ୟକୁ ତ୍ୟାଗ କରେ । ଏଣୁ କରୁଣରସରେ ଚିତ୍ତ ସର୍ବାପେକ୍ଷା ଅଧିକ ଦ୍ରବୀଭୂତ ହୁଏ ।

୪୪—କାବ୍ୟବର୍ତ୍ତୀ ରୌଦ୍ର, ବୀର, ଅଦ୍ଭୁତ ରସଗୁଡିକ ଗ୍ରାହକର ହୃଦୟରେ ଦୀପ୍ତି ଅର୍ଥାତ ଅତ୍ୟନ୍ତ ଉଜ୍ଜ୍ୱଳତାକୁ ଜାତ କରନ୍ତି । ତେଣୁ ଦୀପ୍ତିଶବ୍ଦ କାର୍ଯ୍ୟକାରଣସମ୍ବନ୍ଧରୁ ଲକ୍ଷଣା ବୃତ୍ତି ଦ୍ୱାରା (ଉକ୍ତ ଦୀପ୍ତିର କାରଣ)

ରୌଦ୍ରାଦୟୋ ହି ରସାଃ ପରାଂ ଦୀପ୍ତିମୁଜ୍ଜ୍ୱଲତାଂ ଜନୟ-
ନ୍ତୀତି ଲକ୍ଷଣୟା ତ ଏବ ଦୀପ୍ତିରିତ୍ୟୁଚ୍ୟତେ ॥

୪୫ । ତତ୍ ପ୍ରକାଶନପରଃ ଶବ୍ଦୋ ଦୀର୍ଘସମାସରଚନାଲଂକୃତଂ
ବାକ୍ୟମ୍ ॥

୪୬ । ଯଥା—ଚଞ୍ଚଦ୍‌ଭୁଜ-ଭ୍ରମିତଚଣ୍ଡ-ଗଦାଭିଘାତ-
ସଞ୍ଚୂର୍ଣ୍ଣିତୋରୁ-ଯୁଗଳସ୍ୟ ସୁଯୋଧନସ୍ୟ ।
ସ୍ତ୍ୟାନାବନଦ୍ଧ-ଘନ-ଶୋଣିତ-ଶୋଣପାଣି-
ରୁତ୍ତଂସୟିଷ୍ୟତି କଚାଂସ୍ତବ ଦେବି ! ଭୀମଃ ॥

---

ଉକ୍ତ ରୌଦ୍ରାଦି ରସକୁ ବୁଝାଇଥାଏ । ପୁନଶ୍ଚ ଏହି ଦୀପ୍ତି ଶବ୍ଦ ଲକ୍ଷିତ-
ଲକ୍ଷଣା ଦ୍ୱାରା ଉକ୍ତ ରସବ୍ୟଞ୍ଜକ ଶବ୍ଦାର୍ଥଯୁଗଳକୁ ବୁଝାଏ ॥ ଅର୍ଥାତ୍
ଦୀପ୍ତିଶବ୍ଦ ପରମ୍ପରା ସମ୍ବନ୍ଧରେ ନିଜର କାରଣର କାରଣ ସ୍ୱରୂପ ଦୀର୍ଘ-
ସମାସ ରଚନାକୁ ମଧ୍ୟ ବୁଝାଏ । ଉକ୍ତ ଦୀପ୍ତିର ଅନ୍ୟ ନାମ ଓଜ । ସେ
ଦୀର୍ଘସମାସ ରଚନାବିଶିଷ୍ଟ ବାକ୍ୟକୁ ଆଶ୍ରୟ କରି ରହେ ॥

୪୫—ଓଜ ପ୍ରକାଶକ ଶବ୍ଦ ଯଥା :—ଦୀର୍ଘସମାସ ରଚନାବିଶିଷ୍ଟ
ବାକ୍ୟ ସେହି ଓଜୋ ଗୁଣର ପ୍ରକାଶକ ।

୪୬—ଉଦାହରଣ ଯଥା ବେଣୀସଂହାରରେ ଦ୍ରୌପଦୀଙ୍କ ପ୍ରତି
ଭୀମସେନଙ୍କ ଉକ୍ତି, ହେ ଦେବି ! ବେଗାତିଶୟ ହେତୁ (ଭଉଁରି ପରି)
ଘୂରୁଥିବା ଭୁଜଦ୍ୱୟ ଦ୍ୱାରା ଭ୍ରାମ୍ୟମାଣ ପ୍ରଚଣ୍ଡ ଗଦାର ଗୁରୁପ୍ରହାରରେ
ସମ୍ୟକ୍‌ଭାବେ ଉରୁଦ୍ୱୟ ଚୂର୍ଣ୍ଣିତ ହୋଇଥିବା ଦୁର୍ଯୋଧନର ବହଳ ମେଞ୍ଚା
ମେଞ୍ଚା (ଅବନଦ୍ଧ) ପିଣ୍ଡୀଭୂତ (ଘନ) ଶୋଣିତକୁ ଧରିବା ଦ୍ୱାରା ରକ୍ତାକ୍ତ
ହସ୍ତ ଭୀମ, ତୁମ୍ଭର କେଶପାଶକୁ ବିଭୂଷିତ କରିବ ।

ଏହି ଶ୍ଳୋକରେ "ଚଞ୍ଚଦ୍‌ଭୁଜ—ଯୁଗଳସ୍ୟ" ଓ ସ୍ତ୍ୟାନାବନଦ୍ଧ...
... ପାଣିଃ" ଏହି ଦୁଇଟି ଦୀର୍ଘସମାସ ଓଜୋଗୁଣର ପ୍ରକାଶକ ॥

୪୭ । ତତ୍ ପ୍ରକାଶନପରଶ୍ଚାର୍ଥୋଽନପେକ୍ଷିତଦୀର୍ଘସମାସ-
ରଚନଃ ପ୍ରସନ୍ନବାଚକାଭିଧେୟଃ ।

୪୮ । ଯଥା—ଯୋ ଯଃ ଶସ୍ତ୍ରଂ ବିଭର୍ତ୍ତି ସ୍ୱଭୁଜ-
ଗୁରୁମଦଃ ପାଣ୍ଡବୀନାଂ ଚମୂନାଂ
ଯୋ ଯଃ ପାଞ୍ଚାଲଗୋତ୍ରେ ଶିଶୁର—
ଧିକବୟା ଗର୍ଭଶଯ୍ୟାଂ ଗତୋ ବା ।
ଯୋ ଯସ୍ତତ୍କର୍ମସାକ୍ଷୀ ଚରତି
ମୟି ରଣେ ଯଶ୍ଚ ଯଶ୍ଚ ପ୍ରତୀପଃ
କ୍ରୋଧାନ୍ଧସ୍ତସ୍ୟ ତସ୍ୟ ସ୍ୱୟମପି
ଜଗତାମନ୍ତକସ୍ୟାନ୍ତକୋଽହମ୍ ॥

୪୯ । ଇତ୍ୟାଦୌ ଦ୍ୱୟୋରୋଜସ୍ତ୍ୱମ୍ ॥

---

୪୭—ଓଜୋଗୁଣର ପ୍ରକାଶକ ଅର୍ଥ ଯଥା :– ଦୀର୍ଘସମାସ ରଚନାକୁ ଅପେକ୍ଷା ନ ରଖି କେବଳ ଅର୍ଥ ମଧ୍ୟ ପ୍ରସନ୍ନ ଶବ୍ଦ ଦ୍ୱାରା ଓଜୋ ଗୁଣକୁ ପ୍ରକାଶ କରେ ।

୪୮—ଉଦାହରଣ ଯଥା—ବେଣୀସଂହାରରେ ଅଶ୍ୱତ୍ଥାମାଙ୍କ ଉକ୍ତି :— ପାଣ୍ଡବ ସେନାମଧ୍ୟରେ ଯେଉଁ ଯେଉଁ ଭୁଜ-ଦର୍ପଶାଳୀ ଯୋଦ୍ଧା (ଅର୍ଜୁନାଦି) ଶସ୍ତ୍ରଧାରଣ କରିଅଛନ୍ତି; ପାଞ୍ଚାଳରାଜ ଦ୍ରୁପଦ ବଂଶରେ ଯେଉଁ ଯେଉଁ ବାଳକ, ବୃଦ୍ଧ ଏପରିକି ଗର୍ଭସ୍ଥ ଭ୍ରୂଣ ମଧ୍ୟ ଅଛନ୍ତି, (ଧୃଷ୍ଟଦ୍ୟୁମ୍ନ ଦ୍ରୋଣଙ୍କୁ ବଧ କରିଥିବାରୁ ତାଙ୍କ ବଂଶ ପ୍ରତି କ୍ରୋଧ) ! ସିଏ ସିଏ ଏତାଦୃଶ ଘୋର ପାପକର୍ମ ଗୁରୁହତ୍ୟାର ସାକ୍ଷୀ [ଉଦାସୀନ ଦ୍ରଷ୍ଟା ଯଥା—କର୍ଣ୍ଣାଦି], ମୁଁ ଯୁଦ୍ଧ କରିବା ବେଳେ ଯେଉଁମାନେ ସବୁ ପ୍ରତିକୂଳ ଆଚରଣ କରିବେ, (ଯଥା—ଶ୍ରୀକୃଷ୍ଣାଦି) ସେମାନେ ନିଜେ ଅନ୍ତକ ଅର୍ଥାତ୍ ଯମ ଦେବତା ହେଲେ ମଧ୍ୟ ମୁଁ କ୍ରୋଧାନ୍ଧ ହୋଇ ତାଙ୍କର ଅନ୍ତକ ହେବି ।

୪୯ । ଚଞ୍ଚଦ୍‌ଭୁଜ ଇତ୍ୟାଦି ଶ୍ଳୋକରେ ଶବ୍ଦ ଓ "ଯୋ ଯଃ ଶସ୍ତ୍ରମ୍" ଇତ୍ୟାଦି ଶ୍ଳୋକରେ ଅର୍ଥ ଓଜଗୁଣର ପ୍ରକାଶକ । ହାସ୍ୟରେ ମାଧୁର୍ଯ୍ୟ, ଓଜ,

୫୦ । ସମର୍ପକତ୍ୱଂ କାବ୍ୟସ୍ୟ ଯତ୍ତୁ ସର୍ବରସାନ୍ ପ୍ରତି ।
ସ ପ୍ରସାଦଗୁଣୋ ଜ୍ଞେୟଃ ସର୍ବସାଧାରଣକ୍ରିୟଃ ॥ ୧୦ ।

୫୧ । ପ୍ରସାଦସ୍ତୁ ସ୍ୱଚ୍ଛତା ଶବ୍ଦାର୍ଥୟୋଃ । ସ ଚ ସର୍ବରସ ସାଧାରଣୋ ଗୁଣଃ ସର୍ବରଚନାସାଧାରଣଶ୍ଚ ବ୍ୟଙ୍ଗ୍ୟାର୍ଥାପେକ୍ଷୟୈବ ମୁଖ୍ୟତୟା ବ୍ୟବସ୍ଥିତୋ ମନ୍ତବ୍ୟଃ ॥

୫୨ । ଶ୍ରୁତିଦୁଷ୍ଟାଦୟୋ ଦୋଷା ଅନିତ୍ୟା ଯେ ଚ ଦର୍ଶିତାଃ ।
ଧ୍ୱନ୍ୟାତ୍ମନ୍ୟେବ ଶୃଙ୍ଗାରେ ତେ ହେୟା ଇତ୍ୟୁଦାହୃତାଃ ॥ ୧୧

---

ଭୟାନକ ଓ ବୀଭତ୍ସରେ ଓଜ ଏବଂ ଶାନ୍ତରେ କଦାଚିତ୍ ଓଜ କଦାଚିତ୍ ମାଧୁର୍ଯ୍ୟ ଗୁଣ ପ୍ରକୃଷ୍ଟ ।

୫୦—କାବ୍ୟର ସମସ୍ତ ରସ ପ୍ରତି ସମର୍ପକତ୍ୱ (ଝଟିତି ଅର୍ଥବୋଧକତ୍ୱ) ହେଉଛି ପ୍ରସାଦ ଗୁଣ । ତାହା ସର୍ବସାଧାରଣ କ୍ରିୟ, ଅର୍ଥାତ୍ ସବୁ ରସ ଓ ସବୁ ରଚନାର ଉପଯୋଗୀ ।

୫୧—(ଅତିଶୀଘ୍ର ଅର୍ଥ ବୁଝାଇବା, ଶବ୍ଦର ସ୍ୱଚ୍ଛତା ଓ ଶୀଘ୍ର ବୋଧ ହେବା, ଅର୍ଥର ସ୍ୱଚ୍ଛତା) ଉକ୍ତ ଶବ୍ଦ ଓ ଅର୍ଥର ସ୍ୱଚ୍ଛତାକୁ ପ୍ରସାଦ ବୋଲାଯାଏ । ତାହା ଶୃଙ୍ଗାରାଦି ସର୍ବ ରସ ପ୍ରତି ପୁନଶ୍ଚ ସମସ୍ତ ଶବ୍ଦଗତ ଓ ଅସମସ୍ତ – ଶବ୍ଦଗତ, ଏବଂ ଅର୍ଥଗତ ସମସ୍ତ ରଚନା ପ୍ରତି ସାଧାରଣତଃ ଅନୁକୂଳ । ଝଟିତି ଅର୍ଥ ବୋଧ କରାଯାଉଥିବାରୁ ବ୍ୟଙ୍ଗାର୍ଥ ପ୍ରକାଶ ପ୍ରତି ମଧ୍ୟ ଅନୁକୂଳ । ଏଣୁ ବ୍ୟଙ୍ଗ୍ୟାର୍ଥ ପାଇଁ ପ୍ରସାଦ ଗୁଣ ମୁଖ୍ୟ । (ଭାମହଙ୍କ ମତ ଅନୁସାରେ ମାଧୁର୍ଯ୍ୟ ଓଜ ଓ ପ୍ରସାଦ ତିନିଗୋଟି ଗୁଣର ଉଲ୍ଲେଖ କରାଯାଇଅଛି ।

୫୨—ଶ୍ରୁତିଦୁଷ୍ଟ ପ୍ରଭୃତି ଯେଉଁ ସବୁ ଅନିତ୍ୟ ଦୋଷମାନଙ୍କୁ ଅଳଙ୍କାରକମାନେ ସୂଚାଉ ଅଛନ୍ତି (ପରନ୍ତୁ ସ୍ପଷ୍ଟଭାବେ ବକ୍ତବ୍ୟ ବିଷୟ କରି ଦର୍ଶାଇ ନାହାନ୍ତି) ତାହା ସବୁ ପ୍ରଧାନଭାବେ ଶୃଙ୍ଗାରରସ ଧ୍ୱନ୍ୟମାନ ହେଉଥିବା ସ୍ଥଳରେ ବର୍ଜନୀୟ ।

୫୩ । ଅନତ୍ୟା ଦୋଷାଶ୍ଚ ଯେ ଶ୍ରୁତଦୁଷ୍ଟାଦୟଃ ସୂଚିତାସ୍ତେଽପି ନ ବାଚ୍ୟେ ଅର୍ଥମାତ୍ରେ, ନ ଚ ବ୍ୟଙ୍ଗ୍ୟେ ଶୃଙ୍ଗାରବ୍ୟତିରେକିଣି, ଶୃଙ୍ଗାରେ ବା ଧ୍ୱନେରନାତ୍ମଭୂତେ । କିଂ ତର୍ହି ? ଧ୍ୱନ୍ୟାତ୍ମନ୍ୟେବ ଶୃଙ୍ଗାରେଽଙ୍ଗିତୟା ବ୍ୟଙ୍ଗ୍ୟେ ତେ ହେୟା ଇତ୍ୟୁଦାହୃତାଃ । ଅନ୍ୟଥା ହି ତେଷାମନତ୍ୟଦୋଷତୈବ ନ ସ୍ୟାତ୍ ॥

୫୪ । ଏବମୟମସଂଲକ୍ଷ୍ୟକ୍ରମୋଦ୍ୟୋତ୍ୟୋ ଧ୍ୱନେରାତ୍ମା ପ୍ରଦର୍ଶିତଃ ସାମାନ୍ୟେନ ।

୫୫ । ତସ୍ୟାଙ୍ଗାନାଂ ପ୍ରଭେଦା ଯେ ପ୍ରଭେଦାଃ ସ୍ୱଗତାଶ୍ଚ ଯେ ତେଷାମାନନ୍ତ୍ୟମନ୍ୟୋନ୍ୟ-ସମ୍ବନ୍ଧପରିକଳ୍ପନେ ॥ ୧୬

---

୫୩—ଶ୍ରୁତଦୁଷ୍ଟାଦିମାନେ ଅନିତ୍ୟ ଦୋଷ । ସେମାନେ ବାଚ୍ୟାର୍ଥ ମାନଙ୍କରେ ଦୋଷ ନୁହନ୍ତି । ପୁନଶ୍ଚ ଅଙ୍ଗଭୂତ ଶୃଙ୍ଗାରରସରେ କିମ୍ବା ଅଙ୍ଗୀଭୂତ ଅନ୍ୟ ରସରେ ଦୋଷ ନୁହନ୍ତି । ତେବେ କେଉଁଠି ଦୋଷ ହେବେ ? ଯେଉଁଠି କେବଳ ଶୃଙ୍ଗାରରସ ଅଙ୍ଗୀଭାବେ ବ୍ୟଙ୍ଗ ହୋଇଥାଏ, ସେଠାରେ ଶ୍ରୁତଦୁଷ୍ଟାଦିଦୋଷ ଗଣା ହୁଅନ୍ତି, ଏଣୁ ସେଠାରେ ସେମାନେ ବର୍ଜନୀୟ । ଯଦି ଅଙ୍ଗଭୂତ ଶୃଙ୍ଗାରାଦିରେ ଶ୍ରୁତଦୁଷ୍ଟାଦି ଦୋଷ ହୁଅନ୍ତେ, ତେବେ ସେମାନଙ୍କୁ ଅନିତ୍ୟ ଦୋଷ ବୋଲି କୁହାଯାଆନ୍ତା ନାହିଁ ।

୫୪—ଏହିପରି ସଂକ୍ଷେପରେ ସାଧାରଣତଃ ଅସଂଲକ୍ଷ୍ୟକ୍ରମଧ୍ୱନିର ସ୍ୱରୂପ ପ୍ରଦର୍ଶିତ ହେଲା ।

୫୫—ସେହି ଅସଂଲକ୍ଷ୍ୟକ୍ରମବ୍ୟଙ୍ଗ୍ୟ ଧ୍ୱନିର ଅଙ୍ଗ ସ୍ୱରୂପ (ଶୋଭାଧାୟକ) ଅଳଙ୍କାରମାନଙ୍କର ଯେଉଁ ପ୍ରଭେଦ ଏବଂ ଯାହା ସବୁ ରସଭାବାଦିରୂପ ସ୍ୱଗତ ପ୍ରଭେଦ ସେମାନଙ୍କର ପରସ୍ପର ସମ୍ବନ୍ଧ କଳ୍ପନା କଲେ ଅନନ୍ତ ପ୍ରଭେଦ ହେବ ।

୫୬ । ଅଙ୍ଗିତୟା ବ୍ୟଙ୍ଗ୍ୟା ରସାଦିର୍ବିବକ୍ଷିତାନ୍ୟପରବାଚ୍ୟସ୍ୟ ଧ୍ୱନେରେକ ଆତ୍ମା ଯ ଉକ୍ତଃ, ତସ୍ୟାଙ୍ଗାନାଂ ବାଚ୍ୟ-ବାଚକାନୁପାତିନାମଲଂକାରାଣାଂ ଯେ ପ୍ରଭେଦା ନିର-ବଧୟୋ ଯେ ଚ ସ୍ୱଗତାସ୍ତସ୍ୟାଙ୍ଗିନୋଽର୍ଥସ୍ୟ ରସଭାବ-ତଦାଭାସ-ତତ୍ପ୍ରଶମଲକ୍ଷଣା ବିଭାବାନୁଭାବପ୍ରତିପାଦନ-ସହିତା ଅନନ୍ତାଃ ସ୍ୱାଶ୍ରୟାପେକ୍ଷୟା ନିଃସୀମାନୋ ବିଶେଷାଃ ॥

୫୭ । ତେଷାମନ୍ୟୋନ୍ୟସମ୍ବନ୍ଧପରିକଳ୍ପନେ କ୍ରିୟମାଣେ କସ୍ୟଚିଦନ୍ୟତମସ୍ୟାପି ରସସ୍ୟ ପ୍ରକାରାଃ ପରି-ସଂଖ୍ୟାତୁଂ ନ ଶକ୍ୟନ୍ତେ କିମୁତ ସର୍ବେଷାମ୍ ॥

---

୫୬—ଅଙ୍ଗୀଭାବେ ବ୍ୟଙ୍ଗ୍ୟ ହେଉଥିବା ରସାଦି (ରସ, ରସାଭାସ, ଭାବ, ଭାବାଭାସ, ଭାବୋଦୟ, ଭାବପ୍ରଶମ, ଭାବସନ୍ଧି ଓ ଭାବଶବଳତା) ଅସଂଲକ୍ଷ୍ୟ-କ୍ରମ ବ୍ୟଙ୍ଗ୍ୟଧ୍ୱନି । ଏମାନଙ୍କର ଭେଦ ପ୍ରଭେଦକୁ ସଂଖ୍ୟା କରିଯାଇ ପାରୁ ନ ଥିବାରୁ ମୋଟାମୋଟି ତାହାକୁ ଗୋଟିଏ ପ୍ରକାର ବୋଲି କୁହାଯାଇଛି ।

ତାହାର ଅଙ୍ଗଗତ—(ଶବ୍ଦାର୍ଥଗତ) ପ୍ରଭେଦ— ଉପମାଦି ଅଳଙ୍କାର ।

ସ୍ୱଗତଭେଦ—ଯଥା :—ଶୃଙ୍ଗାର ର-ସମ୍ଭୋଗ, ବିପ୍ରଲମ୍ଭ ଓ ବିପ୍ରଲମ୍ଭର ମାନ, ପ୍ରବାସ ପ୍ରଭୃତି ।

ସ୍ୱାଶ୍ରୟଭେଦ –(ସ୍ୱ ରସାଦି, ତାହାର ଆଶ୍ରୟ ନାୟକାଦି ଆଲମ୍ବନ ବିଭାବ, ସେମାନଙ୍କର ଭେଦ) ନାୟକନାୟିକା ପ୍ରଭୃତିଙ୍କର ସ୍ୱଭାବ ଓ ଅବସ୍ଥା ଭେଦରେ ଯେଉଁ ସବୁ ପ୍ରଭେଦ,

ଏ ପ୍ରତ୍ୟେକେ ଭିନ୍ନ ଭିନ୍ନ ବିଭାବ ଅନୁଭାବ ବ୍ୟଭିଚାରିଭାବ ପ୍ରତିପାଦନ ଦ୍ୱାରା ଅପରିମିତ ।

୫୭—ଉକ୍ତ ଅପରିମିତ ପ୍ରଭେଦର ପୁଣି ପରସ୍ପର ସମ୍ବନ୍ଧ ପରିକଳ୍ପନା କଲେ ଯେ କୌଣସି ଗୋଟିଏ ରସର ପ୍ରଭେଦ ମଧ୍ୟ ସଂଖ୍ୟା କରି ହେବ ନାହିଁ । ସମସ୍ତଙ୍କ କଥା ବା କଅଣ କହିବା ?

୫୮ । ତଥାହି ଶୃଙ୍ଗାରସ୍ୟାଙ୍ଗିନସ୍ତାବଦାଦୌ ଦ୍ୱୌ ଭେଦୌ, ସମ୍ଭୋଗୋ ବିପ୍ରଲମ୍ଭଶ୍ଚ । ସମ୍ଭୋଗସ୍ୟ ଚ ପରସ୍ପର-ପ୍ରେମଦର୍ଶନସୁରତବିହରଣାଦିଲକ୍ଷଣାଃ ପ୍ରକାରାଃ । ବିପ୍ରଲମ୍ଭସ୍ୟାପ୍ୟଭିଲାଷେର୍ଷ୍ୟା-ବିରହ-ପ୍ରବାସ-ବିପ୍ରଲମ୍ଭା-ଦୟଃ । ତେଷାଂ ଚ ପ୍ରତ୍ୟେକଂ ବିଭାବାନୁଭାବ-ବ୍ୟଭି-ଚାରିଭେଦଃ । ତେଷାଂ ଚ ଦେଶକାଲାଦ୍ୟାଶ୍ରୟାବସ୍ଥା-ଭେଦ ଇତି ସ୍ୱଗତଭେଦା-ପେକ୍ଷୟୈକସ୍ୟ ତସ୍ୟାପରି-ମେୟତ୍ୱମ୍, କିଂ ପୁନରଙ୍ଗପ୍ରଭେଦକଳ୍ପନାୟାମ୍ ॥ ତେ ହ୍ୟଙ୍ଗପ୍ରଭେଦାଃ ପ୍ରତ୍ୟେକମଙ୍ଗିପ୍ରଭେଦସମ୍ବନ୍ଧ-ପରିକଳ୍ପନେ କ୍ରିୟମାଣେ ସତ୍ୟାନନ୍ତ୍ୟମେବୋପଯାନ୍ତି ॥

୫୯ । ଦିଙ୍‌ମାତ୍ରଂ ତୂଚ୍ୟତେ ଯେନ ବ୍ୟୁତ୍ପନ୍ନାନାଂ ସଚେତସାମ୍ ବୁଦ୍ଧିରାସାଦିତାଲୋକା ସର୍ବତ୍ରୈବ ଭବିଷ୍ୟତି ॥ ୧୩

---

୫୮—ଶୃଙ୍ଗାର ରସର ପ୍ରଥମତଃ ଦୁଇଟି ଭେଦ । ସମ୍ଭୋଗ ଓ ବିପ୍ର-ଲମ୍ଭ । ସମ୍ଭୋଗର ପରସ୍ପର ପ୍ରେମପୂର୍ବକ ଦର୍ଶନ, ସୁରତ ବିହାର ପ୍ରଭୃତି ପ୍ରଭେଦ । ବିପ୍ରଲମ୍ଭର ଅଭିଲାଷ, ଈର୍ଷ୍ୟା, ବିରହ, ପ୍ରବାସ ପ୍ରଭୃତି ରୂପରେ ଭେଦ । ସେମାନଙ୍କର ପୁଣି ପ୍ରତ୍ୟେକରେ ବିଭାବ ଅନୁଭାବ ଓ ବ୍ୟଭିଚାରିଭାବ-ଗତ ପ୍ରଭେଦ । ଆଉ ପୁଣି ଏହି ବିଭାବାଦିଙ୍କର ଦେଶକାଳାଦି ଆଶ୍ରୟଭେଦ ଓ ନାନା ଅବସ୍ଥାଭେଦ । ଏହିପରି ଏକମାତ୍ର ଶୃଙ୍ଗାର ରସର ସ୍ୱଗତଭେଦ ଅପରିମିତ । ଅଙ୍ଗଗତ (ଅଳଙ୍କାରଗତ) ଭେଦକଳ୍ପନାରେ ସଂଖ୍ୟାକରଣ କଥା କଣ କହିବା ? ଅଙ୍ଗ ପ୍ରଭେଦଗୁଡ଼ିକରେ ଅଙ୍ଗି-ପ୍ରଭେଦ ସହ ସମ୍ବନ୍ଧ-କଳ୍ପନା କଲେ ଅନନ୍ତ ପ୍ରଭେଦ ହେବ ।

୫୯—ପ୍ରତ୍ୟେକ ରସର ଭେଦ ଉପଭେଦ ଓ ତାର ଅଳଙ୍କାରମାନଙ୍କ ସହ ସମ୍ବନ୍ଧ ନ ଦର୍ଶାଇ କେବଳ ଦିଙ୍‌ମାତ୍ର କହି ଦେଉଛନ୍ତି । ଯାହା ଦ୍ୱାରା ବ୍ୟୁତ୍ପନ୍ନ (ନିପୁଣ) ମହାକବି ହେବାକୁ ଇଚ୍ଛା କରୁଥିବା ସହୃଦୟମାନଙ୍କର

ବର୍ତ୍ମମାତ୍ରକଥନେନ ହି ବ୍ୟୁତ୍ପନ୍ନାନାଂ ସହୃଦୟାନାମେକତ୍ରାପି ରସଭେଦେ ସହାଲଂକାରୈରଙ୍ଗାଙ୍ଗିଂଭାବପରିଜ୍ଞାନାଦାସାଦିତାଲୋକା ବୁଦ୍ଧିଃ ସର୍ବତ୍ରୈବ ଭବିଷ୍ୟତି ॥

୬୦ । ତତ୍ର—ଶଙ୍ଗାରସ୍ୟାଙ୍ଗିନୋ ଯତ୍ନାଦେକରୂପାନୁବନ୍ଧବାନ୍ ।
ସର୍ବେଷ୍ୱେବ ପ୍ରଭେଦେଷୁ ନାନୁପ୍ରାସଃ ପ୍ରକାଶକଃ ॥ ୧୪

ଅଙ୍ଗିନୋ ହି ଶୃଙ୍ଗାରସ୍ୟ ଯେ ଉକ୍ତାଃ ପ୍ରଭେଦାସ୍ତେଷୁ ସର୍ବେଷ୍ୱେକପ୍ରକାରାନୁବନ୍ଧିତୟା ପ୍ରବନ୍ଧେନ ପ୍ରବୃତ୍ତୋଽନୁପ୍ରାସୋ ନ ବ୍ୟଞ୍ଜକଃ ॥

୬୧ । ଅଙ୍ଗିନ ଇତ୍ୟନେନାଙ୍ଗଭୂତସ୍ୟ ଶୃଙ୍ଗାରସ୍ୟୈକରୂପାନୁବନ୍ଧ୍ୟନୁପ୍ରାସନିବନ୍ଧନେ କାମଚାରମାହ ॥

---

ବୁଦ୍ଧି ସମସ୍ତ ରସର କବିତା ସ୍ଥଳରେ ଆଲୋକ ପ୍ରାପ୍ତ ହେବ । ଗୋଟିଏ ରସର ଅଳଙ୍କାର ସହିତ ଅଙ୍ଗାଙ୍ଗି ସମ୍ବନ୍ଧ ଜ୍ଞାନବଳରୁ ବ୍ୟୁତ୍ପନ୍ନମାନେ ସବୁ ରସରେ ସ୍ୱତଃ ଜ୍ଞାନ ଅର୍ଜନ କରି ପାରିବେ ।

୬୦—ଅନୁପ୍ରାସ ପାଇଁ ଯତ୍ନପୂର୍ବକ ବର୍ଣ୍ଣମାନଙ୍କର ଏକରୂପତା ସଂଯୋଜନା କରାଯାଉଥିବା ହେତୁ ତାହା (ଅନୁପ୍ରାସ), ମୁଖ୍ୟ ଶୃଙ୍ଗାରରସର ସମସ୍ତ ପ୍ରଭେଦରେ ପ୍ରକାଶକ (ବ୍ୟଞ୍ଜକ) ନୁହେଁ, ଏଣୁ ଶୃଙ୍ଗାରରସୀୟ କାବ୍ୟରେ ଅନୁପ୍ରାସ ବର୍ଜନୀୟ । (କାରଣ କବି ଅନୁପ୍ରାସ ରଖିବା ପାଇଁ ଚେଷ୍ଟା କରୁ କରୁ ପ୍ରକୃତ ଧ୍ୱନିବ୍ୟଞ୍ଜକ ଶବ୍ଦ ବ୍ୟବହାର କରିବାରେ ତ୍ରୁଟି କରେ । ଯଦି ମହାକବିଙ୍କର କବିତା ରଚନାରେ ବିନା ଯତ୍ନରେ କୌଣସି ଅନୁପ୍ରାସ ରହିଗଲା ତେବେ ତାହା ଦୋଷାବହ ନୁହେଁ) ।

୬୧—ଯେଉଁଠାରେ ଶୃଙ୍ଗାରରସ ଅଙ୍ଗୀ ନ ହୋଇ ଅଙ୍ଗରୂପେ ରହିଥିବ, ତାଦୃଶ ସ୍ଥଳରେ ଏକରୂପାନୁବନ୍ଧ ଅନୁପ୍ରାସ ସଂଯୋଜନରେ କବିର ସ୍ୱାଧୀନତା ରହିଅଛି ।

୭୨ । ଧ୍ୱନ୍ୟାତ୍ମଭୂତେ ଶୃଙ୍ଗାରେ ଯମକାଦି-ନିବନ୍ଧନମ୍
ଶକ୍ତାବପି ପ୍ରମାଦିତ୍ୱଂ ବିପ୍ରଲମ୍ଭେ ବିଶେଷତଃ ॥ ୧୫

୭୩ । ଧ୍ୱନେରାତ୍ମଭୂତଃ ଶୃଙ୍ଗାରସ୍ତାତ୍ପର୍ଯ୍ୟେଣ ବାଚ୍ୟବାଚକାଭ୍ୟାଂ ପ୍ରକାଶ୍ୟମାନସ୍ତସ୍ମିନ୍ ଯମକାଦୀନାଂ ଯମକପ୍ରକାରାଣାଂ ନିବନ୍ଧନଂ ଦୁଷ୍କରଶବ୍ଦ-ଭଙ୍ଗଶ୍ଳେଷାଦୀନାଂ ଶକ୍ତାବପିପ୍ରମାଦିତ୍ୱମ୍ ।

୭୪ । ପ୍ରମାଦିତ୍ୱମିତ୍ୟନେନୈତଦ୍ଦର୍ଶ୍ୟତେ—କାକତାଳୀୟେନ କଦାଚିତ୍ କସ୍ୟଚିତ୍ ଏକସ୍ୟ ଯମକାଦେର୍ନିଷ୍ପତ୍ତାବପି ଭୂମ୍ନାଲଙ୍କାରାନ୍ତରବତ୍ ରସାଙ୍ଗତ୍ୱେନ ନିବନ୍ଧୋ ନ କର୍ତ୍ତବ୍ୟ

---

୭୨—ଧ୍ୱନ୍ୟାତ୍ମା ଅଙ୍ଗୀଶୃଙ୍ଗାର ରସର କବିତାରେ ଯମକାଦି—(ଯମକବନ୍ଧ ପ୍ରଭୃତି)ର ରଚନା କବିର ପ୍ରମାଦ (ଦୋଷ) । ଯମକାଦି ନିର୍ମାଣରେ ଶକ୍ତ ଥିଲେ ମଧ୍ୟ କବି ଶୃଙ୍ଗାର କବିତାରେ ବିଶେଷତଃ ବିପ୍ରଲମ୍ଭ ଶୃଙ୍ଗାରରେ ତାହା ବ୍ୟବହାର କରିବା ଉଚିତ ନୁହେଁ ।

୭୩—ଧ୍ୱନ୍ୟମାନ ଶୃଙ୍ଗାରରସକୁ ବାଚ୍ୟ ଓ ବାଚକ ବ୍ୟଙ୍ଗ୍ୟ ପର ହୋଇ ପ୍ରକାଶ କରିଥାନ୍ତି । ଯମକ, ଚକ୍ରବନ୍ଧ ଓ ପଦ୍ମବନ୍ଧାଦିରେ କ୍ଳିଷ୍ଟଶବ୍ଦ ଓ ସଭଙ୍ଗଶ୍ଳେଷ ପ୍ରଭୃତିର ବ୍ୟବହାର ହୋଇଥାଏ । ଏଣୁ ତାଦୃଶ କ୍ଳିଷ୍ଟ କବିତାରେ ସ୍ପଷ୍ଟଭାବେ ବ୍ୟଙ୍ଗ୍ୟ ପ୍ରତୀତ ହୁଏ ନାହିଁ । ସୁତରାଂ କବିର ତାଦୃଶ ରଚନା କରିବାକୁ ଶକ୍ତ ଥିଲେ ମଧ୍ୟ ଶୃଙ୍ଗାର କବିତାରେ ଯମକାଦି ପ୍ରୟୋଗ କରିବ ନାହିଁ । ଯଦି କରେ ତେବେ ତାହା କବିର ଅସାବଧାନତା ଦୋଷ ବୋଲି ବୁଝିବାକୁ ହେବ ।

୭୪—ପ୍ରମାଦିତା ଯଥା :—

ଯଦି ବା କବିତା ଲେଖୁ ଲେଖୁ କାକତାଳୀୟ ନ୍ୟାୟରେ କଦାଚିତ୍ ଯମକ ପ୍ରଭୃତିରୁ ଗୋଟିଏ କିଛି ହୋଇଗଲା ତେବେ ତାର ବହୁତ୍ୱ ସମ୍ପାଦନ କରି ଅନ୍ୟ ଉପମାଦିଙ୍କୁ ଯେପରି ରସର ଅଙ୍ଗଭାବେ ସୃଷ୍ଟି କରାଯାଏ ସେପରି

ଇତି । "ବିପ୍ରଲମ୍ଭେ ବିଶେଷତ" ଇତ୍ୟନେନ ବିପ୍ରଲମ୍ଭେ ସୌକୁମାର୍ଯ୍ୟାତିଶୟଃ ଖ୍ୟାପ୍ୟତେ । ତସ୍ମିନ୍ ଦ୍ୟୋତ୍ୟେ ଯମକାଦେରଙ୍ଗସ୍ୟ ନିବନ୍ଧୋ ନିୟମାନ୍ନ କର୍ତ୍ତବ୍ୟ ଇତି ।

୭୫ । ଅତ୍ର ଯୁକ୍ତିରଭିଧୀୟତେ—

ରସାକ୍ଷିପ୍ତତୟା ଯସ୍ୟ ବନ୍ଧଃ ଶକ୍ୟକ୍ରିୟୋ ଭବେତ୍ ।
ଅପୃଥଗ୍‌ଯତ୍ନନିର୍ବର୍ତ୍ତ୍ୟଃ ସୋଽଲଂକାରୋ ଧ୍ୱନୌ ମତଃ ॥

୭୬ । ନିଷ୍ପତ୍ତାବାଶ୍ଚର୍ଯ୍ୟଭୂତୋଽପି ଯସ୍ୟାଲଂକାରସ୍ୟ ରସାକ୍ଷିପ୍ତତୟୈବ ବନ୍ଧଃ ଶକ୍ୟକ୍ରିୟୋ ଭବେତ୍, ସୋଽସ୍ମିନ୍ନ-

---

କରିବା ଉଚିତ ନୁହେଁ । "ବିପ୍ରଲମ୍ଭେ ବିଶେଷତଃ" କହିବା ଦ୍ୱାରା ବିପ୍ରଳମ୍ଭର ସୁକୁମାରତା ଅଧିକ ଏବଂ ବିପ୍ରଲମ୍ଭ ବ୍ୟଙ୍ଗ୍ୟ ହେବା ସ୍ଥଳରେ ଯମକାଦି ବ୍ୟବହାର କରିବା ନିୟତଭାବେ ଅତ୍ୟନ୍ତ ଦୋଷାବହ ॥

୭୫—କାବ୍ୟରେ ଅଳଙ୍କାରର ସଂଯୋଜନ ଉପାୟ କୁହାଯାଉଅଛି । ଯଥା :—ରସ ପ୍ରକାଶ ପାଇଁ ପ୍ରଯତ୍ନ କରୁ କରୁ ଯେଉଁ ଅଳଙ୍କାର ସ୍ୱତଃ କାବ୍ୟ ମଧ୍ୟରେ ସ୍ଥାନ ଲାଭ କରେ, ସେହି ଅପୃଥକ୍‌ଯତ୍ନସମ୍ପାଦିତ ଅଳଙ୍କାର ଧ୍ୱନି କାବ୍ୟରେ ଅଭିମତ ।

୭୬—ଅର୍ଥାତ୍ କବି ଧ୍ୱନିପର ହୋଇ ବିଭାବ ଅନୁଭାବ ପ୍ରକାଶ ପାଇଁ ଚେଷ୍ଟା କରୁଁ କରୁଁ ସ୍ୱତଃ ଗୋଟିଏ ଅଳଙ୍କାର ସ୍ଥାନ ପାଇଗଲେ ଯେଉଁ ଅଳଙ୍କାର ରହିବା ଦେଖି ବିନା ଯତ୍ନରେ କିପରି ହେଲା ବୋଲି ସ୍ୱୟଂ କବି ଆଶ୍ଚର୍ଯ୍ୟାନ୍ୱିତ ହୋଇଯାନ୍ତି, ସେହିଭଳି ଅଳଙ୍କାର ଏହି ଅଲକ୍ଷ୍ୟକ୍ରମବ୍ୟଙ୍ଗ୍ୟଧ୍ୱନି କାବ୍ୟରେ ଯୋଜନୀୟ । ତାଦୃଶ ଅଳଙ୍କାରହିଁ ରସର ଅଙ୍ଗ ହୁଏ । ରସ ଚର୍ବଣାରେ ପ୍ରତିବନ୍ଧ ବା ଅନ୍ୟ ପ୍ରଯତ୍ନ ସମ୍ପାଦିତ ଉପମାଦି ରସରେ ଅଙ୍ଗ ହୁଅନ୍ତି ନାହିଁ ।

ସାରାର୍ଥ :—(ପୂର୍ବ କାରିକାରେ କେବଳ ଶୃଙ୍ଗାର ରସର କବିତାରେ ଯମକାନୁପ୍ରାସାଦି ବର୍ଜନୀୟ ବୋଲି ଲେଖା ଯାଇଥିଲେ ମଧ୍ୟ, ରସ ପ୍ରତୀତିର

ଲକ୍ଷ୍ୟକ୍ରମବ୍ୟଙ୍ଗ୍ୟେ ଧ୍ୱନାବଲଂକାରେ ମତଃ । ତସ୍ୟୈବ
ରସାଙ୍ଗତ୍ୱଂ ମୁଖ୍ୟମିତ୍ୟର୍ଥଃ ॥

୭୭ । କପୋଳେ ପତ୍ରାଲୀ କରତଳନିରୋଧେନ ମୃଦିତା
ନିପୀତୋ ନିଃଶ୍ୱାସୈରୟମମୃତହୃଦ୍ୟୋଽଧରରସଃ ।
ମୁହୁଃ କଣ୍ଠେ ଲଗ୍ନସ୍ତରଳୟତି ବାଷ୍ପସ୍ତନତଟୀଂ
ପ୍ରିୟୋ ମନ୍ୟୁର୍ଜାତସ୍ତବ ନିରନୁରୋଧେ ନ ତୁ ବୟମ୍ ॥

---

ବାଧକ ହେତୁ ତାହା ପ୍ରତ୍ୟେକ ରସର ରଚନାରେ ବର୍ଜନୀୟ । ଆଉ ପୁଣି (ରସାକ୍ଷିପ୍ତତୟା) ଏହି କାରିକାର ନିର୍ଦ୍ଦେଶାନୁଯାୟୀ ସବୁ ରସର ରଚନାରେ ଅପୃଥକ୍‌ଯତ୍ନ ନିର୍ବର୍ତ୍ତ୍ୟ ଅଳଙ୍କାର ଗ୍ରହଣୀୟ) ।

୭୭—ଅପୃଥକ୍ ଯତ୍ନନିର୍ବର୍ତ୍ତ୍ୟ ଅଳଙ୍କାର ଯଥା—

ଈର୍ଷ୍ୟାବଶତଃ ହାତରେ ମୁହଁ ରଖି ବାଷ୍ପାକୁଳକଣ୍ଠ ହୋଇ ଲୋତକଧାର ବୁହାଇ କାନ୍ଦୁଥିବା ଅଭିମାନିନୀ ନାୟିକାକୁ ପ୍ରସନ୍ନ କରିବା ପାଇଁ ନାୟକର ଉକ୍ତି :—ହେ ନିରନୁରୋଧେ ! ଗଣ୍ଡସ୍ଥଳର ମକରିକାଦି ପତ୍ରଭଙ୍ଗୀ ଲୋତକରେ ଚିପିହୋଇ ପୋଛି ହୋଇଗଲଣି, ବହୁ ଦୀର୍ଘନିଶ୍ୱାସରେ ଅମୃତଠାରୁ ଅଧିକ ଉପଭୋଗ୍ୟ ଏହି ଅଧରରସ ନିପୀତ (ଶୁଷ୍କ) ହୋଇଗଲଣି ! ମୁହୁର୍ମୁହୁଃ ବାଷ୍ପ କଣ୍ଠରେ ଲାଗି ସ୍ତନତଟକୁ ତରଳ କରୁଛି (ଦମ୍‌କଉଛି) । ତୁମ୍ଭର କ୍ରୋଧ (ମନ୍ୟୁ) ଏତେ ପ୍ରିୟ ହେଲା, ଆମ୍ଭେ (ନାୟକ) ହେଲୁ ନାହିଁ ?

ଏ ଶ୍ଳୋକରେ ମନ୍ୟୁ ଉପରେ ପ୍ରିୟତ୍ୱ ଆରୋପ ହେତୁ ରୂପକାଳଙ୍କାର । ଗଣ୍ଡସ୍ଥଳରୁ ପତ୍ରଭଙ୍ଗୀ ଲିଭାଇବା ପ୍ରଭୃତି କାର୍ଯ୍ୟ ପ୍ରିୟ ଓ ମନ୍ୟୁ ଉଭୟଙ୍କ ପକ୍ଷେ ସମାନ । ଏହା ରୂପକର ସାଧକ-ଧର୍ମ । ଅଧରରସ ପଦରେ ରସର ଅର୍ଥ ଆସ୍ୱାଦ୍ୟ ଓ ମାଧୁର୍ଯ୍ୟ, ଏଣୁ ଏଠାରେ ଶ୍ଳେଷାଳଙ୍କାର । ମନ୍ୟୁ ପ୍ରିୟ ହେଲା (ପ୍ରିୟ-ବତ୍ ସମ୍ଭୋଗ କଲା) ଆମ୍ଭେ ପ୍ରିୟ ହେଲୁ ନାହିଁ, ଯେତେ ଯତ୍ନ କଲେ ମଧ୍ୟ ଉପେକ୍ଷିତ ହେଲୁଁ । ଏହା ଦ୍ୱାରା ବ୍ୟତିରେକ ଉକ୍ତ ହେଉଛି । ସୁତରାଂ ଏଥିରେ ଶ୍ଳେଷରୂପକ ଓ ବ୍ୟତିରେକ ଅଳଙ୍କାର ଥିଲେ ମଧ୍ୟ ରସର ପ୍ରତୀତିରେ ବାଧକ ହେଉନାହାନ୍ତି ଏବଂ କବିର ପୃଥକ୍ ପ୍ରଯତ୍ନରେ ସମ୍ପାଦିତ ହୋଇ ନାହାନ୍ତି । ଏଣୁ ରସାଙ୍ଗରୂପରେ ଗ୍ରହଣୀୟ ।

୬୮ । ରସାଙ୍ଗତ୍ୱେ ଚ ତସ୍ୟ ଲକ୍ଷଣମପୃଥଗ୍‌ଯତ୍ନନିର୍ବର୍ତ୍ତ୍ୟତ୍ୱମିତି ଯୋ ରସଂ ବନ୍ଧୁମଧ୍ୟବସିତସ୍ୟ କବେରଳଂକାରସ୍ତାଂ ବାସନାମତ୍ୟୂହ୍ୟ ଯତ୍ନାନ୍ତରମାସ୍ଥିତସ୍ୟ ନିଷ୍ପଦ୍ୟତେ ସ ନ ରସାଙ୍ଗମିତି । ଯମକେ ଚ ପ୍ରବନ୍ଧେନ ବୁଦ୍ଧିପୂର୍ବକଂ କ୍ରିୟମାଣେ ନିୟମେନୈବ ଯତ୍ନାନ୍ତରପରିଗ୍ରହ ଆପତତି ଶବ୍ଦବିଶେଷାନ୍ୱେଷଣରୂପଃ ॥ ଅଳଂକାରାନ୍ତରେଷ୍ୱପି ତତ୍ତୁଲ୍ୟମିତିଚେତ୍, ନୈବମ୍ ॥ ଅଳଂକାରାନ୍ତରାଣି ହି ନିରୂପ୍ୟମାଣଦୁର୍ଘଟନାନ୍ୟପି ରସସମାହିତଚେତସଃ ପ୍ରତିଭାନବତଃ କବେରହଂପୂର୍ବିକୟା ପରାପତନ୍ତି । ଯଥା କାଦମ୍ବର୍ଯ୍ୟାଂ କାଦମ୍ବରୀଦର୍ଶନାବସରେ । ଯଥା ଚ ମାୟାରାମଶିରୋଦର୍ଶନେନ ବିହ୍ୱଳାୟାଂ ସୀତାଦେବ୍ୟାଂ ସେତୌ ।

୬୮—ବିଶ୍ୱବାଦ ପ୍ରକାଶ ଯତ୍ନ ଭିନ୍ନ ପୃଥକ୍ ଯତ୍ନ କରି ନ ଯାଇ ଅଳଙ୍କାର ନିବଦ୍ଧ ହେଲେ ତାହା ରସାଙ୍ଗ ହେବ । କିନ୍ତୁ କବିର ଅଳଙ୍କାର ଯୋଜନା ସକାଶେ ପୃଥକ୍ ଯତ୍ନରେ ଯେଉଁ ସବୁ ଅଳଙ୍କାର ନିଷ୍ପନ୍ନ ହୋଇ ରସବାଧକ ହୁଅନ୍ତି ସେମାନେ ରସାଙ୍ଗ ହେବେ ନାହିଁ । ଅବିଚ୍ଛିନ୍ନଭାବେ (ପ୍ରବନ୍ଧେନ) ଯମକବନ୍ଧାଦି କରିବାକୁ ହେଲେ ଶବ୍ଦ ଅନ୍ୱେଷଣ ପାଇଁ ନିଶ୍ଚୟ ପୃଥକ୍‌ଯତ୍ନ ଆବଶ୍ୟକ ହେବ । ଅନ୍ୟ ଅଳଙ୍କାରମାନଙ୍କରେ ସେଭଳି ନିଯୁତ ଭାବେ ବୁଦ୍ଧିପୂର୍ବକ ଯତ୍ନ ଆବଶ୍ୟକ ହୁଏ ନାହିଁ । ଯମକାଦି ଭିନ୍ନ ଅନ୍ୟ ଅଳଙ୍କାରମାନେ ଅଜ୍ଞାତ ଭାବେ କପରି ନିର୍ମାଣ ହେଲେ ? ନିଷ୍ପତ୍ତି ପରେ ଏହି ପରି ବିସ୍ମୟ ଉତ୍ପାଦନ କରୁଥିଲେ ମଧ୍ୟ କିମ୍ବା ବିରୁଦ୍ଧପୂର୍ବକ ନିବେଶ କରିବା ଅତି ଦୁଷ୍କର ହେଲେ ମଧ୍ୟ ରସୈକତାନ ପ୍ରତିଭାଶାଳୀ କବିର ସମ୍ମୁଖରେ, ପିଲମାନେ ମୁଁ ଆଗେ, ମୁଁ ଆଗେ, ବୋଲି ଧାଇଁଲପରି (ଅହଂପୂର୍ବିକୟା) ଆଗତ ହୁଅନ୍ତି । କାଦମ୍ବରୀରେ, କାଦମ୍ବରୀ ଦର୍ଶନ ସମୟରେ ଏବଂ ସେତୁ କାବ୍ୟରେ ରାମଙ୍କର ମାୟାମୁଣ୍ଡ ଦର୍ଶନ କରି ସୀତାଦେବୀ ବିହ୍ୱଳ ହେବା ସମୟରେ ଏହାର ଉଦାହରଣ ମିଳେ ।

୬୯ । ଯୁକ୍ତଂଚୈତତ୍—ଯତୋ ରସା ବାଚ୍ୟବିଶେଷୈରେବା-କ୍ଷେପ୍ତବ୍ୟାଃ । ତତ୍ ପ୍ରତିପାଦକୈଶ୍ଚ ଶବ୍ଦୈସ୍ତତ୍ ପ୍ରକାଶିନୋ ବାଚ୍ୟବିଶେଷା ଏବ ରୂପକାଦୟୋଽଲଂକାରାଃ । ତସ୍ମାନ୍ନ ତେଷାଂ ବହିରଙ୍ଗତ୍ୱଂ ରସାଭିବ୍ୟକ୍ତୌ । ଯମକ-ଦୁଷ୍କରମାର୍ଗେଷୁ ତୁ ତତ୍ସ୍ଥିତମେବ ॥ ଯତ୍ତୁ ରସବନ୍ତି କାନିଚିତ୍ ଯମକାଦୀନି ଦୃଶ୍ୟନ୍ତେ, ତତ୍ର ରସାଦୀନା-ମଙ୍ଗତା, ଯମକାଦୀନାଂ ତ୍ୱଙ୍ଗିତୈବ । ରସାଭାସେ ଚାଙ୍ଗତ୍ୱମପ୍ୟବିରୁଦ୍ଧମ୍ । ଅଙ୍ଗିତୟା ତୁ ବ୍ୟଙ୍ଗ୍ୟେ ରସେ ନାଙ୍ଗତ୍ୱଂ ପୃଥକ୍ପ୍ରଯତ୍ନନିର୍ବର୍ତ୍ୟତ୍ୱାଦ୍ ଯମକାଦେଃ ।

୭୦ । ଅସ୍ୟୈବାର୍ଥସ୍ୟ ସଂଗ୍ରହଶ୍ଳୋକାଃ—

ରସବନ୍ତି ହି ବସ୍ତୂନି ସାଲଂକାରାଣି କାନିଚିତ୍ ।
ଏକେନୈବ ପ୍ରଯତ୍ନେନ ନିର୍ବର୍ତ୍ୟନ୍ତେ ମହାକବେଃ ॥

---

୬୯—ବିଚାର ଦୃଷ୍ଟିରେ ଦେଖିଲେ ଏହା ଉଚିତ । ରସମାନେ ବାଚ୍ୟାର୍ଥ ବିଶେଷଦ୍ୱାରା ଆକ୍ଷିପ୍ତ ହୁଅନ୍ତି । ସେହି ବାଚ୍ୟାର୍ଥର ପ୍ରତିପାଦକ ଶବ୍ଦମାନେ ବାଚ୍ୟାର୍ଥବିଶେଷ ରୂପକ ରୂପକାଦି ଅଳଙ୍କାରଙ୍କୁ ପ୍ରତିପାଦନ କରିଥାନ୍ତି । ଅର୍ଥାତ୍, ଏକ ବାଚକ ଶବ୍ଦ ବ୍ୟଞ୍ଜକରୂପରେ ରସାଦିକୁ ଏବଂ ବାଚକ ରୂପରେ ଅଳଙ୍କାରମାନଙ୍କୁ ଜଣାଇଥାଏ । ଏଣୁ ରସାଭିବ୍ୟକ୍ତିରେ ରୂପକାଦି ଅଳଙ୍କାର-ମାନେ ଅନ୍ତରଙ୍ଗ । ଯମକାଦି ଦୁଷ୍କର ଅଳଙ୍କାରମାନେ ତାଦୃଶ ହୋଇ ନ ଥିବାରୁ ବହିରଙ୍ଗ । ଯଦି ବା କେଉଁଠି ରସବନ୍ତ ଯମକାଦି ଦେଖାଯାଏ, ସେଠାରେ ରସାଦି ଅଙ୍ଗ ଓ ଯମକାଦି ଅଙ୍ଗୀ ॥ ରସାଭାସରେ ଯମକାଦି ଅଙ୍ଗ ହେବା ବିରୁଦ୍ଧ ନୁହେଁ, କିନ୍ତୁ ଅଙ୍ଗୀଭାବେ ରସବ୍ୟଙ୍ଗ୍ୟ ହେଉଥିବା ସ୍ଥଳରେ ଯମକାଦି ପୃଥକ୍ ଯତ୍ନ-ନିର୍ବର୍ତ୍ୟ ହେତୁ ଅଙ୍ଗ ହୋଇ ପାରିବେ ନାହିଁ ।

୭୦—ଉଲ୍ଲିଖିତ ବିଷୟ ଶ୍ଳୋକାକାରରେ ସଂଗ୍ରହ କରାଯାଇଛି । ଯଥା :—କେତେଗୁଡ଼ିଏ କାବ୍ୟ ଅଳଙ୍କାରଯୁକ୍ତ ତଥା ରସବନ୍ତ ଦେଖାଯାଏ । ସେଗୁଡ଼ିକ ମହାକବିମାନଙ୍କର ଏକ (ଅଭିନ୍ନ) ଯତ୍ନରେ ନିର୍ମିତ ହୋଇଥାଆନ୍ତି ।

୭୧ । ଯମକାଦିନବେନ୍ଧେ ତୁ ପୃଥଗ୍ ଯତ୍ନୋଽସ୍ୟ ଜାୟତେ ।
ଶକ୍ତସ୍ୟାପି ରସେଽଙ୍ଗତ୍ୱଂ ତସ୍ମାଦେଷାଂ ନ ବିଦ୍ୟତେ ॥

୭୨ । ରସାଭାସାଙ୍ଗଭାବସ୍ତୁ ଯମକାଦେର୍ନ ବାର୍ଯ୍ୟତେ ।
ଧ୍ୱନ୍ୟାତ୍ମଭୂତେ ଶୃଙ୍ଗାରେ ତ୍ୱଙ୍ଗତା ନୋପପଦ୍ୟତେ ॥

୭୩ । ଇଦାନୀଂ ଧ୍ୱନ୍ୟାତ୍ମଭୂତସ୍ୟ ଶୃଙ୍ଗାରସ୍ୟ ବ୍ୟଞ୍ଜକୋଽଲଂ-
କାରବର୍ଗ ଆଖ୍ୟାୟତେ ।

୭୪ । ଧ୍ୱନ୍ୟାତ୍ମଭୂତେ ଶୃଙ୍ଗାରେ ସମୀକ୍ଷ୍ୟ ବିନବେଶତଃ ।
ରୂପକାଦିରଲଂକାରବର୍ଗ ଏତି ଯଥାର୍ଥତାମ୍ ॥ ୧୭ ॥

୭୫ । ଅଲଂକାରୋ ହି ବାହ୍ୟାଲଂକାରସାମ୍ୟାଦଙ୍ଗିନଶ୍ଚାରୁତ୍ୱ-
ହେତୁରୁଚ୍ୟତେ । ବାଚ୍ୟାଲଂକାରବର୍ଗଶ୍ଚ ରୂପକାଦି-

---

୭୧ – ଯମକାଦି ଅଳଙ୍କାର ନିର୍ମାଣ ପାଇଁ ରଚନା ସମର୍ଥ କବିର ମଧ୍ୟ ପୃଥକ୍ ଚେଷ୍ଟା ଆବଶ୍ୟକ ହୁଏ । ଏଣୁ ସେ ଯମକାଦି ରସର ଅଙ୍ଗ ହୋଇ ପାରନ୍ତି ନାହିଁ ।

୭୨—ଯମକାଦି ରସାଭାସର ଅଙ୍ଗ ହୋଇ ପାରନ୍ତି । କିନ୍ତୁ ଶୃଙ୍ଗାର ରସ ଧ୍ୱନି ହେବା ସ୍ଥଳରେ ଅଙ୍ଗ ହୋଇ ପାରିବେ ନାହିଁ । (ଅଭିନବ ଗୁପ୍ତଙ୍କ ମତରେ—ଶୃଙ୍ଗାରରେ ପ୍ରଧାନତଃ ଅଙ୍ଗ ହୁଅନ୍ତି ନାହିଁ ବୋଲି ସିନା ନିର୍ଦ୍ଦେଶ କରାଯାଇଛି, କିନ୍ତୁ କୌଣସି ରସରେ ଅଙ୍ଗ ହୋଇ ପାରନ୍ତି ନାହିଁ) ।

୭୩—ବର୍ତ୍ତମାନ ଅଙ୍ଗୀ ଶୃଙ୍ଗାରରସର କେଉଁ ଅଳଙ୍କାରମାନେ ବ୍ୟଞ୍ଜକ ତାହା କୁହାଯାଉଛି । ଯଥା :—

୭୪—ଅଙ୍ଗୀ ଶୃଙ୍ଗାରରସର କବିତାରେ ସମୀକ୍ଷାପୂର୍ବକ ନିବେଶ କରି ପାରିଲେ ରୂପକ ପ୍ରଭୃତି ଅଳଙ୍କାରମାନେ ଯଥାର୍ଥତଃ ରସର ଅଙ୍ଗ ହୁଅନ୍ତି ।

୭୫—କଟକ କୁଣ୍ଡଳାଦି ଅଳଙ୍କାର ଯେପରି ମନୁଷ୍ୟର ଦେହକୁ ଭୂଷିତ କରିବା ଦ୍ୱାରା ମନୁଷ୍ୟକୁ ମଧ୍ୟ ଭୂଷିତ କରିଥାନ୍ତି, ସେହିପରି ରୂପକାଦି ଅଳଙ୍କାରମାନେ ବାଚ୍ୟ ବାଚକରୂପକ କାବ୍ୟର ଅଙ୍ଗକୁ ଭୂଷିତ କରିବା

ର୍ଯାବାନୁକ୍ତୌ, ବକ୍ଷ୍ୟତେ ଚ କୈଶ୍ଚିତ୍, ଅଲଂକାରଣା-
ମନନ୍ତତ୍ୱାତ୍ ॥

୬୬ । ସ ସର୍ବୋଽପି ଯଦି ସମୀକ୍ଷ୍ୟ ବିନିବେଶ୍ୟତେ ତଦଲକ୍ଷ୍ୟ-
କ୍ରମବ୍ୟଙ୍ଗ୍ୟସ୍ୟ ଧ୍ୱନେରଙ୍ଗିନଃ ସର୍ବସ୍ୟୈବ ଚାରୁତ୍ୱ-
ହେତୁର୍ନିଷ୍ପଦ୍ୟତେ ॥

୬୭ । ଏଷାଞ୍ଚାସ୍ୟ ବିନିବେଶନେ ସମୀକ୍ଷା— (୪)

(କ) ବିବକ୍ଷା ତତ୍ପରତ୍ୱେନ,

(ଖ) ନାଙ୍ଗିତ୍ୱେନ କଦାଚନ ।

(ଗ, ଘ) କାଲେ ଚ ଗ୍ରହଣତ୍ୟାଗୌ,

(ଙ) ନାତିନିର୍ବହଣୈଷିତା ॥ ୧୮

---

ଦ୍ୱାରା ମୁଖ୍ୟ (ଆତ୍ମା) ରସାଦିଙ୍କୁ ମଧ୍ୟ ଭୂଷିତ କରନ୍ତି । ଅଲଙ୍କାର ବୋଲି କହିଲେ ରୂପକ ପ୍ରଭୃତି ଯେଉଁ ସବୁ ଅଲଙ୍କାର ଭାମହାଦିଙ୍କ ଦ୍ୱାରା କଥିତ ହୋଇଛନ୍ତି ଏବଂ ଭବିଷ୍ୟତରେ ଅନ୍ୟ ପ୍ରତିଭାବନ୍ତ କବିଙ୍କ ଦ୍ୱାରା ଉଦ୍ଭାବିତ ହେବେ, ସେ ସମସ୍ତେ ଗୃହୀତ ହେବେ, କାରଣ ଅଲଙ୍କାରର ପ୍ରକାରମାନଙ୍କୁ ସଂଖ୍ୟା କରି ହେବ ନାହିଁ ।

୬୬—ଏହିସବୁ ଉକ୍ତ ବକ୍ଷ୍ୟମାଣ ଅଲଙ୍କାରଗୁଡ଼ିକ ଯଦି ସମୀକ୍ଷା ପୂର୍ବକ ପ୍ରୟୋଗ କରାଯିବେ, ତେବେ ସେମାନେ ବାକ୍ୟାର୍ଥୀଭୂତ ଅସଂଲକ୍ଷ୍ୟ-କ୍ରମବ୍ୟଙ୍ଗ୍ୟ ଧ୍ୱନିର ଅଙ୍ଗ ହୋଇ ଚାରୁତ୍ୱ ସମ୍ପାଦନ କରିବେ ।

୬୭—ଅଲଙ୍କାର ନିବେଶରେ ସମୀକ୍ଷା ପ୍ରକାର ଯଥା—

(କ) ରସ-ପର କରି ଅଙ୍ଗରୂପେ ବିବକ୍ଷା କରିବା ॥

(ଖ) କେବେହେଲେ ଅଙ୍ଗୀରୂପରେ ବିବକ୍ଷା ନ କରିବା ॥

(ଗ) ଯଥା ସମୟରେ ଗ୍ରହଣ କରିବା ॥

(ଘ) ଗ୍ରହଣ କରାଯାଇଥିଲେ ମଧ୍ୟ ସମୟରେ ତ୍ୟାଗ କରିବା ।

(ଙ) ଅତ୍ୟନ୍ତ—ପୁଷ୍ଟି ସାଧନ ପାଇଁ ଚେଷ୍ଟା ନ କରିବା ।

(ଚ) ନିର୍ବ୍ୟୂଢାବପି ଚାଙ୍ଗତ୍ୱେ ଯତ୍ନେନ ପ୍ରତ୍ୟବେକ୍ଷଣମ୍ ।
ରୂପକାଦେରଲଂକାରବର୍ଗସ୍ୟାଙ୍ଗତ୍ୱସାଧନମ୍ । ୧୯

୨୮ । ରସବନ୍ଧେଷ୍ୱତ୍ୟାଦୃତମନାଃ କବିର୍ଯମଲଂକାରଂ
ତଦଙ୍ଗତୟା ବିବକ୍ଷତି ॥

ଯଥା—ଚଳାପାଙ୍ଗାଂ ଦୃଷ୍ଟିଂ ସ୍ପୃଶସି ବହୁଶୋ ବେପଥୁମତୀଂ
ରହସ୍ୟାଖ୍ୟାୟୀବ ସ୍ୱନସି ମୃଦୁ କର୍ଣ୍ଣାନ୍ତିକଚରଃ ।

---

(ଚ) ପରିପୁଷ୍ଟ ହୋଇଥିଲେ ମଧ୍ୟ ଅଙ୍ଗରୂପେ ରଖିବା ପାଇଁ ଯତ୍ନପୂର୍ବକ ଦୃଷ୍ଟିଦେବା ।

ଉପର୍ଯ୍ୟୁକ୍ତ ଛଅଗୋଟି ଉପାୟରେ ରୂପକାଦି ଅଳଙ୍କାରମାନେ ରସାଦିର ଅଙ୍ଗ ହୁଅନ୍ତି ।

୨୮—(କ : ର ଉଦାହରଣ) କବି ସ୍ୱରଚନା ସମୟରେ ଆଦର କରି ରସର ଅଙ୍ଗ ରୂପରେ ଅଳଙ୍କାର ନିବେଶ କରିବାର ଉଦାହରଣ ଯଥା—

କାଳିଦାସଙ୍କ ଶାକୁନ୍ତଳ ନାଟକରେ ଶକୁନ୍ତଳାଙ୍କ ମୁହଁ ଚାରିପାଖେ ଉଡୁଥିବା ଭ୍ରମରକୁ ସଫଳ କାମୁକ ବୋଲି କଳ୍ପନା କରୁଥିବା, ଶକୁନ୍ତଳା ଅଭିଳାଷୀ ଦୁଷ୍ମନ୍ତଙ୍କର ସ୍ୱଗତ ଉକ୍ତି :—ହେ ମଧୁକର ! ତୁମ୍ଭେ ଶକୁନ୍ତଳାଙ୍କର କମ୍ପଯୁକ୍ତା ଚଳାପାଙ୍ଗା ଦୃଷ୍ଟିକୁ ସ୍ପର୍ଶ କରୁଛ । (ଦୃଷ୍ଟିର ସାନ୍ନିଧ୍ୟ ଲଭ କରୁଛ), ଗୋପନୀୟ (ପ୍ରେମବାର୍ତ୍ତା) କହିଲା ପରି କାନ ପାଖରେ ମୃଦୁ ସ୍ୱନ କରୁଛ । ଦୁଇ ହସ୍ତ ଚାଳନା ପୂର୍ବକ ବାରଣ କରୁଥିବା ରମଣୀଙ୍କର ରତିସର୍ବସ୍ୱ ଅଧର ରସକୁ ପାନ କରୁଛ । ସୁତରାଂ ଏ ରମଣୀ ବିବାହିତା ନା ଅବିବାହିତା, ବିବାହ୍ୟା ବା ଅବିବାହ୍ୟା ଇତ୍ୟାଦି ତତ୍ତ୍ୱ ଅନୁସନ୍ଧାନ କରୁ କରୁ ଆମ୍ଭେ (ହତ) ନିଷ୍ଫଳ ହେଲୁଁ । ତୁମ୍ଭେ କିନ୍ତୁ (ତତ୍ତ୍ୱ ଅନୁସନ୍ଧାନ ବିନା ସମ୍ଭୋଗ କରିବାରୁ) ଫଳଯୁକ୍ତ ହେଲ ।

ଏଠାରେ ଭ୍ରମରର ସ୍ୱାଭାବିକ କାର୍ଯ୍ୟ ଶକୁନ୍ତଳାକାମୁକ ଦୁଷ୍ମନ୍ତଙ୍କର କଳ୍ପନାକୁ ପ୍ରାଣବନ୍ତ କରୁଛି । ଆଖି ପାଖରେ ଉଡ଼ିବା ଭ୍ରମରର ସ୍ୱଭାବ, ବିଶେଷତଃ ପଦ୍ମିନୀ ନାୟିକାଙ୍କର ମୁଖ ପଦ୍ମରେ ଶ୍ୱାସ ସୌରଭ ଆଶାରେ

କରୌ ବ୍ୟାଧୁନ୍ୱତ୍ୟାଃ ପିବସି ରତିସର୍ବସ୍ୱମଧରଂ
ବୟଂ ତତ୍ତ୍ୱାନ୍ୱେଷାନ୍ମଧୁକର ! ହତାସ୍ତ୍ୱଂ ଖଲୁ କୃତୀ ॥

୭୯ । ଅତ୍ର ହି ଭ୍ରମରସ୍ୱଭାବୋକ୍ତିରଳଂକାରୋ ରସାନୁଗୁଣଃ ॥

୮୦ । (ଖ) "ନାଙ୍ଗିତ୍ୱେନେ"ତି ନ ପ୍ରାଧାନ୍ୟେନ । କଦାଚିଦ୍ରସାଦିତାତ୍ପର୍ଯ୍ୟେଣ ବିବକ୍ଷିତୋଽପି ହ୍ୟଲଂକାରଃ କଶ୍ଚିଦଙ୍ଗିତ୍ୱେନ ବିବକ୍ଷିତୋ ଦୃଶ୍ୟତେ ॥

ଯଥା—ଚକ୍ରାଭିଘାତ-ପ୍ରସଭାଜ୍ଞୟୈବ,
ଚକାର ଯୋ ରାହୁବଧୂଜନସ୍ୟ ।

---

ନାସା ନିକଟବର୍ତ୍ତୀ ଚକ୍ଷୁ ସମୀପରେ ଉଡ଼ିବା ସମ୍ଭବପର । ଭ୍ରମର କାନ-ପାଖରେ ଗୁଁ ଗୁଁ ଶବ୍ଦ କରିବା ସ୍ୱାଭାବିକ । ବିଶେଷତଃ ଆକର୍ଣ୍ଣ ବିସ୍ତୃତ ଚକ୍ଷୁର ନୀଳୋତ୍ପଳଭ୍ରମରେ କାନପାଖେ ଉଡ଼ିବା ସମ୍ଭବ । ମୁହଁ ଗୁରପାଖେ ଉଡ଼ୁ ଉଡ଼ୁ ବାରଣ ସତ୍ତ୍ୱେ ମୁଖର ଏକଦେଶ ଅଧରରେ ବସି ପଡ଼ିବା ବା ତାର ଅତି ନିକଟବର୍ତ୍ତୀ ହେବା ଭ୍ରମର ପକ୍ଷରେ ଅସମ୍ଭବ ନୁହେଁ । ସୁତରାଂ ଭ୍ରମରର ସମସ୍ତ କାର୍ଯ୍ୟ ତାର ସ୍ୱଭାବସିଦ୍ଧ । ଶକୁନ୍ତଳାଙ୍କର ଭ୍ରମର-ଆକ୍ରମଣ ଦୃଷ୍ଟିରୁ କମ୍ପନ ଓ ମୁହଁ ପାଖରୁ ଭ୍ରମରକୁ ହାତରେ ଘଉଡ଼ିବା ମଧ୍ୟ ସ୍ୱାଭାବିକ ଘଟନା ।

୭୯ । ଅତଏବ ଭ୍ରମରର ସ୍ୱାଭାବିକ କାର୍ଯ୍ୟ ଦୁଷ୍ମନ୍ତଙ୍କ ଅଭିଳଷିତ ଚୁମ୍ବନ, ରହସ୍ୟାଖ୍ୟାନ ଓ ଅଧରପାନକୁ ରୂପ ପ୍ରଦାନ କରି ସାମାଜିକଙ୍କ ହୃଦୟରେ ରସରୂପତା ପ୍ରାପ୍ତ ହେଉଥିବାରୁ କବି ସନ୍ନିବେଶିତ ସ୍ୱଭାବୋକ୍ତି ଅଳଙ୍କାର ଏଠାରେ ମୁଖ୍ୟଧ୍ୱନି ଶୃଙ୍ଗାରରସର ଅନୁଗୁଣ ହୋଇଅଛି । ସୁତରାଂ ଏଠାରେ ଅଳଙ୍କାରରସର ଅଙ୍ଗ ॥

୮୦—(ଖ: ର ଉଦାହରଣ) ଅଳଙ୍କାର ଅଙ୍ଗୀ ହୋଇ ବିବକ୍ଷିତ ହେବା ଅନୁଚିତ । କୌଣସି ସ୍ଥଳରେ ରସାଦି ତାତ୍ପର୍ଯ୍ୟ ଥିଲେ ମଧ୍ୟ ଅଙ୍ଗୀରୂପରେ ଅଳଙ୍କାର ବିବକ୍ଷିତ ହେବାର ଦେଖାଯାଏ । ଯଥା :—

ଆଲିଙ୍ଗନୋଦ୍ଦାମବିଳାସବନ୍ଧ୍ୟଂ
ରତୋତ୍ସବ ଚୁମ୍ବନମାତ୍ରଶେଷମ୍ ॥

୮୧ । ଅତ୍ର ହି ପର୍ଯ୍ୟାୟୋକ୍ତସ୍ୟାଙ୍ଗିତ୍ୱେନ ବିବକ୍ଷା ରସାଦି-
ତାତ୍ପର୍ଯ୍ୟେ ସତ୍ୟପୀତି ॥

୮୨ । (ଗ) ଅଙ୍ଗତ୍ୱେନ ବିବକ୍ଷିତମପି ଯମବସରେ ଗୃହ୍ଣାତି
ନାନବସରେ ॥

---

ଯେଉଁ ଭଗବାନ୍ ଚକ୍ର ପ୍ରହାରରୂପକ ଉଦ୍ଧତ ଆଦେଶରେ ରାହୁକାନ୍ତାର ସୁରତୋତ୍ସବକୁ ଆଲିଙ୍ଗନାଦି ଉଦ୍ଦାମ ବିଳାସରୁ ରହିତ କରାଇ କେବଳ ଚୁମ୍ବନମାତ୍ରାବଶେଷ ହେବା ପାଇଁ ବିଧାନ କଲେ ।

୮୧ – ଭଗବାନ ଚକ୍ରରେ ରାହୁଶିର ଛେଦନ କଲେ ଏହା ବାଚ୍ୟ । ରାହୁ ଶିରୋମାତ୍ରାବଶିଷ୍ଟ ହେବାରୁ ତା କାମିନୀ କେବଳ ଚୁମ୍ବନ ଦାନ ଗ୍ରହଣ ଭିନ୍ନ ଅନ୍ୟ ଆଲିଙ୍ଗନାଦି—ସମ୍ଭୋଗରୁ ବଞ୍ଚିତ ହେଲା, ଏହା ଗମ୍ୟ । ଗମ୍ୟ ଅର୍ଥଟି ଭଙ୍ଗୀରେ ବାଚ୍ୟ ହୋଇଥିବାରୁ ଏଠାରେ ପର୍ଯ୍ୟାୟୋକ୍ତ ଅଳଙ୍କାର । ଏହି ପର୍ଯ୍ୟାୟୋକ୍ତ ଶୃଙ୍ଗାରରସ ତାତ୍ପର୍ଯ୍ୟରେ ନିବଦ୍ଧ ହେଲେ ମଧ୍ୟ ଅଙ୍ଗୀ ହୋଇଅଛି । ଏଥିରେ ଭଗବାନଙ୍କର ପ୍ରତାପ ବର୍ଣ୍ଣନ ରୂପ ଭଗବଦ୍ ରତିଭାବ ଥିଲେ ମଧ୍ୟ ତାହା ଅଙ୍ଗୀ ନୁହେଁ । କିନ୍ତୁ ପର୍ଯ୍ୟାୟୋକ୍ତ ଅଙ୍ଗୀରୂପେ ବିବକ୍ଷିତ ।

(ଏ ପଦ୍ୟରେ ବସ୍ତୁତଃ ଦୋଷ ନାହିଁ କିନ୍ତୁ ଅଳଙ୍କାର ଅଙ୍ଗୀହୋଇ ବିବକ୍ଷିତ, ବାସୁଦେବପ୍ରତାପରୂପ ବସ୍ତୁକୁ କିପରି ଆଚ୍ଛାଦନ କରୁଛି ତାହାର ଉଦାହରଣ ରୂପରେ ମାତ୍ର ଦିଆଯାଇଛି । ଯେଣୁ ଅନ୍ୟର ଦୋଷ ଦେଖାଇବା ଲେଖକଙ୍କର ନୀତି ନୁହେ । ଏହା ଅଭିନବ ଗୁପ୍ତଙ୍କ ମତ)

୮୨ —(ଗ : ର ଉଦାହରଣ) ଅଙ୍ଗୀରୂପରେ ବିବକ୍ଷିତ ନ ହୋଇ ଅବସର ଦେଖି ଗ୍ରହଣ କରାଯାଇଥିବାର ଉଦାହରଣ ଯଥା :—‘ରତ୍ନାବଳୀ’ରେ ॥

ପୁଷ୍ପିତା ନବମାଳିକା ଲତାକୁ ଦେଖିବାକୁ ଯାଉଥିବା ବତ୍ସରାଜଙ୍କର ନର୍ମ-ସଚିବ ପ୍ରତି ଉକ୍ତି :—

ଅବସରେ ଗୃହୀତଯଥା—

ଉଦ୍ଦାମୋତ୍କଳିକାଂ ବିପାଣ୍ଡୁରରୁଚଂ
ପ୍ରାରବ୍ଧଜୃମ୍ଭାଂକ୍ଷଣା—
ଦାୟାସଂ ଶ୍ୱସନୋଦ୍ଗମୈରବିରଳୈ-
ସ୍ତନ୍ୱତୀମାତ୍ମନଃ ।
ଅଦ୍ୟୋଦ୍ୟାନଲତାମିମାଂ ସମଦନାଂ
ନାରୀମିବାନ୍ୟାଂ ଧ୍ରୁବଂ
ପଶ୍ୟନ୍ କୋପବିପାଟଳଦ୍ୟୁତିମୁଖଂ
ଦେବ୍ୟାଃ କରିଷ୍ୟାମ୍ୟହମ୍ ॥

୮୩ । ଇତ୍ୟତ୍ର ଉପମା ଶ୍ଳେଷସ୍ୟ ॥

୮୪ । (ଘ) ଗୃହୀତମପି ଚ ଯମବସରେ ତ୍ୟଜତି ତଦ୍ରସାନୁ-
ଗୁଣତୟାଲଂକାରାନ୍ତରାପେକ୍ଷୟା । ଯଥା—

---

୮୨ । ଉଦ୍ଦାମ ଭାବେ ଉତ୍କଣ୍ଠିତା, (ଲତା ପକ୍ଷେ) ଉଦ୍ଦାମଭାବେ କୋରକାନ୍ୱିତା, ପାଣ୍ଡୁର—(ଲତା ବୃନ୍ତକଳିକା ହେତୁ, ନାରୀ କାମାବେଶ ହେତୁ) ବର୍ଣ୍ଣା, ଜୃମ୍ଭା (ହାଇ) କାରିଣୀ, (ଲତା) ବିକାଶୋନ୍ମୁଖୀ, ଅନବରତ-ଶ୍ୱସନ (ନାରୀପକ୍ଷେ—ନିଃଶ୍ୱାସ, ଲତାପକ୍ଷେ ବସନ୍ତ ପବନ) ହେତୁ ନିଜର ଦୁର୍ବଳତା ବିସ୍ତାର କରୁଥିବା, (ନାରୀ) କାମାବିଷ୍ଟା (ଲତା) ମଦନ ବୃକ୍ଷାଶ୍ରିତା, ପରକୀୟା ନାୟିକା ସଦୃଶ ଏହି ଉଦ୍ୟାନଲତା ନବମାଳିକାକୁ ଦେଖିବା ଦ୍ୱାରା ଆଜ ନିଶ୍ଚୟ ଦେବୀଙ୍କ ମୁଖକୁ କୋପ ପାଟଳିତ କରିବି । ଅର୍ଥାତ୍ ଦେବୀଙ୍କ ମୁଖ କୋପରେ ରକ୍ତବର୍ଣ୍ଣ ହୋଇଯିବ ॥

୮୩ । - ଏଠାରେ ଗୃହୀତ ହୋଇଥିବା ଉପମାଶ୍ଳେଷ ଆଶଙ୍କିତ ଈର୍ଷ୍ୟା ବିପ୍ରଲମ୍ଭଶୃଙ୍ଗାରର ପଥ ପରିଷ୍କାର କରି ରହିଥିବାରୁ ରସାନୁଗୁଣ ହୋଇଅଛି ।

୮୪—(ଘ: ର ଉଦାହରଣ) ଗୃହୀତ ହୋଇଥିଲେ ମଧ୍ୟ ରସର ବା ଅନ୍ୟ ଅଳଙ୍କାରମାନଙ୍କର ପୁଷ୍ଟିସାଧନ ପାଇଁ ପରିତ୍ୟାଗ କରିବାର ଉଦାହରଣ ଯଥା :—

ରକ୍ତସ୍ତ୍ୱଂ ନବପଲ୍ଲବୈରହମପି ଶ୍ଲାଘ୍ୟୈଃ ପ୍ରିୟାୟାଗୁଣୈ-
ସ୍ତ୍ୱାମାୟାନ୍ତି ଶିଳୀମୁଖାଃ ସ୍ମରଧନୁର୍ମୁକ୍ତାଃ ସଖେମାମପି ।
କାନ୍ତାପାଦତଳାହତସ୍ତବମୁଦେ ତଦ୍‌ବନ୍ମମାପ୍ୟାବୟୋଃ
ସର୍ବଂ ତୁଲ୍ୟମଶୋକ ! କେବଳମହଂ ଧାତ୍ରା ସଶୋକଃ କୃତଃ

୮୫ । ଅତ୍ର ହି ପ୍ରବନ୍ଧପ୍ରବୃତ୍ତୋଽପି ଶ୍ଳେଷୋ ବ୍ୟତିରେକ-
ବିବକ୍ଷୟା ବ୍ୟଜ୍ୟମାନୋ ରସବିଶେଷଂ ପୁଷ୍ଣାତି ।

୮୬ । ନାତ୍ରାଲଂକାରଦ୍ୱୟସନ୍ନିପାତଃ । କିଂ ତର୍ହି ଅଲଂକାରା-
ନ୍ତରମେବ ଶ୍ଳେଷବ୍ୟତିରେକଲକ୍ଷଣଂ ନରସିଂହ

---

ହେ ଅଶୋକ ତରୁ ! ତୁମ୍ଭେ ନୂତନ ପଲ୍ଲବମାନଙ୍କ ଦ୍ୱାରା ରକ୍ତବର୍ଣ୍ଣ (ରକ୍ତ) ହୋଇଅଛ । ମୁଁ ମଧ୍ୟ ମୋ ପ୍ରିୟାଙ୍କର ପ୍ରଶଂସନୀୟ ଗୁଣାବଳୀରେ ଅନୁରକ୍ତ (ରକ୍ତ ହୋଇଅଛି) । ଶିଳୀମୁଖ (ଭ୍ରମରମାନେ) କାମଦେବର ଧନୁରୁ (ଅନ୍ୟ ପୁଷ୍ପମାନଙ୍କରୁ) ବାହାରି ତୋ ପାଖକୁ ଆସୁଅଛନ୍ତି । ସେହିପରି ଶିଳୀମୁଖ (ଶର) କାମଦେବ ଧନୁରୁ ମୋ ଉପରକୁ ପଡୁଅଛନ୍ତି । କାନ୍ତାପାଦ-ପ୍ରହାର ତୋର ଯେପରି ପ୍ରୀତି ସମ୍ପାଦନ କରେ, ମୋର ମଧ୍ୟ ସେହିପରି ପ୍ରୀତି ସମ୍ପାଦନ କରେ । ଅତଏବ ଆମ୍ଭ ଦୁହିଙ୍କର ସବୁକଥା ସମାନ । ମାତ୍ରକ ବିଧାତା ମୋତେ ସଶୋକ କରିଛି ।

୮୫ । ମୁଁ ସଶୋକ, ତୁମ୍ଭେ ଅଶୋକ, ସୁତରାଂ ତୁମ୍ଭେ ମୋ ଅପେକ୍ଷା ସୁଖୀ, ଅତଏବ ଏଠାରେ ଉପମେୟର ଆଧିକ୍ୟରୁ ବ୍ୟତିରେକ ଅଳଙ୍କାର, ସେ ମୁଖ୍ୟ ॥ ଶ୍ଳୋକବ୍ୟାପି ରହିଥିବା ଶ୍ଳେଷ ଅଳଙ୍କାର ଗୃହୀତ ହୋଇଥିଲେ ମଧ୍ୟ, ବ୍ୟତିରେକ ବିବକ୍ଷାରେ ବ୍ୟକ୍ତ ହୋଇ ବିପ୍ରଲମ୍ଭ ଶୃଙ୍ଗାରରସକୁ ପୁଷ୍ଟ କରୁଅଛି ।

୮୬ – ବାଦୀ—ଏ ଶ୍ଳୋକରେ ଶ୍ଳେଷ ଓ ବ୍ୟତିରେକ ରୂପରେ ଦୁଇ ଗୋଟି ଅଳଙ୍କାର ରହି ନାହାନ୍ତି ॥

ପ୍ରଶ୍ନ – ଆଉ ତେବେ କଅଣ ?

ବାଦୀ—ଯେପରି ଭଗବାନଙ୍କର ମନୁଷ୍ୟ ଓ ସିଂହର ଆକୃତି ମିଶି ନରସିଂହ ଆକୃତି ହୋଇଥିଲା, ଏଠାରେ ସେହିପରି ଶ୍ଳେଷ ଓ ବ୍ୟତିରେକ

ବଦତ ଚେତ୍—ନ ॥ ତସ୍ୟ ପ୍ରକାରାନ୍ତରେଣ ବ୍ୟବସ୍ଥାପନାତ୍ ।

୮୭ । ଯତ୍ର ହି ଶ୍ଲେଷବିଷୟ ଏବ ଶବ୍ଦେ ପ୍ରକାରାନ୍ତରେଣ ବ୍ୟତି-ରେକପ୍ରତୀତିର୍ଜାୟତେ ସ ତସ୍ୟ ବିଷୟଃ । ଯଥା— 'ସହରିର୍ନାମ୍ନା ଦେବଃ ସହରିବରଭୁରଗନିବହେନ' ଇତ୍ୟାଦୌ ।

୮୮ । ଅନ୍ୟତ୍ରହ୍ୟନ୍ୟ ଏବ ଶବ୍ଦଃ ଶ୍ଲେଷସ୍ୟ ବିଷୟୋଽନ୍ୟଶ୍ଚ ବ୍ୟତିରେକସ୍ୟ ।

---

ଦୁହେଁ ମିଶି ଏକ ସ୍ୱତନ୍ତ୍ର ଅଳଙ୍କାର (ଶ୍ଲେଷବ୍ୟତିରେକ ସଂକର) ହୋଇଅଛି ।

ଉତ୍ତର—ତାହା ନୁହେଁ, ସଂକରାଳଙ୍କାର ଅନ୍ୟ ପ୍ରକାର ହେବ ବୋଲି ନିୟମ ରହିଅଛି ଯଥା :—

୮୭—ଯେଉଁଠି ଶ୍ଲେଷବିଷୟକ ଶବ୍ଦରେ ଅନ୍ୟ ପ୍ରକାରରେ ବ୍ୟତିରେକ ପ୍ରତୀତ ହୁଏ, ଅର୍ଥାତ୍ ଏକା ଶବ୍ଦରେ ଶ୍ଲେଷ ଓ ବ୍ୟତିରେକ ଉଭୟଙ୍କର ପ୍ରତୀତ ହୁଏ; ତାଦୃଶ ସ୍ଥଳରେ ସଂକର ହୁଏ ଯଥା :—(ସହରିର୍ନାମ୍ନା ଇତ୍ୟାଦିର ଅର୍ଥ) ସେ ନାମମାତ୍ରରେ ହରି, ରାଜା ଉତ୍କୃଷ୍ଟ ହରି (ଅଶ୍ୱ) ସହିତ ହୋଇ-ଥିବାରୁ ସହରି, ଏଠାରେ "ସହରି" ଶବ୍ଦ ଦୁଇଗୋଟି ଅର୍ଥ ପ୍ରକାଶ କରୁଥିବାରୁ ଶବ୍ଦଶ୍ଲେଷ ଏବଂ ଉପମେୟର ଆଧିକ୍ୟ ସୂଚିତ ଥିବାରୁ ବ୍ୟତିରେକ ଏ ଉଭୟଙ୍କର ଲକ୍ଷ୍ୟସ୍ଥଳ । ସୁତରାଂ ସେଠାରେ ଶ୍ଲେଷବ୍ୟତିରେକ ସଂକର ।

୮୮—କିନ୍ତୁ "ରକ୍ତସ୍ତ୍ୱଂ" ଏହି ଶ୍ଲୋକରେ ଶ୍ଲେଷପ୍ରକାଶକ ଶବ୍ଦ ଭିନ୍ନ, ଏବଂ ବ୍ୟତିରେକ ପ୍ରକାଶକ ଶବ୍ଦ ଭିନ୍ନ । (ରକ୍ତ ଇତ୍ୟାଦି ଶବ୍ଦ ଶ୍ଲେଷପ୍ରତିପାଦକ ଏବଂ ଅଶୋକ, ସଶୋକ ଶବ୍ଦ ଦୁଇଟି ଅର୍ଥ ଦ୍ୱାରା ବ୍ୟତିରେକର ପ୍ରତିପାଦକ । (ଏଣୁ ଏଠାରେ ସଂକର ଅଳଙ୍କାର ନୁହେ) ।

୮୯ । ଯଦ୍ଵ ଚୈବଂବିଧେ ବିଷୟେ ସଂକରାଲଂକାରାନ୍ତରତ୍ଵକଳ୍ପନା
ନିଯ୍ଯତେ ତତ୍ ସଂସୃଷ୍ଟେର୍ବିଷୟାପହାର ଏବ ସ୍ୟାତ୍ ।

୯୦ । ଶ୍ଳେଷମୁଖେନୈବାତ୍ର ବ୍ୟତିରେକସ୍ୟାତ୍ମଲାଭ ଇତି ନାୟଂ
ସଂସୃଷ୍ଟେର୍ବିଷୟ ଇତି ଚେତ୍—ନ, ବ୍ୟତିରେକସ୍ୟ
ପ୍ରକାରାନ୍ତରେଣାପି ଦର୍ଶନାତ୍ ।

୯୧ । ଯଥା—ନୋ କଳ୍ପାପାୟବାୟୋରଦୟରୟଦଳତ୍—
କ୍ଷ୍ମାଧରସ୍ୟାପି ଶମ୍ୟା
ଗାଢ଼ୋଦ୍ଗୀର୍ଣ୍ଣୋଜ୍ଜ୍ୱଳଶ୍ରୀରହନି ନରହିତା
ନୋ ତମଃ କଜ୍ଜଳେନ ।

---

୮୯—ଯଦି ଏଭଳି ସ୍ଥଳରେ ସଂକର ଅଳଙ୍କାର କଳ୍ପନା କରିବ ତେବେ ସଂସୃଷ୍ଟି ଅଳଙ୍କାରର ଆଦୌ ସ୍ଥାନ ରହିବ ନାହିଁ ।

୯୦—ବାଦୀ—ଏ ଶ୍ଳୋକରେ ଶ୍ଳେଷ ଅଙ୍ଗ ହୋଇ ବ୍ୟତିରେକର ଅନୁଗ୍ରାହକ ହେଉଥିବାରୁ ବ୍ୟତିରେକ ଶ୍ଳେଷ ଦ୍ୱାରହିଁ ତିଷ୍ଠିଛି, ଏଣୁ ଏଠାରେ ଶ୍ଳେଷବ୍ୟତିରେକର ଅଙ୍ଗାଙ୍ଗିଭାବ ସଂକର ହେଉଛି, କିନ୍ତୁ ସଂସୃଷ୍ଟି ହେଉ ନାହିଁ ।

ଉତ୍ତର—ଏପରି କହିବା ମଧ୍ୟ ଠିକ୍ ହେଉ ନାହିଁ । କାରଣ ଏହା ଭିନ୍ନ ଅନ୍ୟ—ପ୍ରକାର ସ୍ଥଳରେ ମଧ୍ୟ ବ୍ୟତିରେକ ଅଳଙ୍କାର ରହିବା ଦେଖାଯାଉଛି ।

୯୧—ଯଥା—(ଶ୍ଳିଷ୍ଟୋପମାବ୍ୟତିରିକ୍ତ ବ୍ୟତିରେକାଳଙ୍କାରର ଉଦାହରଣ)—ପ୍ରଚଣ୍ଡ ବେଗରେ ପର୍ବତମାନଙ୍କୁ ମଧ୍ୟ ଚୂନା କରୁଥିବା, ପ୍ରଳୟକାଳୀନ ସଂହାର ପବନରେ ମଧ୍ୟ ଅଲିଭା (ନୋ ଶମ୍ୟା), ଦିନରେ ମଧ୍ୟ ଉଜ୍ଜ୍ୱଳପ୍ରଭା ପ୍ରସାର କରୁଥିବା, ତମୋମୟ କଜ୍ଜଳରେ ଅବିମୁକ୍ତ ନୋହିଥିବା, ପତଙ୍ଗ (ସୂର୍ଯ୍ୟ) ଙ୍କଠାରୁ ଉତ୍ପନ୍ନ, ପୁନଶ୍ଚ ନିର୍ବାଣପ୍ରାପ୍ତ ହେଉ ନ ଥିବା, ବିଲକ୍ଷଣ ବର୍ତ୍ତି (ବଳିତା), ଅଶେଷ ଭୂମଣ୍ଡଳର ଦୀପସ୍ୱରୂପ, ସୂର୍ଯ୍ୟଦେବଙ୍କର ସେହି ପ୍ରସିଦ୍ଧ ଦୀପ୍ତି ଆପଣମାନଙ୍କୁ ସୁଖୀ କରୁ ।

ପ୍ରାପ୍ତୋପ୍ରବୃତ୍ତିଃ ପତଙ୍ଗାନ୍ନପୁନରୁପଗତା
ମୋଷମୁଷ୍ଣତ୍ୱିଷୋ ବୋ
ବର୍ତ୍ତିଃ ସୈବାନ୍ୟରୂପା ସୁଖୟତୁ ନିଖିଳ—
ଦ୍ୱୀପଦୀପସ୍ୟ ଦୀପ୍ତିଃ ॥

୯୨। ଅତ୍ର ହି ସାମ୍ୟପ୍ରପଞ୍ଚପ୍ରତିପାଦନଂ ବିନୈବ ବ୍ୟତିରେକୋ ଦର୍ଶିତଃ ।

୯୩। ନାତ୍ର ଶ୍ଳେଷମାତ୍ରାଚ୍ଚାରୁତ୍ୱପ୍ରତୀତିରସ୍ତୀତି ଶ୍ଳେଷସ୍ୟ ବ୍ୟତିରେକାଙ୍ଗତ୍ୱେନୈବ ବିବକ୍ଷିତତ୍ୱାତ୍ ନ ସ୍ୱତୋଽଲଂକାରତେତ୍ୟପି ନ ବାଚ୍ୟମ୍ ।

---

(ଅନ୍ୟ ପ୍ରକାର "ବଳତା" କହିବା ଦ୍ୱାରା ଦୀପବଳତା ଠାରୁ ସୂର୍ଯ୍ୟତେଜର ଆଧିକ୍ୟ ସୂଚିତ ହୋଇଅଛି । ଦୀପ ସାମାନ୍ୟ ପବନରେ ଲିଭେ, ଦିନରେ ସୂର୍ଯ୍ୟ ତେଜରେ ଦୀପ୍ତିହୀନ ହୁଏ, କଜ୍ଜଳଯୁକ୍ତ ହୁଏ ଏବଂ ପତଙ୍ଗ (ଶଲଭ)ମାନଙ୍କ ଦ୍ୱାରା ନିର୍ବାଣ ପ୍ରାପ୍ତ ହୁଏ । ପୁଣି ସୂର୍ଯ୍ୟଙ୍କ ସମ୍ପର୍କରେ ଦୀପ୍ତିହୀନ ହୁଏ, ସୁତରାଂ ଏ ଶ୍ଳୋକରେ ସର୍ବଥା ଉପମାନ ଦୀପର ନ୍ୟୂନତା ଏବଂ ଉପମେୟର ଉତ୍କର୍ଷ ପ୍ରତିପାଦିତ ହୋଇଅଛି । ଏଣୁ ଏଠାରେ ବ୍ୟତିରେକ ।)

୯୨—ଏ ସ୍ଥଳରେ ସାମ୍ୟପ୍ରତିପାଦନ ବିନା ବ୍ୟତିରେକ ଅଳଙ୍କାର ହେଉଅଛି । ତେଣୁ "ଚକ୍ରସ୍ତ୍ରଂ"ରେ ସାମ୍ୟପ୍ରତିପାଦକ ଶ୍ଳେଷ ପୃଥକ୍ ଅଳଙ୍କାର ଏବଂ ବ୍ୟତିରେକ ପୃଥକ୍ ଅଳଙ୍କାର । ଅର୍ଥାତ୍ ସଂସୃଷ୍ଟି, କିନ୍ତୁ ସଂକର ନୁହେଁ ।

୯୩—ବାଦୀ—ଏହି "ଚକ୍ରସ୍ତ୍ରଂ" ଶ୍ଳୋକରେ କେବଳ ଶ୍ଳେଷ ଅଳଙ୍କାର ଚାରୁତା-ସମ୍ପାଦନ କରୁନାହିଁ, ସେ ବ୍ୟତିରେକ ଅଳଙ୍କାରର ଅଙ୍ଗରୂପେ ବିବକ୍ଷିତ ହୋଇଅଛି ମାତ୍ର, କିନ୍ତୁ ସ୍ୱତନ୍ତ୍ର ଅଳଙ୍କାର ରୂପରେ ବିବକ୍ଷିତ ହୋଇ ନାହିଁ ।

ଉତ୍ତର—ଏପରି ମଧ୍ୟ କୁହାଯାଇ ପାରିବ ନାହିଁ ।

୯୪ । ଯତ ଏବଂଭ୍ୟେ ବଷଯୈସାମ୍ୟମାତ୍ରାଦପିଙ୍ଘୃପ୍ରତପାଦତାତ୍
ଗୂରୁତ୍ୱଂ ଦୃଶ୍ୟତ ଏବ ।

୯୫ । ଯଥା—

ଆକ୍ରନ୍ଦାଃସ୍ତନତୈର୍ବିଲୋଚନ-ଜଳାନ୍ୟଶ୍ରାନ୍ତଧାରାମ୍ବୁଭି-
ସ୍ତଦ୍ବିଚ୍ଛେଦଭୁବଶ୍ଚ ଶୋକଶିଖିନସ୍ତୁଲ୍ୟାସ୍ତଡିଦ୍ବିଭ୍ରମୈଃ ।
ଅନ୍ତର୍ମେ ଦୟିତାମୁଖଂ ତବଶଶୀ ବୃତ୍ତିଃ ସମୈବାବୟୋ-
ସ୍ତତ୍ କିଂ ମାମନିଶଂ ସଖେ ଜଳଧର ! ତ୍ୱଂ ଦଗ୍ଧୁ-
ମେବୋଦ୍ୟତଃ ॥ ଇତ୍ୟାଦୌ ।

୯୬ । (ଙ) ରସନବଦ୍ଧୈକତାନହୃଦୟୋ ଯଂ ଚ ନାତ୍ୟନ୍ତଂ
ନବୋଢୁମିଚ୍ଛତ ।

---

୯୪—ଯେଣୁ ବ୍ୟତିରେକ ଅଳଙ୍କାର ସ୍ଥଳରେ ବିନା ଶ୍ଳେଷରେ ଉଭୟପକ୍ଷରେ ସାମ୍ୟପ୍ରତିପାଦିତ ହୋଇଥିବାରୁ ଗୁରୁତା ପ୍ରକାଶ ପାଉଛି; ଯଥା –"ଆକ୍ରନ୍ଦା" ଇତ୍ୟାଦି ଶ୍ଳୋକ । (ସୁତରାଂ "ଶ୍ଳେଷସ୍ୟ" ଏହି ଶ୍ଳୋକରେ ସଂକରାଲଙ୍କାର ହୋଇ ନାହିଁ । କିନ୍ତୁ ଶ୍ଳେଷବ୍ୟତିରେକ ସଂସୃଷ୍ଟି ହୋଇଅଛି) ।

୯୫— ଶ୍ଳେଷ ଅଳଙ୍କାର ନ ଥାଇ ବ୍ୟତିରେକ ଥିବାର ଉଦାହରଣ । ଯଥା – ବିରହକାତରନାୟକ ବର୍ଷୁକ ମେଘକୁ କହୁଅଛି— ହେ ଜଳଧର ! ମୋର କ୍ରନ୍ଦନ ତୁମ୍ଭର ଘଡ଼ଘଡ଼ି ଶବ୍ଦ (ସ୍ତନିତ) ସହ ତୁଲ୍ୟ, (ମୋର) ଲୋତକ ଜଳ (ତୁମ୍ଭର) ଅନବରତ ବୃଷ୍ଟିଧାରା ସହିତ ସମାନ । (ମୋର) ସେହି କାନ୍ତା ବିଚ୍ଛେଦ ଜାତ ଶୋକବହ୍ନି (ତୁମ୍ଭ) ବିଦ୍ୟୁତ୍ ସହିତ ସମାନ, ମୋର ଅନ୍ତରରେ ସର୍ବଦା ମୋ କାନ୍ତାର ମୁଖ ରହିଅଛି । ତୁମ୍ଭ ମଧ୍ୟରେ ସର୍ବଦା ଶଶୀ ରହିଅଛି । ଏଣୁ ଆମ୍ଭ ଦୁହିଁଙ୍କର ଅବସ୍ଥା ସମାନ । ସୁତରାଂ ଆମ୍ଭେ ଦୁହେଁ ସଖା । ତେବେ ହେ ସଖେ ! ତୁମ୍ଭେ ମୋତେ କାହିଁକି ସର୍ବଦା ପୋଡ଼ିଦେବାକୁ ଚାହୁଁଛ ? ଏଠାରେ ଶ୍ଳେଷ ଅଳଙ୍କାର ବିନା ବ୍ୟତିରେକ ରହି ଗୁରୁତା ସମ୍ପାଦନ କରୁଛି ।

୯୬—(ଙ : ଉଦା:) କବି ରସବନ୍ଧରେ ଆଗ୍ରହୀ ହୋଇ ଅଳଙ୍କାରର ପୂର୍ଣ୍ଣତା ପ୍ରତି ଇଚ୍ଛା କରି ନ ଥିବାର ଉଦାହରଣ ଯଥା—(ଅମରୁକ ଶତକରୁ)

ଯଥା—

କୋପାତ୍‌କୋମଳଲୋଲବାହୁଲତିକାପାଶେନ ବଦ୍ଧ୍ୱାଦୃଢ଼ଂ,
ନୀତ୍ୱା ବାସନିକେତନଂ ଦୟିତୟା ସାୟଂ ସଖୀନାଂପୁରଃ ।
ଭୂୟୋନୈବମିତି ସ୍ଖଳତ୍‌କଲଗିରା ସଂସୂଚ୍ୟ ଦୁଶ୍ଚେଷ୍ଟିତଂ
ଧନ୍ୟୋହନ୍ୟତଏବ ନିହ୍ନୁତିପରଃ ପ୍ରେୟାନ୍‌ରୁଦତ୍ୟା ହସନ୍‌

୯୭। ଅତ୍ରହି ରୂପକମାକ୍ଷିପ୍ତ-ମନିର୍ବ୍ୟୂଢ଼ଂ ଚ ।

୯୮। (ଚ) ପରଂ ରସାନୁପୁଷ୍ଟୟେ ନିର୍ବୋଢ଼ୁମିଷ୍ଟମପି ଯଂ ଯତ୍ନା-
ଦଙ୍ଗତ୍ୱେନ ପ୍ରତ୍ୟବେକ୍ଷତେ ।

---

ସାୟଂସନ୍ଧ୍ୟାରେ ନାୟିକା କୋପାନ୍ୱିତା ହୋଇ ନିଜର କୋମଳ ଚଞ୍ଚଳ ବାହୁଲତା ପାଶରେ ଦୃଢ଼ଭାବେ ବାନ୍ଧିକରି ନିଜର ଶୟନକକ୍ଷକୁ ନେଇ ସଖୀମାନଙ୍କ ସମକ୍ଷରେ କୋପ ହେତୁ ଗଦ୍‌ଗଦ (ସ୍ଖଳିତ) କଣ୍ଠରେ (ତୁମ୍ଭେମାନେ ଏସବୁ ଭଲ ବୋଲି କହ ଏବେ ଦେଖି ଶୁଣ ବୋଲି) ନାୟକର ଦୁର୍ବ୍ୟବହାର (ଅନ୍ୟ ସ୍ତ୍ରୀ ସମ୍ଭୋଗଜନିତ ନଖକ୍ଷତାଦି)କୁ ପ୍ରକାଶ କରିବାରେ, ହାସ୍ୟ ଦ୍ୱାରା ନିଜର ଦୋଷକୁ ଫାଙ୍କି ଦେଉଥିବା ଯେଉଁ ପ୍ରିୟତମକୁ, ଉକ୍ତ ନାୟିକା କାନ୍ଦିକରି "ପୁନର୍ବାର ଏଭଳି ଅପରାଧ କରିବ ନାହିଁ" ବୋଲି କହି ପ୍ରହାର କରେ ସେ ନାୟକ ଧନ୍ୟ ।

୯୭—ଏ ଶ୍ଳୋକରେ ବାହୁ ଉପରେ ଲତାତ୍ୱ ଆରୋପ କରାଯାଇ ରୂପକ ଅଳଙ୍କାର ଆରମ୍ଭ କରାଯାଇଛି ମାତ୍ର, କିନ୍ତୁ ରୂପକର ପୂର୍ଣ୍ଣତା ଇଚ୍ଛାରେ ନାୟିକାକୁ ବ୍ୟାଧବଧୂ ଓ ବାସଗୃହକୁ କାରାଗାର ବୋଲି ରୂପଣ କରାଯାଇ ନାହିଁ । ଯଦି ସେଭଳି ଆରୋପ କରାଯାଇଥାନ୍ତା ତେବେ ବାକ୍ୟାର୍ଥୀଭୂତ ଶୃଙ୍ଗାର ରସର ପୁଷ୍ଟି ସାଧିତ ନ ହୋଇ ବେଲିଟି ଅନୌଚିତ୍ୟ ପ୍ରକାଶ ପାଇଥାନ୍ତା । ଏଣୁ ଏଠାରେ ରସପୁଷ୍ଟି ପାଇଁ ଅଳଙ୍କାରର ଯେତିକି ଅଂଶ ଆବଶ୍ୟକ ସେତିକି ସମ୍ପାଦିତ ହୋଇଅଛି । ସୁତରାଂ ଏଠାରେ ଅଳଙ୍କାର ରସାନୁଗୁଣ ହେତୁ ରସାଙ୍ଗ ।

୯୮—(ଚ: ଉଦା:) ଅଳଙ୍କାରର ପୂର୍ଣ୍ଣତା ଇଚ୍ଛାକରି ହୋଇଥିଲେ ମଧ୍ୟ ରସର ପୁଷ୍ଟି ପାଇଁ ଯତ୍ନପୂର୍ବକ ତାକୁ ଅଙ୍ଗରୂପେ ସମାବେଶ କରାଯାଇ ଥିବାର ଉଦାହରଣ ଯଥା—

୯୯ । ଯଥା —

ଶ୍ୟାମାସ୍ୱଙ୍ଗଂ ଚକିତହରିଣୀପ୍ରେକ୍ଷଣେ ଦୃଷ୍ଟିପାତଂ,
ବକ୍ତ୍ରଚ୍ଛାୟାଂ ଶଶିନି, ଶିଖିନାଂ ବର୍ହଭାରେଷୁ କେଶାନ୍ ॥
ଉତ୍ପଶ୍ୟାମି ପ୍ରତନୁଷୁ ନଦୀବୀଚିଷୁ ଭ୍ରୂବିଳାସାନ୍
ହନ୍ତୈକସ୍ମିନ୍ କ୍ୱଚିଦପି ନ ତେ ଭୀରୁ ! ସାଦୃଶ୍ୟମସ୍ତି ॥

୧୦୦ । ଇତ୍ୟାଦୌ ଚ ଏବମ୍ବିଧସମୀକ୍ଷାପୂର୍ବକନିବେଶିତାଃ ଅଳଙ୍କାରାଃ ରସାଭିବ୍ୟକ୍ତିହେତୁଃ କବେର୍ଭବନ୍ତି ॥

---

୯୯ — (ମେଘଦୂତର ଉତ୍ତର ଭାଗରେ ଯକ୍ଷ ମେଘ ମୁଖରେ ସ୍ୱକାନ୍ତାକୁ କହୁଛି) — ହେ ଭୀରୁ ! ମୁଁ ପ୍ରିୟଙ୍ଗୁଲତାରେ (ତୁମ୍ଭର) ଅଙ୍ଗଗୁଡ଼ିକୁ, ଚକିତହରିଣୀର ଚାହାଣିରେ (ତୁମ୍ଭର) ଚାହାଣିକୁ, ସମ୍ପୂର୍ଣ୍ଣ ଚନ୍ଦ୍ରଠାରେ (ତୁମ୍ଭର) ମୁଖ ଶୋଭାକୁ, ମୟୂରମାନଙ୍କ ପୁଚ୍ଛରେ (ତୁମ୍ଭର) କେଶପାଶକୁ, ନଦୀମାନଙ୍କର ଛୋଟ ଛୋଟ ତରଙ୍ଗରେ (ତୁମ୍ଭର) ଭ୍ରୂଭଙ୍ଗୀକୁ, ଉତ୍ପ୍ରେକ୍ଷା କରୁଛି ମାତ୍ର; କିନ୍ତୁ କୌଣସି ଗୋଟିଏ ବସ୍ତୁରେ ହେଲେ ତୁମ୍ଭର ସାଦୃଶ୍ୟ ନାହିଁ । ଅର୍ଥାତ୍ ପ୍ରିୟଙ୍ଗୁଲତା ପ୍ରଭୃତିରେ ତୁମ୍ଭ ଅଙ୍ଗ ପ୍ରଭୃତିର ଯଥାର୍ଥ ଶୋଭା-ସମ୍ପତ୍ତି ନ ଥିଲେ ମଧ୍ୟ ମୁଁ କଥଂଚିତ୍ ସେମାନଙ୍କ ଦ୍ୱାରା ତୁମ୍ଭର ଗୋଟିଏ ଗୋଟିଏ ଅଙ୍ଗଶୋଭାକୁ ଅନୁଭବ କରୁଅଛି; କିନ୍ତୁ କୌଣସି ବସ୍ତୁରେ ପୂର୍ଣ୍ଣମାତ୍ରାରେ ତୁମ୍ଭର ଶୋଭା ଦେଖି ପାରୁ ନାହିଁ ॥

(ଏଠାରେ ଶ୍ୟାମା-ଲତା ପ୍ରଭୃତିରେ ଅଙ୍ଗ ପ୍ରଭୃତିର ଉତ୍ପ୍ରେକ୍ଷଣ କରାଯାଇ ଥିବାରୁ ଉତ୍ପ୍ରେକ୍ଷା ଅଳଙ୍କାର ॥ ତାହାର ପୂର୍ଣ୍ଣତା ସମ୍ପାଦନ କରାଯାଇଥିଲେ ମଧ୍ୟ ତାହା ଯେପରି ବିପ୍ରଲମ୍ଭ ଶୃଙ୍ଗାରର ପୋଷକ ହେବ ସେଥି ପ୍ରତି ଦୃଷ୍ଟି ଦିଆଯାଇଅଛି । ସୁତରାଂ ଏହା ରସାଙ୍ଗ) ।

୧୦୦ — ଉକ୍ତ ଉଦାହରଣମାନଙ୍କରେ ଓ ତାଦୃଶ ଅନ୍ୟ ସ୍ଥଳରେ ଏହି ପ୍ରକାର ସମୀକ୍ଷାପୂର୍ବକ ନିବେଶିତ କବିମାନଙ୍କ ଅଳଙ୍କାରଗୁଡ଼ିକ ରସବ୍ୟଞ୍ଜକ ହୁଅନ୍ତି ।

୧୦୧ । ଉକ୍ତ ପ୍ରକାରବିକ୍ରମେ ତୁ ନିଯ୍ୟମେନୈବ ରସଭଙ୍ଗହେତୁଃ ସମ୍ପଦ୍ୟତେ । ଲକ୍ଷ୍ୟଂ ଚ ତଥାବିଧମପି ମହାକବିପ୍ରବନ୍ଧେଷୁ ଦୃଶ୍ୟତେ ବହୁଶଃ । ତତ୍ତୁ ସୂକ୍ତିସହସ୍ରଦ୍ୟୋତିତାତ୍ମନାଂ ମହାତ୍ମନାଂ ଦୋଷୋଦ୍ଘୋଷଣମାତ୍ମନ ଏବ ଦୂଷଣଂ ଭବତୀତି ନ ବିଭଜ୍ୟ ଦର୍ଶିତମ୍ ॥

୧୦୨ । କିନ୍ତୁ ରୂପକାଦେରଲଂକାରବର୍ଗସ୍ୟ ଯେୟଂ ବ୍ୟଞ୍ଜକତ୍ୱେ ରସାଦିବିଷୟେ ଲକ୍ଷଣଦିଗ୍ ଦର୍ଶିତା, ତାମନୁସରନ୍ ସ୍ୱୟଂ ଚାନ୍ୟଲ୍ଲକ୍ଷଣମୁତ୍ପ୍ରେକ୍ଷମାଣୋ ଯଦ୍ୟଲକ୍ଷ୍ୟକ୍ରମପ୍ରତୀତମନନ୍ତରୋକ୍ତମେନଂ ଧ୍ୱନେରାତ୍ମାନମୁପନିବଧ୍ନାତି ସୁକବିଃ ସମାହିତଚେତାଃ, ତଦା ତସ୍ୟାତ୍ମଲାଭୋ ଭବତି ମହୀୟାନିତି ॥

---

୧୦୧—ଯେଉଁଠାରେ ଉକ୍ତ ସମୀକ୍ଷା ପ୍ରକାରରେ ଅଳଙ୍କାରମାନେ ନିବଦ୍ଧ ନ ହୋଇ ଭିନ୍ନ ରୀତିରେ ନିବଦ୍ଧ ହୋଇଥାଆନ୍ତି, ସେମାନେ ସେଠାରେ ନିଶ୍ଚିତରୂପେ ରସଭଙ୍ଗର କାରଣ ହୁଅନ୍ତି । ମହାକବିମାନଙ୍କ ରଚନାରେ ମଧ୍ୟ ତାଦୃଶ ରସଭଙ୍ଗର ହେତୁ ଅସମୀକ୍ଷାପ୍ରଯୁକ୍ତ ଅଳଙ୍କାର ବହୁଶଃ ଦେଖାଯାଏ । କିନ୍ତୁ ସହସ୍ର ସହସ୍ର ସୂକ୍ତି-(ଉତ୍ତମ ରଚନା) ଦ୍ୱାରା ବିଖ୍ୟାତ ମହାତ୍ମା (କବି) ମାନଙ୍କର ଦୋଷ ପ୍ରକାଶ କରିବା ନିଜର ଉଚିତ ନୁହେଁ ବରଂ ଦୋଷ, ଏହା ବୋଲି ଆମ୍ଭେ ଗୋଟି ଗୋଟି କରି ତାହା ଦର୍ଶାଇଲୁଁ ନାହିଁ ।

୧୦୨—କିନ୍ତୁ ଯେଉଁ ରୀତିରେ ନିବେଶ କଲେ ରୂପକାଦି ଅଳଙ୍କାରବର୍ଗ ରସାଦିର ବ୍ୟଞ୍ଜକ ହେବେ ବୋଲି ଦର୍ଶାଇଅଛୁଁ। ସେହି ରୀତି-(ସମୀକ୍ଷା) କୁ ଅନୁସରଣ କରି କିମ୍ବା ନିଜେ ଅନ୍ୟ କିଛି ନୂତନ ସମୀକ୍ଷା ପ୍ରକାର ଉଦ୍ଭାବନ କରି, ବର୍ତ୍ତମାନ କୁହାଯାଇଥିବା ଅଲକ୍ଷ୍ୟକ୍ରମବ୍ୟଙ୍ଗ୍ୟ (ରସାଦି) ଧ୍ୱନିକୁ ସୁକବି ଏକାଗ୍ରଚେତା ହୋଇ ଯଦି ଗ୍ରନ୍ଥନ କରେ, ତେବେ ତାର ଆତ୍ମଲାଭ ହୁଏ ଅର୍ଥାତ୍ ମହାକବି ବୋଲି ଖ୍ୟାତିଲାଭ ହୁଏ, କିମ୍ବା "ଏକଃ ଶବ୍ଦଃ ସୁପ୍ରଯୁକ୍ତଃ

୧୦୩ । କ୍ରମେଣ ପ୍ରତୀତତ୍ୟାତ୍ମା ଯୋଽସ୍ୟାନୁସ୍ୱାନସଂନିଭଃ ।
ଶବ୍ଦାର୍ଥଶକ୍ତିମୂଲତ୍ୱାତ୍ ସୋଽପି ଦେଧା ବ୍ୟବସ୍ଥିତଃ ॥ ୨୦ ॥
ଅସ୍ୟ ବିବକ୍ଷିତାନ୍ୟପରବାଚ୍ୟସ୍ୟ ଧ୍ୱନେଃ ସଂକ୍ରମ-ବ୍ୟଙ୍ଗ୍ୟତ୍ୱାଦନୁରଣନପ୍ରଖ୍ୟୋ ଯ ଆତ୍ମା ସୋଽପି ଶବ୍ଦଶକ୍ତିମୂଲୋଽର୍ଥଶକ୍ତିମୂଲଶ୍ଚେତି ଦ୍ୱିପ୍ରକାରଃ ॥

୧୦୪ । ନନୁ ଶବ୍ଦଶକ୍ତ୍ୟା ଯତ୍ରାର୍ଥାନ୍ତରଂ ପ୍ରକାଶତେ, ସ ଯଦି ଧ୍ୱନେଃ ପ୍ରକାର ଉଚ୍ୟତେ, ତଦିଦାନୀଂ ଶ୍ଳେଷସ୍ୟ ବିଷୟ ଏବାପହୃତଃ ସ୍ୟାତ୍, ନାପହୃତ ଇତ୍ୟାହ :—

---

ସମ୍ୟକ୍ ଜ୍ଞାତଃ ସ୍ୱର୍ଗେ ଲୋକେ ଚ କାମଧୁକ୍ ଭବତି" ଏହି ପ୍ରମାଣାନୁସାରେ ସ୍ୱର୍ଗାଦି ଲାଭ ହୁଏ ॥

୧୦୩—ଏହି ବିବକ୍ଷିତାନ୍ୟପରବାଚ୍ୟ ଧ୍ୱନିର ଯେଉଁ ପ୍ରକାରଟି ଅନୁସ୍ୱାନ ପରି କ୍ରମଶଃ ପ୍ରକାଶ ପାଏ, ତାହା ଶବ୍ଦଶକ୍ତିମୂଳ ଓ ଅର୍ଥଶକ୍ତିମୂଳ ଭେଦରେ ଦୁଇ ପ୍ରକାର ।

[ଅନୁସ୍ୱାନ ଅର୍ଥାତ୍ ପ୍ରତିଧ୍ୱନି ବା ଧ୍ୱନି ପରମ୍ପରା । ଗୋଟିଏ କଂସାକୁ ଆଘାତ କଲେ ଆଘାତକାଳୀନ ଧ୍ୱନିଭିନ୍ନ ଅନ୍ୟ ଯେଉଁ ଧ୍ୱନି ଲାଗି ରହିଥାଏ, ତାହାହିଁ ଅନୁସ୍ୱାନ ବା ଅନୁରଣନ ଇତ୍ୟାଦି ଶବ୍ଦ ବାଚ୍ୟ ।

ଅନୁସ୍ୱାନସନ୍ନିଭ କହିବା ଦ୍ୱାରା କଂସା ପ୍ରଭୃତିର ଆଘାତଜନ୍ୟ ଶବ୍ଦ ଯେପରି ପୂର୍ବାପରଭାବେ ଲାଗି ରହିଥାଏ, ସେହିପରି ପ୍ରଥମେ ବାଚ୍ୟାର୍ଥ ତଦନନ୍ତର ବ୍ୟଙ୍ଗ୍ୟାର୍ଥ ଏବଂ କୌଣସି କୌଣସି ସ୍ଥଳରେ ବ୍ୟଙ୍ଗ୍ୟାର୍ଥରୁ ମଧ୍ୟ ବ୍ୟଙ୍ଗ୍ୟାର୍ଥ ପ୍ରତୀତ ହୁଏ, ଏଣୁ ତାହା ଅନୁସ୍ୱାନର ସଦୃଶ] ।

୧୦୪—ଯଦି ଶବ୍ଦଶକ୍ତିବଳରୁ ଏକ ଅର୍ଥଭିନ୍ନ ଆଉ ଏକ ଅର୍ଥ ପ୍ରକାଶ ପାଏ ଏବଂ ସେଭଳି ଦ୍ୱିତୀୟ ଅର୍ଥ ଯଦି ଧ୍ୱନି ବିଶେଷ ବୋଲି କୁହାଯାଏ, ତେବେ ଶ୍ଳେଷର ସ୍ଥାନ କୁତ୍ରାପି ରହିବ ନାହିଁ, କିନ୍ତୁ ବସ୍ତୁତଃ ତାହା ନୁହେଁ, ଶ୍ଳେଷର ସ୍ଥଳ ପୃଥକ୍ ଏବଂ ଧ୍ୱନିର ସ୍ଥଳ ପୃଥକ୍ ।

୧୦୫। ଆକ୍ଷିପ୍ତ ଏବାଲଂକାରଃ ଶବ୍ଦଶକ୍ତ୍ୟା ପ୍ରକାଶତେ ।
ଯସ୍ମିନ୍ନନୁକ୍ତଃ ଶବ୍ଦେନ ଶବ୍ଦଶକ୍ତ୍ୟୁଦ୍‌ଭବୋ ହି ସଃ ॥ ୬୧
ଯସ୍ମାଦଲଂକାରେ ନ ବସ୍ତୁମାତ୍ରମ୍, ଯସ୍ମିନ୍ କାବ୍ୟେ ଶବ୍ଦ-
ଶକ୍ତ୍ୟା ପ୍ରକାଶତେ, ସ ଏବ ଶବ୍ଦଶକ୍ତ୍ୟୁଦ୍‌ଭବୋ ଧ୍ୱନିରିତ୍ୟ-
ସ୍ମାକଂ ବିବକ୍ଷିତଃ ॥

୧୦୬। ବସ୍ତୁଦ୍ୱୟେ ଚ ଶବ୍ଦଶକ୍ତ୍ୟା ପ୍ରକାଶମାନେ ଶ୍ଳେଷଃ ।

୧୦୭। ଯଥା—

ଯେନ ଧ୍ୱସ୍ତ-ମନୋଭବେନ ବଲିଜିତ୍‌କାୟଃ

ପୁରାସ୍ତ୍ରୀକୃତୋ,

---

୧୦୫—ଶବ୍ଦଶକ୍ତ୍ୟୁଦ୍ଭବ ଧ୍ୱନିର ଲକ୍ଷଣ ଯଥା—କାରଣ ଯେଉଁ ସ୍ଥଳରେ ଶବ୍ଦ ଦ୍ୱାରା ଉକ୍ତ ନ ହୋଇ ଶବ୍ଦ ଶକ୍ତିବଳରେ କେବଳ ଆକ୍ଷିପ୍ତ ହୋଇ ଅଳଙ୍କାର ପ୍ରକାଶ ପାଏ ତାହାହିଁ ଶବ୍ଦଶକ୍ତ୍ୟୁଦ୍ଭବ ଧ୍ୱନି, ଅଳଙ୍କାର ଭିନ୍ନ ଅନ୍ୟ ବସ୍ତୁ ପ୍ରକାଶ ପାଉଥିଲେ ଧ୍ୱନି ହୁଏ ନାହିଁ । ଏହା ଆମ୍ଭର ମତ ॥

ସଂକ୍ଷେପତଃ ଶ୍ଳେଷ ଅଳଙ୍କାର ସ୍ଥଳରେ ଉଭୟ ଅର୍ଥ ବାଚ୍ୟ ହୋଇଥାଏ, ଏବଂ ଧ୍ୱନିସ୍ଥଳରେ ଗୋଟିଏ ଅର୍ଥ ବାଚ୍ୟ ଓ ଅପର ଅର୍ଥଟି ଗମ୍ୟ ହୋଇ ଥାଏ ॥ ଏହି ଗମ୍ୟ ଅର୍ଥଟି ପ୍ରଧାନ ହେଲେ ଧ୍ୱନି ପଦବାଚ୍ୟ ହୁଏ । ଏହା ବିଶ୍ୱନାଥ ପ୍ରଭୃତି ପରବର୍ତ୍ତୀ ଆଲଙ୍କାରିକ ସମ୍ପ୍ରଦାୟର ବ୍ୟାଖ୍ୟାନ ॥

୧୦୬—ଦୁଇଟି ବସ୍ତୁ ଶବ୍ଦଶକ୍ତିରେ ଅର୍ଥାତ୍ ଅଭିଧା ବୃତ୍ତିରେ ପ୍ରକାଶ ପାଇଲେ ଶ୍ଳେଷ ଅଳଙ୍କାର ହୁଏ ।

୧୦୭—ଯଥା—ମାଧବଙ୍କ ପକ୍ଷରେ - ଯେଉଁ କନ୍ଦର୍ପହନ୍ତା ଭଗବାନ୍ (ବାଲକ୍ରୀଡ଼ାରେ) ଶକଟ (ଶକଟାସୁର)କୁ ଧ୍ୱଂସ କରିଥିଲେ, ଏବଂ ସେ ବଳିସୁଦାନବମାନଙ୍କୁ (ଅଥବା ବଳିକୁ) ଜୟ କରିଥିବା ନିଜର ଶରୀରକୁ ପୂର୍ବେ (ଅମୃତ ହରଣ ସମୟରେ) ସ୍ତ୍ରୀ-ରୂପ କରିଥିଲେ, ଆଉ ପୁଣି ଯେ, ଦର୍ପିଷ୍ଠ (ଉଦ୍ଧତ) ଭୁଜଙ୍ଗ କାଳୀୟ ସର୍ପକୁ ଦମନ କରିଥିଲେ, ଏବଂ ଯେ,

ଯଶ୍ଚୋଦ୍‌ବୃତ୍ତଭୁଜଙ୍ଗହାରବଳୟୋ ଗଙ୍ଗାଂ ଚ

ଯୋଽଧାରୟତ୍

ଯସ୍ୟାହୁଃ ଶଶିମଚ୍ଛିରୋହର ଇତି ସ୍ତୁତ୍ୟଂ ଚ ନାମାମରାଃ

ପାୟାତ୍ ସ ସ୍ୱୟମନ୍ଧକକ୍ଷୟକରସ୍ତ୍ୱାଂ ସର୍ବଦୋମାଧବଃ ॥

୧୦୮। ନନୁ ଅଲଂକାରାନ୍ତରପ୍ରତିଭାୟାମପି ଶ୍ଳେଷବ୍ୟପଦେଶୋ

ଭବତୀତି ଦର୍ଶିତଂ ଭଟ୍ଟୋଦ୍‌ଭଟେନ, ତତ୍ ପୁନରପି

---

ଶତ୍ରୁକୁଳମାନଙ୍କ ଯୁଦ୍ଧ କରିବା ପାଇଁ ଯାଆନ୍ତି । ପୁଣି ଯେ, ଗୋବର୍ଦ୍ଧନ ପର୍ବତ (ଅଗ) ଓ ଭୂମିକୁ ଧାରଣ କରିଥିଲେ, ପୁନଶ୍ଚ ଦେବତାମାନେ ଯାହାଙ୍କର ଚନ୍ଦ୍ରମନ୍ଥନକାରୀ—ରାହୁଶିରଚ୍ଛେଦନକାରୀ ଏହି ନାମକୁ ସ୍ତୁତି ଯୋଗ୍ୟ ବୋଲି କହନ୍ତି, ଏବଂ ଯେ, ଅନ୍ଧକ ବଂଶୀୟ (ଯାଦବ ବିଶେଷ)ଙ୍କର ସ୍ଥାପୟିତା, ଅଥବା ସ୍ୱୟଂ ଅନ୍ଧକବଂଶର ବିନାଶକର୍ତ୍ତା, ସେହି ସର୍ବବସ୍ତୁ—ଦାନାଧିକାରୀ (ସର୍ବଦ), ଲକ୍ଷ୍ମୀପତି (ମାଧବ) ଶ୍ରୀକୃଷ୍ଣ ତୁମ୍ଭଙ୍କୁ ପାଳନ କରନ୍ତୁ ।

ଉମାଧବଙ୍କ ପକ୍ଷରେ—ଯେଉଁ କାମବିଧ୍ୱଂସୀ ଭଗବାନ୍ ଶଙ୍କର, ପୂର୍ବେ (ତ୍ରିପୁର ଦାହ ସମୟରେ) ବଳିକୁ ଜୟ କରିଥିବା ନାରାୟଣଙ୍କର ଶରୀରକୁ ଅସ୍ତ୍ର କରିଥିଲେ, ଏବଂ ଯେ, ଉଦ୍‌ବୃତ୍ତ ଭୁଜଙ୍ଗମାନଙ୍କୁ ହାର ଓ ବଳୟ (ଖଡୁ) କରିଅଛନ୍ତି, ପୁନଶ୍ଚ ଯେ ଗଙ୍ଗାଦେବୀଙ୍କୁ ଧାରଣ କରିଅଛନ୍ତି, ଦେବତାମାନେ ଯାହାଙ୍କର ଚନ୍ଦ୍ରଶେଖର (ଶଶିମଚ୍ଛିର), ହର, ଇତ୍ୟାଦି ନାମକୁ ସ୍ତୁତିଯୋଗ୍ୟ ବୋଲି କହନ୍ତି, ଅନ୍ଧକାସୁରର ବିନାଶକର୍ତ୍ତା ସେହି ଉମାପତି ଶଙ୍କର ନିଜେ ତୁମ୍ଭଙ୍କୁ ସର୍ବଦା ପାଳନ କରନ୍ତୁ ।

ଏ ଶ୍ଳୋକରେ ମାଧବ ଓ ଉମାଧବଙ୍କ ପକ୍ଷରେ ଦୁଇଗୋଟି ଅର୍ଥ ଅଭିଧା ଶକ୍ତିରେ ପ୍ରକାଶିତ ହେଉଥିବାରୁ ଶ୍ଳେଷ ଅଳଙ୍କାର ହେଉଅଛି । (ଅଭିନବଗୁପ୍ତଙ୍କ ମତରେ ଏ ସବୁ ଶ୍ଳେଷ ଅଳଙ୍କାର ସ୍ଥଳରେ ମଧ୍ୟ ଗୋଟିଏ ବସ୍ତୁ ବାଚ୍ୟ ଓ ଅନ୍ୟ ଗୋଟିଏ ବସ୍ତୁ ବ୍ୟଙ୍ଗ୍ୟ । ମାଧବ ଉମାଧବଙ୍କ ପରଃ ଏହି ସାମ୍ୟ ପ୍ରତୀତ ହୋଇଥିଲେ ଉପମା ଧ୍ୱନି ହୋଇଥାନ୍ତା । ଏଠାରେ ସାମ୍ୟ ପ୍ରତୀତ ନ ହୋଇ କେବଳ ଅନ୍ୟ ଅର୍ଥ ମାତ୍ର ପ୍ରତୀତ ହେବାରୁ ଧ୍ୱନି ନ ହୋଇ ବାଚ୍ୟ ଅଳଂକାର ହେଲା ।)

୧୦୮—ଭଟ୍ଟୋଦ୍‌ଭଟ କହିଅଛନ୍ତି ଯେ, ଅନ୍ୟ ଅଳଙ୍କାର ମାନଙ୍କର ସ୍ଫୁରଣ ହେଉଥିଲେ ମଧ୍ୟ ଶ୍ଳେଷ ଅଳଙ୍କାର ହିଁ ଉକ୍ତ ହୁଏ । ତାହା ହେଲେ

ଶବ୍ଦଶକ୍ତିମୂଳୋ ଧ୍ୱନିର୍ନିରବକାଶ ଇତ୍ୟାଶଙ୍କ୍ୟେଦମୁକ୍ତମ୍ "ଆକ୍ଷିପ୍ତ ଏବ" ॥

୧୦୯। ତଦୟମର୍ଥଃ :—ଯତ୍ର ଶବ୍ଦଶକ୍ତ୍ୟା ସାକ୍ଷାଦଲଂକାରାନ୍ତରଂ ବାଚ୍ୟଂ ସତ୍ ପ୍ରତିଭାସତେ ସ ସର୍ବଃ ଶ୍ଳେଷବିଷୟଃ। ଯତ୍ର ତୁ ଶବ୍ଦଶକ୍ତ୍ୟା ସାମର୍ଥ୍ୟାକ୍ଷିପ୍ତଂ ବାଚ୍ୟବ୍ୟତିରିକ୍ତଂ ବ୍ୟଙ୍ଗ୍ୟମେବାଲଂକାରାନ୍ତରଂ ପ୍ରକାଶତେ ସ ଧ୍ୱନେର୍ବିଷୟଃ।

୧୧୦। ଶବ୍ଦଶକ୍ତ୍ୟା ସାକ୍ଷାଦଲଂକାରାନ୍ତରପ୍ରତିଭା ଯଥା—
ତସ୍ୟା ବିନାପି ହାରେଣ ନିସର୍ଗାଦେବ ହାରିଣୌ
ଜନୟାମାସତୁଃ କସ୍ୟ ବିସ୍ମୟଂ ନ ପୟୋଧରୌ ॥

୧୧୧। ଅତ୍ର-ଶୃଙ୍ଗାରବ୍ୟଭିଚାରୀ ବିସ୍ମୟାଖ୍ୟୋ ଭାବଃ ସାକ୍ଷାଦ୍ବିରୋଧାଲଂକାରଶ୍ଚ ପ୍ରତିଭାସତ ଇତି ବିରୋଧଚ୍ଛାୟାନୁ-

---

ଶବ୍ଦଶକ୍ତିମୂଳଧ୍ୱନି—ସ୍ଥଳରେ ଶ୍ଳେଷ ଅଳଙ୍କାର ରହୁଛି ବୋଲି କହିଲେ ଶବ୍ଦଶକ୍ତିମୂଳଧ୍ୱନି ନିରବକାଶ ହେବ। (ଅର୍ଥାତ୍ କୁତ୍ରାପି ରହିବ ନାହିଁ) ଏହି କଥା ଆଶଙ୍କା କରି "ଆକ୍ଷିପ୍ତ" ଇତ୍ୟାଦି କାରିକାରେ (ଧ୍ୱନିକାର) ତାହାର ଲକ୍ଷଣ ସ୍ପଷ୍ଟଭାବେ କହିଅଛନ୍ତି।

୧୦୯—କାରିକାର ଅଭିପ୍ରାୟ ଏହା ଯେ, ଯେଉଁଠି ଶବ୍ଦଶକ୍ତି ବଳରେ (ଅଭିଧା ବୃତ୍ତିରେ) ଅଳଙ୍କାର ବାଚ୍ୟ ହୋଇ ପ୍ରକାଶ ପାଏ, ତାହା ଶ୍ଳେଷ ଅଳଙ୍କାର। ପୁଣି ଯେଉଁଠି ଶବ୍ଦଶକ୍ତିରୁ ସାମର୍ଥ୍ୟବଶତଃ ଆକ୍ଷିପ୍ତ ହୋଇ ବାଚ୍ୟଠୁଁ ପୃଥକ୍‌ଭୂତ ବ୍ୟଙ୍ଗ୍ୟ ଅଳଙ୍କାର ପ୍ରକାଶ ପାଏ ସେ ଶବ୍ଦଶକ୍ତିମୂଳ ଧ୍ୱନି।

୧୧୦—ଶବ୍ଦଶକ୍ତିରେ ଅନ୍ୟ ଅଳଙ୍କାର ପ୍ରତିଭା ଉତ୍ପାଦନ କରିବାର ସ୍ଥଳ ଯଥା—ସେହି ରମଣୀର ହାର—ବ୍ୟତିରେକରେ ମଧ୍ୟ ହାରି (ମନୋହାରୀ) ପୟୋଧର—ଦୁଇଟି କେଉଁ ପୁରୁଷର ବିସ୍ମୟ ଉତ୍ପାଦନ ନ କରନ୍ତି ?

୧୧୧—ଏ ଶ୍ଳୋକରେ ଶୃଙ୍ଗାର ରସର ବ୍ୟଭିଚାରିଭାବ ବିସ୍ମୟ ଓ ବିରୋଧାଳଙ୍କାର ସ୍ପଷ୍ଟରୂପେ (ଶବ୍ଦ ଦ୍ୱାରା) ପ୍ରକାଶ ପାଉଛି (ଅଭିନବଗୁପ୍ତ

ଗ୍ରାହ୍ମଣଃ ଶ୍ଳେଷସ୍ୟାସ୍ତ୍ୟଂ ବିଷୟଃ ; ନତ୍ୱନୁସ୍ୱାନୋପମବ୍ୟଙ୍ଗ୍ୟସ୍ୟ ଧ୍ୱନେଃ ॥

୧୧୨ । ଅଲକ୍ଷ୍ୟକ୍ରମବ୍ୟଙ୍ଗ୍ୟସ୍ୟ ତୁ ଧ୍ୱନେ ର୍ବାଚ୍ୟେନ ଶ୍ଳେଷେଣ ବିରୋଧେନ ବା ବ୍ୟଞ୍ଜିତସ୍ୟ ବିଷୟ ଏବ ।

୧୧୩ । ଯଥା ମମୈବ—

ଶ୍ଳାଘ୍ୟାଶେଷତନୁଂ ସୁଦର୍ଶନକରଃ ସର୍ବାଙ୍ଗଲୀଳାଜିତ-
ତ୍ରୈଲୋକ୍ୟାଂ ଚରଣାରବିନ୍ଦଲଳିତେ-
ନାକ୍ରାନ୍ତଲୋକୋ ହରିଃ ।
ବିଭ୍ରାଣାଂ ମୁଖମିନ୍ଦୁରୂପମଖିଳଂ ଚନ୍ଦ୍ରାତ୍ମଚକ୍ଷୁର୍ଦଧତ୍
ସ୍ଥାନେ ଯାଂ ସ୍ୱତନୋରପଶ୍ୟଦଧିକାଂ
ସା ରୁକ୍ମିଣୀ ବୋଽବତାତ୍ ॥

---

କହନ୍ତି ଯେ, ଏଠାରେ ଦୃଷ୍ଟାନ୍ତ ସ୍ୱରୂପ ବିସ୍ମୟ ଶବ୍ଦରୁ ବିସ୍ମୟ ନାମକ ବ୍ୟଭିଚାରୀ ଭାବ ଏବଂ ଅପି ଶବ୍ଦରୁ ବିରୋଧ ଅଳଙ୍କାର ପ୍ରକାଶ ପାଉଛି ।) ଏଠାରେ "ହାରୀ" (ହାର ଯୁକ୍ତ ଓ ମନୋହାରୀ) ପଦର ଶ୍ଳେଷ, ତାହା ହାର ବ୍ୟତିରେକରେ ମଧ୍ୟ ହାରୀ, ଏହି ବିରୋଧ ଅଳଙ୍କାରକୁ ଜୀବନ ପ୍ରଦାନ କରୁଅଛି । ସୁତରାଂ ଏଠାରେ ଶ୍ଳେଷ ଓ ବିରୋଧ ଦୁହିଁଙ୍କର ଅଙ୍ଗାଙ୍ଗିଭାବ ସଂକର ଅଳଙ୍କାର । କିନ୍ତୁ ଏ ସଂଲକ୍ଷକ୍ରମବ୍ୟଙ୍ଗ୍ୟ ଧ୍ୱନିର ସ୍ଥଳ ନୁହେ ।

୧୧୨—ଏଥିରେ ସଂଲକ୍ଷ୍ୟକ୍ରମବ୍ୟଙ୍ଗ୍ୟ ଧ୍ୱନି ରହୁ ନାହିଁ ବୋଲି ଯେ, ଏକାବେଳେ ଏଥିରେ ଧ୍ୱନି ନାହିଁ ତାହା ନୁହେ, ଯେଣୁ ଏ ଶ୍ଲୋକରେ ବାଚ୍ୟ-ଶ୍ଳେଷ ବିରୋଧ ସଂକରାଳଙ୍କାର ଦ୍ୱାରା ବ୍ୟଞ୍ଜିତ ଅଂସଲକ୍ଷ୍ୟକ୍ରମଧ୍ୱନି ରହିଅଛି ।

(ବାଚସ୍ପତିଙ୍କ ମତରେ ଏଥିରେ ଶ୍ଳେଷ ବିରୋଧକୁ, ବିରୋଧ ବିସ୍ମୟ ନାମକ ଶୃଙ୍ଗାର ବ୍ୟଭିଚାରୀଭାବକୁ ଓ ବିସ୍ମୟ ଅଭିଳାଷାତିଶୟ—ରୂପ—ସମ୍ଭୋଗ ଶୃଙ୍ଗାରକୁ ପ୍ରକାଶ କରୁଛି ।)

୧୧୩—ଯଥା ମୋର ନିଜ କବିତା—

ରୁକ୍ମିଣୀଙ୍କର ସକଳ ଅବୟବ ପ୍ରଶଂସାର୍ହ; ଓ ଶ୍ରୀକୃଷ୍ଣ ସୁଦର୍ଶନ କର (ସୁଦର୍ଶନ ଚକ୍ରଧାରୀ) ଅର୍ଥାତ୍ ତାଙ୍କର କର ଦୁଇଟି ମାତ୍ର ଦର୍ଶନୀୟ ।

୧୧୪ । ଅତ୍ର ବାଚ୍ୟତମୈବ ବ୍ୟତିରେକଚ୍ଛାୟାନୁଗ୍ରାହୀ ଶ୍ଳେଷଃ
ପ୍ରତୀୟତେ ॥

୧୧୫ । ଯଥାଚ—

ଭ୍ରମିମରତିମଳସହୃଦୟତାଂ ପ୍ରଳୟଂ ମୂର୍ଚ୍ଛାଂ ତମଃ
ଶରୀରସାଦମ୍ ।
ମରଣଂ ଚ ଜଳଦଭୁଜଗଜଂ ପ୍ରସହ୍ୟ କୁରୁତେ ବିଷଂ
ବିୟୋଗିନୀନାମ୍ ॥

---

ରୁକ୍ମିଣୀଙ୍କର ପ୍ରତ୍ୟେକ ଅଙ୍ଗ, ଲୀଳାରେ ତ୍ରିଲୋକକୁ ଜିତିଛନ୍ତି । ଶ୍ରୀକୃଷ୍ଣ ଚରଣାରବିନ୍ଦରେ ଲୀଳାପୂର୍ବକ ତ୍ରିଭୁବନକୁ ଆକ୍ରମଣ ମାତ୍ର କରିଥିଲେ । ରୁକ୍ମିଣୀ ସମଗ୍ର ଚନ୍ଦ୍ରସ୍ୱରୂପ ମୁଖକୁ ଧାରଣ କରିଅଛନ୍ତି । ଶ୍ରୀକୃଷ୍ଣ ଚନ୍ଦ୍ରାତ୍ମକ ଗୋଟିଏ ଚକ୍ଷୁ ମାତ୍ର ଧାରଣ କରି ଅଛନ୍ତି । ସୁତରାଂ ଶ୍ରୀକୃଷ୍ଣ ରୁକ୍ମିଣୀଙ୍କୁ ନିଜ ଦେହଠାରୁ ଯାହା ଅଧିକ ମନେକରୁଥିଲେ ; ତାହା ସମୁଚିତ (ସ୍ଥାନେ) । ସେହି ରୁକ୍ମିଣୀ ଆପଣମାନଙ୍କୁ ରକ୍ଷା କରନ୍ତୁ ।

(ରୁକ୍ମିଣୀଙ୍କର ସର୍ବ ଅଙ୍ଗ ସୁଦର୍ଶନ, କୃଷ୍ଣଙ୍କର କର ଦୁଇଟି ମାତ୍ର । ରୁକ୍ମିଣୀଙ୍କର ପ୍ରତ୍ୟେକ ଅଙ୍ଗ ତ୍ରିଲୋକ ଜିତିଛନ୍ତି କୃଷ୍ଣଙ୍କର ପାଦ କେବଳ ତ୍ରିଲୋକକୁ ଆକ୍ରମଣ ମାତ୍ର କରିଛି, ପରନ୍ତୁ ଜିଣି ନାହିଁ । ରୁକ୍ମିଣୀଙ୍କର ମୁହଁଟିଯାକ ଚନ୍ଦ୍ର, କିନ୍ତୁ କୃଷ୍ଣଙ୍କର ବାମ ଚକ୍ଷୁଟି ମାତ୍ର ଚନ୍ଦ୍ର । ସୁତରାଂ ରୁକ୍ମିଣୀ କୃଷ୍ଣଙ୍କଠାରୁ ଅଧିକ )

୧୧୪—ଏ ଶ୍ଳୋକରେ "ସୁଦର୍ଶନ କର" ଇତ୍ୟାଦି ଶବ୍ଦରେ ଶ୍ଳେଷ ରହିଅଛି । ଏବଂ ସେ ଶ୍ଳେଷ ଶ୍ରୀକୃଷ୍ଣଙ୍କ ଶରୀର ଅପେକ୍ଷା ରୁକ୍ମିଣୀଙ୍କ ଶରୀରର ଆଧିକ୍ୟ ପ୍ରତିପାଦନ ରୂପ ବ୍ୟତିରେକ ଅଳଙ୍କାରକୁ ପୋଷଣ କରୁଅଛି । ଶ୍ଳେଷ ଓ ବ୍ୟତିରେକ ଉଭୟ ବାଚ୍ୟ ହୋଇଥିବା ହେତୁ ଏଠାରେ ଶ୍ଳେଷ—ବ୍ୟତିରେକ ଅଙ୍ଗାଙ୍ଗିଭାବ ସଂକର ନାମକ ବାଚ୍ୟ ଅଳଙ୍କାର । (ରୁକ୍ମିଣୀଙ୍କ ପ୍ରତି ଭକ୍ତିରୂପକ ଅସଂଲକ୍ଷ୍ୟକ୍ରମଧ୍ୱନି ମଧ୍ୟ ରହିଅଛି ।)

୧୧୫—ଆଉ ମଧ୍ୟ ମେଘରୂପକ ସର୍ପଠାରୁ ଜାତ ବିଷ—(ଜଳ ଓ ହଳାହଳ) ବିୟୋଗିନୀମାନଙ୍କର ବଳପୂର୍ବକ ମୂର୍ଚ୍ଛାଭ୍ରମ, କାର୍ଯ୍ୟରେ ଅଶ୍ରଦ୍ଧା,

୧୧୭। ଯଥା ବା—

ଚମହ୍ଉଅମାଣସକଅଁଣଟଙ୍କଅିହ୍ଢ଼ହ୍ଵ ଅପରିମଳା ଜସ୍ସ ।
ଅଖଣ୍ଡ ଅଦାଣପଯାର୍ ବାହୁଦ୍ଦଲିହ୍ଵା ବିଅ ଗଇନ୍ଦା ॥
(ଖଣ୍ଡିତମାନସକାଞ୍ଚନପଙ୍କଜନିର୍ମଥିତପରିମଳା ଯସ୍ୟ ।
ଅଖଣ୍ଡିତ ଦାନପ୍ରସରା ବାହୁପରିଘା ଇବ ଗଜେନ୍ଦ୍ରାଃ ॥)
ଇତିଚ୍ଛାୟା

୧୧୭। ଅତ୍ର ରୂପକଚ୍ଛାୟାନୁଗ୍ରାହୀ ଶ୍ଲେଷୋ ବାଚ୍ୟତୟୈବାବଭାସତେ ॥

---

ଅରୁଚ, ଆଲସ୍ୟ (ହାତଗୋଡ଼ ନ ଚଳିବା), ପ୍ରଳାପ, ମୂର୍ଚ୍ଛା, ଆନ୍ଧ୍ୟ କୃଶତା ଓ ମରଣ ସମ୍ପାଦନ କରେ ।

ଏଥିରେ ବିଷ ପଦରେ ଶ୍ଳେଷ ଅଳଙ୍କାର । ତାହା ଜଳଦରେ ଭୁଜଗ ଆରୋପାତ୍ମକ ରୂପକ ଅଳଙ୍କାରର ଅଙ୍ଗ ହୋଇଅଛି । ଉଭୟ ବାଚ୍ୟ ହେତୁ ଶ୍ଳେଷ-ରୂପକ-ଅଙ୍ଗାଙ୍ଗି ଭାବ—ସଂକର ଅଳଙ୍କାର ।

୧୧୭—ଅଥବା :—ଯେଉଁ ରାଜାଙ୍କର ଗଜେନ୍ଦ୍ରମାନେ ପରିଘାକାର ବାହୁସଦୃଶ । ଗଜେନ୍ଦ୍ରମାନେ ମାନସ ସରୋବରର ସୁବର୍ଣ୍ଣପଦ୍ମଗୁଡ଼ିକୁ ଖଣ୍ଡନ କରି ତାହାର ପରିମଳକୁ ମନ୍ଥନ କରିଅଛନ୍ତି, ଓ ସେମାନଙ୍କର ମଦଜଳ ପ୍ରବାହ (ଦାନ ପ୍ରସର) ଅଖଣ୍ଡିତ ଭାବେ ବହୁଅଛି ।

ରାଜାଙ୍କ ପରିଘାକାର ବାହୁ, ଶତ୍ରୁମାନଙ୍କର ମାନସସ୍ୱରୂପ ସୁବର୍ଣ୍ଣ ପଦ୍ମଗୁଡ଼ିକୁ ଛିନ୍ନ କରି ମନର ସୁଖକଳ୍ପନା ରୂପ ପରିମଳକୁ ଧ୍ୱଂସ କରିଅଛି, ଏବଂ ଅନବରତ ବିତରଣ (ଦାନ) କାର୍ଯ୍ୟ ପରମ୍ପରାରେ ଯୁକ୍ତ ।

୧୧୭—ଏଠାରେ ମାନସପ୍ରଭୃତି ପଦରେ ଥିବା ଶ୍ଳେଷ, ରୂପକ—ଛାୟାକୁ ଅନୁଗୃହୀତ କରୁଅଛି । ସୁତରାଂ ଏଥିରେ ଶ୍ଳେଷରୂପକ—ଅଙ୍ଗାଙ୍ଗିଭାବ ସଂକର ଅଳଙ୍କାର ।

(ଅତଏବ ଏ ସ୍ଥଳମାନଙ୍କରେ ଭଟ୍ଟୋଦ୍‌ଭଟ୍ଟଙ୍କ ମତର ବିରୋଧ ହେଉ ନାହିଁ ।)

୧୧୮। ସ ଗୁଣୀଭୂତବ୍ୟଂଗ୍ୟୋଽଲଂକାରେ ଯତ୍ର ପୁନଃ ଶବ୍ଦାନ୍ତରେଣାଭି-
ହିତସ୍ୱରୂପଃ, ତତ୍ର ନ ଶବ୍ଦଶକ୍ତ୍ୟୁଦ୍ଭବାନୁରଣନରୂପବ୍ୟଙ୍ଗ୍ୟ
ଧ୍ୱନିବ୍ୟବହାରଃ। କିନ୍ତୁ ବକ୍ରୋକ୍ତ୍ୟାଦି ବାଚ୍ୟାଲଂକାର
ବ୍ୟବହାର ଏବ।

୧୧୯। ଯଥା—

ଦୃଷ୍ଟ୍ୟା କେଶବ ! ଗୋପରାଗହୃତୟା
କିଂଚିନ୍ନ ଦୃଷ୍ଟଂ ମୟା
ତେନୈବ ସ୍ଖଳିତାଽସ୍ମି ନାଥ ପତିତାଂ
କିଂ ନାମ ନାଲମ୍ବସେ।
ଏକସ୍ତ୍ୱଂ ବିଷମେଷୁ ଖିନ୍ନମନସାଂ ସର୍ବାବଲାନାଂ ଗତି
ର୍ଗୋପ୍ୟୈବଂ ଗଦିତଃ ସଲେଶମବତାଦ୍
ଗୋଷ୍ଠେ ହରିର୍ବଶ୍ଚିରମ୍ ॥

---

୧୧୮— ଶବ୍ଦଶକ୍ତି ବଳରେ ଅଳଙ୍କାର ଆକ୍ଷିପ୍ତ (ଅଳଙ୍କାର ଧ୍ୱନିର ସ୍ଥଳ) ହୋଇଥିଲେ ମଧ୍ୟ ଯେଉଁଠାରେ ଶବ୍ଦ ଦ୍ୱାରା ସ୍ୱରୂପ ଉକ୍ତ ହୋଇଥାଏ; ତାଦୃଶ ସ୍ଥଳରେ ଶବ୍ଦଶକ୍ତ୍ୟୁଦ୍ଭବ ଅନୁରଣନ ଧ୍ୱନି ଅର୍ଥାତ୍ ଅଳଙ୍କାର ଧ୍ୱନି ହୁଏ ନାହିଁ, କିନ୍ତୁ ବକ୍ରୋକ୍ତି ପ୍ରଭୃତି ବାଚ୍ୟ ଅଳଙ୍କାର ହୁଏ।

୧୧୯—ଯଥା ଗୋପୀ ଶ୍ରୀକୃଷ୍ଣଙ୍କୁ କହୁଅଛନ୍ତି—

ହେ କେଶବ ! ଗୋରୁମାନଙ୍କର ପାଦଧୂଳି (ପରାଗ)ରେ ଅନ୍ଧୀକୃତ ହୋଇଥିବା ଚକ୍ଷୁରେ କିଛି (ବାଟ ଅବାଟ) ଦେଖି ପାରିଲି ନାହିଁ। ତେଣୁ ଏଠାରେ ଖସିଡ଼ି ପଡ଼ିଗଲି (ସ୍ଖଳିତାସ୍ମି)। ହେ ଶରଣ୍ୟ ! (ନାଥ) ପଡ଼ି ଯାଇଥିବା ମୋତେ (ପତିତାଂ) କାହିଁକି ଆଶ୍ରୟ ଦେଉ ନାହଁ ? ଅର୍ଥାତ୍ ଉଠାଇଦେଉ ନାହଁ ? ବିଷମ ସ୍ଥଳମାନଙ୍କରେ ଖିନ୍ନ ହୋଇଥିବା ସମସ୍ତ ଦୁର୍ବଳମାନଙ୍କର ତୁମ୍ଭେ ଏକମାତ୍ର ଗତି। ଗୋପୀ ଏହିପରି ସୂଚନାଗର୍ଭିକ ବାକ୍ୟରେ ଗୋଷ୍ଠରେ ଯେଉଁ ହରିଙ୍କୁ କହିଥିଲେ ସେହି ହରି ତୁମ୍ଭମାନଙ୍କୁ ରକ୍ଷା କରନ୍ତୁ।

୧୨୦ । ଏବଂ ଙ୍କାଡାପ୍ତ୍ଵୃକଃ ସବଂ ଏବ ଭବତ୍ରୁ ଙ୍କାମଂ ବାଚ୍ୟ-ଶ୍ଳେଷସ୍ୟ ବିଷୟଃ । ଯତ୍ର ତୁ ସାମର୍ଥ୍ୟାକ୍ଷିପ୍ତଂ ସଦଲଂକାରାନ୍ତରଂ ଶବ୍ଦଶକ୍ତ୍ୟା ପ୍ରକାଶତେ ସ ସବଂ ଏବ ଧ୍ଵନେର୍ବିଷୟଃ ।

୧୨୧ । ଯଥା—

"ଅତ୍ରାନ୍ତରେ କୁସୁମସମୟଯୁଗମୁପସଂହରନ୍ନଜୃମ୍ଭତ
ଗ୍ରୀଷ୍ମାଭିଧାନଃ ଫୁଲ୍ଲମଲ୍ଲିକାଧବଳାଟ୍ଟହାସୋ ମହାକାଳଃ ॥

---

ସୂଚନା ଯଥା—ହେ କେଶବ ! ଗୋରୁମାନଙ୍କୁ ପାଳନ କରୁଥିବା ଆପଣଙ୍କଠାରେ, ପ୍ରେମ ହେତୁ ଅନ୍ଧୀଭୂତ ହୋଇ (ଗୋପ-ରାଗହୃତଦୃଷ୍ଟ୍ୟା) କନ୍ଥ (ଗୁରୁଜନ ଲଜ୍ଜାଦ) ଦେଖି ପାରିଲି ନାହିଁ । ତେଣୁ କରି ଏଠାକୁ ଖସି ପଳାଇ ଆସିଲି । (ସ୍ଖଳିତାସ୍ମି) ଅତଏବ ହେ ନାଥ ! ତୁମ୍ଭେ ମୋର ସ୍ଵାମିତ୍ଵ (ପତିତା) ଅବଲମ୍ବନ କରୁ ନାହିଁ କାହିଁକି ? କାମଶରରେ ପୀଡ଼ିତ (ବିଷମେଷୁଖିନ୍ନ) ସମସ୍ତ ଅବଳାମାନଙ୍କର ତୁମ୍ଭେ ଏକମାତ୍ର ଗତି ॥

ଉକ୍ତ ଶ୍ଳୋକରେ "ସଲେଶ" ପଦ ଦ୍ଵାରା ଏହି ଦ୍ଵିତୀୟ ଅର୍ଥ ମଧ୍ୟ ବାଚ୍ୟ ହେଲା । ଏଣୁ ଏଠାରେ ବାଚ୍ୟ-ଶ୍ଳେଷ—ଅଳଙ୍କାର ।

୧୨୦ – ଏତଜ୍ଜାତୀୟକ ସମସ୍ତ ରଚନା ବାଚ୍ୟ ଶ୍ଳେଷ ଅଳଙ୍କାରର ବିଷୟ ହେଉ । କିନ୍ତୁ ଯେଉଁଠି ଶବ୍ଦର ଅପୂର୍ବ ଶକ୍ତି ବଳରୁ ସାମର୍ଥ୍ୟାକ୍ଷିପ୍ତ ହୋଇ ଅନ୍ୟ ଅଳଙ୍କାର ପ୍ରକାଶମାନ ହୁଏ, ସେ ସମସ୍ତ ସ୍ଥଳ ଧ୍ଵନିର ବିଷୟ ।

୧୨୧ – ଶବ୍ଦଶକ୍ତ୍ୟୁତ୍ଥ ଅଳଙ୍କାର ଧ୍ଵନିର ଉଦାହରଣ ଯଥା: –

ଗ୍ରୀଷ୍ମ ପକ୍ଷରେ:– ଏତନ୍ମଧ୍ୟରେ ବସନ୍ତକାଳର ଯୁଗ (ଚୈତ୍ର ଓ ବୈଶାଖ)କୁ ସମାପ୍ତ କରି ପ୍ରସ୍ଫୁଟିତ ମଲ୍ଲୀ ଲତାରେ ଧବଳିତ ମନ୍ଦିରମାନଙ୍କୁ ନିଜର ହାସସ୍ଵରୂପ ପ୍ରକାଶ କରି ଗ୍ରୀଷ୍ମନାମକ ମହାକାଳ (ବଡ଼ଦିନ) ପ୍ରବେଶ କଲା ।

୧୨୨। ଯଥା ଚ

ଉନ୍ନତଃ ପ୍ରୋଲ୍ଲସଦ୍ଧାରଃ କାଳାଗୁରୁମଳୀମସଃ ।
ପୟୋଧରଭରସ୍ତନ୍ୱ୍ୟାଃ କଂ ନ ଚକ୍ରେଽଭିଳାଷିଣମ୍ ॥

ଭୈରବଙ୍କ ପକ୍ଷରେ :—

ସତ୍ୟପ୍ରଭୃତି ଯୁଗମାନେ କୁସୁମସମସ୍ୱରୂପ । ସେମାନଙ୍କୁ ସଂହାର କରି ପ୍ରସ୍ଫୁଟିତ ମଲ୍ଲିପୁଷ୍ପସଦୃଶ ଶୁଭ୍ର ଅଟ୍ଟହାସ କରି ମହାକାଳ ଭୈରବ ପ୍ରବେଶ କଲେ ॥

ଏଠାରେ "ମହାକାଳ" ଶବ୍ଦର ଦୁଇଟି ଅର୍ଥ । ତାହାର ଯୌଗିକ ଅର୍ଥ ହେଉଛି ଦୀର୍ଘସମୟ । ଅନ୍ୟ ଗୋଟିଏ ଅର୍ଥ ହେଉଛି ମହାକାଳେଶ୍ୱର ଭୈରବ, ତାହା ରୂଢ଼ । ଉକ୍ତ ବାକ୍ୟରେ ପ୍ରାକରଣିକ ଯୌଗିକ ଅର୍ଥରେ ଅଭିଧାଶକ୍ତି ନିୟନ୍ତ୍ରିତ ହୁଅନ୍ତେ, ଦ୍ୱିତୀୟ ଭୈରବ ଅର୍ଥ ପ୍ରତୀତ ହୋଇ ମହାକାଳ ପରି ମହାକାଳ (ଗ୍ରୀଷ୍ମ), ଏହି ଉପମାନୋପମେୟ ଭାବକୁ ବ୍ୟଞ୍ଜନାବୃତ୍ତିରେ ପ୍ରକାଶ କଲା । ସୁତରାଂ ଏଠାରେ ଶବ୍ଦଶକ୍ତି ବଳରୁ ଉପମାଳଂକାର ଧ୍ୱନିତ ହେଲା ॥

୧୨୨—ଆଉ ପୁଣି ଏକ ଉଦାହରଣ :—

ସ୍ତନ ପକ୍ଷରେ—ଉନ୍ନତ, ହାରଯୁକ୍ତ, କଳା ଅଗୁରୁ ଲେପ ହେତୁରୁ ମଳିନ, କୃଶାଙ୍ଗୀର ସ୍ତନଭର, କାହାକୁ (କେଉଁ ଦ୍ରଷ୍ଟା ପୁରୁଷକୁ) ଅଭିଳାଷୁକ କରି ନ ଥିଲା ?

ମେଘ ପକ୍ଷରେ—ଉର୍ଦ୍ଧ୍ୱଦେଶରେ ଅବସ୍ଥିତ, ଜଳଧାରା ଦ୍ୱାରା ଶୋଭିତ, କଳା ଅଗୁରୁ ପରି କୃଷ୍ଣବର୍ଣ୍ଣ, ମେଘମାଳା (ପୟୋଧର) କାହାକୁ ଅଭିଳାଷୀ କରି ନ ଥିଲା ?

ଏଠାରେ ତନ୍ୱୀ ଶବ୍ଦ ସାହଚର୍ଯ୍ୟରୁ ପୟୋଧର ଶବ୍ଦର ସ୍ତନ ଅର୍ଥ ପ୍ରାକରଣିକରୂପେ ଗୃହୀତ ହୁଅନ୍ତେ, ଶବ୍ଦଶକ୍ତି ବଳରୁ ମେଘରୂପ ଦ୍ୱିତୀୟ ଅର୍ଥ ପ୍ରତୀତ ହୋଇ ଉଭୟ ଅର୍ଥର ସାଦୃଶ୍ୟ ସମ୍ବନ୍ଧ ସ୍ଥାପନ ପାଇଁ ଅଭିଧେୟାର୍ଥର ଉପମାନରୂପ ଧାରଣ କଲା ।

ସୁତରାଂ ଏ ଶ୍ଲୋକରେ ପୟୋଧର (ମେଘ) ପରି ପୟୋଧର (ସ୍ତନ), ବୋଲି ଉପମାଳଂକାର ଧ୍ୱନିତ ହେଲା ॥

୧୨୩ । ଯଥା ବା

ଦତ୍ତାନନ୍ଦାଃ ପ୍ରଜାନାଂ ସମୁଚିତସମୟାକ୍ଲିଷ୍ଟସୃଷ୍ଟୈଃ ପୟୋଭିଃ
ପୂର୍ବାହ୍ଣେ ବିପ୍ରକୀର୍ଣ୍ଣା ଦିଶି ଦିଶି ବିରମତ୍ୟହ୍ନି ସଂହାରଭାଜଃ ।।
ଦୀପ୍ତାଂଶୋର୍ଦୀର୍ଘଦୁଃଖପ୍ରଭବଭବଭୟୋଦନ୍ୱଦୁତ୍ତାରନାବୋ
ଗାବୋ ବଃ ପାବନାନାଂ ପରମପରିମିତାଂ ପ୍ରୀତିମୁତ୍ପାଦୟନ୍ତୁ ।।

୧୨୪ । ଏଷ୍ୱୂଦାହରଣେଷୁ ଶବ୍ଦଶକ୍ତ୍ୟା ପ୍ରକାଶମାନେ ସତି
ଅପ୍ରାକରଣିକେ ଅର୍ଥାନ୍ତରେ ବାକ୍ୟସ୍ୟ ଅସମ୍ବଦ୍ଧାର୍ଥାଭି-

---

୧୨୩—ପୁନଶ୍ଚ (ସୂର୍ଯ୍ୟଶତକ ଶ୍ଳୋକ)

କରଣ ପକ୍ଷରେ—ଯଥା ସମୟରେ (ବର୍ଷାଋତୁରେ) ଅକୁଣ୍ଠିତଭାବେ ପ୍ରଚୁର (ଜଳ) ପ୍ରଦାନ କରିବା ଦ୍ୱାରା ଜନସାଧାରଣଙ୍କୁ ଆନନ୍ଦ ପ୍ରଦାନ କରୁଥିବା, ପୂର୍ବାହ୍ଣରେ ଚତୁର୍ଦ୍ଦିଗରେ ବିକ୍ଷିପ୍ତ ହୋଇ ଦିବାବସାନରେ ଏକତ୍ରିତ ହେଉଥିବା ସୂର୍ଯ୍ୟରଶ୍ମି, ଯେ କି ସୁଦୀର୍ଘ ଦୁଃଖର ହେତୁ ସଂସାରରୂପସାଗରରୁ ପାର କରିବା ନିମନ୍ତେ ନୌକା ସ୍ୱରୂପ ସେହି ସୂର୍ଯ୍ୟରଶ୍ମି (ଗାବଃ) ପବିତ୍ରାତ୍ମା ଆପଣମାନଙ୍କର ଅସୀମ ଆନନ୍ଦ ସମ୍ପାଦନ କରନ୍ତୁ ।

ଧେନୁ ପକ୍ଷରେ—ଦୋହନର ଉଚିତ ସମୟରେ (ପ୍ରାତଃ) ଅକୁଣ୍ଠିତଭାବେ ପୟଃ (କ୍ଷୀର) ପ୍ରଦାନ କରିବା ଦ୍ୱାରା ଜନସାଧାରଣଙ୍କୁ ଆନନ୍ଦିତ କରୁଥିବା, ପୂର୍ବାହ୍ଣରେ (ଚରିବା ସକାଶେ) ଚତୁର୍ଦ୍ଦିଗରେ ଗୋଟି ଗୋଟି ହୋଇ ବୁଲି ଦିନ ଅବସାନରେ ଏକତ୍ରିତ ହେଉଥିବା; ପୁନଶ୍ଚ ନୌକା ପରି ଘୋର ଦୁଃଖର କାରଣ ସଂସାରରୂପ ସାଗରରୁ ପାର କରାଉଥିବା ଧେନୁମାନେ (ଗାବଃ) ପବିତ୍ରାତ୍ମା ଆପଣମାନଙ୍କର ଅସୀମ ଆନନ୍ଦ ସମ୍ପାଦନ କରନ୍ତୁ ।

ଏ ଶ୍ଳୋକରେ ପୂର୍ବପରି କିରଣ (ଗୋ) ଧେନୁ (ଗୋ) ପରି ବୋଲି ବାଚ୍ୟ ଓ ଗମ୍ୟ ଅର୍ଥ ଦୁଇଟିର ଉପମେୟୋପମାନ ଭାବ କଳ୍ପିତ ହେଉଥିବା ହେତୁ ଉପମାଳଂକାର ଧ୍ୱନି ହେଲା ।

୧୨୪—ଉକ୍ତ "ଅତ୍ରାନ୍ତରେ କୁସୁମ ସମୟ"—ଇତ୍ୟାଦି ଉଦାହରଣ ମାନଙ୍କରେ ଶବ୍ଦର ଅପୂର୍ବ ଶକ୍ତିବଳରୁ ବ୍ୟଞ୍ଜନା ବୃତ୍ତିରେ ଅପ୍ରାକରଣିକ ଅର୍ଥ

ଧାସ୍ୱିତ୍ୱଂ ମା ପ୍ରସାଙ୍କ୍ଷୀଦତ ଅପ୍ରାକରଣିକପ୍ରାକରଣିକାର୍ଥ-
ଯୋରୁପମାନୋପମେୟଭାବଃ କଲ୍ପୟିତବ୍ୟଃ ସାମର୍ଥ୍ୟା-
ଦତ୍ୟର୍ଥାକ୍ଷିପ୍ତୋଽୟଂ ଶ୍ଳେଷୋ ନ ଶବ୍ଦୋପାରୂଢ଼ ଇତ
ବିଭିନ୍ନ ଏବ ଶ୍ଳେଷାଦନୁସ୍ୱାନୋପମବ୍ୟଙ୍ଗ୍ୟସ୍ୟ ଧ୍ୱନେ-
ର୍ବିଷୟଃ ।

୧୨୫। ଅନ୍ୟେଽପି ଚାଲଙ୍କାରାଃ ଶବ୍ଦଶକ୍ତିମୂଳାନୁସ୍ୱାନରୂପ-
ବ୍ୟଙ୍ଗ୍ୟେ ଧ୍ୱନୌ ସମ୍ଭବନ୍ତ୍ୟେବ । ତଥାହି ବିରୋଧୋଽପି
ଶବ୍ଦଶକ୍ତିମୂଳାନୁସ୍ୱାନରୂପୋ ଦୃଶ୍ୟତେ । ଯଥା ସ୍ଥାଣ୍ୱୀ-
ଶ୍ୱର ଜନପଦବର୍ଣ୍ଣନେ ଭଟ୍ଟବାଣସ୍ୟ—

୧୨୬। "ଯତ୍ର ଚ ମତ୍ତମାତଙ୍ଗଗାମିନ୍ୟଃ ଶୀଳବତ୍ୟଶ୍ଚ,
ଗୌର୍ଯ୍ୟୋ ବିଭବରତାଶ୍ଚ, ଶ୍ୟାମାଃ ପଦ୍ମରାଗିଣ୍ୟଶ୍ଚ,

---

ପ୍ରକାଶିତ ହୁଅନ୍ତେ, ଗୋଟିଏ ବାକ୍ୟ ଦୁଇଟି ଅସମ୍ବଦ୍ଧ ଅର୍ଥ ପ୍ରକାଶ ନ କରନ୍ତୁ, ଏହା ବୋଲି ଅପ୍ରାକରଣିକ ଓ ପ୍ରାକରଣିକ ଅର୍ଥ ଦୁଇଟିର ସ୍ୱ ସାମର୍ଥ୍ୟ ବଳରୁ ଉପମାନୋପମେୟଭାବ କଳ୍ପନା କରିବାକୁ ହେବ । ଏହି ଉପମାନୋପମେୟ-ଭାବ ସାମର୍ଥ୍ୟାକ୍ଷିପ୍ତ, କିନ୍ତୁ ଶବ୍ଦ ଦ୍ୱାରା ଉକ୍ତ ନୁହେ । ଦ୍ୱିତୀୟ ଅର୍ଥଟି ଅଭିଧା-ବୃତ୍ତିରେ ଶବ୍ଦ ଦ୍ୱାରା ଉପାରୂଢ଼ ହୋଇଥିଲେ ଶ୍ଳେଷ ହୋଇଥାନ୍ତା, କିନ୍ତୁ ବ୍ୟଞ୍ଜନା ବୃତ୍ତିରେ ଗମ୍ୟ ହୋଇଥିବାରୁ ସଂଲକ୍ଷ୍ୟକ୍ରମ ଧ୍ୱନି ହେଲା । ଏଣୁ ଶ୍ଳେଷର ସ୍ଥଳ ପୃଥକ୍ ଓ ଲକ୍ଷ୍ୟକ୍ରମଧ୍ୱନିର ସ୍ଥଳ ପୃଥକ୍ ବୋଲି ଜାଣିବାକୁ ହେବ ।

୧୨୫—ଏହି ଶବ୍ଦ ଶକ୍ତିମୂଳକ ସଂଲକ୍ଷ୍ୟ କ୍ରମବ୍ୟଙ୍ଗ୍ୟ ଧ୍ୱନିରେ ଉପମା-ଲଂକାର ଭଳି ଅନ୍ୟ ଅଲଂକାରମାନେ ମଧ୍ୟ ସମ୍ଭବ ହୁଅନ୍ତି । ଶବ୍ଦ ଶକ୍ତିମୂଳକ ସଂଲକ୍ଷ୍ୟକ୍ରମବ୍ୟଙ୍ଗ୍ୟ ବିରୋଧାଲଂକାର ଧ୍ୱନିର ଉଦାହରଣ :—ଯଥା ଭଟ୍ଟ-ବାଣଙ୍କର ସ୍ଥାଣ୍ୱୀଶ୍ୱର ଜନପଦ ବର୍ଣ୍ଣନାରେ :—

୧୨୬—ଯେଉଁ ରାଜ୍ୟରେ ପ୍ରମଦାମାନେ ମତ୍ତମାତଙ୍ଗଗାମିନୀ ଓ ଶୀଳବତୀ, ଗୌରୀ ଓ ବିଭବରତା, ଶ୍ୟାମା ଓ ପଦ୍ମରାଗିଣୀ, ଧବଳଦ୍ୱିଜ

**ଧବଳଦ୍ୱିଜଶୁଚିବଦନା ମନ୍ଦାରମୋଦଶ୍ୱସନାଶ୍ଚ, ଚନ୍ଦ୍ରକାନ୍ତବପୁଃ ଶିରୀଷକୋମଳାଙ୍ଗ୍ୟଶ୍ଚ, ଅଭୁଜଙ୍ଗଗମ୍ୟାଃ**

ଶୁଚିବଦନା ଓ ମନ୍ଦାରମୋଦିତଶ୍ୱସନା, ଚନ୍ଦ୍ରକାନ୍ତବପୁ ଓ ଶିରୀଷକୋମଳାଙ୍ଗୀ, ଅଭୁଜଙ୍ଗଗମ୍ୟା ଓ କଞ୍ଚୁକିନୀ, ପୃଥୁକଳତ୍ରଶ୍ରୀ ଓ ଦରିଦ୍ରମଧ୍ୟକଳିତା, ଲବଣ୍ୟବତୀ ଓ ମଧୁରଭାଷିଣୀ, ଅପ୍ରମତ୍ତ ଓ ପ୍ରସନ୍ନୋଜ୍ଜ୍ୱଳରାଗଯୁକ୍ତା, କୌତୁକରହିତା ଓ ପ୍ରୌଢ଼ା, ଅଟନ୍ତି ॥

ଏ ବାକ୍ୟରେ ଯେଉଁ ସ୍ତ୍ରୀମାନେ "ମତ୍ତମାତଙ୍ଗଗାମିନୀ ଅର୍ଥାତ୍ ମଦ୍ୟପ ଶବରଗାମିନୀ ସେମାନେ ପୁଣି ଶୀଳବତୀ ଏହି ଦୁଇ ଅର୍ଥର ପରସ୍ପର ବିରୋଧ ହେଲା । (ଖଣ୍ଡନ ପକ୍ଷରେ) ମାତଙ୍ଗ ଶବ୍ଦର ଅର୍ଥ ଗଜ; ଏଣୁ ଗଜଗାମିନୀ ଓ ଶୀଳବତୀ ଏପରି ଅର୍ଥ କରିବାରେ କିଛି ବିରୋଧ ନାହିଁ ॥

ଏହିପରି ଗୌରୀ ଓ ବିଭବରତା ବିରୋଧପକ୍ଷେ ଗୌରୀ ଓ ବି-ଭବରତା ଅର୍ଥାତ୍ ଶିବଭିନ୍ନ ଅନ୍ୟର ରତା । ଖଣ୍ଡନପକ୍ଷେ :—ଗୋରି ଓ ଧନଶାଳିନୀ ॥

ଶ୍ୟାମା ଓ ପଦ୍ମରାଗିଣୀ । (ବିରୋଧ ପକ୍ଷେ) ରାତ୍ରି (ଶ୍ୟାମା) ଓ ପଦ୍ମରେ ଅନୁରାଗଯୁକ୍ତା (ରାତ୍ରିର ପଦ୍ମାନୁରାଗ ନ ଥାଏ), ଅଥବା - କୃଷ୍ଣବର୍ଣ୍ଣା (ଶ୍ୟାମା) ଓ ପଦ୍ମପରି ରକ୍ତବର୍ଣ୍ଣା । (ପରିହାର ପକ୍ଷେ) ନବଯୌବନା (ଶ୍ୟାମା) ଓ ପଦ୍ମରାଗମଣି-ଯୁକ୍ତା ॥

ଧବଳଦ୍ୱିଜ ଶୁଚିବଦନା ଓ ମନ୍ଦାରମୋଦିତଶ୍ୱସନା,—(ବିରୋଧ ପକ୍ଷେ) ଧଳାବର୍ଣ୍ଣ ବ୍ରାହ୍ମଣର ମୁଖ ପରି ଯେଉଁମାନଙ୍କର ମୁଖ ଦିଶୁଛି, ଓ ମନ୍ଦାର ଗନ୍ଧରେ ଯାହାଙ୍କ ଶ୍ୱାସ ଆମୋଦଯୁକ୍ତ, (ପରିହାର ପକ୍ଷେ) ଦାନ୍ତ (ଦ୍ୱିଜ) ଗୁଡ଼ିକ ପରିଷ୍କାର ଧଳା ହୋଇଥିବାରୁ ମୁଖ ଶୁଚି ଓ ଶ୍ୱାସ ମନ୍ଦାର ପରି ଆନନ୍ଦ ପ୍ରଦାନ କରେ ।

ଚନ୍ଦ୍ରକାନ୍ତ ବପୁ ଓ ଶିରୀଷ-କୋମଳାଙ୍ଗୀ, (ବିରୋଧ) ଚନ୍ଦ୍ରକାନ୍ତମଣି ପରି (କଠିନ) ବପୁ ଓ ଶିରୀଷପୁଷ୍ପ ପରି କୋମଳାଙ୍ଗୀ, (ପରିହାର ପକ୍ଷେ) ଚନ୍ଦ୍ରଙ୍କ ପରି ଯେଉଁମାନଙ୍କର କମନୀୟ ବପୁ ଓ ଶିରୀଷପୁଷ୍ପପରି କୋମଳଅଙ୍ଗ ।

ଅଭୁଜଙ୍ଗଗମ୍ୟା ଓ କଞ୍ଚୁକିନୀ (ବିରୋଧ ପକ୍ଷେ)—ଯେଉଁମାନେ ଭୁଜଙ୍ଗମାନଙ୍କର ଗମ୍ୟା [ଧରିବାର ଯୋଗ୍ୟା] ନୁହନ୍ତି, ସେମାନେ ସର୍ପିଣୀ

**କଞ୍ଚୁକିନ୍ୟଶ୍ଚ, ପୃଥୁକଳତ୍ରଶ୍ରିୟୋ ଦରଦ୍ରମଧ୍ୟକଳିତାଶ୍ଚ, ଲବଣ୍ୟବତ୍ୟୋ ମଧୁରଭାଷିଣ୍ୟଶ୍ଚ, ଅପ୍ରମତ୍ତାଃ ପ୍ରସନ୍ନୋ-ଜ୍ଜ୍ୱଳରାଗାଶ୍ଚ, ଅକୌତୁକାଃ ପ୍ରୌଢ଼ାଶ୍ଚ, ପ୍ରମଦାଃ ।"**

---

[କଞ୍ଚୁକିନ୍ୟ], (ପରିହାର ପକ୍ଷେ) ବିଟ ପୁରୁଷ [ଭୁଜଙ୍ଗ] ମାନଙ୍କର ଭୋଗ ନିମିତ୍ତକ ନୁହନ୍ତି ଓ ତାଙ୍କ ପାଖେ କଞ୍ଚୁକୀମାନେ ନିଯୁକ୍ତ ହୋଇଛନ୍ତି ॥

ପୃଥୁକଳତ୍ରଶ୍ରୀ ଓ ଦରଦ୍ରମଧ୍ୟକଳିତା, (ବିରୋଧ) ପୃଥୁନୃପଙ୍କର କଳତ୍ର—(ଭାର୍ଯ୍ୟା) ସମ୍ପଦକୁ ଧାରଣ କରିଛନ୍ତି ଓ ଦରିଦ୍ରଙ୍କ ମଧ୍ୟରେ ଗଣିତା (କଳିତା) ହୋଇଛନ୍ତି ॥ (ପରିହାର) ପୃଥ୍ୱୀସ୍ଥ ସର୍ବଶୋଭାର ନିଧାନ ଓ କ୍ଷୀଣମଧ୍ୟା ଅଟନ୍ତି ॥

ଲବଣ୍ୟବତୀ ଓ ମଧୁରଭାଷିଣୀ (ବିରୋଧ) ଯେ, ଲବଣ୍ୟମୟୀ (ଲବଣପ୍ରଚୁରା) ସେ ମଧୁରଭାଷିଣୀ । (ପରିହାର) ସୁଷମାଶାଳିନୀ ଓ ମିଷ୍ଟଭାଷିଣୀ ॥

ଅପ୍ରମତ୍ତ ଓ ପ୍ରସନ୍ନୋଜ୍ଜ୍ୱଳରାଗଯୁକ୍ତା, (ବିରୋଧ) ଯେଉଁମାନେ ପ୍ରକର୍ଷରେ ମତ୍ତ ନୁହନ୍ତି, ସେମାନେ ପ୍ରଚୁର ଖାଣ୍ଟି ମଦ୍ୟ (ରଙ୍ଗ) ଯୁକ୍ତା । (ପରିହାର) ଅସାବଧାନ ନୁହନ୍ତି ଅଥଚ ଅକୁଟିଳ ପ୍ରୀତିପୂର୍ଣ୍ଣ (ଅଥବା) ସ୍ଫୁଟ ଶୃଙ୍ଗାରମୟୀ ଅଟନ୍ତି ।

କୌତୁକରହିତା ଓ ପ୍ରୌଢ଼ା, (ବିରୋଧ) ଯେ, କୌତୁକ-ସୂତ୍ରରହିତା ଅର୍ଥାତ୍ ଅଷାଢ଼ଆ ସୂତା ଲଗାଇ ନାହାନ୍ତି ସେ ପ୍ରୌଢ଼ା ଅର୍ଥାତ୍ ବିବାହିତା । (ପରିହାର) କୌତୁକହୀନା ଅର୍ଥାତ୍ କାର୍ଯ୍ୟତତ୍ପର ଓ ଧୈର୍ଯ୍ୟବତୀ (ପ୍ରୌଢ଼ା) ଅଟନ୍ତି ॥

ଉକ୍ତ ପଦମାନଙ୍କର ପରସ୍ପର ମଧ୍ୟରେ ବିରୋଧ ଆଭାସମାନ ହୋଇ ଖଣ୍ଡିତ ହେଉଥିବାରୁ ଏଠାରେ ବିରୋଧ ଅଳଙ୍କାର, କିନ୍ତୁ ବିରୋଧର ବାଚକ ଅପି ପ୍ରଭୃତି ଶବ୍ଦ ନ ଥିବାରୁ ଏହି ବିରୋଧ ଅଳଙ୍କାର ବାଚ୍ୟ ନ ହୋଇ ବ୍ୟଙ୍ଗ୍ୟ ହୋଇଅଛି ।

(ଓଡ଼ିଆ ଭାଷାରେ ମଧ୍ୟ, ସୁଦ୍ଧା ପ୍ରଭୃତି ବିରୋଧ ଅଳଙ୍କାରର ବାଚକ । ଯଥା—ମାତଙ୍ଗଗାମିନୀ ହେଲେ ମଧ୍ୟ ଶୀଳବତୀ) ।

୧୨୭। ଅତ୍ର ହି ବାଚ୍ୟୋ ବିରୋଧ-ସ୍ପଷ୍ଟାସ୍ୟାନୁଗ୍ରାହୀ ବା ଶ୍ଳେଷୋଽସ୍ୟେତି ନ ଶକ୍ୟଂ ବକ୍ତୁମ୍, ସାକ୍ଷାଚ୍ଛବ୍ଦେନ ବିରୋଧାଳଂକାରସ୍ୟାପ୍ରକାଶିତତ୍ୱାତ୍ ।

୧୨୮। ଯତ୍ର ହି ସାକ୍ଷାଚ୍ଛବ୍ଦାବେଦିତୋ ବିରୋଧାଳଂକାରଃ, ତତ୍ର ହି ଶ୍ଳିଷ୍ଟୋକ୍ତୌ ବାଚ୍ୟାଳଂକାରସ୍ୟ ବିରୋଧସ୍ୟ ଶ୍ଳେଷସ୍ୟ ବା ବିଷୟତ୍ୱମ୍ ॥

୧୨୯। ଯଥା ହର୍ଷଚରିତେ :—

"ସମବାୟ ଇବ ବିରୋଧିନାଂ ପଦାର୍ଥାନାମ୍ । ତଥାହି ସନ୍ନିହିତବାଳାନ୍ଧକାରା ଭାସ୍ୱନ୍ମୂର୍ତ୍ତିଶ୍ଚ" ଇତ୍ୟାଦୌ ।

---

୧୨୭—ଉକ୍ତ ଗଦ୍ୟ ଭାଗରେ ବିରୋଧ ଅଳଙ୍କାର କିମ୍ବା ଶ୍ଳେଷ ବିରୋଧ ସଂକର ବାଚ୍ୟ ହୋଇ ରହିଅଛି, ଏପରି କୁହାଯାଇ ନ ପାରେ । କାରଣ ବିରୋଧ ଅଳଙ୍କାର ଅପି ପ୍ରଭୃତି ବାଚକ ଶବ୍ଦ ଦ୍ୱାରା ସାକ୍ଷାତ୍‌ଭାବେ ପ୍ରକାଶିତ ହୋଇ ନାହିଁ ।

୧୨୮—ଯେଉଁ ସ୍ଥାନରେ ବିରୋଧାଳଙ୍କାର ସ୍ପଷ୍ଟଭାବେ ଅପି ପ୍ରଭୃତି ଶବ୍ଦ ଦ୍ୱାରା ଉକ୍ତ ହୋଇଥିବ ସେଠାରେ ଯଦି ଶ୍ଳିଷ୍ଟଉକ୍ତି ଥାଏ, ତେବେ ସେଠାରେ ବାଚ୍ୟଶ୍ଳେଷ ଓ ବାଚ୍ୟ-ବିରୋଧ କିମ୍ବା ଶ୍ଳେଷ-ବିରୋଧ ସଂକରା-ଳଙ୍କାର ହୋଇ ପାରିବ ।

୧୨୯—ବାଚ୍ୟ ବିରୋଧର ଉଦାହରଣ ଯଥା—

ହର୍ଷ ଚରିତରେ—ପରସ୍ପର ବିରୋଧ ପଦାର୍ଥମାନଙ୍କର ସମବାୟ (ସହିତ) ପରି ଯେଣୁ ସନ୍ନିହିତ ବାଳାନ୍ଧକାରା ଓ ଭାସ୍ୱନ୍ମୂର୍ତ୍ତି । (ବିରୋଧ ପକ୍ଷେ) ନୂତନ ଅନ୍ଧକାରଯୁକ୍ତା ଓ ସୂର୍ଯ୍ୟମୂର୍ତ୍ତି । (ପରିହାର ପକ୍ଷେ) କେଶରୂପକ ଅନ୍ଧକାରରେ ଯୁକ୍ତା ଓ ଦେଦୀପ୍ୟମାନଶରୀରା ।

ଏଠାରେ ବିରୁଦ୍ଧ ପଦାର୍ଥମାନଙ୍କର ସମବାୟ ବୋଲି ଶବ୍ଦ ଦ୍ୱାରା କୁହାଯାଇଥିବାରୁ ବିରୋଧ ଅଳଙ୍କାର ବାଚ୍ୟ ହୋଇଅଛି । ଏଣୁ ଏଠାରେ ଶ୍ଳେଷ ବିରୋଧ ସଙ୍କରାଳଙ୍କାର ବାଚ୍ୟ, କିନ୍ତୁ ଧ୍ୱନି ନୁହେ ।

୧୩୦ । ଯଥା ବା ମମୈବ—

ସର୍ବୈକଶରଣମକ୍ଷୟମଧୀଶମୀଶଂ ଧିୟାଂ ହରିଂ କୃଷ୍ଣମ୍
ଚତୁରାତ୍ମାନଂ ନିଷ୍କ୍ରିୟମରିମଥନଂ ନମତ ଚକ୍ରଧରମ୍ ।
ଅତ୍ର ହି ଶବ୍ଦଶକ୍ତିମୂଳାନୁସ୍ୱାନରୂପୋ ବିରୋଧଃ ସ୍ଫୁଟ-
ମେବ ପ୍ରତୀୟତେ ।

୧୩୧ । ଏବଂବିଧୋ ବ୍ୟତିରେକୋଽପି ଦୃଶ୍ୟତେ । ଯଥା ମମୈବ
ଖଂ ଯେଽତ୍ୟୁଜ୍ଜ୍ୱଳୟନ୍ତି ଲୂନତମସୋ ଯେ ବା ନଖୋଦ୍ଭାସିନୋ
ଯେ ପୁଷ୍ଣନ୍ତି ସରୋରୁହଶ୍ରିୟମପି କ୍ଷିପ୍ତାବ୍ଜଭାସଶ୍ଚ ଯେ ।

---

୧୩୦—ଅଥବା ମୋର କବିତା—(ବିରୋଧ ଧ୍ୱନିର ଉଦାହରଣ) ଯଥା—ସମସ୍ତଙ୍କର ଏକମାତ୍ର ଶରଣ, ଅକ୍ଷୟ, ଅଧୀଶ, ଧୀର, ଈଶ, ହରି, କୃଷ୍ଣ, ଚତୁରାତ୍ମା ନିଷ୍କ୍ରିୟ ଅରିମନ୍ଥନକାରୀ ଚକ୍ରଧରଙ୍କୁ ସମସ୍ତେ ପ୍ରଣାମ କରନ୍ତୁ ।

(ବିରୋଧ ପକ୍ଷେ) ଭଗବାନ୍ ଶରଣ (ଗୃହ) ଓ ଅକ୍ଷୟ (ଗୃହ ଭିନ୍ନ) (ଅଧୀଶ) ଧୀ ର ଈଶ ନୁହନ୍ତି ପୁଣି ଧୀ;ର ଈଶ, ହରି (କପିଳବର୍ଣ୍ଣ), ଓ କୃଷ୍ଣ (ଶ୍ୟାମଳବର୍ଣ୍ଣ) ଚତୁରାତ୍ମା ପରିଶ୍ରମଯୁକ୍ତ ତଥା ନିଷ୍କ୍ରିୟ ॥ ଅରିର (ଅରଯୁକ୍ତ ଚକ୍ରର) ମନ୍ଥନକାରୀ ଓ ଚକ୍ରଧର ଅଟନ୍ତି ।

ପରିହାର ପକ୍ଷେ - (ଶରଣ) ଆଶ୍ରୟସ୍ଥଳ (ଅକ୍ଷୟ) ଅବିନାଶୀ (ଅଧୀଶ) ପ୍ରଭୁ ଓ ବୁଦ୍ଧିର ନିୟନ୍ତା, (ହରି) ପାପ ହରଣକର୍ତ୍ତା ଓ କୃଷ୍ଣ ପାପ—ଦୁଃଖାଦିର ବିନାଶକ (ଚତୁରାତ୍ମା) ସଙ୍କର୍ଷଣ ଅନିରୁଦ୍ଧ ପ୍ରଦ୍ୟୁମ୍ନ ଓ ବାସୁଦେବରୂପରେ ଅଥବା ଜଗନ୍ନାଥ ବଳଭଦ୍ର ସୁଭଦ୍ରା ସୁଦର୍ଶନ ରୂପରେ ଚତୁର୍ଦ୍ଧାମୂର୍ତ୍ତି, ଓ ନିସ୍ପୃହ ॥ ଶତ୍ରୁଘାତୀ ଓ ଚକ୍ରଧାରୀ ଭଗବାନଙ୍କୁ ସମସ୍ତେ ପ୍ରଣାମ କରନ୍ତୁ ।

ଏଠାରେ ଶବ୍ଦଶକ୍ତିମୂଳକ ସଂଲକ୍ଷ୍ୟକ୍ରମ ବ୍ୟଙ୍ଗ୍ୟ ବିରୋଧାଳଙ୍କାର ଧ୍ୱନି ସ୍ପଷ୍ଟଭାବେ ରହିଅଛି ।

୧୩୧—ଏହିପରି ବ୍ୟତିରେକ ଧ୍ୱନି ମଧ୍ୟ ଦେଖାଯାଏ । ଯଥା:—ମୋର କବିତାରେ—ଯେଉଁ (ସୂର୍ଯ୍ୟକିରଣ)ମାନେ ଅନ୍ଧକାର ଧ୍ୱଂସ କରି ଆକାଶ (ଖ) କୁ ଅତ୍ୟନ୍ତ ସମୁଜ୍ଜ୍ୱଳ କରୁଅଛନ୍ତି କିମ୍ବା ଯେଉଁମାନେ

ଯେ ମୂର୍ଦ୍ଧସ୍ୱବଭାସିନଃ କ୍ଷିତଭୃତାଂ
ଯେ ଚାମରାଣାଂ ଶିରାଂ-
ସ୍ୟାକ୍ରାମନ୍ତ୍ୟଭୟେଽପି ତେ ଜନପତେଃ
ପାଦାଃ ଶ୍ରିୟେ ସନ୍ତୁ ବଃ ॥

୧୩୬ । ଏବମନ୍ୟେଽପିଶବ୍ଦଶକ୍ତି ମୂଳାନୁସ୍ୱାନରୂପବ୍ୟଙ୍ଗ୍ୟଧ୍ୱନି-
ପ୍ରକାରାଃ ସନ୍ତି, ତେ ସହୃଦୟୈଃ ସ୍ୱୟମନୁସର୍ତ୍ତବ୍ୟାଃ ।
ଇହ ତୁ ଗ୍ରନ୍ଥବିସ୍ତରଭୟାନ୍ନ ତତ୍ପ୍ରପଞ୍ଚଃ କୃତଃ ॥

---

(ନ+ଖ+ଉଦ୍‌ଭାସିନଃ) ଆକାଶରେ ଉଦ୍‌ଭାସିତ ହେଉ ନାହାନ୍ତି ଏହା ପରମ୍ପର ବରୁଛି (ପରିହାର) ନଖମାନଙ୍କ ଦ୍ୱାରା (ଚରଣ) ଉଦ୍‌ଭାସିତ ହେଉ-ଅଛନ୍ତି ଯେଉଁମାନେ (କରଣ) ପର୍ବତୋଦ୍ଧକୁ ପୋଷଣ କରୁଅଛନ୍ତି, ଏବଂ ଯେଉଁମାନେ (ବିରୋଧ ପକ୍ଷେ) ପଦ୍ମକୋଷକୁ ଫିଙ୍ଗି ଦେଇଛନ୍ତି, (ପରିହାର) ଚରଣ ପଦ୍ମକୋଷକୁ ତିରସ୍କାର କରୁଛି, ଅର୍ଥାତ୍ ପଦ୍ମଠାରୁ ଅଧିକ ସୁନ୍ଦର ଏବଂ ଯେଉଁମାନେ (କରଣ) ପର୍ବତ ଶୃଙ୍ଗରେ ଶୋଭା ପାଆନ୍ତି, (ବିରୋଧ) ଯେଉଁ (ଚରଣ)ମାନେ ଦେବତାମାନଙ୍କ ମୁଣ୍ଡକୁ ଅତିକ୍ରମଣ କରନ୍ତି, (ପରିହାର) ପ୍ରଣାମବେଳେ ଦେବତାମାନଙ୍କ ମୁଣ୍ଡରେ ଯେଉଁ ପାଦର ସମ୍ପର୍କ ହୁଏ । ଜନ-ପତି ପୃଥୀଙ୍କର ଏହି ଉଭୟପ୍ରକାର ପାଦ (କରଣ ଓ ଚରଣ) ଆପଣଙ୍କର ସମୃଦ୍ଧି ନିମିତ୍ତକ ହୁଅନ୍ତୁ ।

ଏ ଶ୍ଳୋକରେ ବାଚ୍ୟ ବିରୋଧ ଅଳଙ୍କାରରୁ ବ୍ୟତିରେକ ଅଳଙ୍କାର ଧ୍ୱନି ହେଉଅଛି । କରଣଠାରୁ ଚରଣର ଆଧିକ୍ୟ— ପ୍ରତୀତ ବ୍ୟତିରେକର ହେତୁ ॥

୧୩୬—ଏହିପରି ଅନ୍ୟ ଅଳଙ୍କାରମାନେ ମଧ୍ୟ ଶବ୍ଦଶକ୍ତିମୂଳକ ଅନୁ-ରଣନ ବ୍ୟଙ୍ଗ୍ୟଧ୍ୱନିର ବିଷୟ ହୋଇ ପାରିବେ । ତାହା ସବୁ ସହୃଦୟମାନେ ନିଜେ ନିଜେ ଅନୁସନ୍ଧାନ କରି ବୁଝିବେ । ଏଠାରେ ସେସବୁ ବିସ୍ତାରିବାକୁ ଉଲ୍ଲେଖ କଲେ ଗ୍ରନ୍ଥ ଅତି ବୃହତ୍ ହୋଇଯିବ ଏଣୁ ଆମ୍ଭେ ତାହାର ବିସ୍ତାର କଲୁ ନାହିଁ ।

୧୩୩ । ଅର୍ଥଶକ୍ତ୍ୟୁଦ୍ଭବସ୍ତ୍ୱନ୍ୟୋ ଯତ୍ରାର୍ଥଃ ସ ପ୍ରକାଶତେ ।
ଯସ୍ତାତ୍ପର୍ଯ୍ୟେଣ ବସ୍ତ୍ୱନ୍ୟଦ୍ୟନକ୍ତ୍ୟୁକ୍ତିଂ ବିନା ସ୍ୱତଃ ।୨୨
ଯତ୍ରାର୍ଥଃ ସ୍ୱସାମର୍ଥ୍ୟାଦର୍ଥାନ୍ତରମଭିବ୍ୟନକ୍ତି ଶବ୍ଦ-
ବ୍ୟାପାରଂ ବିନୈବ, ସୋଽର୍ଥଶକ୍ତ୍ୟୁଦ୍ଭବୋ ନାମାନୁ-
ସ୍ୱାନୋପମବ୍ୟଙ୍ଗ୍ୟୋ ଧ୍ୱନିଃ ॥

୧୩୪ । ଯଥା—
ଏବଂ ବାଦିନି ଦେବର୍ଷୌ ପାର୍ଶ୍ୱେ ପିତୁରଧୋମୁଖୀ ।
ଲୀଲାକମଲପତ୍ରାଣି ଗଣୟାମାସ ପାର୍ବତୀ ॥

୧୩୫ । ଅତ୍ର ହି ଲୀଲାକମଲପତ୍ରଗଣନମୁପସର୍ଜନୀକୃତସ୍ୱରୂପଂ
ଶବ୍ଦବ୍ୟାପାରଂ ବିନୈବାର୍ଥାନ୍ତରଂ ବ୍ୟଭିଚାରିଭାବ
ଲକ୍ଷଣଂ ପ୍ରକାଶୟତି ॥

---

୧୩୩—ଶବ୍ଦଶକ୍ତ୍ୟୁଦ୍ଭବ ଧ୍ୱନି ନିରୂପଣ କରିସାରିବା ପରେ ଅର୍ଥ ଶକ୍ତ୍ୟୁଦ୍ଭବଧ୍ୱନି ନିରୂପଣ କରାଯାଉଅଛି :—

ଯେଉଁଠାରେ ବାଚ୍ୟ ଅର୍ଥ ଶବ୍ଦବ୍ୟାପାର ବିନା ସ୍ୱସାମର୍ଥ୍ୟରେ ଅନ୍ୟ ବ୍ୟଙ୍ଗ୍ୟ ଅର୍ଥକୁ ଅଭିବ୍ୟକ୍ତ କରେ ତାହା ଅର୍ଥଶକ୍ତ୍ୟୁଦ୍ଭବ ସଂଲକ୍ଷ୍ୟକ୍ରମ-ବ୍ୟଙ୍ଗ୍ୟ ଧ୍ୱନି ।

୧୩୪—ଯଥା କୁମାରସମ୍ଭବ ଷଷ୍ଠସର୍ଗ—

ଦେବର୍ଷି ନାରଦ ଏହିପରି (ବରଘରଣି ପ୍ରସଙ୍ଗ) କହନ୍ତେ, ପିତାଙ୍କ ନିକଟରେ ଥିବା ପାର୍ବତୀ ମୁହଁକୁ ତଳକୁ ପୋତି ଖେଳ ପଦ୍ମଫୁଲ ଗୁଡ଼ିକୁ ଗଣିବାକୁ ଲାଗିଲେ ।

୧୩୫—ଏଠାରେ ଖେଳ ପଦ୍ମଫୁଲ ଗଣିବାରୂପକ ଅର୍ଥଟି ନିଜେ ଉପ-ସର୍ଜନ (ଗୌଣ) ହୋଇ ଶବ୍ଦବ୍ୟାପାର ବିନା ଅନ୍ୟ ଅର୍ଥ ଶୃଙ୍ଗାର ବ୍ୟଭିଚାରି-ଭାବ—(ଲଜ୍ଜା)କୁ ପ୍ରକାଶ କରୁଅଛି ।

୧୩୬। ନତ୍ୱସଂଲକ୍ଷ୍ୟକ୍ରମବ୍ୟଙ୍ଗ୍ୟସ୍ୟୈବ ଧ୍ୱନେର୍ବିଷୟଃ, ଯତୋ ଯତ୍ର ସାକ୍ଷାଚ୍ଛବ୍ଦନିବେଦିତେଭ୍ୟୋ ବିଭାବାନୁଭାବ-ବ୍ୟଭିଚାରିଭ୍ୟୋ ରସାଦୀନାଂ ପ୍ରତୀତିଃ, ସ ତସ୍ୟ କେବଳସ୍ୟ ମାର୍ଗଃ ॥

୧୩୭। ଯଥା କୁମାରସମ୍ଭବେ ମଧୁପ୍ରସଙ୍ଗେ ବସନ୍ତପୁଷ୍ପାଭରଣଂ ବହନ୍ତ୍ୟା ଦେବ୍ୟା ଆଗମନାଦି ବର୍ଣ୍ଣନଂ ମନୋଭବ-ଶରସନ୍ଧାନପର୍ଯ୍ୟନ୍ତଂ, ଶମ୍ଭୋଶ୍ଚ ପରିବୃତ୍ତଧୈର୍ଯ୍ୟସ୍ୟ ଚେଷ୍ଟାବିଶେଷବର୍ଣ୍ଣନାଦି ସାକ୍ଷାତ୍ ଶବ୍ଦନିବେଦିତମ୍ ॥

୧୩୮। ଇହ ତୁ ସାମର୍ଥ୍ୟାକ୍ଷିପ୍ତବ୍ୟଭିଚାରିମୁଖେନ ରସପ୍ରତୀତିଃ। ତସ୍ମାଦୟମନ୍ୟୋ ଧ୍ୱନେଃ ପ୍ରକାରଃ ॥

---

୧୩୬—ଏହା ଅଲକ୍ଷ୍ୟକ୍ରମ ବ୍ୟଙ୍ଗ୍ୟଧ୍ୱନିର ବିଷୟ ନୁହେ। କାରଣ ଯେଉଁଠାରେ ଶବ୍ଦ ଦ୍ୱାରା ବିଭାବ ଅନୁଭାବ ବ୍ୟଭିଚାରିଭାବମାନେ ଉକ୍ତ ହୋଇ-ଥିବେ ଓ ତହିଁରୁ ରସାଦିର ପ୍ରତୀତି ହେଉଥିବ ସେହିଠାରେ କେବଳ ରସାଦି ଅଲକ୍ଷ୍ୟକ୍ରମ ବ୍ୟଙ୍ଗ୍ୟଧ୍ୱନି ହେବ। ଏହାହିଁ ରସାଦି ଧ୍ୱନିର ମାର୍ଗ।

୧୩୭—ଯଥା—କୁମାରସମ୍ଭବ କାବ୍ୟରେ ବସନ୍ତ ବର୍ଣ୍ଣନାରେ, ବସନ୍ତ ପୁଷ୍ପଧାରିଣୀ ଉମା ଦେବୀଙ୍କର ଆଗମନଠାରୁ କାମଦେବର ଶରସନ୍ଧାନ ପର୍ଯ୍ୟନ୍ତ ବର୍ଣ୍ଣନା। ତଥା ଧୈର୍ଯ୍ୟ ପରିବର୍ଜିତ ହୋଇଥିବା ଶମ୍ଭୁଙ୍କର ଚେଷ୍ଟା-ବିଶେଷ ବର୍ଣ୍ଣନା ପ୍ରଭୃତି, ଏହା ସାକ୍ଷାତ୍‌ଭାବେ ଶବ୍ଦଦ୍ୱାରା ପ୍ରକାଶିତ ହୋଇ-ଅଛି। ତେଣୁ ସେଠାରେ ରସାଦିଧ୍ୱନି ରହିଅଛି।

୧୩୮ - କିନ୍ତୁ "ଏବଂ ବାଦିନି" ଶ୍ଳୋକରେ କୁମାରୀମାନଙ୍କର ସ୍ୱତଃ-ସମ୍ଭବୀ ପଦ୍ମପତ୍ର ଗଣନାଦି କାର୍ଯ୍ୟରୁ ଲଜ୍ଜା ପ୍ରତୀତି ଓ ଲଜ୍ଜାପ୍ରତୀତିରୁ ଶୃଙ୍ଗାର-ରସ ପ୍ରତୀତି ହେଉଅଛି। ସୁତରାଂ ବିଳମ୍ବରେ ରସପ୍ରତୀତି ହେଉଥିବା ହେତୁ ଏହା ଧ୍ୱନିର ଆଉ ଏକପ୍ରକାର ଅର୍ଥାତ୍ ସଂଲକ୍ଷ୍ୟକ୍ରମ ବ୍ୟଙ୍ଗ୍ୟଧ୍ୱନି।

୧୩୯ । ଯତ୍ର ଚ ଶବ୍ଦବ୍ୟାପାରସହାୟୋଽର୍ଥୋଽର୍ଥାନ୍ତରସ୍ୟ
ବ୍ୟଞ୍ଜକତ୍ୱେନୋପାଦୀୟତେ ସ ନାସ୍ୟ ଧ୍ୱନେର୍ବିଷୟଃ ॥

୧୪୦ । ଯଥା—

ସଂକେତକାଲମନସଂ ବିଟଂ ଜ୍ଞାତ୍ୱା ବିଦଗ୍ଧୟା ।
ହସନ୍ନେତ୍ରାର୍ପିତାକୂତଂ ଲୀଳାପଦ୍ମଂ ନିମୀଳିତମ୍ ॥

୧୪୧ । ଅତ୍ର ଲୀଳାକମଳ-ନିମୀଳନସ୍ୟ ବ୍ୟଞ୍ଜକତ୍ୱମୁକ୍ତ୍ୟୈବ
ନିବେଦିତମ୍ ।

୧୪୨ । ତଥାଚ—

ଶବ୍ଦାର୍ଥଶକ୍ତ୍ୟାଽଽକ୍ଷିପ୍ତୋଽପି ବ୍ୟଙ୍ଗ୍ୟୋଽର୍ଥଃ କବିନା ପୁନଃ ।
ଯତ୍ରାବିଷ୍କ୍ରିୟତେ ସ୍ୱୋକ୍ତ୍ୟା ସାଽନ୍ୟୈବାଲଂକୃତିର୍ଧ୍ୱନେଃ ॥୨୩

---

୧୩୯ – ଯେଉଁଠି ଅର୍ଥ ଶବ୍ଦବ୍ୟାପାରର ସହାୟତାରେ ଅନ୍ୟ ଅର୍ଥର ବ୍ୟଞ୍ଜକରୂପେ ଗୃହୀତ ହୁଏ, ତାହା ଏହି ସଂଲକ୍ଷ୍ୟକ୍ରମ ଧ୍ୱନିର ସ୍ଥଳ ନୁହେ, ଅର୍ଥାତ୍ ତାହା ଅସଂଲକ୍ଷ୍ୟକ୍ରମ ବ୍ୟଙ୍ଗ୍ୟଧ୍ୱନିର ସ୍ଥଳ ।

୧୪୦—ଯଥା—

ବିଟ ପୁରୁଷ ସଙ୍କେତକାଳ ଜାଣିବାକୁ ଇଚ୍ଛାକରୁଛି ବୋଲି ଜାଣି-ପାରି ଚତୁରା ନାୟିକା ସାନନ୍ଦ ସାଭିପ୍ରାୟ ଦୃଷ୍ଟିରେ ଲୀଳାପଦ୍ମଟିକୁ ମୁଦ୍ରିତ କରିଦେଲା ।

୧୪୧—ଏ ଶ୍ଳୋକରେ ଲୀଳାପଦ୍ମ ନିମୀଳନର ପ୍ରଦୋଷକାଳ ସମ୍ଭୋଗ କାଳ, ଏହା ବ୍ୟଙ୍ଗ୍ୟ ଅର୍ଥ । ଏହି ଲୀଳାପଦ୍ମ ନିମୀଳନ ରୂପଚେଷ୍ଟାର ବ୍ୟଞ୍ଜକତା ଶବ୍ଦ—ଦ୍ୱାରା ଶ୍ଳୋକର ପ୍ରଥମ ତିନି ପାଦରେ ଉକ୍ତ ହୋଇଅଛି । (ଏଣୁ ଏଠାରେ ଅସଂଲକ୍ଷ୍ୟକ୍ରମବ୍ୟଙ୍ଗ୍ୟ ଧ୍ୱନି ହେଉଅଛି) ।

୧୪୨—ତଥାଚ—ଶବ୍ଦଶକ୍ତିରେ କିମ୍ବା ଅର୍ଥଶକ୍ତିରେ କିମ୍ବା ଶବ୍ଦାର୍ଥୋ-ଭୟ ଶକ୍ତିରେ ଆକ୍ଷିପ୍ତ ହୋଇଥିବା ବ୍ୟଙ୍ଗ୍ୟ ଅର୍ଥକୁ କବି ପୁନବାର ସ୍ୱଭାଷାରେ

ଶବ୍ଦଶକ୍ତ୍ୟାଽର୍ଥଶକ୍ତ୍ୟା ଶବ୍ଦାର୍ଥଶକ୍ତ୍ୟା ବାଽଽକ୍ଷିପ୍ତୋଽପି ବ୍ୟଙ୍ଗ୍ୟୋଽର୍ଥଃ କବିନା ପୁନର୍ୟତ୍ର ସ୍ୱୋକ୍ତ୍ୟା ପ୍ରକାଶୀକ୍ରିୟତେ, ସୋଽସ୍ମାଦନୁସ୍ୱାନୋପମବ୍ୟଙ୍ଗ୍ୟାଦ୍ ଧ୍ୱନେରନ୍ୟ ଏବାଲଂକାରଃ ॥

୧୪୩। ଅଲକ୍ଷ୍ୟକ୍ରମବ୍ୟଙ୍ଗ୍ୟସ୍ୟ ବା ଧ୍ୱନେଃ ସତି ସମ୍ଭବେ ସ ତାଦୃଗନ୍ୟୋଽଲଂକାରଃ ॥

୧୪୪। ତତ୍ର ଶବ୍ଦଶକ୍ତ୍ୟା ଯଥା—

ବତ୍ସେ ମା ଗା ବିଷାଦଂ ଶ୍ୱସନମୁରୁଜବଂ
ସନ୍ତ୍ୟଜୋର୍ଦ୍ଧ୍ୱପ୍ରବୃତ୍ତଂ
କମ୍ପଃ କୋ ବା ଗୁରୁସ୍ତେ ଭବତୁ ବଲଭିଦା
ଜୃମ୍ଭିତେନାତ୍ର ଯାହି ।

---

ପ୍ରକାଶ (ଆବିଷ୍କାର) କଲେ, ତାହା ଧ୍ୱନି ନ ହୋଇ ଅନ୍ୟ ବାଚ୍ୟ ଅଲଙ୍କାର ହୁଏ ।

୧୪୩—ଯଦି ବା ଅଲକ୍ଷ୍ୟକ୍ରମ ବ୍ୟଙ୍ଗ୍ୟଧ୍ୱନିର ସଦ୍ଭାବ ଥାଏ, ତଥାପି ତାହା ସେହିପରି ଥାଇ ଅଳଙ୍କାର ହୁଏ । (ଏପରି ସ୍ଥଳରେ ଅଲକ୍ଷ୍ୟକ୍ରମଧ୍ୱନି ଓ ବାଚ୍ୟ ଅଲଙ୍କାର ରହନ୍ତି) ।

୧୪୪—ଶବ୍ଦଶକ୍ତିରେ ଆକ୍ଷିପ୍ତ ବ୍ୟଙ୍ଗ୍ୟର ଦେଢ ସ୍ୱାବ ପ୍ରକାଶ ଯଥା— ଆଲୋ ଝିଅ ! ଲକ୍ଷ୍ମି ! ବିଷାଦକୁ ପ୍ରାପ୍ତ ହୁଅ ନାହିଁ । ଅନ୍ୟପକ୍ଷେ ବିଷକୁ ଯେ ଭକ୍ଷଣ କରନ୍ତି ସେ ବିଷାଦ ଅର୍ଥାତ୍ ଶିବ ତାଙ୍କୁ ବିବାହ କର ନାହିଁ । ଊର୍ଦ୍ଧ୍ୱଗାମୀ ଅତି ଚଞ୍ଚଳ ଶ୍ୱାସବେଗକୁ ତ୍ୟାଗ କର, (ଅନ୍ୟ ପକ୍ଷରେ) ଅସ୍ଥିର ସ୍ୱଭାବ ପବନକୁ ବା ଉପରମୁହାଁ ଅଗ୍ନିକୁ ସମ୍ୟକ୍‌ଭାବେ ତ୍ୟାଗ କର । ଗୁରୁତର କମ୍ପ ବା କଣ ? ଅର୍ଥାତ୍ କାହିଁକି ବା ଏପରି କମ୍ପୁଛୁ । (ଅନ୍ୟ ପକ୍ଷରେ) ବରୁଣ (କମ୍ପ) ଅଥବା ବ୍ରହ୍ମା (କ) ଏମାନେ ତୋର ପିତୃସ୍ଥାନୀୟ, (ବରୁଣ ପିତା ଓ ବ୍ରହ୍ମା ପିତାମହ) ସୁତରାଂ ଏମାନେ ତୋର ବିବାହ ଯୋଗ୍ୟ ନୁହନ୍ତି । ହେଉ

ପ୍ରତ୍ୟାଖ୍ୟାନଂ ସୁରାଣାମିତି ଭୟଶମନ-
ଛଦ୍ମନା କାରୟିତ୍ୱା
ଯସ୍ମୈ ଲକ୍ଷ୍ମୀମଦାଦ୍ ବଃ ସ ଦହତୁ ଦୁରିତଂ
ମନ୍ଥମୂଢ଼ାଂ ପୟୋଧିଃ ॥

୧୪୯। ଅର୍ଥଶକ୍ତ୍ୟା ଯଥା—

ଅମ୍ବା ଶେତେଽତ୍ର ବୃଦ୍ଧା ପରିଣତବୟସାମଗ୍ରଣୀରତ୍ର ତାତୋ
ନିଃଶେଷାଗାରକର୍ମଶ୍ରମଶିଥିଲତନୁଃ କୁମ୍ଭଦାସୀ ତଥାତ୍ର ।

---

ତେବେ, ଶାରୀରିକ ବଳ ଭାଙ୍ଗି ଦେଉଥିବା ହାଇ, ମାରିବୁ ମା'ର ଅର୍ଥାତ୍ ହାଇ ମାର ନାହିଁ । (ଅନ୍ୟ ପକ୍ଷରେ) ଐଶ୍ୱର୍ଯ୍ୟମଦମତ୍ତ (କୁମ୍ଭିତ) ଇନ୍ଦ୍ରଙ୍କୁ ବିବାହ କରିବୁ ତ କର, ଅର୍ଥାତ୍ ଇନ୍ଦ୍ରଙ୍କୁ ବିବାହ କର ନାହିଁ । ଏହିପରି ଭୟ ଉପଶମ ବ୍ୟାଜରେ ସମୁଦ୍ର ଅନ୍ୟ ଦେବତାମାନଙ୍କର ପ୍ରତ୍ୟାଖ୍ୟାନ କରାଇ ମନ୍ଥନମୂର୍ଚ୍ଛିତା ଲକ୍ଷ୍ମୀଦେବୀଙ୍କୁ ଯାହାଙ୍କୁ ପ୍ରଦାନ କରିଥିଲେ ସେହି ଭଗବାନ୍ ନାରାୟଣ ଆପଣ-ମାନଙ୍କର ପାପ ଧ୍ୱଂସ କରନ୍ତୁ ।

ଏଠାରେ ଶବ୍ଦଶକ୍ତି ବଳରୁ "ବିଷାଦ" ପ୍ରଭୃତି ଶବ୍ଦରୁ ବିଷ ଭକ୍ଷଣ-ଶୀଳ ରୁଦ୍ରାଦି ବ୍ୟଙ୍ଗ୍ୟ ଅର୍ଥ ପ୍ରତୀତ ହେଉଥିଲେ ମଧ୍ୟ କବି ସ୍ୱ ଭାଷାରେ ଭୟ ଉପଶମ ପୂର୍ବକ ଅନ୍ୟ ଦେବତାଙ୍କର ପ୍ରତ୍ୟାଖ୍ୟାନ କରାଇବା କଥା କହିବା ଦ୍ୱାରା ବ୍ୟଙ୍ଗ୍ୟର ମର୍ଯ୍ୟାଦା ନଷ୍ଟହେଲା । ଆଉ ପୁଣି ଦ୍ୱିତୀୟ ଅର୍ଥର ସୂଚନା ଦିଆଯିବାରୁ ସେ ଦ୍ୱିତୀୟ ଅର୍ଥକୁ ଅଭିଧାବୃତ୍ତି ବୁଝାଇବାର ସୁଯୋଗ ପାଇଲା । ସୁତରାଂ ଏଠାରେ ଅନୁରଣନାତ୍ମକ ଧ୍ୱନି ହେଲା ନାହିଁ ।

୧୪୫—ଅର୍ଥ—ଶକ୍ତିରେ ଆକ୍ଷିପ୍ତ—ବ୍ୟଙ୍ଗ୍ୟର ଶବ୍ଦ ଦ୍ୱାରା ପ୍ରକାଶହେଲା ଯଥା—ପଥିକକୁ ପ୍ରୋଷିତପତିକା ତରୁଣୀ କହୁଅଛି :—

ମାଆ ବୁଢ଼ୀ (ଶାଶୁ) ଏହିଠାରେ ଶୁଅନ୍ତି । ଏଠାରେ ପାକ୍ତ ବୁଢ଼ା ବାପା (ଶଶୁର) ଶୁଅନ୍ତି । ଆଉ ଏଠାରେ କୁମ୍ଭ ଦାସୀଟି ଘରର ସମସ୍ତ କାମଦାମ କରି କରି ହାଲିଆ ହୋଇ ପଡ଼ି ଯାଏ । ଏ ସ୍ଥାନରେ ମୁଁ ପାପିନୀ କେତେକ ଦିନର ପ୍ରୋଷିତ-ପତିକା ଏକା ହୋଇ ଶୁଏ । ତରୁଣୀଟି ପଥିକକୁ ଏହିପରି କପଟ ପ୍ରସ୍ତାବକ୍ରମେ କହିଥିଲା । (ମାତା ବୃଦ୍ଧା ଓ ପିତା ଅତି ବୃଦ୍ଧ ବୋଲି ଉକ୍ତ

ଅସ୍ମିନ୍ ପାପାଽହମେକା କତିପୟଦିବସପ୍ରୋଷିତପ୍ରାଣନାଥା ।
ପାନ୍ଥାୟେତ୍ଥଂ ତରୁଣ୍ୟା କଥିତମବସରବ୍ୟାହୃତିବ୍ୟାଜପୂର୍ବମ୍ ॥

୧୪୬। ଉଭୟଶକ୍ତ୍ୟା ଯଥା—

"ଦୃଷ୍ଟ୍ୟା କେଶବ ଗୋପରାଗହୃତୟା" ଇତ୍ୟାଦୌ ।

---

ହୋଇଥିବାରୁ ଏଠାରେ ମାଆ ବାପ ପଦରେ ଶାଶୁ ଶଶୁର ଅର୍ଥ କରାଯିବା ଉଚିତ । ପୂର୍ବେ ଯେଉଁ ଦାସଦାସୀମାନେ ନିଜର ସମସ୍ତ ସ୍ୱାଧୀନତା ହରାଇ ପର ଘରେ ମୁଠେ ଖାଇ ଗୃହକର୍ମ କରୁଥିଲେ ସେମାନଙ୍କୁ ରଖିବାବେଳେ ତାଙ୍କ ଉପରେ ପାଣି ମାଠିଆ ଲଦା ହେଉଥିଲା) ।

ଏଠାରେ ତରୁଣୀ ଉକ୍ତିରେ ଶାଶୁ ଶଶୁରଙ୍କର ବୃଦ୍ଧତ୍ୱ, ତଥା କୁମ୍ଭ-ଦାସୀ ପଦରେ ଦାସୀର ଅଧୀନତା ଓ ତାର ହାଲିଆହୋଇ ଶୋଇବା, ଏବଂ ନିଜର ବିରହ-ଆଉ ପୁଣି ପାପିନୀ ପଦ ଦ୍ୱାରା ନିଜର ବିରହକାତରତା ପ୍ରଭୃତି ପଥିକକୁ ସ୍ୱୈରବିହାର ପାଇଁ ନିମନ୍ତ୍ରଣରୂପ ବ୍ୟଙ୍ଗ୍ୟ ବସ୍ତୁକୁ ପ୍ରକାଶ କରୁଥିଲା, କିନ୍ତୁ "ଅବସରବ୍ୟାହୃତିବ୍ୟାଜପୂର୍ବଂ" ବୋଲି କବି ସ୍ୱ ଭାଷାରେ ତାହା ପ୍ରକାଶ କରିବାରୁ ଗୋପନୀୟ ବ୍ୟଙ୍ଗ୍ୟବସ୍ତୁର ମର୍ଯ୍ୟାଦା ହାନି ହେଲା । ସୁତରାଂ ଏଠାରେ ଅନୁରଣନାତ୍ମକ ଧ୍ୱନି ହେଲା ନାହିଁ ।

୧୪୬—ଶବ୍ଦାର୍ଥୋଭୟ ଶକ୍ତିରେ ଆକ୍ଷିପ୍ତ ବ୍ୟଙ୍ଗ୍ୟର ଶବ୍ଦ ଦ୍ୱାରା ପ୍ରକାଶ-ସ୍ଥଳ ଯଥା :—"ଦୃଷ୍ଟ୍ୟା କେଶବ" ଇତ୍ୟାଦି ଶ୍ଳୋକ । ଏହାର ଅର୍ଥ ପ୍ରକାଶ କରାଯାଇଛି । ସେଥିରେ "ଗୋପରାଗହୃତୟା" ଇତ୍ୟାଦିରେ ଶବ୍ଦଶକ୍ତିରୁ ଓ "କାଞ୍ଚିଦଦୃଷ୍ଟଂ ମୟା," ଇତ୍ୟାଦିରେ ଅର୍ଥଶକ୍ତି ବଳରୁ ଶ୍ରୀକୃଷ୍ଣଙ୍କ ପ୍ରତି ଗୋପୀର ସମ୍ଭୋଗ ଆମନ୍ତ୍ରଣରୂପ ବ୍ୟଙ୍ଗ୍ୟ ବସ୍ତୁ ପ୍ରକାଶ ପାଉଥିଲେ ମଧ୍ୟ "ସଲେଶ" ପଦ ଦ୍ୱାରା ତାହା ବାଚ୍ୟାୟମାନ ହେଲା । ଦ୍ୱିତୀୟ ଅର୍ଥ ଶବ୍ଦ ଦ୍ୱାରା ସୂଚିତ ହେବାରୁ ସେ ପକ୍ଷରେ ମଧ୍ୟ ଅଭିଧାଶକ୍ତି ପ୍ରବର୍ତ୍ତିଲା ।

ଯେଉଁଠି କେବଳ ଶବ୍ଦବଳରୁ ବ୍ୟଙ୍ଗ୍ୟ ଅର୍ଥ ପ୍ରକାଶ ପାଉଛି ଓ ସେ ଶବ୍ଦ ପରିବର୍ତ୍ତେ ଅନ୍ୟ ପର୍ଯ୍ୟାୟବାଚକ ଶବ୍ଦ ରଖାଗଲେ ସେ ଅର୍ଥ ରହିବ ନାହିଁ, ତାହା ଶବ୍ଦଶକ୍ତିମୂଳ । ଯେଉଁଠି ଶବ୍ଦମାନଙ୍କର ଯେ କୌଣସି ପର୍ଯ୍ୟାୟ ଶବ୍ଦ ବଦଳାଇଲେ ମଧ୍ୟ ତାଦୃଶ ଅର୍ଥ ପ୍ରକାଶରେ କିଛି ବାଧା ନ ଆସେ, ତାହା ଅର୍ଥଶକ୍ତିମୂଳକ । ଯେଉଁଠି ଏହି ଉଭୟପ୍ରକାର ମିଶ୍ରିତଭାବେ ଦେଖା-ଯାଏ ତାହା ଉଭୟଶକ୍ତିମୂଳକ ।

୧୪୭। ପ୍ରୌଢ଼ୋକ୍ତିମାତ୍ରନିଷ୍ପନ୍ନଶରୀରଃ ସମ୍ଭବୀ ସ୍ୱତଃ।
ଅର୍ଥୋଽପି ଦ୍ୱିବିଧୋ ଜ୍ଞେୟୋ ବସ୍ତୁନୋଽନ୍ୟସ୍ୟ ଦୀପକଃ।୨୪
ଅର୍ଥଶକ୍ତ୍ୟୁଦ୍ଭବାନୁରଣନରୂପ--ବ୍ୟଙ୍ଗ୍ୟେ ଧ୍ୱନୌ ଯୋ
ବ୍ୟଞ୍ଜକୋଽର୍ଥ ଉକ୍ତସ୍ତସ୍ୟାପି ଦ୍ୱୌ ପ୍ରକାରୌ।

୧୪୮। କବେଃ କବିନିବଦ୍ଧସ୍ୟ ବା ବକ୍ତୁଃ ପ୍ରୌଢ଼ୋକ୍ତିମାତ୍ର-
ନିଷ୍ପନ୍ନଶରୀର ଏକଃ, ସ୍ୱତଃସମ୍ଭବୀ ଚ ଦ୍ୱିତୀୟଃ॥

୧୪୯। କବି ପ୍ରୌଢ଼ୋକ୍ତିମାତ୍ରନିଷ୍ପନ୍ନଶରୀରୋ ଯଥା—
ସଜ୍ଜେହି ସୁରହିମାସୋ ଣଦାବ ଅପ୍ପେଇ ଜୁଅଇଜଣଲକ୍ଖ ମୁହେ।
ଅହିଣବସହଆରମୁହେ ଣବପଲ୍ଲବପତ୍ତଲେ ଅଣଙ୍ଗସ୍ସ ଶରେ॥
(ସଜ୍ଜୟତି ସୁରଭିମାସୋ ନ ତାବଦର୍ପୟତି ଯୁବତି-
ଜନଲକ୍ଷ୍ୟମୁଖାନ୍। ଅଭିନବସହକାରମୁଖାନ୍ ନବ-
ପଲ୍ଲବପତ୍ରଲାନନଙ୍ଗସ୍ୟ ଶରାନ୍)॥

---

୧୪୭—ଅନ୍ୟ ବ୍ୟଙ୍ଗ୍ୟଅର୍ଥ ବସ୍ତୁକୁ ପ୍ରକାଶ କରୁଥିବା ବ୍ୟଞ୍ଜକ (ଦୀପକ) ଅର୍ଥ ମଧ୍ୟ ପ୍ରୌଢ଼ୋକ୍ତି-ସିଦ୍ଧ ଓ ସ୍ୱତଃସମ୍ଭବୀ ଭେଦରେ ଦୁଇପ୍ରକାର।

୧୪୮—ପ୍ରୌଢ଼ୋକ୍ତିସିଦ୍ଧ ପଦରେ କବିର ପ୍ରୌଢ଼ୋକ୍ତି ଓ କବିନିବଦ୍ଧ ବକ୍ତାର ପ୍ରୌଢ଼ୋକ୍ତି ଏପରି ଦୁଇପ୍ରକାର, ଏବଂ ସ୍ୱତଃସମ୍ଭବୀ ଏକପ୍ରକାର। ଏହିପରି ବ୍ୟଞ୍ଜକ ଭେଦରେ ଅର୍ଥଶକ୍ତ୍ୟୁଦ୍ଭବ ଧ୍ୱନି ତିନିପ୍ରକାର।

୧୪୯—କବି ପ୍ରୌଢ଼ୋକ୍ତି ମାତ୍ର—ନିଷ୍ପନ୍ନ ଶରୀର ଯଥା—

ସୁରଭିମାସ (ବସନ୍ତ ଋତୁ) ନବପଲ୍ଲବରୂପକ ପତ୍ର (ଶରରେ ଖଚିତ) ସ୍ୱଳ୍ପ ଯୁବତୀଜନ ଲକ୍ଷ୍ୟ ଭେଦକାରୀ ନୂତନ ସହକାର କୁସୁମ ପ୍ରଭୃତି କାମଦେବର ଶରମାନଙ୍କୁ ସଜ୍ଜ କରୁଛି, ମାତ୍ର ମାରୁ ନାହିଁ।

ଏଠା କବିର ପ୍ରୌଢ଼ୋକ୍ତି, ସୁରଭିମାସର ଶରକାରତ୍ୱ, କାମଦେବର ଧାନୁଷ୍କତା, ସହକାର କୁସୁମାଦିର ଶରତ୍ୱ, କବି ପ୍ରୌଢ଼ୋକ୍ତି ମାତ୍ର ସିଦ୍ଧ, କିନ୍ତୁ ବାସ୍ତବ ନୁହେ। ଏହି ପ୍ରୌଢ଼ୋକ୍ତି ଏଠାରେ ବ୍ୟଞ୍ଜକ। ମଦନବିଜୃମ୍ଭଣ-ରୂପ ବସ୍ତୁ ବ୍ୟଙ୍ଗ୍ୟ।

୧୫୦ । କବିନିବଦ୍ଧବକ୍ତୃପ୍ରୌଢ଼ୋକ୍ତିମାତ୍ରନିଷ୍ପନ୍ନଶରୀରୋ ଯଥୋ-
ଦାହୃତମେବ—"ଶିଖରିଣି" ଇତ୍ୟାଦୌ ।

୧୫୧ । ସାଅରବିଇଣ୍ଣଜୋବ୍ୱଣହତ୍ଥାଲମ୍ବଂ ସମୁଣ୍ଣମନ୍ତେହିଂ
ଅବ୍‌ଭୁଟ୍‌ଠାଣଂ ବିଅ ମନ୍ମହସ୍ସ ଦିଣ୍ଣଂ ତୁହ ଥଣେହିଂ ॥
(ସାଦରବିତୀର୍ଣ୍ଣଯୌବନହସ୍ତାଲମ୍ବଂ ସମୁନ୍ନମଦ୍‌ଭ୍ୟାମ୍ ।
ଅଭ୍ୟୁତ୍ଥାନମିବ ମନ୍ମଥସ୍ୟ ଦତ୍ତଂ ତବ ସ୍ତନାଭ୍ୟାମ୍) ॥

୧୫୨ । ସ୍ୱତଃସମ୍ଭବୀ ଯ ଔଚିତ୍ୟେନ ବହିରପି ସମ୍ଭାବ୍ୟ-
ମାନସଦ୍ଭାବୋ ନ କେବଲଂ ଭଣିତିବଶେନୈବାଭି-

---

୧୫୦—କବି ନିବଦ୍ଧ ବକ୍ତାର ପ୍ରୌଢ଼ୋକ୍ତି—

"ଶିଖରିଣି କ୍ୱ ନୁ ନାମ" ଏହାର ଅର୍ଥ ଲେଖାଯାଇଛି । କବି ନିବଦ୍ଧ ବକ୍ତାର ଏହା ପ୍ରୌଢ଼ୋକ୍ତି । ତହିଁରେ "ତୁମ୍ଭର ଅଧରସ୍ୱାଦ ପୁଣ୍ୟାତି-ଶୟଲଭ୍ୟ" ବୋଲି ନାୟକର ଗୃଢ଼ଧ୍ୱନିତ ହେଉଅଛି । ଶୁକ ଶାବକର ତପସ୍ୟା ଅସମ୍ଭବ ହେତୁ ଏହା ପ୍ରୌଢ଼ୋକ୍ତି-ମାତ୍ର ॥

୧୫୧—ଏହାର ଅନ୍ୟ ଏକ ଉଦାହରଣ—

କୌଣସି ପୁରୁଷ ନବ ଯୁବତୀକୁ ଆଦରପୂର୍ବକ କହୁଅଛି :—ହେ ଯୁବତି ! ଯୌବନ ଆଦରପୂର୍ବକ ହସ୍ତ ଅବଲମ୍ବନ ଦେବାରୁ ସମୁନ୍ନତ ହୋଇଥିବା ତୁମ୍ଭର ସ୍ତନ ଦୁଇଟି କାମଦେବର ଅଭ୍ୟୁତ୍ଥାନ (କାମଦେବକୁ ଦେଖି ମର୍ଯ୍ୟା-ଦାରେ ଉଠିପଡ଼ିବା) କଲା ପରି ହୋଇଛନ୍ତି । ଯଥା ନବାଗତ ବିଶିଷ୍ଟ ବ୍ୟକ୍ତିଙ୍କୁ ଦେଖି ସ୍ୱତଃ ଉଠିବାକୁ ଅସମର୍ଥ ବ୍ୟକ୍ତି ଅନ୍ୟର ସାହାଯ୍ୟ ନେଇ ଅଭ୍ୟୁତ୍ଥାନ କରି ମର୍ଯ୍ୟାଦା ରକ୍ଷା କରିଥାଏ, ସେହିପରି ଏଠାରେ କାମିନୀର ସ୍ତନଦ୍ୱୟ କାମଦେବର ସତ୍କାର କରିଅଛି ।

୧୫୨—ଯାହାସବୁ କବିର ବର୍ଣ୍ଣନା ମାତ୍ରରେ ସୀମାବଦ୍ଧ ନ ହୋଇ ଔଚିତ୍ୟବଶତଃ ବାହ୍ୟ ଜଗତରେ ମଧ୍ୟ ରହିଥାଏ, ତାହାକୁ ସ୍ୱତଃସମ୍ଭବୀ ବୋଲିଯାଏ । ଉଦାହରଣ ରୂପେ ଦିଆଯାଇଥିବା କୁମାର ସମ୍ଭବର "ଏବଂ ବାଦିନି" ଇତ୍ୟାଦି ଶ୍ଳୋକ ସ୍ୱତଃସମ୍ଭବୀର ଉଦାହରଣ । କାରଣ ସେଠାରେ

ନଷ୍ଟନ୍ନଶରୀରଃ । ଯଥୋଦାହୃତମ୍ "ଏବଂ ବାଦନ" ଇତ୍ୟାଦ ॥

୧୫୩ । ଯଥାବା—

ସିହ୍ନିପିଞ୍ଛକଣ୍ଣଊରା ଜାଆ ବାହସ୍ସ ଗବ୍ବିରୀ ଭମଇ ।
ମୁତ୍ତାଫଳରଇଅପସାହଣାଣଁ ମଜ୍ଝେ ସବତ୍ତୀଣମ୍ ॥
(ଶିଖିପିଚ୍ଛକର୍ଣ୍ଣପୂରା ଜାୟା ବ୍ୟାଧସ୍ୟ ଗର୍ବିଣୀ ଭ୍ରମତ ।
ମୁକ୍ତାଫଳରଚିତପ୍ରସାଧନାନାଂ ମଧ୍ୟେ ସପତ୍ନୀନାମ୍) ॥

୧୫୪ । ଅର୍ଥଶକ୍ତେରଲଂକାରୋ ଯତ୍ରାପ୍ୟନ୍ୟଃ ପ୍ରତୀୟତେ ।
ଅନୁସ୍ୱାନୋପମବ୍ୟଙ୍ଗ୍ୟଃ ସ ପ୍ରକାରୋଽପରୋ ଧ୍ୱନେଃ ।୨୫
ବାଚ୍ୟାଲଂକାରବ୍ୟତିରିକ୍ତୋ ଯତ୍ରାନ୍ୟୋଽଲଂକାରୋଽର୍ଥସାମର୍ଥ୍ୟାତ୍ ପ୍ରତୀୟମାନୋଽବଭାସତେ, ସୋଽର୍ଥଶକ୍ତ୍ୟୁଦ୍ଭବୋ ନାମାନୁସ୍ୱାନରୂପବ୍ୟଙ୍ଗ୍ୟୋଽନ୍ୟୋ ଧ୍ୱନିଃ ॥

---

ଲୀଳାକମଳର ପତ୍ର—ଗଣନା—ପ୍ରଭୃତି କେବଳ ପ୍ରୌଢ଼ୋକ୍ତି ନୁହେ କିନ୍ତୁ ସ୍ୱତଃସମ୍ଭବ ।

୧୫୩—ସ୍ୱତଃସମ୍ଭବାର ଅନ୍ୟ ଉଦାହରଣ ଯଥା—
ବ୍ୟାଧ ଜାୟା ମୟୂରପିଞ୍ଛାକୁ କାନରେ ଖୋସି ମୁକ୍ତାଫଳଭୂଷିତା ସପତ୍ନୀଙ୍କ ମଧ୍ୟରେ ଗର୍ବରେ ବୁଲୁଛି ।

ଏ ପଦ୍ୟରେ ବ୍ୟାଧ ଜାୟାର ସୁଲଭସମ୍ଭୋଗତା ଆଭରଣ ଅଭାବସତ୍ତ୍ୱେ ଗର୍ବର କାରଣ ହୋଇଅଛି । ସପତ୍ନୀମାନେ ସମ୍ଭୋଗ ବ୍ୟଗ୍ରତାର ଅଭାବରୁ ନାନା ଶିଳ୍ପକୌଶଳରେ ଭୂଷିତ ହୋଇଛନ୍ତି । ତାହା ତାଙ୍କର ଦୌର୍ଭାଗ୍ୟାତିଶଯ୍ୟ । ଏହା ସ୍ୱତଃସମ୍ଭବା ।

୧୫୪—ଯେଉଁଠାରେ ଅର୍ଥଶକ୍ତିରୁ, ବାଚ୍ୟ ଅଳଙ୍କାରରୁ ଭିନ୍ନ ଅନ୍ୟ ପ୍ରତୀୟମାନ ଅଳଙ୍କାର ପ୍ରକାଶ ପାଏ, ତାହା ଅର୍ଥଶକ୍ତ୍ୟୁଦ୍ଭବ ସଂଲକ୍ଷ୍ୟକ୍ରମବ୍ୟଙ୍ଗ୍ୟଧ୍ୱନିର ଆଉ ଏକପ୍ରକାର । ଅର୍ଥାତ୍ ଅଳଙ୍କାରଧ୍ୱନି ଆଖ୍ୟା ଧାରଣ କରେ ।

୧୫୫। ତସ୍ୟ ପ୍ରବିରଳବିଷୟତ୍ୱମାଶଙ୍କ୍ୟେଦମୁଚ୍ୟତେ ।

୧୫୬। ରୂପକାଦିରଳଂକାରବର୍ଗୋ ଯୋ ବାଚ୍ୟତାଂ ଶ୍ରିତଃ ।
ସ ସର୍ବୋ ଗମ୍ୟମାନତ୍ୱଂ ବିଭ୍ରଦ୍ଭୂମ୍ନା ପ୍ରଦର୍ଶିତଃ ॥ ୨୬

୧୫୭। ଅନ୍ୟତ୍ର ବାଚ୍ୟତ୍ୱେନ ପ୍ରସିଦ୍ଧୋ ଯୋ ରୂପକାଦିରଳଂକାରଃ ସୋଽନ୍ୟତ୍ର ପ୍ରତୀୟମାନତୟା ବାହୁଲ୍ୟେନ ପ୍ରଦର୍ଶିତସ୍ତତ୍ରଭବଦ୍ଭିର୍ଭଟ୍ଟୋଦ୍ଭଟାଦିଭିଃ ।

୧୫୮। ତଥା ଚ ସସନ୍ଦେହାଦିଷୂପମାରୂପକାତିଶୟୋକ୍ତୀନାଂ ପ୍ରକାଶମାନତ୍ୱଂ ପ୍ରଦର୍ଶିତମିତ୍ୟଲଂକାରାନ୍ତରସ୍ୟ ଅଲଂକାରାନ୍ତରେ ବ୍ୟଙ୍ଗ୍ୟତ୍ୱଂ ନ ଯତ୍ନପ୍ରତିପାଦ୍ୟମ୍ ॥

୧୫୯। ଇୟତ୍ ପୁନରୁଚ୍ୟତ ଏବ :—

---

୧୫୫ — ଏତାଦୃଶ ଅଳଙ୍କାରଧ୍ୱନି ଅତ୍ୟନ୍ତ ବିରଳ ହୋଇ ପାରେ, ଏହି ଶଙ୍କାର ନିରାକରଣ ପାଇଁ କୁହାଯାଉଛି :—

୧୫୬—ଯେଉଁ ରୂପକାଦି ଅଳଙ୍କାରବର୍ଗ ବାଚ୍ୟ ଅଳଙ୍କାର ହୋଇଅଛନ୍ତି, ସେହି ସମସ୍ତ ଅଳଙ୍କାର ବ୍ୟଙ୍ଗ୍ୟ ହେଉଥିବା କଥା ପ୍ରଦର୍ଶିତ ହୋଇଅଛି ।

୧୫୭—ଏକ ସ୍ଥାନରେ ବାଚ୍ୟ ଅଳଙ୍କାର ବୋଲି ଯେଉଁ ରୂପକାଦି ମାନେ ପ୍ରସିଦ୍ଧ ହୋଇ ରହିଅଛନ୍ତି, ଅନ୍ୟସ୍ଥାନରେ ସେମାନେ ବ୍ୟଙ୍ଗ୍ୟଭାବେ ରହିଅଛନ୍ତି । ଭଟ୍ଟୋଦ୍ଭଟ ପ୍ରଭୃତି ଏହା ବହୁଳଭାବେ ଦର୍ଶାଇ ଅଛନ୍ତି ।

୧୫୮— ଉଦାହରଣ ସ୍ୱରୂପ ସନ୍ଦେହାଦି ଅଳଙ୍କାରରେ ଉପମା ରୂପକ ଅତିଶୟୋକ୍ତି ଅଳଙ୍କାରମାନେ ଗମ୍ୟଭାବେ ଥିବା ଦର୍ଶାଇଅଛନ୍ତି । ସୁତରାଂ ଏକ ଅଳଙ୍କାରରେ ଅନ୍ୟ ଅଳଙ୍କାର ବ୍ୟଙ୍ଗ୍ୟ ହେବା ଯତ୍ନସାଧ୍ୟ ନୁହେଁ ।

୧୫୯ — କିନ୍ତୁ ସେଠାରେ ଏତିକିମାତ୍ର କୁହାଯିବା ଉଚିତ ଯେ,—

୧୬୦ । ଅଲଂକାରାନ୍ତରସ୍ୟାପି ପ୍ରତୀତୌ ଯତ୍ର ଭାସତେ ।
ତତ୍ପରତ୍ୱଂ ନ ବାଚ୍ୟସ୍ୟ ନାସୌ ମାର୍ଗୋ
ଧ୍ୱନେର୍ମତଃ ॥ ୨୭

ଅଲଂକାରାନ୍ତରେଷ୍ୱନୁରଣନରୂପାଲଂକାରପ୍ରତୀତୌ ସତ୍ୟାମପି ଯତ୍ର ବାଚ୍ୟସ୍ୟ ବ୍ୟଙ୍ଗ୍ୟପ୍ରତିପାଦନୌନ୍ମୁଖ୍ୟେନ ଚାରୁତ୍ୱଂ ନ ପ୍ରକାଶତେ ନାସୌ ଧ୍ୱନେର୍ମାର୍ଗଃ ॥

୧୬୧ । ତଥା ଚ ଦୀପକାଦାବଲଂକାରେ ଉପମାୟା ଗମ୍ୟମାନତ୍ୱେଽପି ତତ୍ପରତ୍ୱେନ ଚାରୁତ୍ୱସ୍ୟାବ୍ୟବସ୍ଥାନାନ୍ନ ଧ୍ୱନିବ୍ୟପଦେଶଃ ।

୧୬୨ । ଚନ୍ଦମଊଏହିଁ ଣିସା ଣଲିଣୀ କମଲେହିଁ କୁସୁମଗୁଚ୍ଛେହିଁ ଲଆ
ହଂସେହିଁ ସରଅସୋହା କବ୍ବକହା ସଜ୍ଜଣେହିଁ
କରଇ ଗରୁଈ ॥

---

୧୬୦—ଯେଉଁଠାରେ ଅନ୍ୟ ବ୍ୟଙ୍ଗ୍ୟ ଅଲଂକାର ପ୍ରତୀତ ହେଉଥିଲେ ମଧ୍ୟ ବାଚ୍ୟ ଅର୍ଥର ବ୍ୟଙ୍ଗ୍ୟପରତା (ତତ୍ପରତ୍ୱଂ) ନାହିଁ, ଅର୍ଥାତ୍ ବାଚ୍ୟ ସ୍ୱୟଂ ଗୁଣୀଭୂତ ହୋଇ ବ୍ୟଙ୍ଗ୍ୟକୁ ପ୍ରକାଶ କରୁ ନାହିଁ, ତାହା ଧ୍ୱନିର ମାର୍ଗ ନୁହେ ।

କାରିକାର ସ୍ପଷ୍ଟ ଅର୍ଥ—ରୂପକାଦି ବାଚ୍ୟ ଅଲଙ୍କାରରୁ ଅନ୍ୟ ଉପମାଦି ବ୍ୟଙ୍ଗ୍ୟ ଅଲଙ୍କାର ପ୍ରତୀତ ହେଉଥିଲେ ମଧ୍ୟ ଯେଉଁଠି ବାଚ୍ୟ ବ୍ୟଙ୍ଗ୍ୟ ଅଲଙ୍କାରର ପ୍ରତିପାଦନ ପାଇଁ ଉନ୍ମୁଖ ହୋଇ ରମଣୀୟ ହୋଇ ନାହିଁ, ସେଠାରେ ଅଲଙ୍କାର ଧ୍ୱନି ନାହିଁ ।

୧୬୧—ତେଣୁ ଦୀପକାଦି ଅଲଙ୍କାରରେ ଉପମା ଅଲଙ୍କାର ଗମ୍ୟ ହେଉଥିଲେ ସୁଦ୍ଧା, ଏହି ଗମ୍ୟ ଅଲଙ୍କାର ଦ୍ୱାରା କାବ୍ୟର ଚାରୁତା ସମ୍ପାଦିତ ହେଉ ନ ଥିବାରୁ ତାହା ଧ୍ୱନି ସଂଜ୍ଞା ବହନ କରି ପାରେ ନାହିଁ ।

୧୬୨—ଚନ୍ଦ୍ରକିରଣରେ ନିଶା, ପଦ୍ମପୁଷ୍ପ ଦ୍ୱାରା ପଦ୍ମିନୀଲତା, ଫୁଲପେନ୍ଥା ଦ୍ୱାରା ଲତା, ହଂସମାନଙ୍କ ଦ୍ୱାରା ଶରତ୍‌କାଳର ଶୋଭା ଓ ସଜ୍ଜନମାନଙ୍କ

(ଚନ୍ଦ୍ରମୟୂଖୈର୍ନିଶା, ନଳିନୀକମଳୈଃ, କୁସୁମଗୁଚ୍ଛୈର୍ଲତା
ହଂସୈଃଶାରଦଶୋଭା, କାବ୍ୟକଥା ସଜ୍ଜନୈଃ କ୍ରିୟତେ
ଗୁର୍ବୀ ॥) ଇତି ଛାୟା ।

୧୬୩। ଇତ୍ୟାଦାବୁପମାଗର୍ଭତ୍ୱେଽପି ସତି ବାଚ୍ୟାଲଂକାର-
ମୁଖେନୈବ ଗୁରୁତ୍ୱଂ ବ୍ୟବତିଷ୍ଠତେ, ନ ବ୍ୟଙ୍ଗ୍ୟାଲଂ-
କାର ତାତ୍ପର୍ଯ୍ୟେଣ । ତସ୍ମାତ୍ ତତ୍ର ବାଚ୍ୟାଲଂକାର
ମୁଖେନୈବ କାବ୍ୟବ୍ୟପଦେଶୋ ନ୍ୟାଯ୍ୟଃ । ଯତ୍ର ତୁ
ବ୍ୟଙ୍ଗ୍ୟପରତ୍ୱେନୈବ ବାଚ୍ୟସ୍ୟ ବ୍ୟବସ୍ଥାନଂ ତତ୍ର-
ବ୍ୟଙ୍ଗ୍ୟମୁଖେନୈବ ବ୍ୟପଦେଶୋ ଯୁକ୍ତଃ ।

୧୬୪। ଯଥା—
ପ୍ରାପ୍ତଶ୍ରୀରେଷକସ୍ମାତ୍ ପୁନରପି ମୟି ତଂ
ମନ୍ଥଖେଦଂ ବିଦଧ୍ୟା-
ନ୍ନିଦ୍ରାମପ୍ୟସ୍ୟ ପୂର୍ବାମନଳସମନସୋ
ନୈବ ସମ୍ଭାବୟାମି ।

---

ଦ୍ୱାରା କାବ୍ୟକଥା ସମୃଦ୍ଧ ହୁଏ । ଏ ଶ୍ଳୋକରେ ଦୀପକ ବାଚ୍ୟାଳଙ୍କାର ଉପମା ବ୍ୟଙ୍ଗ୍ୟ ।

୧୬୩—"ଚନ୍ଦ୍ରମୟୂଖୈଃ" ଇତ୍ୟାଦି ଶ୍ଳୋକ ସ୍ଥଳରେ ଉପମା ବ୍ୟଙ୍ଗ୍ୟ ହେଉଥିଲେ ମଧ୍ୟ ବାଚ୍ୟ ଅଳଙ୍କାର ମୁଖରେ ଗୁରୁତା ବ୍ୟବସ୍ଥିତ ହେଉଅଛି । କିନ୍ତୁ ବ୍ୟଙ୍ଗ୍ୟ ଉପମା ଅଳଙ୍କାରର ଗୁରୁତା ନାହିଁ । ଏଣୁ ଏଠାରେ ବାଚ୍ୟ ଅଳଙ୍କାର ନାମରେ କାବ୍ୟଟି ଅଭିହିତ ହେବ । କିନ୍ତୁ ଯେଉଁଠାରେ ବାଚ୍ୟ ଅଳଙ୍କାର ବ୍ୟଙ୍ଗ୍ୟପର ହୋଇ ରହିଥିବ, ସେଠାରେ ବ୍ୟଙ୍ଗ୍ୟ ଅଳଙ୍କାର ନାମରେ କାବ୍ୟ ଅଭିହିତ ହେବା ଉଚିତ ।

୧୬୪—ଅଳଙ୍କାରରୁ ଅଳଙ୍କାର ଧ୍ୱନିର ଉଦାହରଣ ଯଥା—
ସମୁଦ୍ର ପରିସରବର୍ତ୍ତୀ କୌଣସି ବଳାଙ୍କ ପ୍ରୀତି ପାଇଁ କେହି ସ୍ତାବକ ସମୁଦ୍ରର ଚନ୍ଦ୍ରୋଦୟ ହେତୁକ ବା ସୈନ୍ୟାବଗାହନ ହେତୁକ କମ୍ପକୁ ରାଜଭୀତିରୁ

ସେତୁଂ ବଧ୍ନାତି ଭୂୟଃ କିମିତି ଚ ସକଳ-
ଦ୍ୱୀପନାଥାନୁଯାତ-
ସ୍ତ୍ୱୟ୍ୟାୟାତେ ବିତର୍କାନିତି ଦଧତ ଇବାଭାତି
କମ୍ପଃ ପୟୋଧେଃ ॥

୧୬୫। ଯଥା ବା ମମୈବ—
ଲାବଣ୍ୟକାନ୍ତିପରିପୂରିତଦିଙ୍ମୁଖେଽସ୍ମିନ୍
ସ୍ମେରେଽଧୁନା ତବ ମୁଖେ ତରଳାୟତାକ୍ଷି ! ।

---

କାତ କମ୍ପ ବୋଲି ବର୍ଣ୍ଣନା କରି କହୁଅଛି :—ଏ ରାଜା (ସନ୍ଦେହରେ ନାରାୟଣ) ତ ଲକ୍ଷ୍ମୀ (ରାଜଲକ୍ଷ୍ମୀ ଓ ଲକ୍ଷ୍ମୀ)ଙ୍କୁ ପାଇ ସାରିଛନ୍ତି । ପୁନର୍ବାର କାହିଁକି ମୋତେ ମନ୍ଥନ ଦ୍ୱାରା ପୀଡ଼ା ଦେବେ । ଏ ତ ସର୍ବଦା ନିରଳସ । ପୂର୍ବରୁ କେବେହେଲେ ତ ଏହାଙ୍କର ନିଦ୍ରାଥିବା ସମ୍ଭବ ହେଉ ନାହିଁ । ସୁତରାଂ ଶୋଇବାକୁ ଆସିବା ମଧ୍ୟ ସମ୍ଭବ ନୁହେ । ଏ ତ ସମସ୍ତ ଦ୍ୱୀପର ରାଜାମାନଙ୍କ ଦ୍ୱାରା ଅନୁଗତ ହୋଇଅଛନ୍ତି (ଅର୍ଥାତ୍ ସମୁଦ୍ରପାରି କୌଣସି ରାଜ୍ୟ ତ ଏହାଙ୍କର ଅନର୍ଜିତ ହୋଇ ନାହିଁ ।) ଆଉ କାହିଁକି ସେତୁବନ୍ଧ ବାନ୍ଧିବେ ? ହେ ରାଜନ୍ ! ତୁମ୍ଭେ ଆସି ପହଞ୍ଚିବାରୁ ସମୁଦ୍ର ଏହିପରି ନାନା ତର୍କଣା କରି କମ୍ପିତ ହେଉଅଛି ।

ରାଜାଙ୍କଠାରେ ନାରାୟଣଙ୍କ ସନ୍ଦେହପୂର୍ବକ ଉତ୍ପ୍ରେକ୍ଷିତ ହେଉଥିବାରୁ ଏଠାରେ ବାଚ୍ୟ ସନ୍ଦେହୋତ୍ପ୍ରେକ୍ଷା ସଙ୍କର ଅଳଙ୍କାର । ଏହି ବାଚ୍ୟ ସଙ୍କରାଲଙ୍କାର ଦ୍ୱାରା "ରାଜା ନାରାୟଣ ସ୍ୱରୂପ" ବୋଲି ରୂପକ ଅଳଙ୍କାର ବ୍ୟଙ୍ଗ୍ୟ ହୋଇଅଛି । ସୁତରାଂ ଏଠାରେ ରୂପକାଲଙ୍କାର ଧ୍ୱନି ।

୧୬୫—ଅଥବା ମୋ ନିଜ କବିତା – ନାୟକ ନାୟିକାର ଶ୍ଳାଘା କରୁଅଛି :—ହେ ତରଳାକ୍ଷି ! ଲାବଣ୍ୟମୟ କାନ୍ତିରେ ଦିଗନ୍ତକୁ ପୂର୍ଣ୍ଣ କରିଦେଉଥିବା ତୁମ୍ଭର ଏହି ବିକାଶଶୀଳ (ସ୍ମେର) ମୁଖ ଥାଉଁ ଥାଉଁ ଅଧୁନା ଏ ସମୁଦ୍ର ଟିକିଏ ହେଲେ ସୁଦ୍ଧା କ୍ଷୋଭପ୍ରାପ୍ତ ହେଉ ନାହିଁ । ତେଣୁ ମୁଁ ଜାଣୁଛି ଯେ, ଏହା ପରିଷ୍କାରଭାବେ ଜଳରାଶି । (ଡଳୟୋରୈକ୍ୟଂ) ଏହା ଜଡ଼ରାଶି । ଅର୍ଥାତ୍ ସଂସାରରେ ଯେତେ ଜଡ଼ବସ୍ତୁ ଅଛି ତନ୍ମଧ୍ୟରେ ଏ ଅଧିକ ଜଡ଼ ।

କ୍ଷୋଭଂ ଯଦେଷ ନ ମନାଗପି ତେନ ମନ୍ୟେ
ସୁବ୍ୟକ୍ତମେବ ଜଳରାଶିରୟଂ ପୟୋଧିଃ ॥

୧୨୬। ଇତ୍ୟେବଂବିଧେ ବିଷୟେଽନୁରଣନରୂପରୂପକାଶ୍ରୟେଣ କାବ୍ୟଚାରୁତ୍ୱବ୍ୟବସ୍ଥାନାଦ୍ରୂପକଧ୍ୱନିରିତି ବ୍ୟପଦେଶୋ ନ୍ୟାଯ୍ୟଃ ॥

୧୨୭। ଉପମାଧ୍ୱନିର୍ଯଥା—
ବୀରାଣଂ ରମଇ ଘୁସିଣରୁଣମ୍ମି ଣ ତହା ପିଆଥଣୁଚ୍ଛଙ୍ଗେ ।
ଦିଠ୍ଠୀ ରିଉଗଅକୁମ୍ଭତ୍ଥଲମ୍ମି ଜହ ବହଲସିନ୍ଦୂରେ ॥

---

ଏ ଶ୍ଳୋକରେ ବାଚ୍ୟାଲଙ୍କାର ଶ୍ଳେଷ । ଅର୍ଥଶକ୍ତି ବଳରୁ ନାୟିକା ମୁଖରେ ଚନ୍ଦ୍ରତ୍ୱ ଆରୋପ କରାଯାଉଥିବାରୁ ରୂପକାଳଙ୍କାର ବ୍ୟଙ୍ଗ୍ୟ । ନାୟିକା ମୁଖଚନ୍ଦ୍ର ଦର୍ଶନରେ ଆଦୌ କ୍ଷୁବ୍ଧ ନ ହେବା ସମୁଦ୍ରର ଅତ୍ୟନ୍ତ ଜଡ଼ତା ଏହିଭଳି ଭାବଗର୍ଭିକ ବ୍ୟଙ୍ଗ୍ୟ ରୂପକାଳଙ୍କାର ବାଚ୍ୟ ଅଳଙ୍କାରଠାରୁ ଅଧିକ ରମଣୀୟ, ଏଣୁ ଏଠାରେ ରୂପକଧ୍ୱନି ।

ଅଥବା ସନ୍ଧ୍ୟା କାଳୀନ ଅରୁଣଶଶଧାରୀ 'ଚନ୍ଦ୍ରମଣ୍ଡଳ ଦର୍ଶନରେ ତରଳ ହେଉଥିବା ସମୁଦ୍ର, ଚନ୍ଦ୍ରଠାରୁ ବହୁଗୁଣରେ ଅଧିକ ଜଗତ୍କାନ୍ତି ବିସ୍ତାରକାରୀ ବିକାଶଶୀଳ କାନ୍ତାମୁଖ ଦର୍ଶନରେ ଆଦୌ ତରଳ ନ ହେବା ହେତୁ ସେ ଅତ୍ୟନ୍ତ ଜଡ଼ । ଏହିପରି ଅର୍ଥରେ ବ୍ୟତିରେକ ଧ୍ୱନି ହେବ ।

୧୨୬—ପ୍ରାପ୍ତଶ୍ରୀ ଓ ଲାବଣ୍ୟକାନ୍ତି ଇତ୍ୟାଦି ସ୍ଥଳମାନଙ୍କରେ ସଂଲକ୍ଷ୍ୟକ୍ରମ ବ୍ୟଙ୍ଗ୍ୟ ରୂପକାଳଙ୍କାର ଦ୍ୱାରା କାବ୍ୟର ଚାରୁତା ସମ୍ପାଦିତ ହେଉଥିବାରୁ ଏହାକୁ ରୂପକଧ୍ୱନି ବୋଲି କୁହାଯିବ ।

୧୨୭—ଉପମା ଧ୍ୱନିର ଉଦାହରଣ ଯଥା—

ବୀରମାନଙ୍କର ନୟନ ଯୁଗଳ ଶତ୍ରୁ ଗଜମାନଙ୍କର ସିନ୍ଦୂର ବହଳ କୁମ୍ଭସ୍ଥଳରେ ଯଥା ଆସକ୍ତ ରହେ, ନିଜ ପ୍ରିୟାର କୁଙ୍କୁମଲିପ୍ତ ସ୍ତନ ଉପରେ ତଥା ଆସକ୍ତ ରହେ ନାହିଁ ।

(ବୀରାଣାଂ ରମତେ ଘୁସଣାରୁଣେ ନ ତଥା ପ୍ରିୟା-
ସ୍ତନୋତ୍ସଙ୍ଗେ । ଦୃଷ୍ଟୀ ରିପୁଗଜକୁମ୍ଭସ୍ଥଳେ ଯଥା ବହଳ-
ସିନ୍ଦୂରେ ॥ (ଇତି ଛାୟା) ।

୧୬୮ । ଯଥା ବା ମମୈବ . ବିଷମବାଣଲୀଳାୟାମସୁରପରା-
କ୍ରମଣେ କାମଦେବସ୍ୟ :—
ତଂ ତାଣ ସିରିସହୋଅରରଅଣାହରଣମ୍ମି
ହିଅଅମେକ୍କରସମ୍ ।
ବିମ୍ବାହରେ ପିଆଣଂ ଣିବେସିଅଂ କୁସୁମବାଣେଣ ॥
(ତତ୍ତେଷାଂ ଶ୍ରୀସହୋଦରରତ୍ନାହରଣେ
ହୃଦୟମେକରସମ୍ ।
ବିମ୍ବାଧରେ ପ୍ରିୟାଣାଂ ନିବେଶିତଂ
କୁସୁମବାଣେନ ॥) ଇତି ଛାୟା ।

---

ଏଠାରେ ବୀରମାନଙ୍କର ପ୍ରିୟାନୁରାଗିତା ସତ୍ତ୍ୱେ ଯୁଦ୍ଧ ପ୍ରତି ଭକ୍ତି ଉକ୍ତ ହେବାରୁ ବ୍ୟତିରେକାଲଙ୍କାର ବାଚ୍ୟ ହେଉଅଛି । ଏହି ବାଚ୍ୟ ବ୍ୟତିରେକ ଦ୍ୱାରା "ପ୍ରିୟା ସ୍ତନ ଗଜକୁମ୍ଭ ସଦୃଶ" ବୋଲି ଉପମାଳଙ୍କାର ଧ୍ୱନି ହେଉଅଛି ।

୧୬୮ । ଅଥବା ମୋ କୃତ ବିଷମବାଣଲୀଳାରେ କାମଦେବ ଅସୁର-ମାନଙ୍କୁ ପରାକ୍ରାନ୍ତ କରିବା ସମ୍ବନ୍ଧରେ :—

ଲକ୍ଷ୍ମୀଙ୍କ ସହୋଦର (ସମୁଦ୍ର ମନ୍ଥନ ଜାତ) ରତ୍ନମାନଙ୍କ ହରଣରେ ଏକାନ୍ତ ତତ୍ପର, ଅସୁରମାନଙ୍କ ହୃଦୟକୁ କୁସୁମବାଣ ପ୍ରିୟାମାନଙ୍କ ବିମ୍ବା-ଧରରେ (ବିନିଯୁକ୍ତ କଲା) ନିବେଶିତ କଲା ।

କୁସୁମବାଣ ଦ୍ୱାରା ଦୈତ୍ୟ ହୃଦୟର ପ୍ରିୟା ଅଧରରେ ନିବେଶନ, ଅସମ୍ବନ୍ଧେ ସମ୍ବନ୍ଧରୂପା ଅତିଶୟୋକ୍ତି । ଅତିଶୟୋକ୍ତି ଅଙ୍ଗ ହୋଇ "ଅସୁର-ମାନଙ୍କଠାରୁ କାମଦେବ ଦୁର୍ଜୟ" ଏହି ବ୍ୟତିରେକ ଅଳଙ୍କାରକୁ ସ୍ପଷ୍ଟ କରୁଅଛି । ସୁତରାଂ ଅତିଶୟୋକ୍ତି ବ୍ୟତିରେକ ସଙ୍କରରୁ "ବିମ୍ବାଧର ଶ୍ରେଷ୍ଠ ରତ୍ନ ପରି ମନୋହର" ଏହି ଉପମା ଧ୍ୱନିତ ହେଉଅଛି ।

୧୬୯ । ଆକ୍ଷେପଧ୍ୱନିର୍ଯଥା—

ସ ବକ୍ତୁମଖିଳାନ୍ ଶକ୍ତୋ ହୟଗ୍ରୀବାଶ୍ରିତାନ୍ ଗୁଣାନ୍ ।
ଯୋଽମ୍ବୁକୁମ୍ଭୈଃ ପରିଚ୍ଛେଦଂ ଜ୍ଞାତୁଂ ଶକ୍ତୋ ମହୋଦଧେଃ

୧୭୦ । ଅତ୍ରାତିଶୟୋକ୍ତ୍ୟା ହୟଗ୍ରୀବଗୁଣାନାମବର୍ଣ୍ଣନୀୟତାପ୍ରତି-ପାଦନରୂପସ୍ୟ ଅସାଧାରଣତଦ୍‌ବିଶେଷପ୍ରକାଶନପରସ୍ୟ ଆକ୍ଷେପସ୍ୟ ପ୍ରକାଶନମ୍ ।

୧୭୧ । ଅର୍ଥାନ୍ତରନ୍ୟାସଧ୍ୱନିଃ ଶବ୍ଦଶକ୍ତିମୂଳାନୁରଣନରୂପ-ବ୍ୟଙ୍ଗ୍ୟୋଽର୍ଥଶକ୍ତିମୂଳାନୁରଣରୂପବ୍ୟଙ୍ଗ୍ୟଶ୍ଚ ସମ୍ଭବତି ॥

୧୭୨ । ତତ୍ରାଦ୍ୟସ୍ୟୋଦାହରଣମ୍—

ଦେଵାଏତ୍ତମ୍ମି ଫଳେ କିଂ କୀରଇ ଏତ୍ତିଅଂ ପୁଣୋ ଭଣିମୋ ।
କଙ୍କିଲ୍ଲପଲ୍ଲଵାଃ ପଲ୍ଲଵାଣଁ ଅଣ୍ଣାଣ ଣ ସରିଚ୍ଛା ॥

---

୧୬୯ — ଆକ୍ଷେପ ଧ୍ୱନିର ଉଦାହରଣ ଯଥା—

ସେହି ଲୋକ ହୟଗ୍ରୀବଙ୍କର ଅଶେଷ ଗୁଣ କହିବାକୁ ସମର୍ଥ ହେବ, ଯେ କି ମାଠିଆରେ ସମୁଦ୍ରପାଣି ମାପି ପାରିବ ।

୧୭୦—ଏଠାରେ ଅସମ୍ବନ୍ଧ ସମ୍ବନ୍ଧରୂପ ବାଚ୍ୟ ଅତିଶୟୋକ୍ତି ଦ୍ୱାରା ହୟଗ୍ରୀବ ଗୁଣମାନେ ବର୍ଣ୍ଣନାତୀତ, ବୋଲି ତାଙ୍କ ଗୁଣର ବୈଶିଷ୍ଟ୍ୟ ପ୍ରତିପାଦନ କରା ଯାଉଛି । ଏଣୁ ଆକ୍ଷେପ ଧ୍ୱନି ।

ପୁନଶ୍ଚ ମାଠିଆରେ ସମୁଦ୍ର ମାପ ଯଥା ଦୁଷ୍କର ତଥା ହୟଗ୍ରୀବ ଗୁଣବର୍ଣ୍ଣନା ଦୁଷ୍କର । ସୁତରାଂ ଏଠାରେ ବିମ୍ବ ପ୍ରତିବିମ୍ବ ଭାବମୂଳକ ନିଦର୍ଶନା ବାଚ୍ୟାଳଙ୍କାର । ତାହା ଦ୍ୱାରା ହୟଗ୍ରୀବଙ୍କର ଗୁଣ ଲୋକୋତ୍ତର । ଏଣୁ ଆକ୍ଷେପାଳଙ୍କାର ଧ୍ୱନି ।

୧୭୧—ଅର୍ଥାନ୍ତରନ୍ୟାସ ଧ୍ୱନି ଶବ୍ଦଶକ୍ତିମୂଳ ଓ ଅର୍ଥଶକ୍ତିମୂଳ ଭେଦରେ ଦ୍ୱିଧା ।

୧୭୨—ଶବ୍ଦଶକ୍ତିମୂଳ ଅର୍ଥାନ୍ତରନ୍ୟାସ ଧ୍ୱନିର ଉଦାହରଣ ଯଥା :—

ଫଳ ତ, ଦୈବାୟତ୍ତ, ସେଥିପାଇଁ କ'ଣ କରାଯିବ; କିନ୍ତୁ ଏତିକି

(ଢୈବାୟତ୍ତେ ଫଳେ କଂ ନିଦ୍ୟତା-
ମେତାବତ୍ ପୁନର୍ଗଣାମଃ ।
ରକ୍ତାଶୋକପଲ୍ଲବାଃ ପଲ୍ଲବାନା-
ମନ୍ୟେଷାଂ ନ ସଦୃଶାଃ ॥) ଇତି ଛାୟା ।

୧୬୩। ପଦପ୍ରକାଶଶ୍ଚାୟଂ ଧ୍ୱନିରତ ବାକ୍ୟସ୍ୟାର୍ଥାନ୍ତରତାତ୍-
ପର୍ଯ୍ୟେଽପି ସତ ନ ବିରୋଧଃ ।

୧୬୪। ଦ୍ୱିତୀୟସ୍ୟ ଉଦାହରଣଂ ଯଥା—
ହିଅଅଟ୍ଠାବିଅମଣ୍ଣୁଂ ଅବରୁଣ୍ଣମୁହଂ ହିମଂ ପସାଅନ୍ତ ।
ଅବରଦ୍ଧସ୍ସ ବି ଣ ହୁ ଦେ ପହୁଜାଣଅ ରୋସିଉଁ ସକ୍କମ୍ ॥

---

ମାବ କୁହାଯାଉଛି ଯେ, ରକ୍ତଶୋକ ପଲ୍ଲବମାନେ ଅନ୍ୟ ପଲ୍ଲବମାନଙ୍କର ସମାନ ନୁହନ୍ତି ।

ଏଠାରେ ଆମ୍ବ ପଣସ ଗଛ ପରି ଅଶୋକଗଛର (ଉପାଦେୟ) ଫଳ ନାହିଁ ସତ, କିନ୍ତୁ ତା'ର ପଲ୍ଲବଗୁଡ଼ିକ ଅତ୍ୟନ୍ତ ରମଣୀୟ, ଏହା ବାଚ୍ୟ ଅର୍ଥ । ବାଚ୍ୟାର୍ଥ ବୋଧ ପରେ – ବିଦ୍ୟାପ୍ରଭୃତି ସମସ୍ତ ସାମଗ୍ରୀ ଥିଲେ ଧନାଦି ନ ମିଳିବା ଦୈବାୟତ୍ତ ଏହି ସମର୍ଥନୀୟ ବସ୍ତୁ ଫଳଦେଉଛି ପ୍ରତୀତ ହେଉଅଛି । ଏଣୁ ଏଥିରେ ଶବ୍ଦଶକ୍ତିମୂଳ ଅର୍ଥାନ୍ତରନ୍ୟାସ ଧ୍ୱନି ହେଉଅଛି ।

ଏହି ଶ୍ଳୋକ ବାକ୍ୟରୁ ଅନ୍ୟ ଏକ ଅର୍ଥ ବାହାରୁଛି । ଅପ୍ରସ୍ତୁତ ଅଶୋକ ବର୍ଣ୍ଣନରୁ ପ୍ରସ୍ତୁତ ଗୁଣୀ ଦରିଦ୍ର ବିଷୟ ପ୍ରତୀତ ହୋଇ ବାଚ୍ୟ ଅପ୍ରସ୍ତୁତ ପ୍ରଶଂସା ଅଳଙ୍କାରକୁ ସ୍ଫୁଟ କରୁଅଛି ।

୧୬୩—ସୁତରାଂ ଏଥିରେ ପଦଗତ ଅର୍ଥାନ୍ତରନ୍ୟାସ ଧ୍ୱନି ସହ ବାକ୍ୟଗତ ବାଚ୍ୟ ଅପ୍ରସ୍ତୁତ ପ୍ରଶଂସାର ବିରୋଧ ନାହିଁ । ବାଚ୍ୟ ଅଳଙ୍କାର ଅପେକ୍ଷା ବ୍ୟଙ୍ଗ୍ୟ ଅଳଙ୍କାରରେ ଅଧିକ ଗୁରୁତା ଥିବାରୁ ଏଠାରେ ଧ୍ୱନି ବ୍ୟବହାର କରିଯାଇଛି ।

୧୬୪ – ଅର୍ଥଶକ୍ତିମୂଳ ଅର୍ଥାନ୍ତରନ୍ୟାସର ଉଦାହରଣ—ହୃଦୟ ମଧ୍ୟରେ ରାଗରଖି ନୀରସ ମୁହଁ ଦେଖାଇ ନ ଥିବା ମୋତେ ପ୍ରସନ୍ନ କରିବାକୁ ପ୍ରବୃତ୍ତ

(ହୃଦୟସ୍ଥାପିତମନ୍ୟୁମପଗତରୋଷମୁଖୀମପି ମାଂ ପ୍ରସାଦୟନ୍ । ଅପରାଦ୍ଧସ୍ୟାପି ନ ଖଲୁ ତେ ବହୁଜ୍ଞ ରୋଷିତୁଂ ଶକ୍ୟମ୍ ॥) ଇତି ଛାୟା ।

୧୭୫ । ଅତ୍ର ହି ବାଚ୍ୟବିଶେଷେଣ 'ସାପରାଧସ୍ୟାପି ବହୁଜ୍ଞସ୍ୟ କୋପଃ କର୍ତ୍ତୁମଶକ୍ୟ ଇତି ସମର୍ଥକଂ ସାମାନ୍ୟମନ୍ୱିତମନ୍ୟତାତ୍ପର୍ଯ୍ୟେଣ ପ୍ରକାଶତେ ॥

୧୭୬ । ବ୍ୟତିରେକଧ୍ୱନେରପ୍ୟୁଭୟରୂପଃ' ସମ୍ଭବତି, ତତ୍ରାଦ୍ୟସ୍ୟୋଦାହରଣଂ ପ୍ରାକ୍ ପ୍ରଦର୍ଶିତମେବ ।

୧୭୭ । ଦ୍ୱିତୀୟସ୍ୟୋଦାହରଣଂ ଯଥା—
ଜାଏଜ୍ଜ ବଣୁଦ୍ଦେସେ ଖୁଜ୍ଜବ୍ବିଅ ପାଅବୋ ଘଡ଼ିଅବତ୍ତୋ ।
ମା ମାଣୁସମ୍ମି ଲୋଏ ତାଏକ୍କରସେ ଦରିଦ୍ଦୋ ଅ ॥

---

ହୋଇଥିବା ହେ ବହୁଜ୍ଞ ! ତୁମ୍ଭେ (ଯେତେ) ଦୋଷ କରିଥିଲେ ମଧ୍ୟ ତୁମ୍ଭ ଉପରେ ମୋର ରାଗିବା ଉଚିତ ନୁହେ ।

୧୭୫—ଏ ଶ୍ଳୋକରେ ହେ ବହୁଜ୍ଞ ! ତୁମ୍ଭର ଅପରାଧ ଥିଲେ ମଧ୍ୟ ତୁମ୍ଭଠାରେ ରାଗିବା ଉଚିତ ନୁହେ, ଏତାଦୃଶ ବାଚ୍ୟ ବିଶେଷ ଦ୍ୱାରା ଅପରାଧ ଥିଲେ ସୁଦ୍ଧା ବହୁଜ୍ଞଠାରେ କୋପ ଉଚିତ ନୁହେ, ଏହିପରି ବହୁଜ୍ଞ ସାମାନ୍ୟରୂପ ଗମ୍ୟ ଅର୍ଥ ସମର୍ଥିତ ହେଉଅଛି । ସୁତରାଂ ଏଠାରେ ଅର୍ଥଶକ୍ତିମୂଳ—ଅର୍ଥାନ୍ତରନ୍ୟାସ ଅଳଙ୍କାର ।

୧୭୬—ବ୍ୟତିରେକ ଧ୍ୱନି ମଧ୍ୟ ଶବ୍ଦଶକ୍ତିମୂଳ ଓ ଅର୍ଥଶକ୍ତିମୂଳ ଭେଦରେ ଦୁଇପ୍ରକାର ହୋଇ ପାରେ । ଶବ୍ଦଶକ୍ତିମୂଳ ବ୍ୟତିରେକ ଧ୍ୱନିର ଉଦାହରଣ । "ଖଂ ଯେଽତ୍ୟୁଜ୍ଜ୍ୱଳୟନ୍ତି" ଇତ୍ୟାଦି ଶ୍ଳୋକ ପୂର୍ବରୁ କୁହାଯାଇଛି ।

୧୭୭—ଅର୍ଥଶକ୍ତିମୂଳ ବ୍ୟତିରେକ ଧ୍ୱନିର ଉଦାହରଣ ଯଥା—
ଦରିଦ୍ର ବଦାନ୍ୟର ଉକ୍ତି—ଜଙ୍ଗଲରେ କୁଜା, ଲଣ୍ଡା (ଘଟିତ ପତ୍ର) ଗଛ ହେବ ପଛେ, ମନୁଷ୍ୟ ସମାଜରେ ଦାନମନା ଦରିଦ୍ର ହେବ ନାହିଁ ।

(ଜ୍ୟାୟସ୍ସୁ ବନୋଦ୍ଦେଶେ କୁବ୍ଜ ଇବ ପାଦପୋଽଘଟିତ-
ପତ୍ରଃ । ମା ମାନୁଷେ ଲୋକେ ତ୍ୟାଗୈକରସୋ
ଦରିଦ୍ରଶ୍ଚ) ଇତି ଛାୟା ।

୧୬୮। ଅତ୍ର ହି ତ୍ୟାଗୈକରସସ୍ୟ ଦରିଦ୍ରସ୍ୟ ଜନ୍ମାନଭିନନ୍ଦନଂ
ଘଟିତପତ୍ରକୁବ୍ଜପାଦପଜନ୍ମାଭିନନ୍ଦନଂ ଚ ସାକ୍ଷାତ୍ ଶବ୍ଦ-
ବାଚ୍ୟମ୍ । ତଥାବିଧାଦପି ପାଦପାତ୍ତାଦୃଶସ୍ୟ ପୁଂସ
ଉପମାନୋପମେୟତ୍ୱପ୍ରତୀତିପୂର୍ବକଂ ଶୋଚ୍ୟତାୟାମା-
ଧିକ୍ୟଂ ତାତ୍ପର୍ଯ୍ୟେଣ ପ୍ରକାଶୟତି ॥

୧୬୯। ଉତ୍ପ୍ରେକ୍ଷାଧ୍ୱନି ର୍ଯଥା—
ଚନ୍ଦନାସକ୍ତଭୁଜଗ-ନିଃଶ୍ୱାସାନଳମୂର୍ଚ୍ଛିତଃ ।
ମୂର୍ଚ୍ଛୟତ୍ୟେଷ ପଥିକାନ୍ ମଧୌ ମଳୟମାରୁତଃ ॥

---

· (ଜଙ୍ଗଲରେ ବଡ଼ ବଡ଼ ଗଛ ଥିବାରୁ କେହି ଲଣ୍ଡା କୁଜା ଗଛର ଗ୍ଛାଇ ଖୋଜିବେ ନାହିଁ । ଏଭଳି ଗଛର ପୁଷ୍ପ ଫଳାଦି ସର୍ବଦା ଅସମ୍ଭବ । ସୁତରାଂ ତାହା କେବଳ କୋଇଲି ଯୋଗ୍ୟ ହୋଇ ପାରେ ।

୧୬୮—କୁଜା ଲଣ୍ଡା ବୃକ୍ଷ ଜନ୍ମକୁ ଅଭିନନ୍ଦନ କରିବା ଓ ବଦାନ୍ୟ ଦରିଦ୍ର ଜନ୍ମକୁ ଅଭିନନ୍ଦନ ନ କରିବା ହେଉଛି ବାଚ୍ୟ ଅର୍ଥ, ତହିଁରୁ ବଦାନ୍ୟ ଦରିଦ୍ର ହେବା ଅପେକ୍ଷା ଏତାଦୃଶ କୁଜା ଲଣ୍ଡା ଗଛ ହେବା ଶ୍ରେୟସ୍କର । ଏହିପରି ସାମ୍ୟ ପ୍ରତୀତିପୂର୍ବକ ମନୁଷ୍ୟ ଜନ୍ମର ଶୋଚ୍ୟତାଧିକ୍ୟ ପ୍ରତିପାଦିତ ହୋଇଥିବାରୁ ବ୍ୟତିରେକ ଅଳଙ୍କାର ଧ୍ୱନିତ ହେଉଅଛି । ଶବ୍ଦମାନଙ୍କର ପରିବର୍ତ୍ତନରେ ମଧ୍ୟ ଏହି ଧ୍ୱନି ରହି ଥିବାରୁ ଏହା ଅର୍ଥଶକ୍ତିମୂଳ ବ୍ୟତିରେକ ଧ୍ୱନି । (ଏ ଶ୍ଳୋକରେ ବାଚ୍ୟ ଅଳଙ୍କାର ନାହିଁ ।)

୧୬୯—ଉତ୍ପ୍ରେକ୍ଷା ଧ୍ୱନିର ଉଦାହରଣ—

ଚନ୍ଦନ ଗଛରେ ଆସକ୍ତଥିବା ସର୍ପମାନଙ୍କର ନିଃଶ୍ୱାସ ପବନରେ ମୂର୍ଚ୍ଛିତ (ଏକପକ୍ଷରେ ବର୍ଦ୍ଧିତ ଅନ୍ୟପକ୍ଷରେ ମୂର୍ଚ୍ଛନା ପ୍ରାପ୍ତ) ମଳୟ ପବନ ବସନ୍ତ କାଳରେ ପଥିକ (ବିଦେଶୀ) ମାନଙ୍କୁ ମୂର୍ଚ୍ଛିତ କରୁଅଛି ।

୧୮୦। ଅତ୍ର ହି ମଧୌ ମଳୟମାରୁତସ୍ୟ ପଥିକମୂର୍ଚ୍ଛାକାରିତ୍ୱଂ ମନ୍ମଥୋନ୍ମାଥଦାୟିତ୍ୱେନୈବ, ତତ୍ତୁ ଚନ୍ଦନାସକ୍ତଭୁଜଗନିଃଶ୍ୱାସାନଳମୂର୍ଚ୍ଛିତତ୍ୱେନୋତ୍ପ୍ରେକ୍ଷିତମିତ୍ୟୁତ୍ପ୍ରେକ୍ଷା ସାକ୍ଷାଦନୁକ୍ତାପି ବାକ୍ୟାର୍ଥସାମର୍ଥ୍ୟାଦନୁରଣନରୂପା ଲକ୍ଷ୍ୟତେ ॥

୧୮୧। ନଚୈବଂବିଧେ ବିଷୟେ ଇବାଦ ଶବ୍ଦ ପ୍ରୟୋଗମନ୍ତରେଣାସମ୍ବଦ୍ଧତୈବେତି ଶକ୍ୟଂ ବକ୍ତୁଂ, ଗମକତ୍ୱାଦନ୍ୟତ୍ରାପି ତଦପ୍ରୟୋଗେ ତଦାର୍ଥାବଗତିଦର୍ଶନାତ୍ ॥

---

୧୮୦—ଏଠାରେ ବସନ୍ତ ଋତୁରେ ମଳୟ ପବନ ଦ୍ୱାରା ପଥିକମାନଙ୍କ କାମୋନ୍ମାଦନାକୁ ପଥିକମାନଙ୍କର ମୂର୍ଚ୍ଛା ବୋଲି କୁହାଯାଉଛି। ମଳୟ ପବନର ଏ ଯେଉଁ ମୂର୍ଚ୍ଛାକାରିତା ଗୁଣ ତା'ର ହେତୁ-ରୂପେ ଚନ୍ଦନବୃକ୍ଷସ୍ଥ ଭୁଜଗ ନିଃଶ୍ୱାସ ଉତ୍ପ୍ରେକ୍ଷିତ ହୋଇଅଛି। ଏଠାରେ ଉତ୍ପ୍ରେକ୍ଷା ଇବ ପ୍ରଭୃତି ବାଚକ ଶବ୍ଦମାନଙ୍କ ଦ୍ୱାରା ସାକ୍ଷାତରେ ଉକ୍ତ ନ ହୋଇ ବାକ୍ୟାର୍ଥ ସାମର୍ଥ୍ୟରୁ ଅନୁରଣନ ବ୍ୟଙ୍ଗ୍ୟରୂପେ, ପ୍ରତୀତ ହେଉଅଛି। ବାଚ୍ୟାର୍ଥ ଅପେକ୍ଷା ଏଥିରେ ଅଧିକ ଚାରୁତା ପ୍ରକାଶ ପାଉଥିବାରୁ ଏହା ଧ୍ୱନି।

୧୮୧—ଏତାଦୃଶସ୍ଥଳରେ ଇବାଦି ବାଚକ ପ୍ରୟୋଗ ନ କଲେ ବାକ୍ୟ ଅସମ୍ବଦ୍ଧ ହୋଇଯିବ, ଏଣୁ ଇବାଦି ବାଚକ ପଦ ଅଧ୍ୟାହାର କରି ନିଶ୍ଚୟ ଅର୍ଥ କରିବାକୁ ହେବ। ସୁତରାଂ ଏହା ବାଚ୍ୟ ପ୍ରତୀୟମାନୋତ୍ପ୍ରେକ୍ଷା ଅଳଙ୍କାର, କିନ୍ତୁ ଧ୍ୱନି ନୁହେ, ଏପରି କୁହାଯାଇ ନ ପାରେ। ଯେଣୁ ଅନ୍ୟ ଉଦାହରଣମାନଙ୍କରେ ମଧ୍ୟ ଇବାଦିର ପ୍ରୟୋଗ ନ ଥାଇ ଇବାଦି ଅର୍ଥ ପ୍ରତୀତ ହୋଇ ବାକ୍ୟାର୍ଥ ସୁସମ୍ବଦ୍ଧ ହେବାର ପ୍ରମାଣ ମିଳୁଅଛି। (ସଂକ୍ଷେପରେ ଜାଣିବାକୁ ହେବ ଯେ,—ଯେଉଁଠି ଉତ୍ପ୍ରେକ୍ଷଣ ବିନା ବାକ୍ୟର ବିଶ୍ରାମ ହୁଏ ନାହିଁ ତାହା ପ୍ରତୀୟମାନୋତ୍ପ୍ରେକ୍ଷାଳଙ୍କାର। ଯେଉଁଠି ଉତ୍ପ୍ରେକ୍ଷଣ ବିନା ବାକ୍ୟର ବିଶ୍ରାନ୍ତି ହୁଏ ଓ ବାକ୍ୟାର୍ଥରୁ ଉତ୍ପ୍ରେକ୍ଷା ଅବଗତ ହୁଏ ତାହା ଉତ୍ପ୍ରେକ୍ଷା ଧ୍ୱନି।)

୧୮୨ । ଯଥା—

ଈସାକଲୁସସ୍ସ ବି ତହ୍ନ ମୁହସ୍ସ ଣଂ ଏସ ପୁଣ୍ଣି ମାଚନ୍ଦୋ ।
ଅଜ୍ଜ ସରିସତ୍ତଣଂ ପାବିଊଣ ଅଙ୍ଗେ ଚ୍ଚିଅ ଣ ମାଇ ॥
( ଈର୍ଷ୍ୟାକଳୁଷସ୍ୟାପି ତବ ମୁଖସ୍ୟ ନନ୍ୱେଷ ପୂର୍ଣ୍ଣିମା-
ଚନ୍ଦ୍ରଃ । ଅଦ୍ୟ ସଦୃଶତ୍ୱଂ ପ୍ରାପ୍ୟାଙ୍ଗ ଏବ ନ ମାତି )

ଇତି ଛାୟା ।

୧୮୩ । ଯଥା ବା—

ତ୍ରାସାକୁଳଃ ପରିପତନ୍ ପରିତୋ ନିକେତାନ୍
ପୁଂଭିର୍ନକୈଶ୍ଚିଦପି ଧନ୍ୱିଭିରନ୍ୱବନ୍ଧି ।

---

୧୮୨—ଉତ୍ପ୍ରେକ୍ଷା ଧ୍ୱନିର ଅନ୍ୟ ଉଦାହରଣ ଯଥା—

(ନାୟକ କୃତ ନାୟିକା ଗୁଣବାକ୍ୟ) :—ହେ ସୁନ୍ଦରି ! ହେଉଛି ଏହି ପୂର୍ଣ୍ଣିମା ଚନ୍ଦ୍ର ବର୍ତ୍ତମାନ ଈର୍ଷ୍ୟାକଳୁଷିତ (ପାଟଳବର୍ଣ୍ଣ) ତୁମ୍ଭ ମୁଖର ସାଦୃଶ୍ୟ ଲଭକରି ନିଜ ଦେହ ମଧ୍ୟରେ ସମ୍ଭାଇ ହେଉ ନାହିଁ ; ଅର୍ଥାତ୍ ଚନ୍ଦ୍ର ଆନନ୍ଦରେ ଫୁଲେଇ ହୋଇ ଦିଗ୍‌ମଣ୍ଡଳ ପୂର୍ଣ୍ଣକରୁଛି । (ଚନ୍ଦନ ତୋର ମୁଖ ସାଦୃଶ୍ୟ ଲଭକରି ପାରୁ ନ ଥିବା ଚନ୍ଦ୍ର ବର୍ତ୍ତମାନ କ୍ଷଣକ ସକାଶେ କଳୁଷିତ ମୁଖର ସାଦୃଶ୍ୟ ଲଭକଲା ଏହା ତୋ ପକ୍ଷେ ବିଧେୟ ନୁହେ ।)

ଏ ଶ୍ଳୋକରେ ଦିଗ୍‌ମଣ୍ଡଳର ଉଜ୍ଜ୍ୱଳୀକରଣ ରୂପ ପୂରଣ ସ୍ୱତଃସିଦ୍ଧ ହୋଇଥିଲେ ମଧ୍ୟ ମୁଖର ସାଦୃଶ୍ୟ ଲଭ ହେତୁରୁ ଦିଗଦିଗକୁ ପୂରଣ କରୁଛି କି ? ବୋଲି ଇବାଦି ବାଚକ ଶବ୍ଦ ବିନା ବ୍ୟଞ୍ଜନାବୃତ୍ତିରେ ଉତ୍ପ୍ରେକ୍ଷା କରି-ଯାଉଥିବାରୁ ଉତ୍ପ୍ରେକ୍ଷା ଧ୍ୱନି ।

୧୮୩—ଉତ୍ପ୍ରେକ୍ଷା ଧ୍ୱନିର ଅନ୍ୟ ଉଦାହରଣ—(ଶିଶୁପାଳ ବଧ ୫ମ ସର୍ଗ) ତ୍ରାସାକୁଳ ହୋଇ ସବୁଆଡ଼େ ବୁଲୁଥିବା ମୃଗକୁ କୌଣସି ଧନୁର୍ଦ୍ଧାରୀ ପୁରୁଷ ଅନୁଧାବନ କରି ନ ଥିଲେ ; ତଥାପି ସେ ମୃଗ, ଅଙ୍ଗନା-ମାନଙ୍କର ଆକର୍ଣ୍ଣବିସ୍ତାର ନୟନରୂପକ ବାଣରେ ନୈସର୍ଗିକରୂପେ ବଞ୍ଚିତ ହୋଇ କୁତ୍ରାପି ସ୍ଥିର ହୋଇ ରହି ପାରିଲା ନାହିଁ । ଅର୍ଥାତ୍ ପଳାୟନ କଲା ।

ତସ୍ମୌ ତଥାପି ନ ମୃଗଃ କ୍ୱଚଦଙ୍ଗନାଭି-
ରାକର୍ଣ୍ଣପୂର୍ଣ୍ଣନୟନେଷୁ ହୃତେକ୍ଷଣଶ୍ରୀଃ ॥

୧୮୪ । ଶବ୍ଦାର୍ଥବ୍ୟବହାରେ ଚ ପ୍ରସିଦ୍ଧିରେବ ପ୍ରମାଣମ୍ ॥

୧୮୫ । ଶ୍ଳେଷଧ୍ୱନି ଯଥା—

ରମ୍ୟା ଇତି ପ୍ରାପ୍ତବତୀଃ ପତାକା
ରାଗଂ ବିବିକ୍ତା ଇତି ବର୍ଦ୍ଧୟନ୍ତୀଃ ।
ଯସ୍ୟାମସେବନ୍ତ ନମଦ୍‌ବଲୀକାଃ
ସମଂ ବଧୂଭିର୍ବଲଭୀର୍ଯୁବାନଃ ॥

୧୮୬ । ଅତ୍ର ବଧୂଭିଃ ସହ ବଲଭୀରସେବନ୍ତେତି ବାକ୍ୟାର୍ଥ-
ପ୍ରତୀତେରନନ୍ତରଂ ବଧ୍ୱ ଇବ ବଲଭ୍ୟ ଇତି

---

ମୃଗର ତ୍ରାସ ଓ ଚଞ୍ଚଳତା ସ୍ୱଭାବସିଦ୍ଧ; ତେଣୁ ସେ ପଳାୟନ କଲା । କର୍ଣ୍ଣ ପର୍ଯ୍ୟନ୍ତ ଓସାର ହୋଇଥିବା ବାଣସ୍ୱରୂପ ଅଙ୍ଗନା ନେତ୍ରଦ୍ୱାରା ତା'ର ସର୍ବସ୍ୱଭୂତ ନେତ୍ରଶ୍ରୀ ନଷ୍ଟ ହେବାରୁ ସେ ପଳାୟନ କଲା କି ? ଏହି ଉତ୍ପ୍ରେକ୍ଷା ଧ୍ୱନିତ ହେଉଅଛି ।

୧୮୪—ଏହି ଶବ୍ଦର ଏହା ଅର୍ଥ; ଏହି ଅର୍ଥରେ ଏ ଶବ୍ଦର ପ୍ରୟୋଗ କରାଯିବ, ଇତ୍ୟାଦି ବିଷୟରେ ଶ୍ରୋତାମାନଙ୍କର ପ୍ରତୀତିରୂପ, ପ୍ରସିଦ୍ଧି ପ୍ରମାଣ ।

୧୮୫—ଶ୍ଳେଷଧ୍ୱନିର ଉଦାହରଣ—(ଶିଶୁପାଳ ବଧରେ ଦ୍ୱାରକା ବର୍ଣ୍ଣନା) ରମ୍ୟ ବୋଲି ପତାକା—(ବଧୂ ପକ୍ଷେ ପ୍ରସିଦ୍ଧି) ପ୍ରାପ୍ତ ହୋଇ ଅଛନ୍ତି; ଜନଗହଳଶୂନ୍ୟ ହେତୁ ଅନୁରାଗ (ବଧୂ ପକ୍ଷେ :—ସମ୍ଭୋଗ ସ୍ପୃହା) ବଢ଼ାଉଛନ୍ତି; ଏତାଦୃଶ ନମଦ୍‌ବଲ୍ଲୀକ, (ଗୃହ ପକ୍ଷେ ଛାତର ଅଗ ଲଇଁବା, ବଧୂ ପକ୍ଷେ ତ୍ରିବଳି ନତ ହେବା) ବଲଭୀମାନଙ୍କୁ ବଧୂମାନଙ୍କ ସହିତ ଯୁବକମାନେ ଯେଉଁ ଦ୍ୱାରବତୀପୁରରେ ସେବା କରୁଥିଲେ ।

୧୮୬ – ଏ ଶ୍ଳୋକରେ ବଧୂମାନଙ୍କ ସହ ବଲଭୀମାନଙ୍କୁ ସେବା କରୁଥିଲେ ବୋଲି ବାକ୍ୟାର୍ଥ ପ୍ରତୀତ ହେବା ପରେ ବଧୂ ପରି ବଲଭୀ ବୋଲି ଶ୍ଳେଷ ପ୍ରତୀତ ହେଉଅଛି । ଏହି ଶ୍ଳେଷ ଶବ୍ଦରେ ଉକ୍ତ ନ ହୋଇ ଅର୍ଥ

ଶ୍ଳେଷପ୍ରତୀତିରଶବ୍ଦାଽପ୍ୟର୍ଥସାମର୍ଥ୍ୟାତ୍ ମୁଖ୍ୟତ୍ୱେନ ବିବର୍ତ୍ତତେ ।

୧୮୭ । ଯଥାସଂଖ୍ୟଧ୍ୱନି ର୍ଯଥା—

ଅଙ୍କୁରିତଃ ପଲ୍ଲବିତଃ କୋରକିତଃ ପୁଷ୍ପିତଶ୍ଚ ସହକାରଃ ।
ଅଙ୍କୁରିତଃ ପଲ୍ଲବିତଃ କୋରକିତଃ ପୁଷ୍ପିତଶ୍ଚ ହୃଦି ମଦନଃ ॥

୧୮୮ । ଅତ୍ର ହି ଯଥୋଦ୍ଦେଶମନୂଦ୍ଦେଶେ ଯଚ୍ଚାରୁତ୍ୱମନୁରଣନରୂପଂ ମଦନବିଶେଷଣଭୂତାଙ୍କୁରିତାଦିଶବ୍ଦଗତଂ, ତନ୍ମଦନସହକାରୟୋସ୍ତୁଲ୍ୟଯୋଗିତାସମୁଚ୍ଚୟଲକ୍ଷଣାଦ୍ ବାଚ୍ୟାଦତିରିଚ୍ୟମାନମାଲକ୍ଷ୍ୟତେ ॥

---

ସାମର୍ଥ୍ୟରୁ ଅବଗତ ହୋଇ ବାଚ୍ୟାର୍ଥ ଅପେକ୍ଷା ରମଣୀୟ ହୋଇଥିବାରୁ ଏଠାରେ ଶ୍ଳେଷ ଧ୍ୱନି ।

(ଏ ଶ୍ଳୋକରେ ସମଙ୍ଗରୁ ତୁଲ୍ୟାର୍ଥ ପ୍ରତୀତ ହେଉଥିଲେହେଁ ଉକ୍ତ ସାମ୍ୟ ବୋଧ ଶ୍ଳେଷମୂଳକ ହୋଇଥିବାରୁ, ଏବଂ ଶ୍ଳେଷ ଅଭିଧାବୃତ୍ତିରେ ପ୍ରକାଶିତ ନ ହୋଇ ଅର୍ଥ ସୌନ୍ଦର୍ଯ୍ୟରୁ ଆକ୍ଷିପ୍ତ ହୋଇ ଗୁରୁତା ସମ୍ପାଦନ କରୁଥିବାରୁ ଏଠାରେ ଶ୍ଳେଷଧ୍ୱନି ହେଲା, କିନ୍ତୁ ଉପମା ଧ୍ୱନି ବୋଲି କୁହାଗଲା ନାହିଁ, ଏହା ଲୋଚନକାରଙ୍କ ସମାଧାନ ।)

୧୮୭—ଯଥାସଙ୍ଖ୍ୟ ଧ୍ୱନିର ଉଦାହରଣ ଯଥା :—
ସହକାର ତରୁ ଅଙ୍କୁରିତ, ପଲ୍ଲବିତ, କୋରକାନ୍ୱିତ ଓ ପୁଷ୍ପିତ ହେଲା ।
ହୃଦୟରେ କାମ ଅଙ୍କୁରିତ, ପଲ୍ଲବିତ, କୋରକାନ୍ୱିତ ଓ ପୁଷ୍ପିତ ହେଲା ।

୧୮୮—ଏ ଶ୍ଳୋକରେ ପ୍ରାକରଣିକ ସହକାର ଓ ମଦନ ଉଭୟଙ୍କର ଏକକର୍ମାଭିସମ୍ବନ୍ଧ ହେତୁ ତୁଲ୍ୟଯୋଗିତା ଅଳଙ୍କାର ବାଚ୍ୟ ହୋଇଅଛି । ଏବଂ ଅଙ୍କୁରିତ ପଲ୍ଲବିତ ଇତ୍ୟାଦି ପ୍ରଥମ ବାକ୍ୟର ଉଚ୍ଚାରଣ କ୍ରମରେ ଦ୍ୱିତୀୟ ବାକ୍ୟର ଉଚ୍ଚାରଣ କରାଯାଇଥିବାରୁ ଅନୁରଣନ ରୀତିରେ ଯଥାସଂଖ୍ୟ ଅଳଙ୍କାର ବ୍ୟଙ୍ଗ୍ୟ ହେଉଅଛି । ପୁନଶ୍ଚ ବାଚ୍ୟ ଅପେକ୍ଷା ବ୍ୟଙ୍ଗ୍ୟ ଅଳଙ୍କାରର ଗୁରୁତା ରହିଥିବାରୁ ଏଠାରେ ଯଥାସଂଖ୍ୟ ଧ୍ୱନି ।

୧୮୯। ଏବମନ୍ୟେଽପ୍ୟଲଂକାରା ଯଥାଯୋଗଂ ଯୋଜନୀୟାଃ।

୧୯୦। ଏବମଲଙ୍କାରଧ୍ୱନିମାର୍ଗଂ ବ୍ୟୁତ୍ପାଦ୍ୟ ତସ୍ୟ ପ୍ରୟୋଜନବତ୍ତ୍ୱଂ ଖ୍ୟାପୟିତୁମିଦମୁଚ୍ୟତେ—

୧୯୧। ଶରୀରୀକରଣଂ ଯେଷାଂ ବାଚ୍ୟତ୍ୱେ ନ ବ୍ୟବସ୍ଥିତମ୍।
ତେଽଲଂକାରାଃ ପରାଂଚ୍ଛାୟାଂ ଯାନ୍ତି ଧ୍ୱନ୍ୟଙ୍ଗତାଂ ଗତାଃ॥

୧୯୨। ଧ୍ୱନ୍ୟଙ୍ଗତା ଚୋଭାଭ୍ୟାଂ ପ୍ରକାରାଭ୍ୟାଂ ବ୍ୟଞ୍ଜକତ୍ୱେନ ବ୍ୟଂଙ୍ଗ୍ୟତ୍ୱେନ ଚ। ତତ୍ରେହ ପ୍ରକରଣାତ୍ ବ୍ୟଙ୍ଗ୍ୟତ୍ୱେନେତ୍ୟବଗନ୍ତବ୍ୟମ୍॥

---

୧୮୯—ଏହିପରି ଅନ୍ୟ ଅର୍ଥାଲଙ୍କାରମାନେ ବ୍ୟଙ୍ଗ୍ୟ ହୋଇ ପାରନ୍ତି, ଏବଂ ବ୍ୟଙ୍ଗ୍ୟ ହୋଇ ପ୍ରଧାନଭାବେ ରହିଲେ ଧ୍ୱନି ହୋଇ ପାରନ୍ତି। ତାହା ଏହି ରୀତିରେ ନିର୍ଣ୍ଣୟ କରିବାକୁ ହେବ।

୧୯୦—ଏହିପରି ଭାବରେ ଅଲଙ୍କାର ଧ୍ୱନି ପ୍ରକାରକୁ ପ୍ରତିପାଦନ କରି ତାହାର ଆବଶ୍ୟକତା ଜ୍ଞାପନ ପାଇଁ କୁହାଯାଉଛି —

୧୯୧—ଯେଉଁ ଅଲଙ୍କାରମାନେ ବାଚ୍ୟ ଅବସ୍ଥାରେ (ବାଚ୍ୟତ୍ୱେ) କାବ୍ୟର ଶରୀରମାନ ହୋଇ ପାରନ୍ତି ନାହିଁ, ଅର୍ଥାତ୍ ଶରୀରର ଶୋଭାଧାୟକ ମାତ୍ର ହୁଅନ୍ତି, ସେହି ଅଲଙ୍କାରମାନେ ଧ୍ୱନିର ଅଙ୍ଗ ହେଲେ ଶ୍ରେଷ୍ଠ ସୌନ୍ଦର୍ଯ୍ୟ ଲଭ କରନ୍ତି, ଅର୍ଥାତ୍ କାବ୍ୟର ଆତ୍ମା ହୋଇଯାନ୍ତି।

(କାବ୍ୟର ଶବ୍ଦ ଓ ଅର୍ଥ ଶରୀର, ଅଲଙ୍କାର କଟକକୁଣ୍ଡଳାଦିବତ୍ ଶରୀରାଭରଣ, ଗୁଣମାନେ ଦୟା ଦାକ୍ଷିଣ୍ୟାଦିବତ୍, ରୀତି ଅବୟବ ସଂଘଟନା ସ୍ୱରୂପ ଓ ଧ୍ୱନି ଆତ୍ମା ବୋଲି ଧ୍ୱନିକାରଙ୍କର ମତ।)

୧୯୨—ଅଲଙ୍କାରମାନେ ବ୍ୟଞ୍ଜକ ଓ ବ୍ୟଙ୍ଗ୍ୟ ଦୁଇ ପ୍ରକାରରେ ଧ୍ୱନିର ଅଙ୍ଗ ହୋଇପାରନ୍ତି, କିନ୍ତୁ ଏହି କାରିକାରେ କେବଳ ବ୍ୟଙ୍ଗ୍ୟଭାବେ ଧ୍ୱନ୍ୟଙ୍ଗ ହେଲେ ସେମାନେ ଆତ୍ମା ହେବେ ବୋଲି କୁହାଯାଇଛି।

୧୯୩। ବ୍ୟଙ୍ଗ୍ୟତ୍ୱେଽପ୍ୟଲଂକାରାଣାଂ ପ୍ରାଧାନ୍ୟବିବକ୍ଷାୟାମେବ ସତ୍ୟାଂ ଧ୍ୱନାବନ୍ତଃପାତଃ । ଇତରଥା ତୁ ଗୁଣୀଭୂତ-ବ୍ୟଙ୍ଗ୍ୟତ୍ୱଂ ପ୍ରତିପାଦୟିଷ୍ୟତେ ॥

୧୯୪। ଅଙ୍ଗିତ୍ୱେନ ବ୍ୟଙ୍ଗ୍ୟତାୟାମପି ଅଲଂକାରାଣାଂ ଦ୍ୱୟୀ ଗତିଃ, କଦାଚିତ୍ ବସ୍ତୁମାତ୍ରେଣ ବ୍ୟଜ୍ୟନ୍ତେ କଦାଚିଦଲଂକାରେଣ,

୧୯୫। ତତ୍ର—

ବ୍ୟଜ୍ୟନ୍ତେ ବସ୍ତୁମାତ୍ରେଣ ଯଦାଲଂକୃତୟସ୍ତଦା ।
ଧ୍ରୁବଂ ଧ୍ୱନ୍ୟଙ୍ଗତା' ତାସାଂ—
(ଅତହେତୁଃ) କାବ୍ୟବୃତ୍ତିସ୍ତଦାଶ୍ରୟା ॥ ୨୯ ॥

ଯସ୍ମାତ୍ତତ୍ର ତଥାବିଧବ୍ୟଙ୍ଗ୍ୟାଲଂକାରପରତ୍ୱେନୈବ କାବ୍ୟଂ ପ୍ରବୃତ୍ତମ୍ ॥

---

୧୯୩—ଅଲଙ୍କାରମାନେ କେବଳ ବ୍ୟଙ୍ଗ୍ୟ ହେଲେ ବି ଧ୍ୱନି ହେବେ ନାହିଁ । କିନ୍ତୁ ବ୍ୟଙ୍ଗ୍ୟ ହୋଇ ବାଚ୍ୟ ଅପେକ୍ଷା ଅଧିକ ଗୁରୁତା ସମ୍ପାଦନ କଲେ ଧ୍ୱନି ହେବେ । ତାହା ନ ହେଲେ ଅର୍ଥାତ୍ ବ୍ୟଙ୍ଗ୍ୟ ଅପ୍ରଧାନ ହେଲେ ଗୁଣୀଭୂତ-ବ୍ୟଙ୍ଗ୍ୟ ହେବେ ଏହା ଆଗକୁ ପ୍ରତିପାଦନ କରିବୁ ।

୧୯୪—ଅଙ୍ଗୀ (ପ୍ରଧାନ) ହୋଇ ବ୍ୟଙ୍ଗ୍ୟ ହେଉଥିବା ଅଲଙ୍କାରଗୁଡ଼ିକ ମଧ୍ୟ ଦୁଇ ପ୍ରକାର ଯଥା :—(୧) ବସ୍ତୁମାତ୍ରରୁ ବ୍ୟଙ୍ଗ୍ୟ ଓ
(୨) ଅଲଙ୍କାରରୁ ବ୍ୟଙ୍ଗ୍ୟ ।

୧୯୫—ଯେଉଁଠାରେ ବସ୍ତୁମାତ୍ରରୁ ଅଲଙ୍କାର ବ୍ୟଙ୍ଗ୍ୟ ହୁଏ, ସେଠାରେ ସେ ବ୍ୟଙ୍ଗ୍ୟ ଅଲଙ୍କାରମାନେ ନିଶ୍ଚିତଭାବେ ଧ୍ୱନି ହୁଅନ୍ତି । ଯେଣୁ ସେ ରଚନା ତଥାବିଧ ବ୍ୟଙ୍ଗ୍ୟ ଅଲଙ୍କାର ପ୍ରକାଶ ଉଦ୍ଦେଶ୍ୟରେ ହିଁ ରଚିତ ହୋଇଥାଏ ଅର୍ଥାତ୍ ସେହି ବ୍ୟଙ୍ଗ୍ୟ ହିଁ କବିର ଉଦ୍ଦେଶ୍ୟ ।

୧୯୬। ଅନ୍ୟଥା ତୁ ତଦ୍‌ବାକ୍ୟମାତ୍ରମେବ ସ୍ୟାତ୍ ॥

୧୯୭। ତାସାମେବାଲଂକୃତୀନାମ୍—
ଅଲଂକାରାନ୍ତରବ୍ୟଙ୍ଗ୍ୟଭାବେ—
ପୁନଃ, ଧ୍ୱନ୍ୟଙ୍ଗତା ଭବେତ୍ ।
ଚାରୁତ୍ୱୋତ୍କର୍ଷତୋ। ବ୍ୟଙ୍ଗ୍ୟପ୍ରାଧାନ୍ୟଂ ଯଦି ଲକ୍ଷ୍ୟତେ ॥
୩୦।

୧୯୮। ଉକ୍ତଂ ହ୍ୟେତତ୍—ଚାରୁତ୍ୱୋତ୍କର୍ଷନିବନ୍ଧନା ବାଚ୍ୟ-
ବ୍ୟଙ୍ଗ୍ୟୟୋଃ ପ୍ରାଧାନ୍ୟବିବକ୍ଷା ॥ ଇତି ।

---

୧୯୬ - ଯଦି କବି ଧ୍ୱନି ଅଭିପ୍ରାୟରେ ଲେଖି ନ ଥାଏ ତେବେ ତାହା କାବ୍ୟ ହେବ ନାହିଁ ; ସାଧାରଣ ବାକ୍ୟଟିଏ ମାତ୍ର ହେବ ।

ସ୍ୱଭାବତଃ ବାଚ୍ୟଠାରୁ ବ୍ୟଙ୍ଗ୍ୟର ଓ ବସ୍ତୁଠାରୁ ଅଲଙ୍କାରର ଚାରୁତା ଅଧିକ ହୋଇଥାଏ । ଏଣୁ ବାଚ୍ୟବସ୍ତୁ ବ୍ୟଙ୍ଗ୍ୟ ଅଲଙ୍କାରଠାରୁ କେବେ-ହେଲେ କୌଣସି ପ୍ରକାରେ ଚାରୁତାରେ ପ୍ରଧାନ ହୋଇପାରେ ନାହିଁ, କାରଣ ଅଲଙ୍କାର-ହିସାବରେ ଓ ବ୍ୟଙ୍ଗ୍ୟ ହିସାବରେ ଉଭୟଥା ସେଠାରେ ବ୍ୟଙ୍ଗ୍ୟର ପ୍ରାଧାନ୍ୟ ଥାଏ । ସୁତରାଂ ବସ୍ତୁ ଦ୍ୱାରା ପ୍ରକାଶିତ ବ୍ୟଙ୍ଗ୍ୟ ଅଲଙ୍କାର ନିଶ୍ଚିତ-ଭାବେ ଧ୍ୱନି ହୁଏ । ଅତଏବ ସେଠାରେ କୌଣସି ପ୍ରକାର ଗୁଣୀଭୂତ-ବ୍ୟଙ୍ଗ୍ୟ ଶଙ୍କା ନାହିଁ ।

୧୯୭—ଅଲଙ୍କାର ବିଶେଷରୁ ଯଦି ବ୍ୟଙ୍ଗ୍ୟ ଅର୍ଥ (ବସ୍ତୁ ବା ଅଲଙ୍କାର) ପ୍ରତୀତ ହୁଏ ପୁଣି ସେ ବ୍ୟଙ୍ଗ୍ୟ ଅର୍ଥର ଯଦି ବାଚ୍ୟଠାରୁ ଅଧିକ ଚାରୁତା ହେତୁକ ପ୍ରାଧାନ୍ୟ ଥାଏ ତେବେ ତାହା ମଧ୍ୟ ଧ୍ୱନିର ଅଙ୍ଗ ହୁଏ ଅର୍ଥାତ୍ ଧ୍ୱନି ହୁଏ ।

୧୯୮—କୁହାଯାଇଛି ଯେ, ବାଚ୍ୟ ଓ ବ୍ୟଙ୍ଗ୍ୟ ମଧ୍ୟରେ ଚାରୁତାର ଉତ୍କର୍ଷ ଦ୍ୱାରା ପ୍ରାଧାନ୍ୟ ନିରୂପିତ ହୁଏ, ଅର୍ଥାତ୍ ବାଚ୍ୟ ବା ବ୍ୟଙ୍ଗ୍ୟ ଯେଉଁ ଅର୍ଥ ଚାରୁ, ତାହାହିଁ ପ୍ରଧାନ ।

୧୯୯ । ବସ୍ତୁମାତ୍ରବ୍ୟଙ୍ଗ୍ୟତ୍ୱେ ଶ୍ଳେଷଂକାଗରାମନନ୍ତଗୋପଦର୍ଶି-
ତେଭ୍ୟ ଏବୋଦାହରଣେଭ୍ୟ ବପଃସ୍ୱ ଜନ୍ୟେଃ ।

୨୦୦ । ତଦେବମର୍ଥମାତ୍ରେଣାଲଂକାରବିଶେଷରୂପେଣ ବାଽର୍ଥେ-
ନାଽର୍ଥାନ୍ତରସ୍ୟ ଅଲଂକାରାନ୍ତରସ୍ୟ ବା ପ୍ରକାଶନେ
ଗୃରୁତ୍ୱୋଜର୍ଷନବନ୍ଧନେ ସତି ପ୍ରାଧାନ୍ୟେଽର୍ଥଶକ୍ତ୍ୟ-
ଭବାନୁରଣନରୂପବ୍ୟଙ୍ଗ୍ୟୋ ଧ୍ୱନିରବଗନ୍ତବ୍ୟଃ ॥

(ଗୁଣୀଭୂତବ୍ୟଙ୍ଗ୍ୟପ୍ରକରଣମ୍)

୨୦୧ । ଏବଂ ଧ୍ୱନେଃ ପ୍ରଭେଦାନ୍ ପ୍ରତିପାଦ୍ୟ ତଦାଭାସବିବେକଂ
କର୍ତୁମୁଚ୍ୟତେ—

୨୦୨ । ଯତ୍ର ପ୍ରତୀୟମାନୋଽର୍ଥଃ ପ୍ରମ୍ଲିଷ୍ଟତ୍ୱେନ ଭାସତେ ।
ବାଚ୍ୟସ୍ୟାଙ୍ଗତୟା ବାଽପି ନାସ୍ୟାସୌ
ଗୋଚରୋ ଧ୍ୱନେଃ ॥ ୩୧ ॥

---

୧୯୯—ଏଥିପୂର୍ବରୁ ପ୍ରଦର୍ଶିତ ("ଲାବଣ୍ୟ") ଇତ୍ୟାଦି ସ୍ଥଳରେ ବସ୍ତୁ ଦ୍ୱାରା ଅଳଙ୍କାର ବ୍ୟଙ୍ଗ୍ୟ ହେଉଅଛି । ତାହା ଅନୁସନ୍ଧେୟ ।

୨୦୦—ଏହିପରି କେବଳ ଅର୍ଥ ଦ୍ୱାରା କିମ୍ବା ଅଳଙ୍କାର ବିଶେଷ ରୂପ ଅର୍ଥ ଦ୍ୱାରା ଅନ୍ୟ ଅର୍ଥ (ବସ୍ତୁ) ବା ଅନ୍ୟ ଅଳଙ୍କାର ବ୍ୟଙ୍ଗ୍ୟ ହେଉଥିଲେ ଏବଂ ଗୁରୁତାରେ ତାହା ପ୍ରଧାନ ହୋଇଥିଲେ, ଅର୍ଥଶକ୍ତ୍ୟୁଦ୍ଭବ ଅନୁରଣନାତ୍ମକ ଧ୍ୱନି ହୁଏ ।

## ଗୁଣୀଭୂତବ୍ୟଙ୍ଗ୍ୟ ପ୍ରକରଣ

୨୦୧—ଏହିପରି ଧ୍ୱନିର ପ୍ରଭେଦ ପ୍ରତିପାଦନ କରି ଯାହା ସବୁ ବସ୍ତୁତଃ ଧ୍ୱନି ନୁହେ, ହୁଏତ ଧ୍ୱନି ପରି ଆଭାସମାନ ହୁଏ ସେହି ଧ୍ୱନ୍ୟାଭାସ ବା ଗୁଣୀଭୂତବ୍ୟଙ୍ଗ୍ୟର ବିଗ୍ରହ କରାଯାଉଛି ।

୨୦୨ – ଯେଉଁଠାରେ ବ୍ୟଙ୍ଗ୍ୟ ଅର୍ଥ ପ୍ରମ୍ଲିଷ୍ଟ ଅର୍ଥାତ୍ ଅସ୍ପଷ୍ଟଭାବେ ଭାସ-ମାନ ହୁଏ, କିମ୍ବା ବାଚ୍ୟ ଅର୍ଥର ଅଙ୍ଗ ସ୍ୱରୂପ ପ୍ରତୀତ ହୁଏ ତାହା ଧ୍ୱନି ନୁହେ'

୨୦୩। ଦ୍ୱିବିଧୋଽପି ପ୍ରତୀୟମାନଃ ସ୍ଫୁଟୋଽସ୍ଫୁଟଶ୍ଚ । ତତ୍ର ଯ ଏବ ସ୍ଫୁଟଃ ଶବ୍ଦଶକ୍ତ୍ୟାର୍ଥଶକ୍ତ୍ୟା ବା ପ୍ରକାଶତେ ସ ଏବ ଧ୍ୱନେର୍ମାର୍ଗୋ, ନେତରଃ । ସ୍ଫୁଟୋଽପି ଯୋଽ-ଭିଧେୟସ୍ୟାଙ୍ଗତ୍ୱେନ ପ୍ରତୀୟମାନୋଽବଭାସତେ, ସୋଽସ୍ୟାନୁରଣନରୂପବ୍ୟଙ୍ଗ୍ୟସ୍ୟ ଧ୍ୱନେରଗୋଚରଃ ॥

୨୦୪। ଯଥା—

କମଲା-ଅରଣ୍ଣ ମଳିଆ ହଂସା ଉଡ୍ଡାବିଆ ଣ ଅପିଉଚ୍ଛୀ ।
କେଣ ବି ଗାମତଡ଼ାଏ ଅବ୍ଭଂ ଉତ୍ତାଣଅଂ ଫଳିହମ୍ ॥
(କମଲାକରା ନ ମିଳିତା ହଂସା ଉଡ୍ଡାୟିତା ନଚ ପିତୃଷ୍ୱସଃ
କେନାପି ଗ୍ରାମତଡ଼ାଗେଽଭ୍ରମୁତ୍ତାନତଂ କ୍ଷିପ୍ତମ୍) ଇତିଚ୍ଛାୟା

୨୦୫। ଅତ୍ର ହି ପ୍ରତୀୟମାନସ୍ୟ ମୁଗ୍ଧବଧ୍ୱା ଜଳଧରପ୍ରତିବିମ୍ବ-ଦର୍ଶନସ୍ୟ ବାଚ୍ୟାଙ୍ଗତ୍ୱମେବ ।

---

୨୦୩—ବ୍ୟଙ୍ଗ୍ୟ ସ୍ଫୁଟ ଓ ଅସ୍ଫୁଟ ଭେଦରେ ଦୁଇ ପ୍ରକାର । ଶବ୍ଦଶକ୍ତି ବା ଅର୍ଥ-ଶକ୍ତିରେ ଯେଉଁ ବ୍ୟଙ୍ଗ୍ୟ ସ୍ଫୁଟଭାବେ ପ୍ରକାଶ ପାଏ ତାହା ଧ୍ୱନି ପଦବାଚ୍ୟ । ଯେଉଁ ବ୍ୟଙ୍ଗ୍ୟ ଅସ୍ଫୁଟ ଭାବେ ପ୍ରତୀତ ହୁଏ ତାହା ଧ୍ୱନି ହୁଏ ନାହିଁ । ସ୍ଫୁଟ ହେଲେ ହେଁ ଯେଉଁ ବ୍ୟଙ୍ଗ୍ୟ ଅର୍ଥ ବାଚ୍ୟର ଅଙ୍ଗ ସ୍ୱରୂପ ରହିଥାଏ, ତାହା ମଧ୍ୟ ଏହି ଅନୁରଣନରୂପ ଧ୍ୱନି ହୁଏ ନାହିଁ । କିନ୍ତୁ ଗୁଣୀଭୂତ ବ୍ୟଙ୍ଗ୍ୟ ହୁଏ ।

୨୦୪—ଯଥା :—(ଧ୍ୱନ୍ୟାଭାସର ଉଦାହରଣ) ଆଲୋ (ପିଉଷୀ) ନାନୀ, ପଦ୍ମ ମନା ସବୁ ତ ମର୍ଦ୍ଦି ହୋଇ ନାହିଁ ; ହଂସମାନେ ତ ଉଡ଼ିଯାଇ ନାହାନ୍ତି ; କିଏ ସେ କମିତି ଗାଁ ଗଡ଼ିଆରେ ମେଘଟା କୁ ଓଲଟା କରି ପକାଇଦେଲାଣି ଲୋ ;

୨୦୫—ଏ ଶ୍ଳୋକରେ ମୁଗ୍ଧା ନାୟିକାର ଗାଁ ଗଡ଼ିଆରେ ମେଘ ପ୍ରତିବିମ୍ବ ଦେଖିବା ହେଉଛି ପ୍ରତୀୟମାନ ଅର୍ଥ । ତାହା ବାଚ୍ୟ ଅର୍ଥର ଅଙ୍ଗ, (ଲୋଚନ ମତରେ ବଧୂର ମୁଗ୍ଧମାତିଶଯ୍ୟ ବ୍ୟଙ୍ଗ୍ୟ, ତାହା ବସ୍ତୁସ୍ୱ-ଭାବବର୍ଣ୍ଣନ ବାଚ୍ୟ ଅର୍ଥର ଉପସ୍କାରକରୂପେ ରହିଥିବାରୁ ବାଚ୍ୟର ଅଙ୍ଗ) ।

୨୦୬ । ଏବଂବିଧେ ବିଷୟେ ଅନ୍ୟତ୍ରାପି ଯତ୍ର ବ୍ୟଙ୍ଗ୍ୟାପେକ୍ଷୟା ବାଚ୍ୟସ୍ୟ ଗୂଢ଼ୁତ୍ୱୋତ୍କର୍ଷପ୍ରସ୍ତତ୍ୟା ପ୍ରାଧାନ୍ୟମବସୀୟତେ, ତତ୍ର ବ୍ୟଙ୍ଗ୍ୟସ୍ୟ ଅଙ୍ଗତ୍ୱେନ ପ୍ରତୀତେର୍ଧ୍ୱନେରବିଷୟତ୍ୱମ୍ ॥

୨୦୭ । ଯଥା—

ବାଣୀରକୁଡ଼ଙ୍ଗୋଡ଼୍ଡୀଣ-ସଉଣି-କୋଲାହଲଂ ସୁଣନ୍ତୀଏ ।
ଘରକମ୍ମବାବଡ଼ାଏ ବହୂଏ ସୀଅନ୍ତି ଅଙ୍ଗାଇଂ ॥
(ବାନୀରକୁଞ୍ଜୋଡ଼୍ଡୀନ-ଶକୁନକୋଲାହଳଂ ଶୃଣ୍ୱନ୍ତ୍ୟାଃ ।
ଗୃହକର୍ମବ୍ୟାପୃତାୟା ବଧ୍ୱାଃ ସୀଦନ୍ତ୍ୟଙ୍ଗାନି) ଇତିଚ୍ଛାୟା ।

୨୦୮ । ଏବଂବିଧୋ ହି ବିଷୟଃ ପ୍ରାୟେଣ ଗୁଣୀଭୂତବ୍ୟଙ୍ଗ୍ୟସ୍ୟୋଦାହରଣତ୍ୱେନ ନିର୍ଦ୍ଦେକ୍ଷ୍ୟତେ ।

---

୨୦୬—ଏହିପରି ଅନ୍ୟ ସ୍ଥଳମାନଙ୍କରେ ମଧ୍ୟ ଯେଉଁଠି ବ୍ୟଙ୍ଗ୍ୟ ଅପେକ୍ଷା ବାଚ୍ୟର ଗୂଢ଼ୁତ୍ୱ ଉତ୍କର୍ଷ ହେତୁ ପ୍ରାଧାନ୍ୟ ରହିଥାଏ, ସେଠାରେ ବ୍ୟଙ୍ଗ୍ୟ ଅଙ୍ଗଭାବେ ପ୍ରତୀତ ହେବା ହେତୁରୁ ଧ୍ୱନି ହୋଇପାରେ ନାହିଁ ।

୨୦୭—ଯଥା—ବେତ-କୁଞ୍ଜରେ ଉଡ଼ୁଥିବା ପକ୍ଷୀମାନଙ୍କର କୋଲାହଲ ଶୁଣି ଘର କାମରେ ଲଗିଥିବା ବଧୂର ଅଙ୍ଗଗୁଡ଼ିକ ଅବସନ୍ନ ହେଉଛନ୍ତି । ଏ ପଦ୍ୟରେ ସଙ୍କେତ ଦେଇଥିବା ଚୌର୍ଯ୍ୟକାମୁକ ସଂକେତ ସ୍ଥାନରେ ପହଞ୍ଚିଲ ଏହା ବ୍ୟଙ୍ଗ୍ୟ ଅର୍ଥ ।

ଗୃହକର୍ମ ବ୍ୟାପୃତା ହେତୁ ଅତ୍ୟନ୍ତ ପରାଧୀନା ଓ ବଧୂ ହେତୁ ଅତ୍ୟନ୍ତ ଲଜ୍ଜାବତୀ ଏତାଦୃଶୀ ନାୟିକାର ସମସ୍ତ ଅଙ୍ଗରେ ଅବସାଦ ଜନ୍ମିଲା, ଯାହାକି କୌଣସି ପ୍ରକାର ଘୋଡ଼ାଇ ରଖିହେବ ନାହିଁ । ଏହା ବାଚ୍ୟ ଅର୍ଥ । ବାଚ୍ୟ ଅର୍ଥଠାରୁ ବ୍ୟଙ୍ଗ୍ୟ ଅର୍ଥରେ ଅଧିକ ଗୂଢ଼ତା ନ ଥିବାରୁ ଏହା ଗୁଣୀଭୂତ-ବ୍ୟଙ୍ଗ୍ୟ ।

୨୦୮—ଏତାଦୃଶ ବିଷୟଗୁଡ଼ିକ ଗୁଣୀଭୂତ-ବ୍ୟଙ୍ଗ୍ୟରୂପରେ ପ୍ରଦର୍ଶିତ ହେବ ।

୬୦୯। ଯତ୍ର ତୁ ପ୍ରକରଣାଦ୍ୟପ୍ରତିପତ୍ତ୍ୟା ନିର୍ବାରିତବିଶେଷୋ ବାଚ୍ୟୋଽର୍ଥଃ ପୁନଃ ପ୍ରତୀୟମାନାଙ୍ଗତ୍ୱେନୈବାବ-ଭାସତେ, ସୋଽସ୍ୟୈବାନୁରଣନରୂପବ୍ୟଙ୍ଗ୍ୟସ୍ୟ ଧ୍ୱନେ-ର୍ମାର୍ଗଃ ॥

୬୧୦। ଯଥା—

ଉଚ୍ଚିଣସୁ ପଡ଼ିଅ କୁସୁମଂ ମାଧୁଣ ସେହାଲିଅଂ
ହଲିଅସୁହ୍ନେ ।
ଅହ ଦେ ବିସମବିରାବୋ ସସୁରେଣ ସୁଓ ବଲଅସଦ୍ଦୋ ॥
(ଉଚ୍ଚିନୁ ପତିତାନ କୁସୁମାନ ମା ଧୁନାଃ ଶେଫାଳିକାଂ
ହାଲିକସ୍ନୁଷେ ।
ଏଷ ତେ ବିଷମବିରାବଃ ଶ୍ୱଶୁରେଣ ଶ୍ରୁତୋ
ବଳୟଶବ୍ଦଃ) ॥ ଇତି ଛାୟା ।

୬୧୧। ଅତ୍ରହ୍ୟବିନୟପତିନା ସହ ରମମାଣା ସଖୀ ବହିଃଶ୍ରୁତ-ବଳୟକଳକଳସ୍ୟ ସଖ୍ୟା ପ୍ରତିବୋଧ୍ୟତେ । ଏତଦ-ପେକ୍ଷଣୀୟଂ ବାଚ୍ୟାର୍ଥପ୍ରତିପତ୍ତୟେ ॥ ପ୍ରତିପନ୍ନେ ଚ

---

୬୦୯—ଯେଉଁଠି ପ୍ରକରଣ ସାମର୍ଥ୍ୟ ଲିଙ୍ଗାଦି ଜ୍ଞାନ ହେତୁ ବାଚ୍ୟ ଅର୍ଥ ନିଯନ୍ତ୍ରିତ ହୋଇ ପୁନଶ୍ଚ ପ୍ରତୀୟମାନ ଅର୍ଥର ଅଙ୍ଗ ହୁଏ ତାହା ଏହି ଅନୁରଣନାତ୍ମକ ଧ୍ୱନିର ମାର୍ଗ ।

୬୧୦—ଯଥା—(ଅନୁରଣନାତ୍ମକ ଧ୍ୱନିର ଉଦାହରଣ)

ଆଲୋ ହଳିଆ ଘର ବୋହୂ ! ତଳେ ପଡ଼ିଥିବା ଗଙ୍ଗଶିଉଳି ଫୁଲ ଗୁଡ଼ିକ ତୋଳି ନେ ; ଗଙ୍ଗଶିଉଳି ଗଛକୁ ହଲାଅ ନାହିଁ । ହେଇଟି ତୋର ଖଡ଼ୁ (ବଳୟ) ଖଡ଼ ଖଡ଼ (ବିଷମଚ୍ଛେ) ଶଶୁରଙ୍କୁ ଶୁଭିଲାଣି ।

୬୧୧—ଏ ପଦ୍ୟରେ ଅବିନୀତ ସମ୍ଭୋଗକୃତ ସଖୀର ବଳୟ ଝଙ୍କାରକୁ ବାହାରୁ ଶୁଣି ପାରି ତାକୁ ସଖୀ ସାବଧାନ କରିଦେଉଛି ।

ବାଚ୍ୟାର୍ଥେ ତସ୍ୟାବ୍ଦନସ୍ୟ ପ୍ରଚ୍ଛାଦନତାପର୍ଯ୍ୟେଣାଭି-
ଧୀୟମାନତ୍ୱାତ୍ ପୁନର୍ବ୍ୟଙ୍ଗ୍ୟାଙ୍ଗତ୍ୱମେବେତ୍ୟସ୍ମିନ୍ନନୁ-
ରଣନରୂପବ୍ୟଙ୍ଗ୍ୟଧ୍ୱନାବନ୍ତର୍ଭାବଃ ॥

୨୧୨ । ଏବଂ ବିବକ୍ଷିତବାଚ୍ୟସ୍ୟ ଧ୍ୱନେସ୍ତଦାଭାସବିବେକେ
ପ୍ରସ୍ତୁତେ ସତ୍ୟବିବକ୍ଷିତବାଚ୍ୟସ୍ୟାପି ତଂ କର୍ତ୍ତୁମାହ ।—

୨୧୩ । ଅବ୍ୟୁତ୍ପତ୍ତେରଶକ୍ତେର୍ବା ନିବନ୍ଧୋ ଯଃ ସ୍ଖଲଦ୍‌ଗତେଃ ।
ଶବ୍ଦସ୍ୟ, ସ ଚ ନ ଜ୍ଞେୟଃ ସୂରିଭିର୍ବିଷୟୋ ଧ୍ୱନେଃ ॥ ୩୨ ।
ସ୍ଖଲଦ୍‌ଗତେରୁପଚରିତସ୍ୟ ଶବ୍ଦସ୍ୟାବ୍ୟୁତ୍ପତ୍ତେରଶକ୍ତେର୍ବା
ନିବନ୍ଧେ ଯଃ, ସ ଚ ନ ଧ୍ୱନେର୍ବିଷୟଃ ।

---

ଗଙ୍ଗଶିଉଳି ଗଛକୁ ଶଶୁର ଭଲ ପାଆନ୍ତି ? ହଲଇଲେ ରଗିବେ, ଏହ୍ଣ
ପ୍ରତୀୟମାନ ଅର୍ଥଟି "କସ୍ୟ ବା ନ ଭବତ" ଇତ୍ୟାଦି ସ୍ଥଳ ପରି ବାଚ୍ୟାର୍ଥ
ବୋଧ ପାଇଁ ଅପେକ୍ଷିତ ହେଉଅଛି । ବାଚ୍ୟାର୍ଥ ବୋଧ ପରେ ତାହା ପ୍ରକୃତ
ଶେଫାଲିକା କମ୍ପନ ଉଦ୍ଦେଶରେ ଉକ୍ତ ନ ହୋଇ ସଖୀର ଅବନୟ ପ୍ରଚ୍ଛାଦନ
ତାତ୍ପର୍ଯ୍ୟରେ ଉକ୍ତ ହୋଇଥିବାରୁ ଉକ୍ତ ବାଚ୍ୟ ଅର୍ଥ ପୁନଶ୍ଚ ବ୍ୟଙ୍ଗ୍ୟ ଅର୍ଥର
ଅଙ୍ଗ ହେଲା । ପର୍ଯ୍ୟନ୍ତରେ ବାଚ୍ୟ ଅର୍ଥ ଅଙ୍ଗ ଏବଂ ବ୍ୟଙ୍ଗ୍ୟ ଅର୍ଥ ପ୍ରଧାନ
ହେବାରୁ ଏଠାରେ ସଂଲକ୍ଷ୍ୟକ୍ରମବ୍ୟଙ୍ଗ୍ୟଧ୍ୱନି ।

୨୧୨—ଏହିପରି ବିବକ୍ଷିତାନ୍ୟପରବାଚ୍ୟ ଧ୍ୱନିର ଧ୍ୱନ୍ୟାଭାସ
ବିଗ୍ଭର କରି ସାରି ଅବିବକ୍ଷିତବାଚ୍ୟଧ୍ୱନିର ଧ୍ୱନ୍ୟାଭାସ ବିଗ୍ଭର କରିବା ପାଇଁ
କୁହାଯାଉଛି ।

୨୧୩—ରଚନାଜ୍ଞାନ ନ ଥାଇ (ଅବ୍ୟୁତ୍ପତ୍ତେଃ) କିମ୍ବା ରଚନା ସାମର୍ଥ୍ୟ
ନ ଥାଇ ଲାକ୍ଷଣିକ ଶବ୍ଦ (ସ୍ଖଲଦ୍‌ଗତ) ପ୍ରୟୋଗ କରାଯାଇଥିଲେ ତାହାକୁ
ପଣ୍ଡିତମାନେ ଧ୍ୱନିବୋଲି କହନ୍ତି ନାହିଁ, ଅବ୍ୟୁତ୍ପତ୍ତି ଯଥା :—ଅନୁପ୍ରାସ
ଯମକାଦି ପାଇଁ ଲାକ୍ଷଣିକ ଶବ୍ଦ ପ୍ରୟୋଗ କରିବା । ଅଶକ୍ତି ଯଥା :—ବୃତ୍ତ
ରକ୍ଷା ପାଇଁ ଲାକ୍ଷଣିକ ଶବ୍ଦ ପ୍ରୟୋଗ କରିବା ।

୨୧୪। ଯତଃ—

ସର୍ବେଷ୍ୱେବ ପ୍ରଭେଦେଷୁ ସ୍ଫୁଟତ୍ୱେନାବଭାସନମ୍ ।
ଯଦ୍‌ବ୍ୟଙ୍ଗ୍ୟସ୍ୟାଙ୍ଗିଭୂତସ୍ୟ ତତ୍‌ପୂର୍ଣ୍ଣଂ ଧ୍ୱନିଲକ୍ଷଣମ୍ ॥୩୩॥
ତଚ୍ଚୋଦାହୃତବିଷୟମେବ ॥

ଇତି ଶ୍ରୀରାଜାନକ-ଆନନ୍ଦବର୍ଦ୍ଧନାଚାର୍ଯ୍ୟ ବିରଚିତେ ଧ୍ୱନ୍ୟାଲୋକେ
ଦ୍ୱିତୀୟ ଉଦ୍ୟୋତଃ ।

---

ଅତଏବ ଧ୍ୱନିର ପ୍ରତ୍ୟେକ ପ୍ରଭେଦରେ, ଯଥା—ବିବକ୍ଷିତବାଚ୍ୟ, ଅବିବକ୍ଷିତବାଚ୍ୟ, ଅସଂଲକ୍ଷ୍ୟକ୍ରମବ୍ୟଙ୍ଗ୍ୟ, ସଂଲକ୍ଷ୍ୟକ୍ରମବ୍ୟଙ୍ଗ୍ୟ, ବସ୍ତୁଧ୍ୱନି, ଅଳଙ୍କାରଧ୍ୱନି ଇତ୍ୟାଦି ପ୍ରତ୍ୟେକ ଭେଦରେ ପ୍ରଧାନୀଭୂତ ବ୍ୟଙ୍ଗ୍ୟ ସ୍ଫୁଟ ଭାବରେ ପ୍ରକାଶ ପାଉଥିଲେ ତାହା ଧ୍ୱନି ହେବ । ଅନ୍ୟଥା ଗୁଣୀଭୂତ-ବ୍ୟଙ୍ଗ୍ୟ ହୋଇଯିବ । ଏହା ଧ୍ୱନିର ସମ୍ପୂର୍ଣ୍ଣ ଲକ୍ଷଣ । ଉକ୍ତ ଲକ୍ଷଣାନୁରୂପ ଉଦାହରଣମାନ ଦିଆଯାଇ ଅଛି ।

ଇତି ଦ୍ୱିତୀୟୋଦ୍ୟୋତଃ

---

# ତୃତୀୟୋଦ୍ୟୋତଃ

୧। ଏବଂ ବ୍ୟଙ୍ଗ୍ୟମୁଖେନୈବ ଧ୍ୱନେଃ ପ୍ରଦର୍ଶିତେ ସପ୍ରଭେଦେ ସ୍ୱରୂପେ ପୁନର୍ବ୍ୟଞ୍ଜକମୁଖେନ ତତ୍ପ୍ରକାଶ୍ୟତେ—

୨। ଅବିବକ୍ଷିତବାଚ୍ୟସ୍ୟ ପଦବାକ୍ୟ ପ୍ରକାଶତା ।
ତଦନ୍ୟସ୍ୟାନୁରଣନ-ରୂପବ୍ୟଙ୍ଗ୍ୟସ୍ୟ ଚ ଧ୍ୱନେଃ ।୧।

୩। ଅବିବକ୍ଷିତବାଚ୍ୟସ୍ୟାତ୍ୟନ୍ତତିରସ୍କୃତବାଚ୍ୟେ ପ୍ରଭେଦେ ପଦପ୍ରକାଶତା ଯଥା ମହର୍ଷେର୍ବ୍ୟାସସ୍ୟ—

---

୧। ଏହାପରେ ବ୍ୟଙ୍ଗ୍ୟ ଅର୍ଥର ଭେଦ ଅନୁସାରେ ଅବିବକ୍ଷିତବାଚ୍ୟ ବିବକ୍ଷିତାନ୍ୟପରବାଚ୍ୟ ଇତ୍ୟାଦି ଭେଦ ନିରୂପଣ କରାଯିବା ପରେ, ବର୍ତ୍ତମାନ ବ୍ୟଞ୍ଜକ ଭେଦ ଅନୁସାରେ ଧ୍ୱନିର ଭେଦ ପ୍ରକାଶ କରାଯାଉଅଛି ।

୨। ଅବିବକ୍ଷିତବାଚ୍ୟ (ଲକ୍ଷଣାମୂଳ) ଧ୍ୱନିର ପଦଗତ ଓ ବାକ୍ୟ-ଗତରୂପେ ଦୁଇଗୋଟି ଭେଦ । ତହିଁରୁ (ଅବିବକ୍ଷିତବାଚ୍ୟରୁ) ଭିନ୍ନ, ସଂଲକ୍ଷ୍ୟ-କ୍ରମବ୍ୟଙ୍ଗ୍ୟ ଧ୍ୱନିର ମଧ୍ୟ ଏହି ପଦଗତ ଓ ବାକ୍ୟଗତ ଭେଦ ଅଛି ।

୩। ଅବିବକ୍ଷିତବାଚ୍ୟର ପଦଗତ ଅତ୍ୟନ୍ତତିରସ୍କୃତବାଚ୍ୟଧ୍ୱନି ଯଥା—ମହର୍ଷି ବ୍ୟାସଦେବଙ୍କର—ସମ୍ପୂର୍ଣ୍ଣ ଶ୍ଳୋକ—

ଧୃତିଃ କ୍ଷମା ଦୟା ଶୌଚଂ କାରୁଣ୍ୟଂ ବାଗନିଷ୍ଠୁରା ।
ମିତ୍ରାଣାଂ ଚାନଭିଦ୍ରୋହଃ (ସପ୍ତୈତାଃ ସମିଧଃ ଶ୍ରିୟଃ) ।

ଧୈର୍ଯ୍ୟ, କ୍ଷମା, ଦୟା, ଶୌଚ, କାରୁଣ୍ୟ, ଅନିଷ୍ଠୁର ବଚନ ଓ ମିତ୍ରମାନେ ଦ୍ରୋହ ନ କରିବା ଏହି ସାତଗୋଟି ସମ୍ପଦର ସମିଧ । ସମିଧ ପଦର ଅର୍ଥ ହୋମାଗ୍ନିର ଉଦ୍ଦୀପକ କାଷ୍ଠ । ତାହା ହୋମାଗ୍ନି ଠାରେ ସମ୍ଭବ, ସମ୍ପଦଠାରେ ଅସମ୍ଭବ । ଏଣୁ ସମିଧର ମୁଖ୍ୟ ଅର୍ଥ ବାଧିତ ହୋଇ ସମ୍ପଦର ଉଦ୍ଦୀପକ ରୂପ ଲକ୍ଷ୍ୟାର୍ଥକୁ ପ୍ରକାଶ କଲା । ଅନ୍ୟ ସହକାରୀ କାରଣର ବିନା ସାହାଯ୍ୟରେ ମଧ୍ୟ ଏମାନେ ସମ୍ପଦର ଅତ୍ୟନ୍ତ ଉଦ୍ଦୀପକ, ଏହା ଧ୍ୱନି । ବାଚସ୍ପତିଙ୍କ ମତରେ ଏଥିରେ ସମ୍ପଦର ସର୍ବତୋ ମୁଖତା, ପାରତ୍ରିକ ସୁଖ-ଦାୟିତା ଓ ପାତକାଦିର ଅନୁତ୍ପାଦକାଦି ଅନନ୍ତଫଳ ଧ୍ୱନିତ ହେଉଅଛି ।

"ସପ୍ରେରିତାଃ ସମିଧଃ ଶ୍ରିୟଃ"

୪। ଅଥବା କାଳିଦାସସ୍ୟ—

"କଃ ସନ୍ନଦ୍ଧେ ବିରହବିଧୁରାଂ ତ୍ୱୟ୍ୟୁପେକ୍ଷେତ ଜାୟାମ୍"

---

ଉକ୍ତ ଧ୍ୱନି "ସମିଧ" ପଦମାନଙ୍କୁ ଆଶ୍ରୟ କରିଥିବାରୁ ତାହା ପଦଗତ, ସମିଧ ଶବ୍ଦ ସ୍ୱାର୍ଥକୁ ପରିତ୍ୟାଗ କରି 'ଜହତ୍ସ୍ୱାର୍ଥା' ଲକ୍ଷଣାର ବିଷୟ ହୋଇଥିବାରୁ ତାହା ଅତ୍ୟନ୍ତତିରସ୍କୃତ, ସୁତରାଂ ଏହା ପଦଗତ ଅତ୍ୟନ୍ତତିରସ୍କୃତ ବାଚ୍ୟ-ଧ୍ୱନିର ଉଦାହରଣ ।

୪। ଏହାର ଅନ୍ୟ ଉଦାହରଣ ମହାକବି କାଳିଦାସଙ୍କ ମେଘ-ଦୂତରେ, ସମ୍ପୂର୍ଣ୍ଣ ଶ୍ଳୋକ ଯଥା—

"ତ୍ୱାମାରୂଢ଼ଂ ପବନପଦବୀମୁଦ୍‌ଗୃହୀତାଳକାନ୍ତାଃ
ପ୍ରେକ୍ଷିଷ୍ୟନ୍ତେ ପଥିକବନିତାଃ ପ୍ରତ୍ୟୟାଦାଶ୍ୱସନ୍ତ୍ୟଃ ।
କଃ ସନ୍ନଦ୍ଧେ ବିରହବିଧୁରାଂ ତ୍ୱୟ୍ୟୁପେକ୍ଷେତ ଜାୟାଂ
ନ ସ୍ୟାଦନ୍ୟୋଽପ୍ୟହମିବ ଜନୋ ଯଃ ପରାଧୀନବୃତ୍ତିଃ ।

ଅର୍ଥ—ରାମଗିରି ଆଶ୍ରମରେ ନିର୍ବାସିତ ଯକ୍ଷ, ପ୍ରାଣପ୍ରିୟା ନିକଟକୁ ଦୂତରୂପେ ପ୍ରେରଣ କରୁଥିବା ମେଘକୁ କହୁଅଛି—

ହେ ମେଘ ! ତୁମ୍ଭେ ପବନମାର୍ଗକୁ ଆରୋହଣ କଲେ, ପ୍ରୋଷିତ-ଭର୍ତ୍ତୃକା ସ୍ତ୍ରୀମାନେ, ଯେଉଁମାନେ 'ମୋ ସ୍ୱାମୀ ପ୍ରବାସରୁ ନିଶ୍ଚୟ ଫେରି ଆସିବେ' ଏହି ବିଶ୍ୱାସରୁ କେବଳ ଜୀବନଧାରଣ କରିଅଛନ୍ତି ସେମାନେ, ପତିବ୍ରତାବ୍ରତ ପାଳନ ହେତୁ ପବନରେ ଉଡ଼ି ଆଖିରେ ପଡୁଥିବା ନିଜର ଲୁଖୁରା କେଶଗୁଡ଼ିକ ହାତରେ ଉପରକୁ ଟେକି ଧରି ତୁମ୍ଭକୁ ଆଦରରେ ଦେଖିବେ । (ଅର୍ଥାତ୍ ତୁମ୍ଭଙ୍କୁ ଦେଖିବା ଦ୍ୱାରା ସେମାନଙ୍କ ମନରେ ସ୍ୱାମି-ସଂଯୋଗ ଆଶା ସଞ୍ଚରିବ) କାରଣ, ଯେଉଁ ଲୋକ ମୋ ଭଳି ପରାଧୀନ ଭାବେ ଜୀବନ ଯାପନ କରୁ ନ ଥିବ, ସେଭଳି ଅନ୍ୟ କେଉଁ ଲୋକ ତୁମ୍ଭେ (ମେଘ) ସନ୍ନଦ୍ଧ ହୁଅନ୍ତେ, ବିରହବିଧୁରା ଭାର୍ଯ୍ୟାକୁ ଉପେକ୍ଷା କରି ପାରିବ ? ଅର୍ଥାତ୍ ଲୋକ ଚାହିଁଲେ ଉପେକ୍ଷା କରିପାରିବ ନାହିଁ । ପତିବ୍ରତା ଧର୍ମ ଯଥା—

"ଆର୍ତ୍ତାର୍ତ୍ତେ ମୁଦିତେ ହୃଷ୍ଟା ପ୍ରୋଷିତେ ମଳିନା କୃଶା ।
ମୃତେ ମ୍ରିୟେତେ ଯା ପତ୍ୟୌ ସା ସ୍ତ୍ରୀ ଜ୍ଞେୟା ପତିବ୍ରତା ॥

୪ । ଯଥା ବା ତତ୍ରୈବ—
"କମିବ ହି ମଧୁରାଣାଂ ମଣ୍ଡନଂ ନାକୃତୀନାମ୍"

ପ୍ରୋଷିତଭର୍ତ୍ତୃକାଧର୍ମ ଯଥା—

କ୍ରୀଡ଼ାଂ ଶରୀରସଂସ୍କାରଂ ସମାଜୋତ୍ସବଦର୍ଶନମ୍ ।
ହାସ୍ୟଂ ପରଗୃହେ ଯାନଂ ତ୍ୟଜେତ୍ ପ୍ରୋଷିତଭର୍ତ୍ତୃକା ॥

ଉକ୍ତ ଧର୍ମଶାସ୍ତ୍ରମାନଙ୍କର ନିର୍ଦ୍ଦେଶ ପତିବ୍ରତା ପ୍ରୋଷିତଭର୍ତ୍ତୃକାର କେଶ ଲୁଖୁରି ହେବାରେ କାରଣ । ବର୍ଷାଋତୁର ଆଗମରେ ପ୍ରତ୍ୟେକ ପ୍ରବାସୀ ଘରକୁ ଫେରନ୍ତି, ଏଣୁ ପ୍ରୋଷିତ ସ୍ତ୍ରୀର ମେଘ ଦର୍ଶନରେ ଉତ୍କଣ୍ଠା ।

ହେ ମେଘ ! ତୁ ସନ୍ନଦ୍ଧ ହୁଅନ୍ତେ ବିରହାତୁର ସ୍ତ୍ରୀମାନଙ୍କୁ କେଉଁ ହେଲେ ଉପେକ୍ଷା କରିବ କି ?

ଏଥିରେ ସନ୍ନଦ୍ଧ ଶବ୍ଦର ମୁଖ୍ୟ ଅର୍ଥ ସାଞ୍ଜୁ ପିନ୍ଧା ସୈନିକ । ସୁତରାଂ ସନ୍ନଦ୍ଧ ପଦର ସାଞ୍ଜୁ ପିନ୍ଧିବା ଅର୍ଥ ମେଘଠାରେ ବାଧିତ ହେବାରୁ ତାହା ସାଡ଼ମ୍ବର ଉଦ୍ୟତରୂପାର୍ଥରେ ଲକ୍ଷିତ ହେଲା । ତଦ୍ଦ୍ୱାରା ମେଘର ଦୁର୍ନିବାରତ୍ୱ ନିର୍ଦ୍ଦୟତ୍ୱ ଓ ଆଶୁକାରିତ୍ୱାଦି ଧ୍ୱନି ହେଲା । ସନ୍ନଦ୍ଧ ପଦ ବାଚ୍ୟ ଅର୍ଥକୁ ଅତ୍ୟନ୍ତ ଭାବେ ତ୍ୟାଗ କରିଥିବାରୁ ଅତ୍ୟନ୍ତତିରସ୍କୃତ ବାଚ୍ୟ । ଧ୍ୱନି, କେବଳ ସନ୍ନଦ୍ଧ ପଦକୁ ଆଶ୍ରୟ କରି ରହିଥିବାରୁ ତାହା ପଦଗତ ଅତ୍ୟନ୍ତତିରସ୍କୃତ ବାଚ୍ୟଧ୍ୱନି ।

୪ । ଉକ୍ତ କବିଙ୍କର ଅଭିଜ୍ଞାନଶାକୁନ୍ତଳ ନାଟକରେ (ସମ୍ପୂର୍ଣ୍ଣ ଶ୍ଳୋକ)—

"ସରସିଜମନୁବିଦ୍ଧଂ ଶୈବଳେନାଽପି ରମ୍ୟଂ ।
ମଳିନମପି ହିମାଂଶୋର୍ଲକ୍ଷ୍ମ ଲକ୍ଷ୍ମୀଂ ତନୋତି ॥
ଇୟମଧିକ ମନୋଜ୍ଞା ବଲ୍କଲେନାଽପି ତନ୍ୱୀ
କମିବ ହି ମଧୁରାଣାଂ ମଣ୍ଡନଂ ନାକୃତୀନାମ୍ ॥

ଅର୍ଥ :—ଦୁଷ୍ମନ୍ତ ବଲ୍କଳବସନା ଶକୁନ୍ତଳାଙ୍କୁ ଦେଖି ତାଙ୍କ ରୂପରେ ଆକୃଷ୍ଟ ହୋଇ ଭାବୁଛନ୍ତି :—

ପଦ୍ମଫୁଲରେ ଯେତେ ପାଣିଶିଉଳୀ ଲାଗିଲେ ମଧ୍ୟ ତଦ୍ଦ୍ୱାରା ପଦ୍ମର ଶୋଭା ନଷ୍ଟ ହୁଏ ନାହିଁ ବରଂ ଅଧିକ ହୁଏ । ଚନ୍ଦ୍ରଙ୍କ ଦେହରେ ଲାଗିଥିବା କଳଙ୍କ ମଇଳା (କୃଷ୍ଣବର୍ଣ୍ଣ) ହେଲେ ମଧ୍ୟ ଚନ୍ଦ୍ରବିମ୍ବର ଶ୍ରୀବୃଦ୍ଧି ସମ୍ପାଦନ କରୁଛି । ଏହିକୃଶାଙ୍ଗୀ ମୁନିକନ୍ୟା ଗଛର ବକଲଟାଏ ପିନ୍ଧିବାରେ ମଧ୍ୟ

୭ । ଏତଦୁଦାହରଣେଷୁ "ସମିଧ" ଇତି "ସନ୍ନଦ୍ଧେ" ଇତି "ମଧୁରାଣାମ୍" ଇତି ଚ ପଦାନି ବ୍ୟଞ୍ଜକତ୍ୱାଭିପ୍ରାୟେଣୈବ ଉକ୍ତାନି ।

୭ । ତଦେକୈଦେଶାର୍ଥାନ୍ତରସଂକ୍ରମିତବାଚ୍ୟେ ଯଥା—
"ରାମେଣ ପ୍ରିୟଜୀବିତେନ ତୁ କୃତଂ ପ୍ରେମ୍ଣଃ ପ୍ରିୟେ ନୋଚିତମ୍ ।"

---

ଅଗ୍ନିଙ୍କର ନ ବଳି ଅଧିକ ଲୋଭନୀୟ ହୋଇଅଛନ୍ତି । ତେବେ ମଧୁର ଆକୃତି-ମାନଙ୍କର କଅଣ ବା ଭୂଷଣ ହୋଇ ନ ପାରେ ? ଅର୍ଥାତ୍ ଶୋଭନାଶକ ବସ୍ତୁ ମଧ ପ୍ରାକୃତିକ ସୌନ୍ଦର୍ଯ୍ୟସମ୍ପନ୍ନ ବସ୍ତୁର ଶୋଭା ନଷ୍ଟ କରିବା ପରିବର୍ତ୍ତେ ଶୋଭା ବୃଦ୍ଧି କରେ ।

"ମଧୁର ଆକୃତିମାନଙ୍କର କଅଣ ଭୂଷଣ ହୋଇ ନ ପାରେ ?" ଏଥିରେ ମଧୁର ଶବ୍ଦର ମୁଖ୍ୟ ଅର୍ଥ ସ୍ୱାଦୁ । ତାହା ଆକୃତି ଅର୍ଥରେ ବାଧିତ । ସୁତରାଂ ଏଠାରେ ସହୃଦୟହୃଦୟାହ୍ଲାଦକତ୍ୱ ତାହାର ଲକ୍ଷ୍ୟାର୍ଥ ହେଲା ଏବଂ ଅଳଙ୍କାରାତି-ରେକର ଉତ୍କର୍ଷତା ଧ୍ୱନି ହେଲା । ଏହା କେବଳ ମଧୁର ଶବ୍ଦଟିକୁ ଆଶ୍ରୟ କରି ରହିଥିବାରୁ ଓ ମଧୁର ଶବ୍ଦ ସ୍ୱାର୍ଥ ପରିତ୍ୟାଗ କରି ଭିନ୍ନ ଅର୍ଥ ବୁଝାଉଥିବାରୁ ଅତ୍ୟନ୍ତତିରସ୍କୃତବାଚ୍ୟଧ୍ୱନିର ଉଦାହରଣ ।

୭ । ଉକ୍ତ ଉଦାହରଣମାନଙ୍କରେ ସମିଧ, ସନ୍ନଦ୍ଧ ଓ ମଧୁର ଶବ୍ଦ ଧ୍ୱନ୍ୟମାନ ଅର୍ଥର ବ୍ୟଞ୍ଜକଭାବେ ହିଁ ନିବେଶ କରାଯାଇଅଛନ୍ତି ।

୭ । ଅବିବକ୍ଷିତବାଚ୍ୟର ପଦଗତ ଅର୍ଥାନ୍ତରସଂକ୍ରମିତ ବାଚ୍ୟଧ୍ୱନି ଯଥା, ସମ୍ପୂର୍ଣ୍ଣ ଶ୍ଳୋକ—

"ପ୍ରତ୍ୟାଖ୍ୟାନରୁଷା କୃତଂ ସମୁଚିତଂ କ୍ରୂରେଣ ତେ ରକ୍ଷସା,
ସୋଢ଼ଂ ତଚ୍ଚ ତଥା ତ୍ୱୟା କୁଳଜନୋ ଧତ୍ତେ ଯଥୋଚ୍ଚୈଃଶିରଃ ।
ବ୍ୟର୍ଥଂ ସମ୍ପ୍ରତିବିଭ୍ରତା ଧନୁରିଦଂ ତ୍ୱଦ୍ବ୍ୟାପଦଃ ସାକ୍ଷିଣା
ରାମେଣ ପ୍ରିୟଜୀବିତେନ ତୁ କୃତଂ ପ୍ରେମ୍ଣଃ ପ୍ରିୟେ ନୋଚିତମ୍ ॥

ଅର୍ଥ—(ଇନ୍ଦ୍ରଜିତ୍ ସୀତାଦେବୀଙ୍କର ଶିରଚ୍ଛେଦନ କରିବା ଦେଖି ରାମଚନ୍ଦ୍ରଙ୍କର ଶୋକ) ହେ ପ୍ରିୟେ ! ସ୍ୱଭାବତଃ କ୍ରୂରରାକ୍ଷସ ରାବଣ, ତାକୁ

୮ । ଅତ୍ର "ରାମେଣ" ଇତ୍ୟେତତ୍ ପଦଂ ସାହସୈକରସତ୍ତ୍ୱାଦ-ବ୍ୟଙ୍ଗ୍ୟାଭିସଂକ୍ରମିତବାଚ୍ୟଂ ବ୍ୟଞ୍ଜକମ୍ ।

୯ । ଯଥା ବା—

ଏମେଅଜଣୋତସ୍ସାଦେଉ କବୋଳୋପମାଇ ସସିବିମ୍ବମ୍
ପରମତ୍ଥବିଆରେ ଉଣ ଚନ୍ଦୋ ଚନ୍ଦୋ ବିଅ ବରାଓ ।

---

ଶତ୍ରୁରୂପେ ସ୍ୱୀକାର ନ କରି ନିରାକରଣ କରିବାରେ ଲାଗିଯାଇ (ପୂର୍ବ ଦ୍ୱାରା ତୁମ୍ଭର ଶିରଃ କର୍ତ୍ତନରୂପ) ସ୍ୱଷଯୋଚିତ କାର୍ଯ୍ୟ କରିଛି । ତୁମ୍ଭେ ମଧ୍ୟ ଶିରଚ୍ଛେଦ ଭଳି ଦାରୁଣ ଦୁଃଖ ସହି ଯେପରି କି କୁଳସ୍ତ୍ରୀ ନିଜ ମୁଣ୍ଡର ଠେକ ରଖେ ସେପରି କରିଅଛ । ଅର୍ଥାତ୍ ନିଜର ଶିରଦାନ କରି ପାତିବ୍ରତ୍ୟ ପାଳନ କରିବା ଦ୍ୱାରା ନିଜର ଗୌରବ ରକ୍ଷା କରି ପାରିଛ । ଏହା ମଧ୍ୟ ତୁମ୍ଭ ଭଳି କୁଳସ୍ତ୍ରୀର ସମୁଚିତ କାର୍ଯ୍ୟ । କିନ୍ତୁ ତୁମ୍ଭର ଶିରଚ୍ଛେଦ ଭଳି ବିପଦକୁ ନିଜ ଆଖିରେ ଦେଖି ବର୍ତ୍ତମାନ ବୃଥାରେ ଏହି ଧନୁକୁ ଧାରଣ କରିଥିବା ଜୀବନଲୋଭୀ ରାମଚନ୍ଦ୍ର ପ୍ରେମର ଉଚିତ କର୍ତ୍ତବ୍ୟ କରି ନାହିଁ । (ବନବାସୀ ରାମଙ୍କର କେବଳ ସୀତା ରକ୍ଷଣ ପାଇଁ ଧନୁର ଆବଶ୍ୟକତା ଥିଲା, ଅପହରଣ ପରେ ତାଙ୍କ ଉଦ୍ଧାର ପାଇଁ ମଧ୍ୟ ଆବଶ୍ୟକ, ସୀତା ହତ୍ୟା ପରେ କେବଳ ନିଜର ଆତ୍ମରକ୍ଷା ପାଇଁ ଧନୁ ବ୍ୟବହାର୍ଯ୍ୟ, ଏଣୁ ରାମ ଜୀବନଲୋଭୀ) ।

୮ । ଏ ପଦ୍ୟରେ ଜୀବନପ୍ରିୟ (ଜୀବନଲୋଭୀ) ରାମ, ପ୍ରେମର ଉଚିତ କର୍ତ୍ତବ୍ୟ କରି ନାହିଁ, ଏହି ଅଂଶରେ, ରାମଙ୍କର ସ୍ୱ ଉକ୍ତିରେ "ରାମ" ଶବ୍ଦ ଉଚ୍ଚାରଣ ପୁନରୁକ୍ତିରୂପେ ଅନୁପପନ୍ନ ହୋଇ ସତ୍ୟସନ୍ଧିତ୍ୱ ଉଚିତ କାର୍ଯ୍ୟକାରିତ୍ୱ, ଅସମ-ସାହସ-ବତ୍ତ୍ୱାଦ ଧର୍ମାନ୍ତରରେ ସଂକ୍ରମିତ ରାମରୂପ ଅର୍ଥକୁ ବୁଝାଇଲା । ରାମଙ୍କର ଶୋକାତିଶଯ୍ୟ ଧ୍ୱନି । ଏ ବାକ୍ୟରେ ରାମ ଶବ୍ଦର ବାଚ୍ୟ ଅର୍ଥ ଅନ୍ୟ ଅର୍ଥରେ ସଂକ୍ରମିତ ହେବାରୁ ଏହାର ନାମ ଅର୍ଥାନ୍ତରସଂକ୍ରମିତବାଚ୍ୟ, ତାହା କେବଳ ରାମ ଶବ୍ଦକୁ ଆଶ୍ରୟ କରି ରହିଥିବାରୁ ପଦଗତ ।

୯ । ଅଥବା ଲୋକେ ଏହିଭଳି ତାହାର (ରମଣୀର) କପୋଳର ଉପମାରେ ଶଶିବିମ୍ବକୁ ସ୍ଥାନ ଦେଉଅଛନ୍ତି । କିନ୍ତୁ ପରମାର୍ଥତଃ ବିଚାର କଲେ ଚନ୍ଦ୍ର ବିଚରା (ବରାକ) ଚନ୍ଦ୍ରପରି ।

(ଏବମେବ ଜନସ୍ତସ୍ୟା ଦଦାତ୍ତିକପୋଲୋପମାସ୍ୱାଂ ଶଶିବିମ୍ବମ୍, ପରମାର୍ଥବିଚ୍ଚରେ ପୁନଶ୍ଚନ୍ଦ୍ରଶ୍ଚନ୍ଦ୍ର ଏବ ବର୍ତ୍ତ୍ତକଃ । ଇତି ଛାୟା)

୧୦ । ଅତ୍ର ଦ୍ୱିତୀୟଶ୍ଚନ୍ଦ୍ରଶବ୍ଦୋଽର୍ଥାନ୍ତରସଂକ୍ରମିତବାଚ୍ୟଃ ।

୧୧ । ଅବିବକ୍ଷିତବାଚ୍ୟସ୍ୟାତ୍ୟନ୍ତତିରସ୍କୃତବାଚ୍ୟେ ପ୍ରଭେଦେ ବାକ୍ୟପ୍ରକାଶତା, ଯଥା—

ଯା ନିଶା ସର୍ବଭୂତାନାଂ ତସ୍ୟାଂ ଜାଗର୍ତ୍ତି ସଂଯମୀ
ଯସ୍ୟାଂ ଜାଗ୍ରତି ଭୂତାନି ସା ନିଶା ପଶ୍ୟତୋ ମୁନେଃ ।

୧୨ । ଅନେନ ହି ବାକ୍ୟେନ ନ ନିଶାର୍ଥୋ ନବା ଜାଗରଣାର୍ଥଃ କଶ୍ଚିଦ୍ ବିବକ୍ଷିତଃ, କିଂ ତର୍ହି—ତତ୍ତ୍ୱଜ୍ଞାନାବହିତତ୍ୱ-

---

୧୦ । ଏଠାରେ ଦ୍ୱିତୀୟ ଚନ୍ଦ୍ରଶବ୍ଦ କୃପୈକଭଜନ, କଳଂକ ଯୁକ୍ତତ୍ୱାଦ ଅର୍ଥାନ୍ତରରେ ସଂକ୍ରମିତ ହୋଇ ଅନାଦରଣୀୟତ୍ୱାତିଶୟ ପ୍ରଭୃତି ବ୍ୟଙ୍ଗ୍ୟକୁ ପ୍ରକାଶ କରୁଅଛି ।

୧୧ । ଅବିବକ୍ଷିତବାଚ୍ୟର ବାକ୍ୟଗତ ଅତ୍ୟନ୍ତତିରସ୍କୃତବାଚ୍ୟ ଧ୍ୱନିର ଉଦାହରଣ, ଯଥା—(ଭଗବଦ୍‌ଗୀତା)

ସବୁ ପ୍ରାଣୀମାନଙ୍କର ଯାହା ନିଶା, ସଂଯମୀ ତହିଁରେ ଜାଗ୍ରତ ଥାଏ । ଯେଉଁଥିରେ ଜୀବମାନେ ଜାଗରୂକ ଥାନ୍ତି ଗୃହିଁଥିବା (ବିବେକ ସମ୍ପନ୍ନ) ମୁନିଙ୍କର ତାହା ନିଶା ।

୧୨ । ଏହି ଶ୍ଳୋକ ବାକ୍ୟରେ ନିଶା ଓ ଜାଗରଣର ଅର୍ଥ ବିବକ୍ଷିତ ନୁହେ । କିନ୍ତୁ, ପ୍ରାଣୀମାନଙ୍କର ନିଶା ଅର୍ଥାତ୍ ପ୍ରାଣୀମାନେ ଯେଉଁ ତତ୍ତ୍ୱଜ୍ଞାନ ଅର୍ଜନରେ ଚେଷ୍ଟାଶୂନ୍ୟ ମୁନି ତହିଁରେ ତତ୍ପର, ଏବଂ ଜୀବମାନେ ଯେଉଁ ସାଂସାରିକ କାର୍ଯ୍ୟରେ ତତ୍ପର ହେଉଛନ୍ତି ମୁନି ତହିଁରେ ନିଶ୍ଚେଷ୍ଟ, ଏହା ହେଉଛି ବକ୍ତାଙ୍କର ଅଭିପ୍ରେତ ଅର୍ଥ । ସୁତରାଂ ଏଥିରେ ମୁନିଙ୍କର ତତ୍ତ୍ୱଜ୍ଞାନ ତତ୍ପରତା ଓ ଅଜ୍ଞାନରେ ପରାଙ୍ମୁଖତା ଧ୍ୱନିତ (ପ୍ରତିପାଦିତ) ହେଲା । ଏଠାରେ

ମତତ୍ତ୍ୱପରାଙ୍ମୁଖତ୍ୱଂ ଚ ମୁନେଃ ପ୍ରତିପାଦ୍ୟତ ଇତି ତିରସ୍କୃତବାଚ୍ୟସ୍ୟାସ୍ୟ ବ୍ୟଞ୍ଜକତ୍ୱମ୍ ।

୧୩ । ତସ୍ୟୈବାର୍ଥାନ୍ତରସଂକ୍ରମିତବାଚ୍ୟସ୍ୟ ବାକ୍ୟପ୍ରକାଶତା ଯଥା—

ବିସମଅଏ ଚିଅ କାଣବି କାଣବି ବୋଲେଇ ଅମିଅଣିମ୍ମାଏ ।
କାଣବି ବିସାମିଅମଏ କାଣବି ଅବିସାମିଅମଅଏ କାଲେ ।
ବିଷମୟ ଇବ କେଷାମପି କେଷାମପ୍ୟତିଯାତ୍ୟମୃତନିର୍ମାଣଃ ।
କେଷାମପି ବିଷାମୃତମୟଃ କେଷାମପ୍ୟବିଷାମୃତମୟଃ କାଳଃ
ଇତି ଛାୟା ॥

୧୪ । ଅତ୍ର ହି ବାକ୍ୟେ ବିଷାମୃତଶବ୍ଦାଭ୍ୟାଂ ସୁଖଦୁଃଖରୂପ ସଂକ୍ରମିତବାଚ୍ୟାଭ୍ୟାଂ ବ୍ୟବହାର ଇତ୍ୟର୍ଥାନ୍ତରସଂକ୍ରମିତବାଚ୍ୟସ୍ୟାସ୍ୟ ବ୍ୟଞ୍ଜକତ୍ୱମ୍ ॥

---

ସମୁଦାୟ ବାକ୍ୟ ବ୍ୟଞ୍ଜକ । ଏଣୁ ଏହା ବାକ୍ୟଗତ ଅତ୍ୟନ୍ତତିରସ୍କୃତ ବାଚ୍ୟ-ଧ୍ୱନିର ସ୍ଥଳ ।

୧୩ । ଅବିବକ୍ଷିତ-ବାଚ୍ୟର ବାକ୍ୟଗତ ଅର୍ଥାନ୍ତରସଂକ୍ରମିତବାଚ୍ୟ ଧ୍ୱନିର ଉଦାହରଣ—

(କାଳ) ସମୟ କାହାର ବିଷମୟ, କାହାର ଅମୃତମୟ, କାହାର ବା ବିଷାମୃତମୟ, କିମ୍ବା କାହାର ଅବିଷାମୃତମୟ ହୋଇ କଟିଯାଉଛି ।

ଅବିବେକୀମାନଙ୍କର ବିଷମୟ (ଦୁଃଖବହୁଳ), ବିବେକୀମାନଙ୍କର ଅମୃତମୟ (ସୁଖମୟ), ଅବିବେକ ଓ ବିବେକଯୁକ୍ତ ଲୋକଙ୍କର ବିଷାମୃତମୟ ଏବଂ ତତ୍ତ୍ୱଜ୍ଞମାନଙ୍କର ଅବିଷାମୃତମୟ ଭାବେ କାଳ କଟେ ।

୧୪ । ଏହି ବାକ୍ୟରେ ବିଷ ଓ ଅମୃତ ଶବ୍ଦର ମୁଖ୍ୟ ଅର୍ଥ, ଯଥାକ୍ରମେ ଦୁଃଖ ଓ ସୁଖ ଅର୍ଥରେ ସଂକ୍ରମିତ ହୋଇ ପ୍ରଚଳିତ ହେଉଅଛନ୍ତି । ଏଣୁ, ଏହା ବାକ୍ୟଗତ ଅର୍ଥାନ୍ତରସଂକ୍ରମିତବାଚ୍ୟଧ୍ୱନି ।

୧୫ । ବିବକ୍ଷିତାଭିଧେୟସ୍ୟାନୁରଣନରୂପବ୍ୟଙ୍ଗ୍ୟସ୍ୟ ଶବ୍ଦ-ଶକ୍ତ୍ୟୁଦ୍ଭବେ ପ୍ରଭେଦେ ପଦପ୍ରକାଶତା ଯଥା—

ପ୍ରାତୁଂ ଧନୈରର୍ଥିଜନସ୍ୟବାଞ୍ଛାଂ
ଦୈବେନ ସୃଷ୍ଟୋ ଯଦି ନାମ ନାଽସ୍ମି ।
ପଥି ପ୍ରସନ୍ନାମ୍ବୁଧରସ୍ତଡ଼ାଗଃ
କୂପୋଽଥବା କିଂ ନ ଜଡ଼ଃ କୃତୋଽହମ୍ ॥

୧୬ । ଅତ୍ର ହି ଜଡ଼ ଇତି ପଦଂ ନିର୍ବିଣ୍ଣେନ ବକ୍ତ୍ରାଽଽତ୍ମ-ସମାନାଧିକରଣତୟା ପ୍ରଯୁକ୍ତମନୁରଣନରୂପତୟା କୂପ-ସମାନାଧିକରଣତାଂ ସ୍ୱଶକ୍ତ୍ୟା ପ୍ରତିପଦ୍ୟତେ ॥

---

୧୫ । ବିବକ୍ଷିତାନ୍ୟପରବାଚ୍ୟ (ଅଭିଧାମୂଳ) ଧ୍ୱନିର ଶବ୍ଦଶକ୍ତ୍ୟୁଦ୍ଭବ ପ୍ରଭେଦରେ ପଦପ୍ରକାଶତା ଯଥା—(ଦାନମନା ଦରିଦ୍ରର ଉକ୍ତି) ଧନ ଦ୍ୱାରା ପ୍ରାର୍ଥୀମାନଙ୍କର କାମନା ପୂରଣ କରିବା ପାଇଁ (ପ୍ରାତୁଂ) ବିଧାତା ଯଦି ମୋତେ ସୃଷ୍ଟି ନ କଲା, ତେବେ ବାଟରେ ନିର୍ମଳ ଜଳ ଧାରଣ କରିଥିବା ଗଡ଼ିଆ କିମ୍ବା କୂଅଟିଏ କରି ଜଡ଼ସ୍ୱରୂପ ହୋଇଥିବା ମୋତେ କାହିଁକି ସୃଷ୍ଟି ନ କଲା ?

୧୬ । ଏହି ବାକ୍ୟରେ ବକ୍ତା ନିଜକୁ ଜଡ଼ବୋଲି କହିଅଛି । କିନ୍ତୁ ବାକ୍ୟାର୍ଥବଳରୁ ଜଣାଯାଉଛି ଯେ, "ମାର୍ଗ ନିକଟସ୍ଥ କୂପରୁ ରଜ୍ଜୁ କୁମ୍ଭ ପ୍ରଭୃତି ଉପକରଣ ଅଭାବରୁ ତୃଷାତୁରମାନେ ଜଳଗ୍ରହଣ କରି ନ ପାରିଲେ କୂପର ସନ୍ତାପ ସମ୍ଭବ ହୁଏ ନାହିଁ, ଯେଣୁ ସେ ଜଡ଼ ।" ସୁତରାଂ ମୋତେ ବିଧାତା ତାଦୃଶ ଜଡ଼ବସ୍ତୁ କୂପ ନ କଲା କାହିଁକି ? ଏହିପରି ଜଡ଼ାର୍ଥ କୂପର ବିଶେଷଣ ରୂପେ ଅନୁରଣନ ରୀତିରେ ପ୍ରତିପାଦିତ ହେଉଅଛି ।

ସୁତରାଂ ଏଠାରେ "ଜଡ଼" ପଦକୁ ଆଶ୍ରୟ କରି ଅନୁରଣନ ରୀତିରେ ଶବ୍ଦଶକ୍ତ୍ୟୁଦ୍ଭବ ଧ୍ୱନି ରହିଥିବାରୁ ଏହା ଶବ୍ଦଶକ୍ତ୍ୟୁଦ୍ଭବ ପଦଗତ ସଂଲକ୍ଷ୍ୟକ୍ରମ ଧ୍ୱନି । ଉକ୍ତ ଜଡ଼ପଦ ତାହାର ବ୍ୟଞ୍ଜକ । ଏଠାରେ ମୁଁ ଜଡ଼କୂପ ସଦୃଶ ସମାନ । ଏହି ଉପମାଳଂକାର ଧ୍ୱନି ।

୧୭ । ତସ୍ୟୈବ ବାକ୍ୟପ୍ରକାଶତା ଯଥା ହର୍ଷଚରିତେ ସିଂହ-
ନାଦବାକ୍ୟେଷୁ । "ବୃତ୍ତେଽସ୍ମିନ୍ ମହାପ୍ରଳୟେ ଧରଣୀ-
ଧାରଣାୟାଧୁନା ତ୍ୱଂ ଶେଷଃ ।"

୧୮ । ଏତଦ୍ଧି ବାକ୍ୟମନୁରଣନରୂପମର୍ଥାନ୍ତରଂ ଶବ୍ଦଶକ୍ତ୍ୟା ସ୍ଫୁଟ-
ମେବ ପ୍ରକାଶୟତି ।

୧୯ । ଅସ୍ୟୈବ କବିପ୍ରୌଢ଼ୋକ୍ତିମାତ୍ରନିଷ୍ପନ୍ନଶରୀରସ୍ୟାର୍ଥ-
ଶକ୍ତ୍ୟୁଦ୍ଭବେ ପ୍ରଭେଦେ ପଦପ୍ରକାଶତା ଯଥା ହରିବିଜୟେ,

---

୧୭ । ଶବ୍ଦଶକ୍ତ୍ୟୁଦ୍ଭବ ଅନୁରଣନାତ୍ମକ ଧ୍ୱନିର ପ୍ରକାଶକ ବାକ୍ୟ ଯଥା—ହର୍ଷଚରିତରେ ହର୍ଷବର୍ଦ୍ଧନଙ୍କ ସେନାପତି ସିଂହନାଦର ଉକ୍ତି—"ଏହି ମହାପ୍ରଳୟ ଅତୀତ ହୁଅନ୍ତେ ବର୍ତ୍ତମାନ ଧରଣୀଧାରଣ ପାଇଁ ଆପଣ ଏକମାତ୍ର ଶେଷ ।

୧୮ । ଏହି ବାକ୍ୟ ଅନୁରଣନ ରୀତିରେ ଅନ୍ୟ ଅର୍ଥକୁ ସ୍ପଷ୍ଟଭାବେ ପ୍ରକାଶ କରୁଅଛି । ଯଥା—ମହାପ୍ରଳୟ ସଦୃଶ ଭୟଙ୍କର ଯୁଦ୍ଧ ପରେ ରାଜ୍ୟ ପାଳିବା ପାଇଁ ଆପଣ ଏକମାତ୍ର ଅବଶିଷ୍ଟ (ଶେଷ) ଅଛନ୍ତି, ଏହା ବାଚ୍ୟାର୍ଥ । ପ୍ରଳୟ ପରେ କୁଳାଚଳାଦିଙ୍କ ନାଶ ହେତୁ ଧରଣୀଧାରଣ ପାଇଁ ଆପଣ ଏକମାତ୍ର ଶେଷନାଗ (ଶେଷ) ଅଛନ୍ତି, ଏହା ବ୍ୟଙ୍ଗ୍ୟାର୍ଥ ।

ସୁତରାଂ ଉଭୟ ଅର୍ଥର ଅସମ୍ବଦ୍ଧତା ନିରାକରଣ ପାଇଁ ଆପଣ ଶେଷଦେବଙ୍କ ପରି । ଏହିପରି ଉପମାଳଂକାର ଧ୍ୱନି ହେଲା ।

୧୯ । ଅର୍ଥଶକ୍ତ୍ୟୁଦ୍ଭବ କବିପ୍ରୌଢ଼ୋକ୍ତିମାତ୍ରସିଦ୍ଧ ସଂଲକ୍ଷ୍ୟକ୍ରମ ବ୍ୟଙ୍ଗ୍ୟଧ୍ୱନିର ବ୍ୟଞ୍ଜକପଦ ଯଥା—(ପ୍ରବରସେନ କୃତ ପ୍ରାକୃତ ରୂପକରେ ବସନ୍ତ ବର୍ଣ୍ଣନା) ବସନ୍ତ ଲକ୍ଷ୍ମୀର ଆମ୍ରମଞ୍ଜରୀରୂପ କର୍ଣ୍ଣଭୂଷଣରେ ଶୋଭିତ ଏବଂ ବସନ୍ତ ଉତ୍ସବର ମହାସମାରୋହରେ ମଧୁର ଆମୋଦଭରା ମୁଖ (ଆରମ୍ଭ ଓ ବଦନ) ସମର୍ପିତ ନ ହୋଇଥିଲେ ମଧ୍ୟ (ଅସମର୍ପିତମପି) ତାକୁ କାମଦେବ ଗ୍ରହଣ କଲା । ବସନ୍ତାରମ୍ଭ ଅତ୍ୟନ୍ତ କାମୋଦ୍ଦୀପକ । ଏହା କବିଙ୍କ ଆଶୟ । ଏ ଶ୍ଳୋକରେ ନବବିବାହିତା କାମିନୀର ମଦିରାମୋଦଭରା ମୁଖକୁ କାନ୍ତ

"ଚୂଅଙ୍କୁରବଅଂସଂ ଛଣପସରମହଂ
ଘଣମହୁରମୋଅମ୍ ।
ଅସମପ୍ପିଅଂ ପି ଗହ୍ମଅଂ କୁସୁମସରେଣ
ମହୁମାସଲଚ୍ଛିମୁହମ୍ ॥
(ଚୂତାଙ୍କୁରବତଂସଂ କ୍ଷଣପ୍ରସରମହଦ୍‌ଘନ-
ମଧୁରାମୋଦମ୍ ।
ଅସମର୍ପିତମପି ଗୃହୀତଂ କୁସୁମଶରେଣ
ମଧୁମାସଲକ୍ଷ୍ମୀମୁଖମ୍ ॥)

୨୦ । ଅତ୍ର ହି ଅସମର୍ପିତମପି କୁସୁମଶରେଣ ମଧୁମାସଲକ୍ଷ୍ମ୍ୟା ମୁଖଂ ଗୃହୀତମିତ୍ୟ "ସମର୍ପିତ" ମିତ୍ୟେତଦବସ୍ଥାଭିଧାୟିପଦମର୍ଥଶକ୍ତ୍ୟା କୁସୁମଶରସ୍ୟ ବଲାତ୍‌କାରଂ ପ୍ରକାଶୟତି ।

୨୧ । ଅତ୍ରୈବ ପ୍ରଭେଦେ ବାକ୍ୟପ୍ରକାଶତା ଯଥା ଉଦାହୃତଂ ପ୍ରାକ୍—"ସଜ୍ଜେଇ ସୁରହିମାସୋ (ସଜ୍ଜୟତି ସୁରଭିମାସୋ) ଇତ୍ୟାଦି । ଅତ୍ର ସଜ୍ଜୟତି ସୁରଭିମାସୋ ନ

---

ବଳପୂର୍ବକ ଚୁମ୍ବନ ପାଇଁ ଗ୍ରହଣ କଲା, ଏହି ନାୟକନାୟିକା ବ୍ୟବହାର ଆରୋପିତ ହୋଇଅଛି ।

୨୦ । ଏଠାରେ "ଅସମର୍ପିତଂ" ଏହି ଅବସ୍ଥା ସୂଚକ ପଦଟି ଅର୍ଥଶକ୍ତି ବଳରେ କାମଦେବର ସକଳ ସଂସାରରେ ବଳାତ୍କାର ଧ୍ୱନିତ କରୁଅଛି । ଏହି ଧ୍ୱନି ପଦମାନଙ୍କୁ ଆଶ୍ରୟ କରି ରହିଥିବାରୁ ପଦଗତ । ଏବଂ ଏ ପଦ୍ୟର ବକ୍ତା କବି ନିଜ ପ୍ରୌଢ଼ ଉକ୍ତିରେ ବିଷୟବସ୍ତୁ ଉପସ୍ଥାପନ କରିଥିବାରୁ ତାହା କବିପ୍ରୌଢ଼ୋକ୍ତିସିଦ୍ଧ ।

୨୧ । କବିପ୍ରୌଢ଼ୋକ୍ତିମାତ୍ରସିଦ୍ଧ ଅର୍ଥଶକ୍ତ୍ୟୁଦ୍ଭବ ଅନୁରଣନାତ୍ମକ ବ୍ୟଙ୍ଗ୍ୟଧ୍ୱନିର ବ୍ୟଞ୍ଜକ ବାକ୍ୟ ଯଥା—'ସଜ୍ଜୟତି ସୁରଭିମାସୋ' ଇତ୍ୟାଦି

ତାବଦର୍ପୟତ୍ୟନଙ୍ଗାୟ ଶରାନ୍" ଇତ୍ୟସ୍ୟଂ ବାକ୍ୟାର୍ଥଃ କବିପ୍ରୌଢ଼ୋକ୍ତିମାତ୍ରନିଷ୍ପନ୍ନଶରୀରଃ ମନ୍ମଥୋନ୍ମାଦକତାପାଦନାବସ୍ଥାନଂ ବସନ୍ତସମୟସ୍ୟ ସୂଚୟତି ॥

୨୨ । ସ୍ୱତଃସମ୍ଭବଶରୀରାର୍ଥଶକ୍ତ୍ୟୁଦ୍ଭବେ ପ୍ରଭେଦେ ପଦପ୍ରକାଶତା ଯଥା—

ବାଣିଜଅ ! ହତ୍ଥିଦନ୍ତା କୁତୋ ଅହ୍ମାଣ ବାଘକତ୍ତୀଅ ।
ଜାବଲ୍ଲୁଳିଆଲଅମୁହୀ ଘରମ୍ମି ପରିସକ୍କଏ ସୁହ୍ନା ॥
(ବାଣିଜକ ! ହସ୍ତିଦନ୍ତା କୁତୋଽସ୍ମାକଂ ବ୍ୟାଘ୍ରକୃତ୍ତୟଶ୍ଚ ।
ଯାବଲ୍ଲୁଳିତାଳକମୁଖୀ ଗୃହେ ପରିଷ୍ୱକ୍କତେ ସ୍ନୁଷା ॥)

—ଇତି ଛାୟା ।

୨୩ । ଅତ୍ର "ଲୁଳିତାଳକମୁଖୀ" ଇତ୍ୟେତତ୍ ପଦଂ ବ୍ୟାଧବଧ୍ୱାଃ ସ୍ୱତଃସମ୍ଭାବିତଶରୀରାର୍ଥଶକ୍ତ୍ୟା ସୁରତକ୍ରୀଡ଼ାସକ୍ତିଂ

ତାହା, ଦିଆଯାଇଅଛି । ସେ ଶ୍ଳୋକ ବାକ୍ୟରେ ସୁରଭିମାସ କେବଳ ଶରମାନଙ୍କୁ ତିଆରି କରୁଛି କିନ୍ତୁ, କାମଦେବକୁ ଅର୍ପଣ କରୁନାହିଁ । ଏହି ବାକ୍ୟାର୍ଥ କବିପ୍ରୌଢ଼ୋକ୍ତିମାତ୍ର ସିଦ୍ଧ, ମାତ୍ର ବାସ୍ତବ ନୁହେ । ତାହା ବସନ୍ତକାଳର କାମୋଦ୍ଦୀପକତାକୁ ସୂଚୁଇଅଛି ।

୨୨ । ସ୍ୱତଃସମ୍ଭବୀ ଅର୍ଥଶକ୍ତ୍ୟୁଦ୍ଭବ ଅନୁରଣନାତ୍ମକ ବ୍ୟଙ୍ଗ୍ୟଧ୍ୱନିର ବ୍ୟଞ୍ଜକପଦ ଯଥା—

ହେ ବେପାରି ! ହାତୀଦାନ୍ତ ଓ ବାଘଚମଡ଼ା ଆମର ଆଉ କୁଆଡ଼ୁ ଆସିବ, ଯେ ପର୍ଯ୍ୟନ୍ତ ଭୂତୁରିମୁଣ୍ଡି (ଲୁଳିତାଳକମୁଖୀ) ବୋହୂ ଘରେ ବୁଲୁଛି (ପରିଷ୍ୱକ୍କତେ) ।

୨୩ । ଏଠାରେ "ଲୁଳିତାଳକମୁଖୀ" ପଦଟି ସ୍ୱତଃ ସମ୍ଭାବିତ ଅର୍ଥଶକ୍ତି ଦ୍ୱାରା ବ୍ୟାଧବଧୂର ସୁରତ କ୍ରୀଡ଼ାରେ ଆସକ୍ତିକୁ ସୂଚନା ଦେଉଛି। ତଦ୍ୱାରା ତାହା ସ୍ୱାମୀର ଅନବରତ ସମ୍ଭୋଗ ହେତୁରୁ ଦୁର୍ବଳତା ଧ୍ୱନିତ ହେଉଅଛି ।

ସୂଚୟନ୍ ତଦୀୟସ୍ୟ ଭର୍ତ୍ତୁଃ ସତତସମ୍ଭୋଗକ୍ଷାମତାଂ ପ୍ରକାଶୟନ୍ତି ।

୨୪ । ତସ୍ୟୈବ ବାକ୍ୟପ୍ରକାଶତା ଯଥା—

ସିହିପିଞ୍ଛକଣ୍ଣଊରା ବହୁଆ ବାହସ୍ସ ଗବିରୀ ଭମଇ ।
ମୁତ୍ତାଫଳରଇଅପସାହଣାଣ ମଂଝେ ସବତ୍ତୀଣମ୍ ॥
(ଶିଖିପିଚ୍ଛକର୍ଣ୍ଣପୂରା ବ୍ୟାଧସ୍ୟ ଜାୟା ଗର୍ବିଣୀ ଭ୍ରମତି ।
ମୁକ୍ତାଫଳପ୍ରସାଧନାନାଂ ମଧ୍ୟେ ସପତ୍ନୀନାମ୍ ।
ଇତି ଛାୟା)

୨୫ । ଅନେନ ବାକ୍ୟେନ ବ୍ୟାଧବଧ୍ୱାଃ ଶିଖିପିଚ୍ଛକର୍ଣ୍ଣପୂରାୟା ନବପରିଣୀତାୟାଃ କସ୍ୟାଶ୍ଚିତ୍ ସୌଭାଗ୍ୟାତିଶୟଃ ପ୍ରକାଶ୍ୟତେ, ତତ୍ ସମ୍ଭୋଗକାଲେ ସ ଏବ ବ୍ୟାଧଃ କରିବରବଧବ୍ୟାପାରସମର୍ଥ ଆସୀଦିତ୍ୟର୍ଥପ୍ରକାଶନାତ୍ ॥

---

(ସମ୍ଭୋଗ ହେତୁରୁ ଦୁର୍ବଳ ବ୍ୟାଧ ଗଜ ବ୍ୟାଘ୍ରାଦି ବଧ କରି ନ ପାରିବାରୁ ତା ଘରେ ହାତୀଦାନ୍ତ ପ୍ରଭୃତି ନାହିଁ) ।

୨୪ । ସ୍ୱତଃସମ୍ଭବୀ ଅର୍ଥଶକ୍ତ୍ୟୁଦ୍ଭବ ଅନୁରଣନ ବ୍ୟଙ୍ଗ୍ୟଧ୍ୱନିର ବ୍ୟଞ୍ଜକ ବାକ୍ୟ ଯଥା—ବ୍ୟାଧର ଭାର୍ଯ୍ୟା ମୟୂର ପିଚ୍ଛକୁ କାନରେ ଖୋସି ଗର୍ବଭରେ ହୋଇ ଗଜମୁକ୍ତାଫଳରେ ବେଶ ହୋଇଥିବା ସପତ୍ନୀମାନଙ୍କ ମଧ୍ୟରେ ବୁଲୁଛି ।

୨୫ । ଏହି ବାକ୍ୟଦ୍ୱାରା ନବପରିଣୀତା ବ୍ୟାଧବଧୂର ସୌଭାଗ୍ୟାତିଶୟ ଧ୍ୱନିତ ହେଉଅଛି । ସପତ୍ନୀମାନଙ୍କ ସମ୍ଭୋଗ ସମୟରେ ବ୍ୟାଧ ଗଜ ବଧରେ ସମର୍ଥ ଥିଲା । କିନ୍ତୁ, ବର୍ତ୍ତମାନ ଅନବରତ ସମ୍ଭୋଗ ହେତୁ ଏପରି ଦୁର୍ବଳ ଯେ ଗଜ ମାରି ମୁକ୍ତା ଦେଇପାରୁ ନାହିଁ କିନ୍ତୁ, ମୟୂର ମାତ୍ର ମାରୁଛି । ଏଣୁ ମୟୂରପୁଚ୍ଛଧାରିଣୀ ବ୍ୟାଧବଧୂର ଗର୍ବ, ତାହା ସ୍ୱତଃ ସମ୍ଭାବିତ ।

୨୭ । ନନୁ "ଧ୍ୱନିଃ କାବ୍ୟବିଶେଷ" ଇତ୍ୟୁକ୍ତଂ, ତତ୍ କଥଂ ତସ୍ୟ ପଦପ୍ରକାଶତା ? କାବ୍ୟବିଶେଷୋ ହି ବିଶିଷ୍ଟାର୍ଥ-ପ୍ରତିପତ୍ତିହେତୁଃ ଶବ୍ଦସନ୍ଦର୍ଭବିଶେଷଃ, ତଦ୍‌ଭାବସ୍ତୁ ପଦ-

---

୨୭ । ଧ୍ୱନି ପଦଗତ ହୋଇ ନ ପାରେ ବୋଲି ବାକ୍ୟଶକ୍ତି-ବାଦୀଙ୍କ ମତରେ ଶଙ୍କା ଉପସ୍ଥାପନ କରାଯାଉଅଛି ଯଥା—

ବାକ୍ୟଶକ୍ତିବାଦୀ ପ୍ରଭାକର ଭଟ୍ଟ ପ୍ରଭୃତିଙ୍କ ମତରେ ବାକ୍ୟ ଗୋଟିଏ ଅଖଣ୍ଡବସ୍ତୁ । ତାହା ଦ୍ୱାରାହିଁ ବକ୍ତା ଅର୍ଥ ପ୍ରକାଶ କରିଥାଏ । ଯଥା—ତୁମ୍ଭେ ଆସ । ମୁଁ ଯାଉଛି, ଇତ୍ୟାଦି । ଯେଉଁଠି ଅବା ଆସ, ଦେଖ, ଇତ୍ୟାଦି ଗୋଟିଏ ଗୋଟିଏ ଶବ୍ଦ ଦ୍ୱାରା ଅର୍ଥ ପ୍ରକାଶ ପାଉଛି, ସେ ସ୍ଥଳରେ ତୁମ୍ଭେ ଇତ୍ୟାଦି ପଦ ଆକ୍ଷିପ୍ତ ହୋଇ ଅର୍ଥ ପ୍ରକାଶ କରୁଛନ୍ତି । ଏଣୁ ବାକ୍ୟ କେବଳ ଅର୍ଥପ୍ରକାଶ କରିବାକୁ ଯୋଗ୍ୟ କିନ୍ତୁ ପଦମାନେ ନୁହନ୍ତି । ପଦଗୁଡ଼ିକ ବାକ୍ୟର ଅବୟବ ମାତ୍ର । ସେମାନେ ବାକ୍ୟାର୍ଥ ପ୍ରତୀତି ସମୟରେ ସ୍ୱ ସ୍ୱ ଅର୍ଥଗୁଡ଼ିକୁ କେବଳ ସ୍ମରଣ କରାଇଥାନ୍ତି । ଏଣୁ ବାକ୍ୟ ହେଉଛି ବାଚ୍ୟାର୍ଥର ବାଚକ ଓ ପଦମାନେ ବାଚ୍ୟାର୍ଥର ସ୍ମାରକ । ଏହା ପ୍ରଭାକର ପ୍ରଭୃତି ବାକ୍ୟଶକ୍ତିବାଦୀମାନଙ୍କ ମତ । ଏହି ମତ ଅନୁସାରେ ଯେଉଁ ପଦ ସାଧାରଣତଃ ବାଚ୍ୟଅର୍ଥକୁ ବୁଝାଇବାରେ ଅସମର୍ଥ, ସେ କିପରି ଧ୍ୱନିକୁ ବୁଝାଇବାରେ ସମର୍ଥ ହେବ ।

ପୁନଶ୍ଚ ଧ୍ୱନି ଲକ୍ଷଣରେ ବ୍ୟଙ୍ଗ୍ୟ, ବ୍ୟଞ୍ଜକ, ବ୍ୟଞ୍ଜନା ଓ ତତ୍ସମୁଦାୟ ରୂପ କାବ୍ୟକୁ ଧ୍ୱନି ବୋଲି କୁହାଯାଇଛି । ସମୁଦାୟ ପକ୍ଷରେ କାବ୍ୟ ବା ଅଖଣ୍ଡାର୍ଥପ୍ରତିପାଦକ ବାକ୍ୟ ଧ୍ୱନି । ଏହି ବାକ୍ୟାର୍ଥରୂପୀ ଧ୍ୱନିକୁ ଗୋଟିଏ ପଦ କିପରି ପ୍ରକାଶ କରି ପାରିବ ? ବିଶେଷତଃ ଯେଉଁ ପଦ ନିଜର ଅର୍ଥକୁ ମଧ୍ୟ ପ୍ରକାଶ କରିବାରେ ଅସମର୍ଥ ସେ କିପରି ଗୋଟିଏ ସମ୍ପୂର୍ଣ୍ଣ ବାକ୍ୟାର୍ଥ-ରୂପ ଧ୍ୱନିକୁ ପ୍ରକାଶ କରି ପାରିବ ? ଯେଣୁ ଏହା ସର୍ବଥା ଅସମ୍ଭବ । ଏହି ବିଷୟଟିକୁ ପୂର୍ବପକ୍ଷରୂପେ ସ୍ଥାପନ କରାଯାଉଛି ଯଥା :—

ପ୍ରଶ୍ନ :—ଧ୍ୱନି ଲକ୍ଷଣରେ ତୁମ୍ଭେ "ଧ୍ୱନିଃ କାବ୍ୟବିଶେଷଃ" ବୋଲି କହିବା ଦ୍ୱାରା ବ୍ୟଙ୍ଗ୍ୟ-ବ୍ୟଞ୍ଜକ-ବ୍ୟଞ୍ଜନାର ସମୁଦାୟରୂପ କାବ୍ୟକୁ ତ ଧ୍ୱନି ବୋଲି ପୂର୍ବରୁ କହିଛ ; ତେବେ ସେଭଳି ଗୋଟିଏ କାବ୍ୟରୂପୀ ଧ୍ୱନିକୁ ପଦଟିଏ ମାତ୍ର କିପରି ବୁଝାଇ ପାରିବ ?

ପ୍ରକାଶତ୍ୱେ ନୋପପଦ୍ୟତେ, ପଦାନାଂ ସ୍ମାରକତ୍ୱେନ ଅବାଚକତ୍ୱାତ୍ ।

୨୭ । ଉଚ୍ୟତେ—ସ୍ୟାଦେଷ ଦୋଷଃ, ଯଦି ବାଚକତ୍ୱଂ ପ୍ରୟୋଜକଂ ଧ୍ୱନିବ୍ୟବହାରେ ସ୍ୟାତ୍ । ନ ତ୍ୱେବମ୍ । ତସ୍ୟ ବ୍ୟଞ୍ଜକତ୍ୱେନ ବ୍ୟବସ୍ଥାନାତ୍ ।

---

କାବ୍ୟରୂପୀ ଧ୍ୱନିକୁ ପଦଟିଏମାତ୍ର ପ୍ରକାଶ କରି ନ ପାରିବାରେ କାରଣ ଏହା ଯେ, ବିଶିଷ୍ଟ ଅର୍ଥ (ବ୍ୟଙ୍ଗ୍ୟାର୍ଥ)କୁ ପ୍ରତିପାଦନ କରୁଥିବା ବ୍ୟଞ୍ଜକ ବାକ୍ୟ ଧ୍ୱନି (କାବ୍ୟବିଶେଷ) । ତାଦୃଶ କାବ୍ୟରୂପୀ ଧ୍ୱନିକୁ ପଦଟି ମାତ୍ର ବୁଝାଇ ପାରିବ ବୋଲି ଯଦି କହିବ, ତେବେ ତାର କାବ୍ୟତ୍ୱ ବା ଧ୍ୱନିତ୍ୱ (ତଦ୍‌ଭାବ) ରହିପାରିବ ନାହିଁ, ଯେଣୁ ପଦ ଅର୍ଥର ବାଚକ ନୁହେ, କିନ୍ତୁ ସ୍ମାରକ । ଯେଉଁ ପଦଟି ତାର ନିଜ ଅର୍ଥକୁ ସୁଦ୍ଧା ପ୍ରକାଶ କରିବାକୁ ଅସମର୍ଥ ସେ କିପରି ଗୋଟିଏ ବାକ୍ୟାର୍ଥରୂପୀ ଧ୍ୱନି ପର୍ଯ୍ୟାୟକ କାବ୍ୟକୁ ବୁଝାଇ ପାରିବ ?

ସଂକ୍ଷେପ—ଏହା ଦ୍ୱାରା ଦୁଇଗୋଟି ପ୍ରଶ୍ନ କରାଯାଇଛି—

୧ । ଯେଉଁ ପଦ ବାଚକ ହେତୁ ଅର୍ଥ ପ୍ରକାଶରେ ଅସମର୍ଥ ସେ କିପରି ଅର୍ଥ ପ୍ରତିପାଦକଧ୍ୱନିକୁ ପ୍ରକାଶ କରି ପାରିବ ?

୨ । ଯେଉଁ ପଦ ବାକ୍ୟର ଗୋଟିଏ ଅବୟବ ମାତ୍ର, ସେ କିପରି ଅଖଣ୍ଡ ବାକ୍ୟାର୍ଥରୂପୀ ଧ୍ୱନିକୁ ବୁଝାଇ ପାରିବ ?

ବ୍ୟାଖ୍ୟା—(କାବ୍ୟବିଶେଷଃ ବିଶିଷ୍ଟଂ କାବ୍ୟଂ ଧ୍ୱନିକାବ୍ୟମିତିଯାବତ୍ । ବିଶିଷ୍ଟାର୍ଥପ୍ରତିପତ୍ତି ହେତୁଃ—ବିଶିଷ୍ଟସ୍ୟ ଅର୍ଥସ୍ୟ ପ୍ରତିପତ୍ତୌ ବୋଧେ ହେତୁଃ ବ୍ୟଞ୍ଜକ ଇତି ଭାବଃ । ଶବ୍ଦସନ୍ଦର୍ଭବିଶେଷଃ—ବିଶିଷ୍ଟଂବାକ୍ୟମିତିଯାବତ୍ । ତଦ୍‌ଭାବଃ କାବ୍ୟବିଶେଷତ୍ୱଂ ଧ୍ୱନିତ୍ୱମିତିଯାବତ୍) ।

୨୭ । (ଉକ୍ତ ପ୍ରଶ୍ନ ଦୁଇଟିର ଯଥାକ୍ରମେ ଉତ୍ତର ଦିଆଗଲା) ଯଥା— ଉତ୍ତର—ଧ୍ୱନି ପ୍ରତୀତି ପାଇଁ ଯଦି ବାଚକତାର ପ୍ରୟୋଜନ ହେଉଥାନ୍ତା ତେବେ ଏହି ବାଦୀ କଥିତ ଦୋଷ ଘଟନ୍ତା । ପରନ୍ତୁ ଧ୍ୱନିପ୍ରକାଶ ପାଇଁ ପଦ କିମ୍ବା ବାକ୍ୟ ବାଚକ ନୁହନ୍ତି, କିନ୍ତୁ, ବ୍ୟଞ୍ଜକ ।

ଏଣୁ ଅର୍ଥସ୍ମାରକ ପଦମାନଙ୍କର ବ୍ୟଞ୍ଜକତାରେ ବାଧା ନାହିଁ, ସୁତରାଂ ଧ୍ୱନି ପଦଦ୍ୱାରା ପ୍ରକାଶିତ (ବ୍ୟକ୍ତ ହୋଇ ପାରିବ ।

୨୮ । କିଂଚ କାବ୍ୟାନାଂ ଶରୀରଣାମିବ ସଂସ୍ଥାନବିଶେଷାବଚ୍ଛିନ୍ନସମୁଦାୟସାଧ୍ୟାଽପି ଗୁରୁତ୍ୱପ୍ରତୀତିରନ୍ୱୟବ୍ୟତିରେକାଭ୍ୟାଂ ଭାଗେଷୁ କଲ୍ପ୍ୟତ ଇତି ପଦାନାମପି ବ୍ୟଞ୍ଜକତ୍ୱମୁଖେନ ବ୍ୟବସ୍ଥିତୋ ଧ୍ୱନି ବ୍ୟବହାରୋ ନ ବିରୋଧୀ ।

୨୯ । ଅନଷ୍ଟସ୍ୟ ଶ୍ରୁତିର୍ଯଦ୍ୱଦାପାଦୟତି ଦୁଷ୍ଟତାମ୍ ।
ଶ୍ରୁତିଦୁଷ୍ଟାଦିଷୁ ବ୍ୟକ୍ତଂ ତଦ୍ୱଦିଷ୍ଟସ୍ମୃତିର୍ଗୁଣମ୍ ॥

୩୦ । ପଦାନାଂ ସ୍ମାରକତ୍ୱେଽପି ପଦମାତ୍ରାବଭାସିନଃ ।
ତେନ ଧ୍ୱନେଃ ପ୍ରଭେଦେଷୁ ସର୍ବେଷ୍ୱେବାସ୍ତି ରମ୍ୟତା ॥

---

୨୮ । ଆଉ ମଧ୍ୟ କାବ୍ୟ ଗୋଟିଏ ଶରୀର ସ୍ୱରୂପ । ପଦଗୁଡ଼ିକ ଗୋଟିଏ ଗୋଟିଏ କରଚରଣାଦି ଅଙ୍ଗ ସ୍ୱରୂପ । ସମୁଦାୟ ଶରୀରରୁ ଲାବଣ୍ୟ ପ୍ରତୀତି ହେଲା ପରି ଗୁରୁତ୍ୱ (ଧ୍ୱନି) ପ୍ରତୀତି ସମୁଦାୟ କାବ୍ୟରୁ ହେଲେ ମଧ୍ୟ ଅନ୍ୱୟ ବ୍ୟତିରେକ ସମ୍ବନ୍ଧରେ ତତ୍ତତ୍ ଭାଗରେ (ପଦମାନଙ୍କରେ ଓ କର ଚରଣାଦିରେ) କଳ୍ପନା କରାଯାଏ । ଅର୍ଥାତ୍ କୌଣସି ଲାବଣ୍ୟମୟୀ ଅଙ୍ଗନାର ମୁଖକୁ ଦେଖି 'ଏହାର ମୁଖଟିରେ ଲାବଣ୍ୟ ଅଛି' ବୋଲି ଯେପରି କୁହାଯାଏ, ସେହିପରି 'ପଦଗତ ଧ୍ୱନି' ବୋଲି ପଦରେ ଧ୍ୱନିର ବ୍ୟବହାର କରାଯାଏ । ସୁତରାଂ ବ୍ୟଞ୍ଜକଭାବେ ପଦମାନେ ଧ୍ୱନିର ପ୍ରକାଶକ ହେବା ଅସଙ୍ଗତ ନୁହେ ।

୨୯ । ତିନିଗୋଟି ପରିକର (କାରିକାର୍ଥ ପରିପୂରକ) ଶ୍ଳୋକ ଯଥା— ଯେପରି ଶ୍ରୁତିଦୁଷ୍ଟ କାବ୍ୟରେ ଅନଭିଳଷିତ ପରୁଷଅଶ୍ଳୀଳାଦିର ଶ୍ରବଣ କାବ୍ୟର ଦୋଷ ସମ୍ପାଦନ କରେ, ସେହିପରି ଅଭିଳଷିତ ପଦ (ଯେଉଁ ପଦ ଅଭିଳଷିତ ଅର୍ଥକୁ ପ୍ରକାଶ କରି ପାରେ)ର ପ୍ରୟୋଗ କାବ୍ୟର ଗୁଣ ସମ୍ପାଦନ କରେ ।

୩୦ । ପଦମାନେ ବାଚକ ନୋହି ସ୍ମାରକ ହୋଇଥିଲେ ମଧ୍ୟ ଅବିବକ୍ଷିତ ବାଚ୍ୟାଦି ସମସ୍ତ ପ୍ରକାର ଭେଦରେ ପଦମାନରେ ପ୍ରକାଶମାନ ହେଉଥିବା ଧ୍ୱନିର ରମଣୀୟତା ଅଛି । ଅର୍ଥାତ୍ ଅବିବକ୍ଷିତ ବାଚ୍ୟାଦି ସମସ୍ତ ଭେଦ ଉପଭେଦମାନଙ୍କରେ ଧ୍ୱନି ପଦଗତଭାବେ ରହି ଗୁରୁତା ପ୍ରକଟନ କରି ପାରେ ।

୩୧ । ବିଚ୍ଛିତ୍ତିଶୋଭିନୈକେନ ଭୂଷଣେନେବ କାମିନୀ
ପଦଦ୍ୟୋତ୍ୟେନ ସୁକବେର୍ଧ୍ୱନିନା ଭାତି ଭାରତୀ ॥
ଇତି ପରିକରଶ୍ଳୋକାଃ ।

୩୨ । ଯସ୍ତ୍ୱଲକ୍ଷ୍ୟକ୍ରମବ୍ୟଙ୍ଗ୍ୟୋ ଧ୍ୱନିର୍ବର୍ଣ୍ଣପଦାଦିଷୁ ।
ବାକ୍ୟେ ସଂଘଟନାୟାଂ ଚ ସ ପ୍ରବନ୍ଧେଽପି ଦୀପ୍ୟତେ ॥୨।

୩୩ । ଶଷୌ, ସରେଫସଂଯୋଗୋ ଢକାରଶ୍ଚାପି ଭୂୟସା ।
ବିରୋଧିନଃ ସ୍ୟୁଃ ଶୃଙ୍ଗାରେ ତେ, ନ ବର୍ଣ୍ଣା ରସଚ୍ୟୁତଃ ।୩।

---

୩୧ । ଯେପରି କାମିନୀ ନାସିକାଦି ଏକ ଅଙ୍ଗରେ ଧାରଣ କରିଥିବା ବିଚିତ୍ର ଶୋଭାଧାୟକ ଅଳଂକାର ଦ୍ୱାରା ଶୋଭା ପାଏ, ସେହିପରି ସୁକବିଙ୍କର କାବ୍ୟ (ଭାରତୀ) ପଦ ପ୍ରକାଶିତ ବିଚିତ୍ର ଶୋଭାଧାୟୀ ଧ୍ୱନି ଦ୍ୱାରା ଶୋଭା ପାଏ । ଅର୍ଥାତ୍ ଧ୍ୱନି ଏକ ପଦରୁ ପ୍ରକାଶିତ ହେଲେ ମଧ୍ୟ ସମୁଦାୟ କାବ୍ୟକୁ ଭୂଷିତ କରେ । ଯଥା ଏକ ଅଙ୍ଗରେ ଅଳଂକାର ଲଗାଇଥିବା ସମୁଦାୟ ଅଙ୍ଗବିଶିଷ୍ଟ ରମଣୀ ଶୋଭା ପାଏ ।

୩୨ । ଯାହାକି ଅଲକ୍ଷ୍ୟକ୍ରମବ୍ୟଙ୍ଗ୍ୟଧ୍ୱନି ଅର୍ଥାତ୍ ରସାଦି ଧ୍ୱନି ତାହା ବର୍ଣ୍ଣ, ପଦ, ବାକ୍ୟ, ସଙ୍ଘଟନା (ପଦ ଓ କାବ୍ୟର ସଙ୍ଘଟନା) ଓ ପ୍ରବନ୍ଧରେ ମଧ୍ୟ ଦ୍ୟୋତିତ ହୁଏ ।

(ବର୍ଣ୍ଣ ସମୁଦାୟ ପଦ, ପଦ ସମୁଦାୟ ବାକ୍ୟ ଓ ବାକ୍ୟ ସମୁଦାୟ ପ୍ରବନ୍ଧ । ଏଣୁ କ୍ରମରେ ବର୍ଣ୍ଣପଦ ଇତ୍ୟାଦି କୁହାଯାଇଅଛି)

୩୩ । ପଦମାନେ ବାଚକ ନ ହେଲେ ହେଁ ଅର୍ଥ ସ୍ମାରକ ହୋଇ ଥିବାରୁ ବ୍ୟଞ୍ଜକ ହୋଇ ପାରନ୍ତି, ବର୍ଣ୍ଣମାନେ ତ ଅର୍ଥର ବାଚକ କିମ୍ବା ସ୍ମାରକ ନୁହନ୍ତି ସେମାନେ ବିଲ୍‌କୁଲ୍ ଅର୍ଥହୀନ, ତେବେ କିପରି ସେମାନେ ବ୍ୟଞ୍ଜକ ହେବେ ? ଏହି ଆଶଂକାରେ କୁହାଯାଉଅଛି) :—

ଶକାର, ଷକାର, ଓ ରେଫଯୁକ୍ତ ବର୍ଣ୍ଣ ଯଥା—ର୍କ, ର୍ଖ ଇତ୍ୟାଦି ଏବଂ ଢ଼କାର, ଶୃଙ୍ଗାର ରସରେ ଅତ୍ୟନ୍ତ ବିରୋଧୀ । ଶୃଙ୍ଗାର କବିତାରେ ଉକ୍ତ ବିରୁଦ୍ଧ ବର୍ଣ୍ଣମାନେ (ତେ) ବହୁଳ ଭାବେ ପ୍ରଯୁକ୍ତ ହେଲେ ରସ ସ୍ରାବ କରି ପାରନ୍ତି ନାହିଁ (ରସ-ଚ୍ୟୁତଃ) । ଅର୍ଥାତ୍ ରସଶୂନ୍ୟ ।

୩୪ । ତ ଏବ ତୁ ନବେଶ୍ୟନ୍ତେ ବୀଭତ୍ସାଦୌ ରସେ ଯଦା ।
ତଦା ତଂ ଦୀପୟନ୍ତ୍ୟେବ ତେନ ବର୍ଣ୍ଣା ରସଚ୍ୟୁତଃ ॥

୩୫ । ଶ୍ଲୋକଦ୍ୱୟେନାନ୍ୱୟ-ବ୍ୟତିରେକାଭ୍ୟାଂ ବର୍ଣ୍ଣାନାଂ ଦ୍ୟୋତକତ୍ୱଂ ଦର୍ଶିତଂ ଭବତି ॥

୩୬ । ପଦେ ଚାଲକ୍ଷ୍ୟକ୍ରମବ୍ୟଙ୍ଗ୍ୟସ୍ୟ ଦ୍ୟୋତକତ୍ୱଂ ଯଥା—

ଉତ୍କମ୍ପିନୀ ଭୟପରିସ୍ଖଳିତାଂଶୁକାନ୍ତା
ତେ ଲୋଚନେ ପ୍ରତିଦିଶଂ ବିଧୁରେ କ୍ଷିପନ୍ତୀ ॥
କ୍ରୂରେଣ ଦାରୁଣତୟା ସହସୈବ ଦଗ୍ଧା ।
ଧୂମାନ୍ଧିତେନ ଦହନେନ ନ ବୀକ୍ଷିତାଽସି ॥

---

୩୪ । ସେହି ପରୁଷବର୍ଣ୍ଣ ଶ, ଷ, ପ୍ରଭୃତି ଯଦି ବୀଭତ୍ସାଦି ରସରେ ପ୍ରୟୋଗ କରାଯାନ୍ତି, ତେବେ ସେହି ବୀଭତ୍ସାଦି ରସକୁ ଉଦ୍ଦୀପିତ କରନ୍ତି, ସେହି ହେତୁରୁ (ତେନ), ଉକ୍ତ ବର୍ଣ୍ଣମାନେ ରସ ପ୍ରବାହ ସୃଷ୍ଟି କରନ୍ତି ।

(ଶକାରାଦି ବର୍ଣ୍ଣମାନେ ଶୃଙ୍ଗାରରସ ପ୍ରକାଶରେ ବାଧା ଦେଉଥିବାରୁ ଏବଂ ବୀଭତ୍ସାଦି ରସର ଦୀପକ ହେଉଥିବାରୁ ରସ ପ୍ରକାଶ ନିମନ୍ତେ ସେମାନଙ୍କର ଆବଶ୍ୟକତା ନିଶ୍ଚିତ ରହିଛି । ଏଣୁ ବର୍ଣ୍ଣମାନେ "ରସଚ୍ୟୁତଃ" ଅର୍ଥାତ୍ ରସସ୍ରାବୀ) ।

୩୫ । "ଶଷୌ ସରେଫ, ଇତ୍ୟାଦି କାରିକାରେ ଶଷାଦି ପରୁଷବର୍ଣ୍ଣ ସତ୍ତ୍ୱେ ଶୃଙ୍ଗାରାଦିର ଅପ୍ରକାଶ," (ବ୍ୟତିରେକ ଦୃଷ୍ଟାନ୍ତ), ଓ "ତଏବ, ଇତ୍ୟାଦି କାରିକାରେ ଶଷାଦି ପରୁଷବର୍ଣ୍ଣ ସଦ୍ଭାବରେ ବୀଭତ୍ସାଦିର ସୁପ୍ରକାଶ" (ଅନ୍ୱୟ ଦୃଷ୍ଟାନ୍ତ) ବ୍ୟତିରେକ ଓ ଅନ୍ୱୟ କ୍ରମରେ କହିବା ଦ୍ୱାରା ବର୍ଣ୍ଣମାନେ ରସାଦିର ବ୍ୟଞ୍ଜକ ହୋଇ ପାରନ୍ତି ବୋଲି ପ୍ରଦର୍ଶିତ ହେଲା । ସୁତରାଂ ବର୍ଣ୍ଣର ବ୍ୟଞ୍ଜକତାରେ ଆଶଂକା ବୃଥା ।

(ବସ୍ତୁତଃ ରସାଦିମାନେ ରସାଦିର ବ୍ୟଞ୍ଜକ, ତତ୍ତଦ୍ରସୀୟ ରଚନାର ଅନୁକୂଳ ଭାବରେ ବର୍ଣ୍ଣପ୍ରଭୃତି ସହକାରୀ ବ୍ୟଞ୍ଜକ) ।

୩୬ । ଆଲକ୍ଷ୍ୟକ୍ରମ ବ୍ୟଙ୍ଗ୍ୟଧ୍ୱନିର ବ୍ୟଞ୍ଜକ ପଦ ଯଥା—

ବାସବଦତ୍ତାଙ୍କର ଦାହ ଶ୍ରବଣରେ ଶୋକାକୁଳ ବତ୍ସରାଜଙ୍କର ଉକ୍ତି :—

୩୭ । ଅତ୍ର ହି "ତେ" ଇତ୍ୟେତତ୍ ପଦଂ ରସମୟତ୍ୱେନ ସ୍ଫୁଟମେବାବଭାସତେ ସହୃଦୟାନାମ୍ ॥

୩୮ । ଯଥା ବା—ଝଟିତ କନକଚିତ୍ରେ ତତ୍ର ଦୃଷ୍ଟେ କୁରଙ୍ଗେ
ରଭସବିକସିତାସ୍ତେ ଦୃଷ୍ଟିପାତାଃ ପ୍ରିୟାୟାଃ
ପବନବିଲୁଳିତାନାମୁତ୍ପଲାନାଂ ପଲାଶ-
ପ୍ରକରମିବ କିରନ୍ତଃ ସ୍ମର୍ଯ୍ୟମାଣା ଦହନ୍ତି ॥

---

ହେ ପ୍ରିୟେ ! ଦାହ ଭୟ ବଶତଃ ଅତ୍ୟନ୍ତ କମ୍ପଯୁକ୍ତା ଓ ଗଳିତ-ବସନାଞ୍ଚଳା ଏବଂ ଆତ୍ମପରିତ୍ରାଣ ପାଇଁ ଚତୁର୍ଦ୍ଦିଗରେ (ତେ) ସେହି ନାନାଗୁଣ ସମ୍ପନ୍ନ ବ୍ୟାକୁଳ ଲୋଚନ ଦୁଇଟିକୁ ବିକ୍ଷେପ କରୁଥିବା ତୁମ୍ଭଙ୍କୁ (ବାସବଦତ୍ତଙ୍କୁ) ଧୂମାନ୍ଧବହ୍ନି ଦେଖି ପାରିଲା ନାହିଁ, ଏଣୁ କ୍ରୁର ବହ୍ନି ଦାରୁଣଭାବେ ସହସା ତୁମ୍ଭଙ୍କୁ ପୋଡ଼ିପକାଇଲା, (ଦୃଷ୍ଟି ପଡ଼ିଥିଲେ ଅତ୍ୟନ୍ତ କ୍ରୁର ବହ୍ନିର ମଧ୍ୟ ତୁମ୍ଭଠାରେ ଦୟା ଆସିଥାନ୍ତା) ॥

୩୭ । ଏହି ଶ୍ଳୋକରେ "ତେ" ଏହି ପଦଟି ସହୃଦୟମାନଙ୍କୁ ସ୍ପଷ୍ଟ-ଭାବେ ରସମୟ ହୋଇ ପ୍ରତୀତ ହେଉଅଛି । ସୁତରାଂ ଏଠାରେ ଅଲକ୍ଷ୍ୟ-କ୍ରମଧ୍ୱନି ପଦଗତ ହୋଇ ରହିଅଛି ।

୩୮ । ଅନ୍ୟ ଉଦାହରଣ ଯଥା:—ସୁନାରେ ଗଢ଼ା ସେହି ବିଚିତ୍ର କୁରଙ୍ଗଟିକୁ ଝଟ୍‌କରି ଦେଖିପକାନ୍ତେ; ପବନରେ ଚଳିତ ହେବାରୁ ବିକ୍ଷିପ୍ତ ହେଉଥିବା ପଦ୍ମପତ୍ର ରାଶିପରି ମନୋହର, ପ୍ରିୟାଙ୍କର ସେହି ଅଶେଷ ଶୋଭା-ଧାର ହର୍ଷୋତ୍‌ଫୁଲ୍ଲ ଦୃଷ୍ଟିପାତ ହଠାତ୍ ସ୍ମୃତିପଥରେ ଉପସ୍ଥିତ ହୋଇ ମୋତେ ପୋଡ଼ି ପକାଉଅଛି । (ଏଥିରେ "ରାମ ମୃଗ ମାରିବାକୁ ଯିବାବେଳେ ସୀତାଙ୍କର ଯେଉଁ ଅବସ୍ଥା ଥିଲା, ତାହାକୁ ସୀତା ଚୋରି ପରେ ସ୍ମରଣ କରୁଅଛନ୍ତି ।")

ଏ ପଦ୍ୟରେ ମଧ୍ୟ "ତେ" ଏହି ପଦଟି ଅଶେଷ ଶୋଭାସୂଚନରୂପ ଅର୍ଥ ଦ୍ୱାରା ବିପ୍ରଲମ୍ଭ ଶୃଙ୍ଗାର ରସକୁ ପୁଷ୍ଟ କରୁଅଛି ।

(ଏ ଶ୍ଳୋକଟି କୌଣସି କୌଣସି ପୁସ୍ତକରେ ନାହିଁ)

୩୯ । ପଦାବୟବେନ ଦ୍ୟୋତନଂ ଯଥା—

"ବ୍ରୀଡ଼ାଯୋଗାନ୍ନତବଦନୟା ସନ୍ନିଧାନେ ଗୁରୂଣାଂ
ବଦ୍ଧୋତ୍କମ୍ପଂ କୁଚକଲଶୟୋର୍ମନ୍ୟୁମନ୍ତର୍ନିଗୃହ୍ୟ ।
ତିଷ୍ଠେତ୍ୟୁକ୍ତଂ କିମିବ ନ ତୟା ଯତ୍ସମୁତ୍ସୃଜ୍ୟ ବାଷ୍ପଂ,
ମୟ୍ୟାସକ୍ତଶ୍ଚକିତହରିଣୀହାରିନେତ୍ରତ୍ରିଭାଗଃ ॥

୪୦ । ଇତ୍ୟତ୍ର ତ୍ରିଭାଗଶବ୍ଦଃ ।

୪୧ । ବାକ୍ୟରୂପସ୍ତ୍ୱଲକ୍ଷ୍ୟକ୍ରମବ୍ୟଙ୍ଗ୍ୟୋ ଧ୍ୱନିଃ ଶୁଦ୍ଧୋଽଲଂକାରସଂକୀର୍ଣ୍ଣଶ୍ଚେତି ଦ୍ୱିଧାମତଃ ।

---

୩୯ । ଅସଂଲକ୍ଷ୍ୟକ୍ରମ ବ୍ୟଙ୍ଗ୍ୟଧ୍ୱନିର ବ୍ୟଞ୍ଜକ ପଦାଂଶ ଯଥା—
କୌଣସି ପ୍ରୋଷିତ ନାୟକର ଉକ୍ତି—

ଗୁରୁଜନମାନଙ୍କ ନିକଟରେ ଲଜ୍ଜାହେତୁ ମୁହଁ ଲୁଆଁଇଥିବା ସେହି ମୋର ପ୍ରିୟତମା କମ୍ପ ଆଣି ଦେଉଥିବା ଉତ୍କଟ କ୍ରୋଧକୁ ଉଭୟ କୁଚକୁମ୍ଭ ମଧ୍ୟରେ ଅର୍ଥାତ୍ ହୃଦୟରେ ନିରୋଧ ରଖି ଲୁହ ଗଡ଼ାଇ ଭୟାକୁଳ ହରିଣୀର ନେତ୍ର ପରି ମନୋହର ନେତ୍ରର କଟାକ୍ଷକୁ ମୋଠାରେ ଯାହା ଆସକ୍ତ କରି ରଖିଥିଲା, ତଦ୍ଦ୍ୱାରା ସେ (ବିଦେଶକୁ ନ ଯାଇ ଘରେ) ରହ ବୋଲି କହି ନ ଥିଲା କି ? ।

୪୦ । ଏଠାରେ ତ୍ରିଭାଗ ଶବ୍ଦ ଗୁରୁସାନ୍ନିଧ୍ୟରୁ ଅସମ୍ମୁଖତ୍ୱ ଓ ବଲ୍ଲଭ ପ୍ରବାସ ଦୁଃଖ ହେତୁ କାତରତ୍ୱକୁ ସୂଚାଇ ବିପ୍ରଲମ୍ଭ ଶୃଙ୍ଗାରକୁ ପୁଷ୍ଟ କରୁଅଛି । ଏହି "ତ୍ରିଭାଗ" ଶବ୍ଦଟି "ଚକିତ ହରିଣୀହାରି-ନେତ୍ର ତ୍ରିଭାଗ" ପଦର ଏକ ଅଂଶ ହୋଇଥିବାରୁ ପଦାଂଶ, ତେଣୁ ଏହା ପଦାଂଶଗତ ଅଲକ୍ଷ୍ୟକ୍ରମଧ୍ୱନିର ସ୍ଥଳ ।

୪୧ । ଅସଂଲକ୍ଷ୍ୟକ୍ରମ ବ୍ୟଙ୍ଗ୍ୟ ଧ୍ୱନିର ବ୍ୟଞ୍ଜକ ବାକ୍ୟ, ଶୁଦ୍ଧ ଓ ଅଲଂକାର ସଂକୀର୍ଣ୍ଣ (ଅଲଂକାର ମିଶ୍ରିତ) ରୂପରେ ଦୁଇ ପ୍ରକାର ।

୪୨ । ତତ୍ର ଶୁଦ୍ଧସ୍ୟୋଦାହରଣଂ ଯଥା, ରମାଭ୍ୟୁଦୟେ—
"କୃତକକୁପିତୈଃ", ଇତ୍ୟାଦ୍ୟଃ ଶ୍ଳୋକଃ ॥

୪୩ । ଏତଦ୍ଧିବାକ୍ୟଂ ପରସ୍ପରାନୁରାଗଂ ପରିପୋଷପ୍ରାପ୍ତଂ
ପ୍ରଦର୍ଶୟତ୍ ସର୍ବତ ଏବ ପରଂରସତତ୍ତ୍ୱଂ ପ୍ରକାଶୟତି ।

---

୪୨ । ଶୁଦ୍ଧର ଉଦାହରଣ ଯଥା—ଯଶୋବର୍ମରଚିତ ରାମାଭ୍ୟୁଦୟ ନାଟକରେ :—(ସଂପୂର୍ଣ୍ଣ ଶ୍ଳୋକ)—

କୃତକ କୁପିତୈ— ର୍ବାଷ୍ପାମ୍ଭୋଭିଃ ସ ଦୈନ୍ୟ ବିଲୋକିତୈ-
ର୍ବନମପି ଗତା ଯସ୍ୟ ପ୍ରୀତ୍ୟା ଧୃତାଽପି ତଥାମ୍ବୟା ।
ନବଜଳଧରଶ୍ୟାମାଃ ପଶ୍ୟନ୍ ଦିଶୋ ଭବତୀଂ ବିନା
କଠିନ ହୃଦୟୋ ଜୀବତ୍ୟେବ ପ୍ରିୟେ ସ ତବ ପ୍ରିୟଃ ॥

ରାବଣହୃତା ସୀତାଙ୍କୁ ସ୍ମରଣ କରି ରାମ କହୁଛନ୍ତି :—ହେ ପ୍ରିୟେ ସୀତେ ! ଶାଶୁ ଓଠାରି ଧରିଥିଲେ ମଧ୍ୟ ଘରେ ନ ରହି କପଟ କ୍ରୋଧ, କ୍ରନ୍ଦନାଶ୍ରୁପାତ, ଓ କାତର ଦୃଷ୍ଟିକ୍ଷେପ କରି ଯାହା ପ୍ରୀତିରେ ବନକୁ ଆସିଥିଲ, ସେହି କଠିନ ହୃଦୟ ତୁମ୍ଭର ପ୍ରିୟ (ଆଜି) ତୁମ୍ଭ ବିରହରେ ନବଜଳଧର ଦ୍ୱାରା ଶ୍ୟାମଳ ହୋଇଥିବା ଦିଗମାନଙ୍କୁ ଦେଖି ବଞ୍ଚି ରହିଛି ।

୪୩ । ଏଥିରେ ନାୟକ ନାୟିକାଙ୍କର ପରସ୍ପରାନୁରାଗ ପରିପୁଷ୍ଟ ହୋଇ ବର୍ଣ୍ଣିତ ହୋଇଅଛି । ଗୁରୁଜନ ଆଦେଶ ଲଂଘନ କରି, କୁଳବଧୂ ମର୍ଯ୍ୟାଦା ତ୍ୟାଗ କରି, ବନକୁ ଆସିବା ଦ୍ୱାରା ପ୍ରିୟାର ସ୍ୱାମୀଠାରେ ଅନୁରକ୍ତି; ଏବଂ "ତୁମ୍ଭ ବିଚ୍ଛେଦରେ ବଞ୍ଚିଛି" ବୋଲି କହିବା ଦ୍ୱାରା ପ୍ରିୟତମର ପ୍ରିୟତମାଠାରେ ଅନୁରକ୍ତି ପ୍ରଦର୍ଶିତ ହୋଇଅଛି । ଏହିପରି ପରସ୍ପର ଅନୁରାଗ ବର୍ଣ୍ଣନ ଦ୍ୱାରା ପ୍ରକୃଷ୍ଟ ବିପ୍ରଲମ୍ଭ ଶୃଙ୍ଗାରଂ ଧ୍ୱନି ହେଉଅଛି । ସମୁଦାୟ ବାକ୍ୟଟି ଧ୍ୱନିର ବ୍ୟଞ୍ଜକ ହେଉଥିବାରୁ ଏହା—ବାକ୍ୟଗତ ଅସଂଲକ୍ଷ୍ୟକ୍ରମ ବ୍ୟଙ୍ଗ୍ୟଧ୍ୱନି ।

ଏହି ବାକ୍ୟରେ ଅଳଂକାରର ମିଶ୍ରଣ ନ ଥିବାରୁ ଏହା ଶୁଦ୍ଧ ବାକ୍ୟ ।

୪୪ । ଅଲଂକାରାନ୍ତରସଂକୀର୍ଣ୍ଣୋ ଯଥା—
“ସ୍ମରନବନଦୀପୂରେଣୋଢ଼ାଃ” ଇତ୍ୟାଦି ଶ୍ଲୋକଃ ।

---

୪୪ । ଅଲଂକାରାନ୍ତରସଂକୀର୍ଣ୍ଣ ବ୍ୟଞ୍ଜକ ବାକ୍ୟ ଯଥା – (ସମ୍ପୂର୍ଣ୍ଣ ଶ୍ଲୋକ) ।

ସ୍ମରନବନଦୀପୂରେଣୋଢ଼ାଃ ପୁନର୍ଗୁରୁସେତୁଭି
ର୍ଯଦପି ବିଧୃତା ଦୁଃଖଂ ତିଷ୍ଠନ୍ତ୍ୟପୂର୍ଣ୍ଣମନୋରଥାଃ ।
ତଦପି ଲିଖିତପ୍ରଖ୍ୟୈରଙ୍ଗୈଃ ପରସ୍ପରମୁନ୍ମୁଖା
ନୟନ ନଳିନୀ-ନାଳାନୀତଂ ପିବନ୍ତି ରସଂ ପ୍ରିୟାଃ ।

ଅର୍ଥ – ପ୍ରିୟ ଓ ପ୍ରିୟା ଉଭୟ ପକ୍ଷ, ସ୍ମର ରୂପକ ନଦୀର ନୂତନ ପ୍ରବାହରେ ଭସି ଆସିଥିଲେ ମଧ୍ୟ, (ଯେପରି ନଦୀର ବର୍ଷାଦିନର ବଢ଼ି ତୃଣ କାଷ୍ଠାଦିକୁ ସ୍ରୋତ ଦ୍ୱାରା ଭସାଇ ଆଣେ, ସେହିପରି ଯୌବନର ପ୍ରାଥମିକ ଉନ୍ମାଦରେ ପରସ୍ପର ପ୍ରତି ଆକୃଷ୍ଟ ହୋଇ ଥିଲେ ମଧ୍ୟ), ମାତା ପିତାପ୍ରଭୃତି ଗୁରୁଜନରୂପକ ଗୁରୁତର ସେତୁବନ୍ଧ ଦ୍ୱାରା ମିଳନରେ ବାଧାପ୍ରାପ୍ତ ହେବାରେ ଅପୂର୍ଣ୍ଣ ମନୋରଥ ହୋଇ ଯଦ୍ୟପି ଦୁଃଖ ଅନୁଭବ କରୁଅଛନ୍ତି, ତଥାପି ସେମାନେ (ଉଭୟ ପକ୍ଷ) କାମାବେଶ-ବଶତଃ ତନ୍ମୟ ହେବାରେ ଅଙ୍ଗ ପ୍ରତ୍ୟଙ୍ଗ ନିଶ୍ଚେଷ୍ଟ ହେବା ହେତୁ ଚିତ୍ରପିତୁଳା ସଦୃଶ ନିଶ୍ଚଳଭାବେ ପରସ୍ପରକୁ ଦେଖିବା ପାଇଁ ମୁହଁ ଟେକି (ଉନ୍ମୁଖ) ରହି, ପରସ୍ପର ଚକ୍ଷୁମିଳନରେ କେବଳ, ନୟନରୂପକ ପଦ୍ମ-ପୁଷ୍ପର ଦୃଷ୍ଟିଧାରରୂପୀ ନାଡ଼ ଦ୍ୱାରା ସଂଗୃହୀତ ପ୍ରେମରସରୂପ ଜଳକୁ ପାନ କରୁଅଛନ୍ତି ।

ଏ ପଦ୍ୟରେ ପ୍ରବାହ ଚାଳିତ ବସ୍ତୁଦ୍ୱୟ ସେତୁବନ୍ଧ ଦ୍ୱାରା ପରସ୍ପର ସଂଯୋଗରୁ ବଞ୍ଚିତ ହେବା ବର୍ଣ୍ଣନ କରାଯାଇଛି । ଏକନଦୀର ପ୍ରବାହରେ ଅଗ୍ର ପଶ୍ଚାଦ୍‌ଭାବେ ଆଗତ ବସ୍ତୁମାନଙ୍କର ସେତୁବନ୍ଧ ବିଚ୍ଛେଦକ ନ ହୋଇ ବରଂ ସଂଯୋଜକ ହେବ । ତେଣୁ ଦୁଇଟି ନଦୀ (ନଦୀ ଓ ଉପନଦୀ)ରେ ସ୍ୱ ସ୍ୱ ପ୍ରବାହରେ ଆଗତ ବସ୍ତୁଦ୍ୱୟ ସଙ୍ଗମ ସ୍ଥଳରେ ଅସ୍ଥାୟି ସେତୁବନ୍ଧ ଦ୍ୱାରା ବାରିତ ହୋଇଅଛନ୍ତି ବୋଲି ବୁଝିବାକୁ ହେବ । ଉକ୍ତ ସେତୁ

୪୫ । ଅତ୍ର ହି ରୂପକେଣ ଯଥୋକ୍ତବ୍ୟଞ୍ଜକଲକ୍ଷଣାନୁଗତେନ
ପ୍ରସାଧିତୋ ରସଃ ସୁତରାମଭିବ୍ୟଜ୍ୟତେ ॥

୪୬ । ଅଲକ୍ଷ୍ୟକ୍ରମବ୍ୟଙ୍ଗ୍ୟଃ ସଂଘଟନାୟାଂ ଭାସତେ ଧ୍ୱନିର୍-
ତ୍ୟୁକ୍ତଂ, ତତ୍ସଂଘଟନାସ୍ୱରୂପମେବ ତାବନ୍ନିରୂପ୍ୟତେ ।

୪୭ । ଅସମାସା ସମାସେନ ମଧ୍ୟମେନ ଚ ଭୂଷିତା ।
ତଥା ଦୀର୍ଘସମାସେତି ତ୍ରିଧା ସଂଘଟନୋଦିତା ।୫।

---

ଉପନଦୀ ଓ ନଦୀର ସଂଯୋଗ ସ୍ଥଳରେ ଉପନଦୀ ମୁହଁରେ ଗୋଟିଏ, ଏବଂ ଉପନଦୀର ମୁହାଣ ଜଳକୁ ପ୍ରଧାନ ନଦୀରେ ଗୋଟିଏ । ପୁନଶ୍ଚ ବନ୍ୟାଜଳର ନିରୋଧ କରାଯାଉଥିବାରୁ ନଦୀଦ୍ୱୟର ପାର୍ଶ୍ୱମାନଙ୍କରେ ମଧ୍ୟ ସେତୁର ଆବଶ୍ୟକତା ରହିଛି । ଏଣୁ କବି "ସେତୁଭିଃ" ପଦ ଦ୍ୱାରା ସେତୁର ବହୁତ୍ୱ ଦର୍ଶାଇଛନ୍ତି ।

୪୫ । ଏ ଶ୍ଳୋକରେ ସବୁଠି ଆରୋପବାଚ୍ୟ—ହୋଇଅଛି । କିନ୍ତୁ ପ୍ରିୟ ଓ ପ୍ରିୟାଠାରେ ଆରୋପ କରାଯାଇ ନାହିଁ । ଏଣୁ ଏହା ବାଚ୍ୟ ଏକଦେଶ—ବିବର୍ତ୍ତି—ରୂପକ ଅଳଙ୍କାର । ଏହି ଅଳଙ୍କାର ପୂର୍ବୋକ୍ତ ସମୀକ୍ଷା ପ୍ରକାରରେ ନିବେଶିତ ହୋଇଥିବା ହେତୁ ପ୍ରକୃତ ରସର ଅନୁଗୁଣ । ସୁତରାଂ ଏଠାରେ ଅଳଙ୍କାର ମିଶ୍ରିତ ବାକ୍ୟାର୍ଥ ଦ୍ୱାରା ଶୃଙ୍ଗାର ରସ ବ୍ୟଙ୍ଗ୍ୟ ହେଲା ।

## ସଂଘଟନା

୪୬ । ଅଲକ୍ଷ୍ୟକ୍ରମ ବ୍ୟଙ୍ଗ୍ୟ ଧ୍ୱନି ପଦ ଓ ବାକ୍ୟର ସଂଘଟନାରେ ମଧ୍ୟ ରହିବ ବୋଲି କୁହାଯାଇଅଛି । ତେଣୁ ବର୍ତ୍ତମାନ ସଂଘଟନାର ସ୍ୱରୂପ ନିରୂପଣ କରାଯାଉଅଛି ଯଥା :—

୪୭ । ସମାସହୀନା କ୍ଷୁଦ୍ରସମାସଯୁକ୍ତା ଓ ଦୀର୍ଘସମାସଯୁକ୍ତା ଏହିପରି ତିନି ପ୍ରକାର ସଂଘଟନା କଥିତ ହୋଇଅଛି ।

୪୮ । କୈଶ୍ଚିତ୍ତୁ କେବଳମନୂଦ୍ୟ ଇଦମୁଚ୍ୟତେ—
ଗୁଣାନାଶ୍ରିତ୍ୟ ତିଷ୍ଠନ୍ତୀ ମାଧୁର୍ଯ୍ୟାଦୀନ୍ ବ୍ୟନକ୍ତି ସା ।
ରସାଂସ୍ତନ୍ନିୟମେ ହେତୁରୌଚିତ୍ୟଂ ବକ୍ତୃବାଚ୍ୟୟୋଃ ।
ସଂଘଟନା ରସାଦୀନ୍ ବ୍ୟନକ୍ତି, ଗୁଣାନାଶ୍ରିତ୍ୟ ତିଷ୍ଠନ୍ତୀତି

୪୯ । ଅତ୍ର ଚ ବିକଳ୍ପ୍ୟଂ—ଗୁଣାନାଂ ସଂଘଟନାୟାଶ୍ଚୈକ୍ୟଂ, ବ୍ୟତିରେକୋ ବା ? ବ୍ୟତିରେକେଽପି ଦ୍ୱୟୀ ଗତି-ର୍ବୋଦ୍ଧବ୍ୟା । ଗୁଣାଶ୍ରୟା ସଂଘଟନ, ସଂଘଟନାଶ୍ରୟା ବା ଗୁଣା ଇତି ।

୫୦ । ତତ୍ରୈକ୍ୟପକ୍ଷେ, ସଂଘଟନାଶ୍ରୟଗୁଣପକ୍ଷେ ଚ ଗୁଣାନା-ତ୍ମଭୂତାନ୍ ଆଧେୟଭୂତାନ୍ ବାଽଽଶ୍ରିତ୍ୟ ତିଷ୍ଠନ୍ତୀ ସଂଘଟନା ରସାଦୀନ୍ ବ୍ୟନକ୍ତୀତ୍ୟୟମର୍ଥଃ ।

---

୪୮ । କେହି କେହି ସେହି କଥାକୁ କେବଳ ଅନୁବାଦ କରି କହନ୍ତି ଯେ—ସେହି ସଂଘଟନା, ମାଧୁର୍ଯ୍ୟପ୍ରଭୃତି ଗୁଣମାନଙ୍କୁ ଆଶ୍ରୟ କରି, ରହି ରସାଦିଙ୍କୁ ବ୍ୟଞ୍ଜନା ବୃତ୍ତିରେ ପ୍ରକାଶ କରେ । ଉକ୍ତ ସଂଘଟନାର ନିୟନ୍ତ୍ରଣ ପ୍ରତି ବକ୍ତା ଓ ବାଚ୍ୟର ଔଚିତ୍ୟ, ହେତୁ ।

୪୯ । ଏଠାରେ ବିଚାର କଲେ ଗୁଣ ଓ ସଂଘଟନାର ପରସ୍ପରଠାରୁ ଅଭିନ୍ନତା (ଐକ୍ୟ) କିମ୍ବା ଭିନ୍ନତା (ବ୍ୟତିରେକ) । ବ୍ୟତିରେକ ପକ୍ଷ ମଧ୍ୟ ଦୁଇ ପ୍ରକାର :—ସଂଘଟନା ଗୁଣମାନଙ୍କୁ ଆଶ୍ରୟ କରିଛି କିମ୍ବା ଗୁଣମାନେ ସଂଘଟନାକୁ ଆଶ୍ରୟ କରିଛନ୍ତି ? ସୁତରାଂ ଏହିପରି ତିନି ପ୍ରକାର ବିକଳ୍ପ । ଯଥା—(୧) ଗୁଣ ଓ ସଂଘଟନାର ଐକ୍ୟ, (୨) ସଂଘଟନାର ଆଶ୍ରୟ ଗୁଣ, (୩) ଗୁଣର ଆଶ୍ରୟ ସଂଘଟନା ।

୫୦ । ଗୁଣ ଓ ସଂଘଟନାର ଐକ୍ୟ ପକ୍ଷରେ ଗୁଣମାନେ ସଂଘଟନାର ଆତ୍ମସ୍ୱରୂପ । (ଯଥା ବୃକ୍ଷତ୍ୱ ଶିଂଶପାକୁ ଆଶ୍ରୟ କରିଛି ତଥା) । ସେହି ଆତ୍ମ-ସ୍ୱରୂପ ଗୁଣମାନଙ୍କୁ ଆଶ୍ରୟ କରି ସଂଘଟନା ରସାଦିଙ୍କୁ ବ୍ୟକ୍ତ କରେ ।

୫୧ । ଯଦା ତୁ ନାନାତ୍ୱପକ୍ଷେ ଗୁଣାଶ୍ରୟସଂଘଟନାପକ୍ଷଃ, ତଦା ଗୁଣାନାଶ୍ରିତ୍ୟେତ୍ୟକ୍ତସ୍ତନ୍ତ୍ରୀତ ଗୁଣପରତନ୍ତ୍ରସ୍ୱଭାବା ନତୁ ଗୁଣତ୍ୱରୂପେତିବେତ୍ୟର୍ଥଃ ॥

୫୨ । କିଂ ପୁନରେବଂ ବିକଳ୍ପନସ୍ୟ ପ୍ରୟୋଜନମ୍ ? ଇତ୍ୟଭିଧୀୟତେ, ଯଦି ଗୁଣାଃ ସଂଘଟନା ଚେତ୍ୟେକଂ ତତ୍ତ୍ୱଂ, ସଂଘଟନାଶ୍ରୟା ବା ଗୁଣାଃ, ତଦା ସଂଘଟନାୟା ଇବ ଗୁଣାନାମପ୍ୟନୟତ ବିଷୟତ୍ୱ ପ୍ରସଙ୍ଗଃ ॥

---

ଗୁଣମାନଙ୍କର ସଂଘଟନା ଆଶ୍ରୟ, ଏହି ପକ୍ଷରେ ଗୁଣମାନେ ଆଧେୟ ଓ ସଂଘଟନା ଆଧାର । ଏହା ଭଟ୍ଟୋଦ୍ଭଟାଦିଙ୍କ ମତ । ସେ ପକ୍ଷରେ ସଂଘଟନା ଆଧେୟ ସ୍ୱରୂପ ଗୁଣମାନଙ୍କୁ ଆଶ୍ରୟ କରି ରସ ରସାଦିଙ୍କୁ ବ୍ୟକ୍ତ କରେ । (ଯଥା ଭୂମିରେ ବୃକ୍ଷ ଅଛି ତଥା ସଂଘଟନାରେ ଗୁଣ ଅଛି ଏହା ଏ ପକ୍ଷର ଦୃଷ୍ଟାନ୍ତ) ।

୫୧ । ଗୁଣ ଓ ସଂଘଟନାର ବ୍ୟତିରେକ ପକ୍ଷରେ "ଗୁଣମାନେ ସଂଘଟନାର ଆଶ୍ରୟ" ଏହି ପକ୍ଷରେ ସଂଘଟନା ଗୁଣାୟତ୍ତ (ଗୁଣ ପରତନ୍ତ୍ର ସ୍ୱଭାବ ।) ଅର୍ଥାତ୍ ସଂଘଟନା ଗୁଣାନୁସାରିଣୀ ; କିନ୍ତୁ ଗୁଣସ୍ୱରୂପା ନୁହେଁ । (ଏ ପକ୍ଷରେ "ରାଜାଶ୍ରିତ ପ୍ରକୃତି ବର୍ଗ" ବୋଲି କହିବା ଦ୍ୱାରା ଯେପରି ଅମାତ୍ୟାଦି ପ୍ରକୃତିମାନେ ରାଜାଙ୍କର ଅଧୀନସ୍ଥ ବୋଲି ଜଣାଯାଏ କିନ୍ତୁ ଆଧାରାଧେୟ ଭାବ ଜଣା ନ ଯାଏ, ସେହିପରି ସଂଘଟନା ଗୁଣାଧୀନା, ଅର୍ଥାତ୍ ଗୁଣ ଅନୁସାରେ ରହେ ବୋଲି ଜାଣିବାକୁ ହେବ । କିନ୍ତୁ ଗୁଣରେ ସଂଘଟନା ରହୁଛି, ଏପରି ଆଧାରାଧେୟ ଭାବ ଏ ପକ୍ଷରେ ନାହିଁ । ସୁତରାଂ ଗୁଣ ଓ ସଂଘଟନା ମଧ୍ୟରେ ଐକ୍ୟ ପ୍ରତିପାଦିତ ନ ହୋଇ ପାର୍ଥକ୍ୟ ପ୍ରତିପାଦିତ ହେଉଥିବାରୁ ଏହା ଗୁଣ ଓ ସଂଘଟନାର ବ୍ୟତିରେକପକ୍ଷ ।

୫୨ । ଆଚ୍ଛା, ଏଠାରେ ଏଭଳି ବିକଳ୍ପ କଳ୍ପନା କରିବାରେ ପ୍ରୟୋଜନ କଅଣ ? ଏହି ପ୍ରଶ୍ନର ଉତ୍ତର ଯଥା :—

୫୩ । ଗୁଣାନାଂ ହି ମାଧୁର୍ଯ୍ୟ ପ୍ରସାଦପ୍ରକର୍ଷଃ କରୁଣବିପ୍ରଲମ୍ଭ-ଶୃଙ୍ଗାରବିଷୟ ଏବ । ରୌଦ୍ରାଦ୍ ଭୁତାଦିବିଷୟ-ମୋଜଃ । ମାଧୁର୍ଯ୍ୟପ୍ରସାଦୌ ରସଭାବତଦାଭାସବିଷୟା-ବେବେତି ବିଷୟ ନିୟମୋ ବ୍ୟବସ୍ଥିତଃ । ସଂଘ-ଟନାୟାସ୍ତୁ ସ ବିଘଟତେ ॥

୫୪ । ତଥାହି ଶୃଙ୍ଗାରେଽପି ଦୀର୍ଘସମାସା ଦୃଶ୍ୟନ୍ତେ, ରୌଦ୍ରା-ଦିଷ୍ୱସମାସାଶ୍ଚେତି ।

---

ଯଦି ଗୁଣ ଓ ସଂଘଟନା ଏକ ହେବେ, କିମ୍ବା ସଂଘଟନାକୁ ଗୁଣ ଆଶ୍ରୟ କରି ରହିବ, ତେବେ ଏ ଉଭୟ ପକ୍ଷରେ ସଂଘଟନାପରି ଗୁଣମାନେ ମଧ୍ୟ ଅନିୟତ ବିଷୟ ହେବେ । ବସ୍ତୁତଃ ଗୁଣମାନେ ନିୟତ ବିଷୟ, ଯଥା :—

୫୩ । କରୁଣ, ବିପ୍ରଲମ୍ଭ, ଓ ସମ୍ଭୋଗ ଶୃଙ୍ଗାରରେ ମାଧୁର୍ଯ୍ୟ ଓ ପ୍ରସାଦ ଗୁଣର ଏବଂ ରୌଦ୍ର ଅଦ୍ଭୁତାଦି ରସରେ ଓଜ ଗୁଣର ଉତ୍କର୍ଷ ବ୍ୟବସ୍ଥିତ ହୋଇଅଛି । ସେହିପରି ରସ, ରସାଭାସ, ଭାବ, ଭାବାଭାସରେ ମାଧୁର୍ଯ୍ୟ ଓ ପ୍ରସାଦଗୁଣ ନିୟତଭାବେ ବ୍ୟବସ୍ଥିତ । କିନ୍ତୁ ସଂଘଟନାରେ ଏହି ନିୟମ ନାହିଁ । ସୁତରାଂ ପରସ୍ପର ବିରୁଦ୍ଧ ସ୍ୱଭାବ ଗୁଣ ଓ ସଂଘଟନା ଏକ ବସ୍ତୁ ହେବେ କିପରି ? କିମ୍ବା ସଂଘଟନା ଗୁଣର ଆଶ୍ରୟ ହେବ କିପରି ?

୫୪ । ଯେଣୁ ଶୃଙ୍ଗାର ରସରେ ମଧ୍ୟ ଦୀର୍ଘସମାସା ସଂଘଟନା ଓ ରୌଦ୍ରାଦିରେ ଅସମାସା ସଂଘଟନା ଦେଖାଯାଏ । (ସଂଘଟନା ଗୁଣପରି ନିୟତ ବିଷୟ ହୋଇଥିଲେ ଶୃଙ୍ଗାର ରସୀୟ ରଚନାରେ କେବଳ ଅସମାସା ସଂଘଟନା ଓ ରୌଦ୍ରାଦିରସରେ କେବଳ ଦୀର୍ଘସମାସା ସଂଘଟନା ରହିଥାନ୍ତା । କିନ୍ତୁ ତାହାର ବିପରୀତ ଦୃଷ୍ଟାନ୍ତ ମଧ୍ୟ ଦେଖାଯାଏ ।)

୫୫ । ତତ୍ର ଶୃଙ୍ଗାରେ ଦୀର୍ଘସମାସା ଯଥା—
"ମନ୍ଦାରକୁସୁମରେଣୁପିଞ୍ଜରିତାଳକା" ଇତି ।

୫୬ । ଯଥା ବା—
ଅନବରତନୟନଜଲଲବନିପତନ-ପରିମୃଷିତପତ୍ରଲେଖାନ୍ତମ୍ କରତଳନିଷଣ୍ଣମବଳେ ! ବଦନମିଦଂ କଂ ନ ତାପୟତି । ଇତ୍ୟାଦୌ ॥

୫୭ । ତଥା ରୌଦ୍ରାଦିଷ୍ୱସମାସା ଦୃଶ୍ୟନ୍ତେ । ଯଥା—
"ଯୋ ଯଃ ଶସ୍ତ୍ରଂ ବିଭର୍ତ୍ତି ସ୍ୱଭୁଜଗୁରୁମଦଃ" ଇତ୍ୟାଦୌ ।
ତସ୍ମାନ୍ନ ଗୁଣାଃ ସଂଘଟନାସ୍ୱରୂପା ନ ଚ ସଂଘଟନାଶ୍ରୟାଃ ॥

---

୫୫ । ଶୃଙ୍ଗାର ରସୀୟ କବିତାରେ ଦୀର୍ଘସମାସା ସଂଘଟନା ଯଥା :— "ମନ୍ଦାରକୁସୁମରେଣୁପିଞ୍ଜରିତାଳକା" ମନ୍ଦାର କୁସୁମର ଧୂଳିରେ ଅଳକା (କେଶପାଶ) ଯାହାର ପିଞ୍ଜରିତ ହୋଇଅଛି ।

୫୬ । ଶୃଙ୍ଗାରରସୀୟ ରଚନାରେ ଦୀର୍ଘସମାସା ସଂଘଟନା ରହିଥିବାର ଅନ୍ୟ ଉଦାହରଣ ଯଥା :—"ହେ ଅବଳେ ! ଅନବରତ ନୟନ ଜଳ ଲବ-ନିପତନ-ପରିମୃଷିତ-ପତ୍ରଲେଖ-କରତଳ-ନିଷଣ୍ଣ ତୁମ୍ଭର ଏହି ବଦନଟି କାହାକୁ ତାପ ଦେଉ ନାହିଁ ?"

ସରଳ ଅର୍ଥ :—ହେ ଅବଳେ ! ଅନବରତ ଲୋତକ ବିନ୍ଦୁପାତରେ ମକରିକାଦି ପତ୍ରଭଙ୍ଗୀ ଲିଭି ଯାଇଥିବା, ହାତ ପାପୁଲିରେ ଥୁଆ ହୋଇଥିବା ତୁମ୍ଭର ଏହି ମୁଖଟି କାହାକୁ ସନ୍ତପ୍ତ କରୁନାହିଁ । ହାତ ଉପରେ ମୁହଁ ରଖି କାନ୍ଦୁଥିବା କୌଣସି ମାନବତୀ ନାୟିକା ପ୍ରତି ନାୟକର ଏହା ଅନୁନୟ ।

ଏ ଉଦାହରଣମାନଙ୍କରେ ଶୃଙ୍ଗାରରସ ସ୍ଥଳରେ ମଧ୍ୟ ଦୀର୍ଘସମାସ ରହିଅଛି ।

୫୭ । ଏହିଭଳି ରୌଦ୍ରାଦି ରସରେ ମଧ୍ୟ ଅସମାସା ସଂଘଟନା ଦେଖାଯାଏ, ଯଥା :—"ଯୋ ଯଃ ଶସ୍ତ୍ରଂ ବିଭର୍ତ୍ତି" ଇତ୍ୟାଦି ସ୍ଥଳ ପୂର୍ବରୁ ସମ୍ପୂର୍ଣ୍ଣ ଶ୍ଳୋକ ଲେଖାଅଛି ।)

୫୮ । ନନୁ ଯଦି ସଂଘଟନା ଗୁଣାନାଂ ନାଶ୍ରୟଃ, ତର୍ହି କିମା-
ଲମ୍ବନା ଏତେ ପରିକଳ୍ପ୍ୟନ୍ତେ ॥

୫୯ । ଉଚ୍ୟତେ—ପ୍ରତିପାଦିତମେବୈଷାମାଲମ୍ବନମ୍ ॥
ତମର୍ଥମବଲମ୍ବନ୍ତେ ଯେଽଙ୍ଗିନଂ ତେ ଗୁଣାଃସ୍ମୃତାଃ ।
ଅଙ୍ଗାଶ୍ରିତାସ୍ତ୍ୱଲଂକାରା ମନ୍ତବ୍ୟାଃ କଟକାଦିବତ୍ ॥ ଇତି

୬୦ । ଅଥବା ଭବନ୍ତୁ ଶବ୍ଦାଶ୍ରୟା ଏବ ଗୁଣାଃ । ନଚୈଷା-
ମନୁପ୍ରାସାଦି ତୁଲ୍ୟତ୍ୱଂ ଶଙ୍କନୀୟମ୍, ଯସ୍ମାଦନୁପ୍ରାସା-
ଦୟୋଽନପେକ୍ଷିତାର୍ଥବିସ୍ତାରଃ ଶବ୍ଦଧର୍ମା ଏବ ।

---

ଅତଏବ ସଂଘଟନା ଗୁଣସ୍ୱରୂପା ନୁହେ । ଅର୍ଥାତ୍ ଗୁଣ ଓ ସଂଘଟନା ଏକ ନୁହନ୍ତି କିମ୍ବା ସଂଘଟନା ଗୁଣମାନଙ୍କର ଆଶ୍ରୟ ନୁହେ । (ସୂତ୍ରସଂକାରକାର ଏହି ଦୁଇପକ୍ଷ ଅର୍ଥ ଠିକ୍ ନୁହେ । ଅବଶିଷ୍ଟ ପକ୍ଷଟି ଠିକ୍ ।)

୫୮ । ପ୍ରଶ୍ନ :—ଆଚ୍ଛା, ଯଦି ସଂଘଟନା ଗୁଣମାନଙ୍କର ଆଶ୍ରୟ ନୁହେ ତେବେ ସେମାନଙ୍କର ଆଶ୍ରୟ କଏ ?

୫୯ । ଉତ୍ତର :—ଗୁଣମାନଙ୍କର ଆଶ୍ରୟ କଏ ଏହା ପୂର୍ବରୁ ପ୍ରତିପାଦନ କରିଅଛୁଁ ।

ଯେଉଁମାନେ ସେହି ଅଙ୍ଗୀରସାଦି ଅର୍ଥକୁ ଆଶ୍ରୟ କରିଥାନ୍ତି ସେମାନେ ଗୁଣ । ଯେଉଁମାନେ ଅଙ୍ଗସ୍ୱରୂପ ଶବ୍ଦାର୍ଥକୁ ଆଶ୍ରୟ କରିଥାନ୍ତେ ସେମାନେ କଟକକୁଣ୍ଡଳାଦିଙ୍କ ଅଳଙ୍କାର ।

(ଶବ୍ଦ ଓ ଅର୍ଥକୁ ଆଶ୍ରୟ କରିଥିବା ହେତୁ ଗୁଣ ଓ ଅଳଙ୍କାର, ଉଭୟଙ୍କ ମଧ୍ୟରେ କିଛି ଭେଦ ନାହିଁ । ଅତଏବ ଗୁଣ ଅଳଙ୍କାରର ଅନ୍ତର୍ଭୁକ୍ତ ପ୍ରାଚୀନମାନଙ୍କର ଏହି ମତ, ଆମ୍ଭର ଏହି ଗୁଣାଳଙ୍କାର ପାର୍ଥକ୍ୟ ପ୍ରତିପାଦନ ଦ୍ୱାରା ଖଣ୍ଡିତ ହେଲା ।)

୬୦ । ଅଥବା ଶବ୍ଦ (ଗୁଣବୃତ୍ତିରେ) ଗୁଣମାନଙ୍କର ଆଶ୍ରୟ ହେଉ, ତଥାପି ଗୁଣମାନେ ଅନୁପ୍ରାସାଦି ଶବ୍ଦାଳଂକାରମାନଙ୍କର ସମାନ ନୁହନ୍ତି,

୭୧ । ଶବ୍ଦଧର୍ମତ୍ୱଂ ତୈଷାମନ୍ୟାଶ୍ରୟତ୍ୱେଽପି ଶରୀରାଶ୍ରୟତ୍ୱ-
ମିବ ଶୌର୍ଯ୍ୟାଦୀନାମ୍ ॥

୭୨ । ନନୁ ଯଦି ଶବ୍ଦାଶ୍ରୟା ଗୁଣାଃ, ତତ୍ ସଂଘଟନାରୂପତ୍ୱଂ
ତଦାଶ୍ରୟତ୍ୱଂ ବା ତେଷାଂ ପ୍ରାପ୍ତମେବ । ନହି ଅସଂ-
ଘଟିତାଃ ଶବ୍ଦା ଅର୍ଥବିଶେଷଂ ପ୍ରତିପାଦ୍ୟ ରସାଦ୍ୟା-
ଶ୍ରିତାନାଂ ଗୁଣାନାମବାଚକତ୍ୱାଦାଶ୍ରୟା ଭବନ୍ତି ।

---

ଯେହେତୁ ଅନୁପ୍ରାସାଦିମାନେ ଅର୍ଥ ନିରପେକ୍ଷ ଶବ୍ଦର ଧର୍ମ କିନ୍ତୁ, ଗୁଣମାନେ ବ୍ୟଙ୍ଗ୍ୟବିଶେଷକୁ ପ୍ରତିପାଦନ କରିବା ପାଇଁ ଯେଉଁ ଶବ୍ଦ ସମର୍ଥ, ସେହି ଶବ୍ଦର ଧର୍ମ ।

(ଏହା ଦ୍ୱାରା ମଧ୍ୟ ଗୁଣ ଓ ଅଲଂକାର ମଧ୍ୟରେ ପାର୍ଥକ୍ୟ ପ୍ରତି-ପାଦିତ ହେଲା )

୭୧ । ଶୌର୍ଯ୍ୟାଦି ଗୁଣମାନଙ୍କର, ।ଆତ୍ମା ଆଶ୍ରୟ ହୋଇଥିଲେ ମଧ୍ୟ ଆତ୍ମାର ଆଶ୍ରୟ ଶରୀର, ଯେପରି ସ୍ୱାଶ୍ରୟାଶ୍ରୟ ସମ୍ବନ୍ଧରେ ଉକ୍ତ ଶୌର୍ଯ୍ୟାଦି ଗୁଣମାନଙ୍କର ଆଶ୍ରୟ ହେଉଅଛି, ସେହିପରି ଏଠାରେ ଗୁଣମାନଙ୍କର ବସ୍ତୁତଃ ଅଙ୍ଗୀ ରସାଦିମାନେ ଆଶ୍ରୟ ହୋଇଥିଲେ ହେଁ, ରସାଦିର ବ୍ୟଞ୍ଜକ ଶବ୍ଦମାନେ ସ୍ୱାଶ୍ରୟାଶ୍ରୟ ସମ୍ବନ୍ଧରେ ପରମ୍ପରା କ୍ରମେ (ଗୁଣବୃତ୍ତିରେ) ଗୁଣ-ମାନଙ୍କର ଆଶ୍ରୟ ହେଉଛନ୍ତି ।

ସ୍ୱାଶ୍ରୟାଶ୍ରୟ ସମ୍ବନ୍ଧ ଯଥା:—ସ୍ୱ-ଗୁଣ, ତାହାର ଆଶ୍ରୟ ରସ, ରସର ଆଶ୍ରୟ ଶବ୍ଦ ।

୭୨ । **ପ୍ରଶ୍ନ**—ଯଦି ଶବ୍ଦ ଗୁଣମାନଙ୍କର ଆଶ୍ରୟ ହେଲା, ତେବେ ଗୁଣମାନେ ସଂଘଟନା ସ୍ୱରୂପ କିମ୍ବା ଗୁଣମାନଙ୍କର ସଂଘଟନା ଆଶ୍ରୟ ଏହା ସ୍ୱତଃ ପ୍ରାପ୍ତ ହେଲା । କାରଣ ଶବ୍ଦମାନେ ସଂଘଟିତ ନ ହେଲେ ଅବାଚକ ହେତୁ ଅର୍ଥ ପ୍ରକାଶ କରି ପାରନ୍ତି ନାହିଁ । ରସାଦିମାନେ ଅର୍ଥବିଶେଷ ଦ୍ୱାରା ପ୍ରତିପାଦିତ ହୋଇଥାନ୍ତି । ଏହି ରସକୁ ଆଶ୍ରୟକରି ଗୁଣମାନେ ରହିଥାନ୍ତି । ଅତଏବ ଗୁଣର ମୂଳାଧାର ଅର୍ଥକୁ ପ୍ରକାଶ କରି ନ ପାରିବା ଦ୍ୱାରା ଗୁଣମାନଙ୍କୁ

୭୩ । ନୈବମ୍, ବର୍ଣ୍ଣପଦବ୍ୟଙ୍ଗ୍ୟତ୍ୱସ୍ୟ ରସାଦୀନାଂ ପ୍ରତିପାଦିତତ୍ୱାତ୍ ॥

୭୪ । ଅଭ୍ୟୁପଗତେ ବା ବାକ୍ୟବ୍ୟଙ୍ଗ୍ୟତ୍ୱେ ରସାଦୀନାଂ, ନ ନିୟତା କାଚିତ୍ ସଂଘଟନା ତେଷାମାଶ୍ରୟତ୍ୱଂ ପ୍ରତି-ପଦ୍ୟତ ଇତ୍ୟନିୟତ ସଂଘଟନାଃ ଶବ୍ଦା । ଏବ ଗୁଣାନାଂ ବ୍ୟଙ୍ଗ୍ୟବିଶେଷାନୁଗତା ଆଶ୍ରୟାଃ ।

---

ମଧ୍ୟ ସଂଘଟନା ହୀନ ଶବ୍ଦ ପ୍ରକାଶ କରି ପାରେ ନାହିଁ । କିନ୍ତୁ ସଂଘଟିତ ଶବ୍ଦ ଗୁଣକୁ ପ୍ରକାଶ କରେ । ସୁତରାଂ ଗୁଣମାନଙ୍କର ସଂଘଟନା ଆଶ୍ରୟ ହେଉ ?

୭୩ । ଉତ୍ତର—ଅସଂଘଟିତ ଶବ୍ଦର ଅବାଚକତା ରହିପାରେ, କିନ୍ତୁ ବ୍ୟଙ୍ଗ୍ୟ ପ୍ରତିପାଦନ ପାଇଁ ବାଚକତାର ଅପେକ୍ଷା ନାହିଁ । ପରନ୍ତୁ ବ୍ୟଞ୍ଜକତାର ଅପେକ୍ଷା ଅଛି । ପଦ ଓ ବର୍ଣ୍ଣ ପର୍ଯ୍ୟନ୍ତ ମଧ୍ୟ ବ୍ୟଞ୍ଜକ ହୋଇ ପାରିବେ ଏହା ପୂର୍ବରୁ ପ୍ରତିପାଦିତ ହୋଇଅଛି । ସୁତରାଂ ସଂଘଟନା ହୀନ ଶବ୍ଦ ବ୍ୟଞ୍ଜକ ହେବାରେ ଆପତ୍ତି ନାହିଁ । ଅତଏବ ସଂଘଟନା ଗୁଣର ଆଶ୍ରୟ ନୁହେ ।

୭୪ । ପଦ ବା ବାକ୍ୟ କେବଳ, ରସାଦିର ବ୍ୟଞ୍ଜକ ବୋଲି ସ୍ୱୀକାର କରିବା, ତେବେ ମଧ୍ୟ କୌଣସି ସଂଘଟନା ନିୟତଭାବେଗୁଣ-ମାନଙ୍କର ଆଶ୍ରୟ ହେବ ନାହିଁ । (କାରଣ, ସଂଘଟନା ରସମାନଙ୍କରେ ନିୟତଭାବେ ରହେ ନାହିଁ, ଯଥା ଶୃଙ୍ଗାରରେ ମଧ୍ୟ ଦୀର୍ଘସମାସା ଓ ରୌଦ୍ରା-ଦିରେ ମଧ୍ୟ ଅସମାସା ସଂଘଟନା ରହୁଛି । ଅତଏବ ଯେଉଁ ସଂଘଟନା ନିୟତଭାବେ ରସାଦିର ବ୍ୟଞ୍ଜକ ହୋଇ ପାରୁ ନାହିଁ ସେହି ସଂଘଟନା କିପରି ନିୟତଭାବେ ରସ ଧର୍ମ ଗୁଣମାନଙ୍କର ଆଶ୍ରୟ ହେବ ? ସୁତରାଂ ସଂଘଟନା ଗୁଣମାନଙ୍କର ଆଶ୍ରୟ ନୁହେ )

ଅତଏବ ଅନିୟତସଂଘଟନା ଅର୍ଥାତ୍ ଯେ କୌଣସି ପ୍ରକାର ସଂଘଟନା ଦ୍ୱାରା ସଂଘଟିତ, ରସାଦିବ୍ୟଞ୍ଜକ ଶବ୍ଦମାନେ ଗୁଣର ଆଶ୍ରୟ ।

୭୫ । ନନୁ ମାଧୂର୍ଯ୍ୟେ ଯଦି ନାମ ଏବମୁଚ୍ୟତେ, ତଦୁଚ୍ୟ-ତାମ୍, ଓଜସଃ ପୁନଃ କଥମନିୟତସଂଘଟନଶବ୍ଦାଶ୍ରୟ-ତ୍ୱମ୍ । ନହି ଅସମାସା ସଂଘଟନା କଦାଚିଦୋଜସ ଆଶ୍ରୟତାଂ ପ୍ରତିପଦ୍ୟତେ ।

୭୬ । ଉଚ୍ୟତେ-ଯଦି ନ ପ୍ରସିଦ୍ଧିମାତ୍ରଗ୍ରହଦୂଷିତଂ ଚେତଃ, ତଦତ୍ରାପି ବ୍ରୂମଃ ।

୭୭ । ଓଜସଃ କଥମସମାସା ସଂଘଟନା ନାଶ୍ରୟଃ ? ରୌଦ୍ରାଦୀନ୍ ହି ପ୍ରକାଶୟତଃ କାବ୍ୟସ୍ୟ ଦୀପ୍ତିରୋଜ ଇତି ପ୍ରାକ୍ ପ୍ରତିପାଦିତଂ । ତଚ୍ଚୌଜୋ ଯଦ୍ୟସମାସାୟାମପି-ସଂଘଟନାୟାଂ ସ୍ୟାତ୍, ତତ୍ କୋ ଦୋଷୋ ଭବେତ୍ ।

---

୭୫ । ପ୍ରଶ୍ନ: ମାଧୁର୍ଯ୍ୟ-ଗୁଣ ସମ୍ବନ୍ଧରେ ଯଦି ଏହିପରି କୁହାଯାଏ, ଅର୍ଥାତ୍ ଗୁଣ ସଂଘଟନା-ବିଶେଷର ଆଶ୍ରିତ ନୁହେ ବୋଲି କୁହାଯାଏ, ତେବେ କୁହାଯାଉ, କିନ୍ତୁ ଓଜଗୁଣ କିପରି ନିୟତ-ସଂଘଟନା-ବିଶିଷ୍ଟ ନୋହିଥିବା ଶବ୍ଦକୁ ଆଶ୍ରୟ କରିବ ? କାରଣ କେବେ ହେଲେ ଅସମାସା (ସମାସହୀନା) ସଂଘଟନା ଓଜର ଆଶ୍ରୟ ହୋଇ ପାରିବ ନାହିଁ । ଏଣୁ ଗୁଣମାନଙ୍କୁ ନିଶ୍ଚୟ ନିୟତସଂଘଟନା-ବିଶିଷ୍ଟ ଶବ୍ଦର ଆଶ୍ରିତ ବୋଲି କୁହାଯିବା ଉଚିତ ।

୭୬ । ଉତ୍ତର—ଯାହା ପୂର୍ବରୁ ପ୍ରସିଦ୍ଧ ହୋଇଛି, ଯଥା :—ଦୀର୍ଘ ସମାସରେ ଓଜଗୁଣ ତାହାହିଁ ଠିକ୍, ତାହାହିଁ ଗ୍ରହଣୀୟ, ଏହିପରି ଭାବେ ଯଦି ତୁମ୍ଭର ଚିତ୍ତ ଦୂଷିତ ହୋଇ ନ ଥାଏ, ତେବେ ଏ ସ୍ଥଳରେ ମଧ୍ୟ ଆମ୍ଭେ କହିବୁ, ଅର୍ଥାତ୍ ଆମ୍ଭର ନିଜମତ ଉପସ୍ଥାପନ କରିବୁଁ ।

୭୭ । ନିଜମତ ଯଥା :—ଓଜଗୁଣ କାହିଁକି କେବଳ ଦୀର୍ଘସମାସା ସଂଘଟନାକୁ ଆଶ୍ରୟ କରିବ ? ଏବଂ ଅସମାସା (ସମାସହୀନା) ସଂଘଟନାକୁ କାହିଁକି ଆଶ୍ରୟ ନ କରିବ ? ରୌଦ୍ରାଦି ରସର ବ୍ୟଞ୍ଜକ ଯେଉଁ କାବ୍ୟ, ତାହାର ଦୀପ୍ତିକୁ ତ ଓଜ ବୋଲି ପ୍ରତିପାଦନ କରାଯାଇଅଛି, ତେବେ ସେହି

ନଗ୍ଯୁରୁତ୍ୱଂ ସହୃଦୟହୃଦୟସମ୍ବେଦ୍ୟମସ୍ତି । ତସ୍ମାଦ-
ନୟତସଂଘଟନାଶଦାଶ୍ରୟତ୍ୱେ ଗୁଣାନାଂ ନ କାଚିତ୍
କ୍ଷତିଃ ।

୭୮ । ତେଷାଂ ତୁ ଚକ୍ଷୁରାଦୀନାମିବ ଯଥାସ୍ୱଂ ବିଷୟନିୟ-
ମିତସ୍ୟ ସ୍ୱରୂପସ୍ୟ ନ କଦାଚିତ୍ ବ୍ୟଭିଚାରଃ ।

୭୯ । ତସ୍ମାଦନ୍ୟେ ଗୁଣାଃ, ଅନ୍ୟାଚ ସଂଘଟନା, ନଚ ସଂଘ-
ଟନାମାଶ୍ରିତା ଗୁଣା ଇତ୍ୟେକଂ ଦର୍ଶନମ୍ ॥

---

ଓଜଗୁଣ ଯଦି ଅସମାସା ସଂଘଟନାରେ ମଧ୍ୟ ରହିଲା, ତେବେ ଦୋଷ ବା କଅଣ ? ଅସମାସା ସଂଘଟନାରେ ଓଜଗୁଣ ରହିଲେ ସହୃଦୟମାନେ ତାକୁ ଗୁରୁତାହୀନ ବୋଲି ବୁଝନ୍ତି ନାହିଁ । ସୁତରାଂ ଗୁଣମାନେ ନିୟତ ସଂଘଟନା-ବିଶିଷ୍ଟ ଶବ୍ଦର ଆଶ୍ରିତ ନୁହନ୍ତି, କିନ୍ତୁ ଅନିୟତ ସଂଘଟନା ବିଶିଷ୍ଟ ଶବ୍ଦର ଆଶ୍ରିତ, ଏହିପରି ସିଦ୍ଧାନ୍ତ କଲେ କିଛି କ୍ଷତି ନାହିଁ । (ଅତଏବ ଗୁଣମାନେ ସଂଘଟନାକୁ ଆଶ୍ରୟ କରି ରହନ୍ତି ନାହିଁ ।)

୭୮ । ଚକ୍ଷୁରାଦି ଇନ୍ଦ୍ରିୟମାନେ ଯେପରି ନିଜ ନିଜର ବିଷୟ ରୂପ ପ୍ରଭୃତିର ବୋଧପାଇଁ ନିୟତ ଓ ତାଙ୍କର ବ୍ୟଭିଚାର (ବ୍ୟତିକ୍ରମ) ଦେଖାଯାଏ ନାହିଁ, ସେହିପରି ମାଧୁର୍ଯ୍ୟାଦିଗୁଣମାନେ ଶୃଙ୍ଗାରାଦି ରସରେ ନିୟତଭାବେ ରହନ୍ତି ଏବଂ ସେମାନଙ୍କର କେବେହେଲେ ବ୍ୟଭିଚାର ଦେଖାଯାଏ ନାହିଁ ।

(ଉକ୍ତ ଗୁଣମାନେ ସ୍ୱାଶ୍ରୟାଶ୍ରୟ ସମ୍ବନ୍ଧରେ ରସବ୍ୟଞ୍ଜକ ଶବ୍ଦରେ ରହନ୍ତି, ତେଣୁ ଶୃଙ୍ଗାରାଦି ରସବ୍ୟଞ୍ଜକ ଶବ୍ଦରେ ମାଧୁର୍ଯ୍ୟଗୁଣ, ଏବଂ ରୌଦ୍ରାଦି ରସର ବ୍ୟଞ୍ଜକ ଶବ୍ଦରେ ଓଜଗୁଣ ନିୟତଭାବେ ରହେ ଏଥିରେ କଦାପି ବ୍ୟଭିଚାର ଦେଖାଯାଏ ନାହିଁ) ।

୭୯ । ଉକ୍ତ ପର୍ଯ୍ୟାଲୋଚନା ଅନୁସାରେ ସ୍ଥିର କରାଗଲା ଯେ ଗୁଣ ପୃଥକ୍ ଏବଂ ସଂଘଟନା ପୃଥକ୍ । ଗୁଣ ଓ ସଂଘଟନା ଏକ ନୁହନ୍ତି କିମ୍ବା ଗୁଣମାନେ ସଂଘଟନାକୁ ଆଶ୍ରୟ କରି ରହନ୍ତି ନାହିଁ । ଏହା ଗୋଟିଏ ମତ (ଦର୍ଶନ) ।

୭୦ । ଅଥବା ସଂଘଟନାରୂପା ଏବ ଗୁଣାଃ ॥

୭୧ । ଯତ୍ତୁକ୍ତଂ—ସଂଘଟନାବଦ୍ ଗୁଣାନାମପ୍ୟନୟ୍ୟତବିଷୟତ୍ୱଂ ପ୍ରାପୋତି ଲକ୍ଷ୍ୟେ ବ୍ୟଭିଚାରଦର୍ଶନାଦତ ।

୭୨ । ତତ୍ରାପ୍ୟେତଦୁଚ୍ୟତେ—ଯତ୍ର ଲକ୍ଷ୍ୟେ ପରିକଳ୍ପିତବିଷୟବ୍ୟଭିଚାରଃ ତଦ୍ବିରୂପମେବାସ୍ତୁ ।

---

୭୦ । ଗୁଣ ଓ ସଂଘଟନାର ନାନାତ୍ୱପକ୍ଷ ପ୍ରତିପାଦନ କରିସାରି ଯେଉଁମାନେ ଗୁଣ ଓ ସଂଘଟନାର ଐକ୍ୟ ସ୍ୱୀକାର କରନ୍ତି, ତାଙ୍କ ମତକୁ ପ୍ରତିପାଦନ କରିବାକୁ ଯାଇ ବୃତ୍ତିକାର କହୁଛନ୍ତି:—ଅଥବା ଗୁଣମାନେ ସଂଘଟନା ସ୍ୱରୂପ । ଅର୍ଥାତ୍ ଗୁଣ ଓ ସଂଘଟନା ପରସ୍ପରରୁ ଅଭିନ୍ନ ।

୭୧ । ଗୁଣସଂଘଟନା ବ୍ୟତିରେକବାଦୀ ଗୁଣସଂଘଟନା ଐକ୍ୟ ପକ୍ଷରେ ଯେଉଁ ଦୋଷ ଦର୍ଶାଇଛନ୍ତି, ତାହାକୁ କେବଳ ଏଠାରେ ସମାଧାନ ନିମନ୍ତେ ପ୍ରଶ୍ନରୂପେ ଅବତାରଣା କରାଯାଇଛି ।

ପ୍ରଶ୍ନ:—ଗୁଣ ଓ ସଂଘଟନା ଏକ ହେଲେ ଗୁଣମାନେ ମଧ୍ୟ ସଂଘଟନାପରି ଅନିୟତ ବିଷୟ ହେବେ, ଅର୍ଥାତ୍ ସଂଘଟନା ଯେପରି ରସବ୍ୟଞ୍ଜକତାରେ ନିୟତଭାବେ ରହି ପାରୁ ନାହିଁ, ଗୁଣମାନେ ମଧ୍ୟ ସେହିପରି ରସରେ ନିୟତଭାବେ ରହି ପାରିବେ ନାହିଁ । ଯେଣୁ ଲକ୍ଷ୍ୟ ସ୍ଥଳରେ ବ୍ୟଭିଚାର ଦେଖାଯାଉଛି, ଯଥା—'ଅନବରତ ନୟନ-ଜଳ-ଲବ' ଇତ୍ୟାଦି ସ୍ଥଳରେ ଶୃଙ୍ଗାରରସ ସତ୍ତ୍ୱେ ମାଧୁର୍ଯ୍ୟ କିମ୍ବା ପ୍ରସାଦଗୁଣ ନ ଥାଇ ଦୀର୍ଘସମାସ ବିଶିଷ୍ଟ ଓଜଗୁଣ ରହୁଛି ଏବଂ "ଯୋଯଃ ଶସ୍ତ୍ରଂ ବିଭର୍ତ୍ତି" ଇତ୍ୟାଦି ସ୍ଥଳରେ ରୌଦ୍ରରସସତ୍ତ୍ୱେ ଦୀର୍ଘସମାସ ବିଶିଷ୍ଟ ଓଜଗୁଣ ନ ଥାଇ ପ୍ରସାଦଗୁଣ ରହୁଅଛି । ଅତଏବ ଗୁଣମାନେ ସଂଘଟନାସ୍ୱରୂପ ହେଲେ ନିର୍ଦ୍ଦିଷ୍ଟ ରସରେ ନିୟତଭାବେ ରହି ପାରିବେ ନାହିଁ ।

୭୨ । ଉତ୍ତର:—(ଗୁଣ ସଂଘଟନା ଐକ୍ୟବାଦୀ ଏହାର ଉତ୍ତର ଦେଇଅଛନ୍ତି):—

ଯେଉଁ ଯେଉଁ ଲକ୍ଷ୍ୟସ୍ଥଳମାନଙ୍କରେ ଗୁଣମାନେ ରସରେ ନିୟତଭାବେ ନ ରହି ବ୍ୟଭିଚରିତ ହେଉଅଛନ୍ତି ବୋଲି ତୁମ୍ଭେ ଦର୍ଶାଇ ଅଛ,

୭୩ । କଥମନ୍ୟଥ୍ୟଂ ତାଦୃଶଵିଷୟେ ସହୃଦୟାନାଂ (ନ) ପ୍ରତିଭାସିତରେତ୍ ॥

୭୪ । କବିଶକ୍ତିତିରୋହିତତ୍ୱାତ୍ ।

୭୫ । ଦ୍ୱିବିଧୋ ହି ଦୋଷଃ କବେଃ । ଅବ୍ୟୁତ୍ପତ୍ତିକୃତୋଽଶକ୍ତି-କୃତଶ୍ଚ । ତତ୍ରାବ୍ୟୁତ୍ପତ୍ତିକୃତୋ ଦୋଷଃ ଶକ୍ତିତିରୋହିତ-

---

ଯେଉଁଠାରେ ବିରୂପତା (ଦୋଷ) ରହିପାରେ, ଅର୍ଥାତ୍ କାବ୍ୟରଚନାରେ ତ୍ରୁଟି ରହିପାରେ ।

(ଏପରି ଦୋଷଯୁକ୍ତ ରଚନାକୁ ଉଦାହରଣରୂପେ ଦର୍ଶାଇ ଆମ୍ଭ ମତକୁ କାଟିବା ଠିକ୍ ନୁହେ ଏହାହିଁ ଭାବ )

୭୩ । ପ୍ରଶ୍ନ—ଯଦି ଏଭଳି ସ୍ଥଳମାନଙ୍କରେ ବିରୂପତା ରହିଛି ବୋଲି କହୁଛ, ତେବେ ସହୃଦୟମାନେ କାହିଁକି ତାହାକୁ ଅସୁନ୍ଦର ଅର୍ଥାତ୍ ଦୋଷ ରୂପେ ଗ୍ରହଣ କରୁନାହାନ୍ତି ?

୭୪ । ଉତ୍ତର—ଏହି ଅସୁନ୍ଦରତା (ଦୋଷ) କବିଶକ୍ତିରେ ଆଚ୍ଛାଦିତ ହୋଇ ରହିଥିବାରୁ ସହୃଦୟମାନେ ତାହା ଗ୍ରହଣ କରି ପାରୁନାହାନ୍ତି, ଅର୍ଥାତ୍ ଦୋଷଥିଲେ ମଧ୍ୟ ଦୋଷ ଅଛି ବୋଲି ଜାଣି ପାରୁନାହାନ୍ତି ।

୭୫ । କବିଙ୍କର ଦୋଷ ଦୁଇ ପ୍ରକାର । ୧—ଅବ୍ୟୁତ୍ପତ୍ତି ଦୋଷ, ୨—ଅଶକ୍ତିକୃତ ଦୋଷ ।

ବର୍ଣ୍ଣନୀୟ ବିଷୟର ଉପଯୋଗୀ ବସ୍ତୁଗୁଡ଼ିକୁ ପୌର୍ବାପର୍ଯ୍ୟ କ୍ରମେ ସ୍ଥାପନ କରିବାର କୌଶଳକୁ ବ୍ୟୁତ୍ପତ୍ତି ବୋଲିଯାଏ । ତାହାର ଅଭାବ ଅବ୍ୟୁତ୍ପତ୍ତି । ତାହା କବିର ଗୋଟିଏ ଦୋଷ ।

ଶକ୍ତିର ଅର୍ଥ ପ୍ରତିଭା, ଅର୍ଥାତ୍ ବର୍ଣ୍ଣନୀୟ ବିଷୟ ବସ୍ତୁକୁ ନୂତନ ଭାବେ ଚିତ୍ରଣ କରିପାରିବା, ତାହାର ଅଭାବ ଅଶକ୍ତି, ସେହି ଅଶକ୍ତିରୁ ଘଟିଥିବା ଦୋଷକୁ ଅଶକ୍ତିକୃତ ଦୋଷ ବୋଲିଯାଏ । ଏହା କବିର ଦ୍ୱିତୀୟ ଦୋଷ ।

ଏହି ଦୁଇ ଦୋଷ ମଧ୍ୟରେ ଅବ୍ୟୁତ୍ପତ୍ତିକୃତ ଦୋଷଟି କବିର ଶକ୍ତି ଦ୍ୱାରା ଆଚ୍ଛାଦିତ ହୋଇଯାଏ । ସୁତରାଂ ତାହା କୌଣସି କୌଣସି ସ୍ଥଳରେ

ତ୍ଵାତ୍ କଦାଚନ୍ନ ଲକ୍ଷ୍ୟତେ, ଯସ୍ତ୍ୱଶକ୍ତିକୃତୋ ଦୋଷଃ ସ ଝଟିତି ପ୍ରତୀୟତେ ।

୭୬ । ପରିକରଶ୍ଳୋକଶ୍ଚାତ୍ର—
ଅବ୍ୟୁତ୍ପତ୍ତିକୃତୋ ଦୋଷଃ ଶକ୍ତ୍ୟା ସଂଵ୍ରିୟତେ କବେଃ ।
ଯସ୍ତ୍ୱଶକ୍ତିକୃତସ୍ତସ୍ୟ ସ ଝଟିତ୍ୟେବ ଭାସତେ ।

୭୭ । ତଥାହି ମହାକବୀନାମପ୍ୟୁତ୍ତମଦେବତାବିଷୟ-ପ୍ରସିଦ୍ଧ ସମ୍ଭୋଗଶୃଙ୍ଗାର-ନିବନ୍ଧନାଦ୍ୟନୌଚିତ୍ୟଂ ଶକ୍ତିତିରସ୍କୃତଂ ଗ୍ରାମ୍ୟତ୍ଵେନ ନ ପ୍ରତିଭାସତେ । ଯଥା କୁମାରସମ୍ଭବେ ଦେବୀସମ୍ଭୋଗବର୍ଣ୍ଣନମ୍ । ଏବମାଦୌ ଚ ବିଷୟେ ଯଥୌଚିତ୍ୟତ୍ୟାଗଃ ତଥା ଦର୍ଶିତମେବାଗ୍ରେ ।

୭୮ । ଶକ୍ତିତିରସ୍କୃତତ୍ଵଂ ଚାନ୍ୱୟବ୍ୟତିରେକାଭ୍ୟାମବସୀୟତେ ।

---

ଲକ୍ଷ୍ୟ କରାଯାଇ ପାରେ ନାହିଁ । କିନ୍ତୁ ଅଶକ୍ତିକୃତ ଦୋଷ କାହା ଦ୍ୱାରା ଆଚ୍ଛାଦିତ ହୋଇ ପାରେ ନାହିଁ । ସୁତରାଂ ତାହା ହଠାତ୍ ଧରା ପଡ଼ିଯାଏ ।

୭୬ । ଏ ସମ୍ବନ୍ଧରେ ପ୍ରଦର୍ଶିତ ପରିକର ଶ୍ଳୋକର ଅର୍ଥ :— ଅବ୍ୟୁତ୍ପତ୍ତିକୃତ ଦୋଷ କବିଶକ୍ତି ଦ୍ୱାରା ଆଚ୍ଛାଦିତ ହୋଇପାରେ କିନ୍ତୁ କବିର ଅଶକ୍ତିକୃତ ଦୋଷ ଶୀଘ୍ର ପ୍ରକାଶ ପାଏ ।

୭୭ । ଉଦାହରଣ ସ୍ୱରୂପ ମହାକବିମାନଙ୍କର ମଧ୍ୟ ଉତ୍ତମ ଦେବତା ସମ୍ବନ୍ଧୀୟ ସମ୍ଭୋଗ ଶୃଙ୍ଗାର ବର୍ଣ୍ଣନ ପ୍ରଭୃତି ଅନୁଚିତତ୍ୱ ଗ୍ରାମ୍ୟଦୋଷ ହେଲେ ମଧ୍ଯ କବିଶକ୍ତି (କବି ପ୍ରତିଭା) ବଳରେ ଆଚ୍ଛାଦିତ ହୋଇଯାଏ । ଯଥା— କୁମାରସମ୍ଭବରେ ହର-ପାର୍ବତୀଙ୍କର ଶୃଙ୍ଗାର ବର୍ଣ୍ଣନା । ଏହିଭଳି ସ୍ଥଳରେ ଯେପରି ଔଚିତ୍ୟ ପରିତ୍ୟକ୍ତ ହୋଇଅଛି, ତାହା ଆଗରେ ପ୍ରଦର୍ଶିତ ହେବ ।

୭୮ । ଅବ୍ୟୁତ୍ପତ୍ତିକୃତ ଦୋଷ ଶକ୍ତି ଦ୍ୱାରା ଆଚ୍ଛାଦିତ ହେବା ଅନ୍ୱୟ ଓ ବ୍ୟତିରେକ—ଦୃଷ୍ଟାନ୍ତରେ ନିର୍ଣ୍ଣୀତ ହୁଏ । ଯଥା :– (କବିଶକ୍ତି ବଳରେ ଅବ୍ୟୁତ୍ପତ୍ତି ଦୋଷ ଆଚ୍ଛାଦିତ ହେଉଥିବା ସ୍ଥଳ ଅନ୍ୱୟ ଦୃଷ୍ଟାନ୍ତ, ଯଥା –

ତଥାହି—ଶକ୍ତିରହିତେନ କବିନା ଏବଂବିଧେ ବିଷୟେ ଶୃଙ୍ଗାର ଉପନିବଧ୍ୟମାନଃ ସ୍ଫୁଟମେବ ଦୋଷତ୍ୱେନ ଅବଭାସତେ ॥

୭୯ । ନନ୍ୱସ୍ମିନ୍ ପକ୍ଷେ "ଯୋ. ଯଃ ଶସ୍ତ୍ରଂ ବିଭର୍ତ୍ତି" ଇତ୍ୟାଦୌ କିମଚାରୁତ୍ୱମପ୍ରତୀୟମାନମେବାରୋପୟାମଃ ॥

---

କୁମାରସମ୍ଭବରେ ହର ପାର୍ବତୀଙ୍କର ଶୃଙ୍ଗାର ବର୍ଣ୍ଣନା) ଶକ୍ତିହୀନ କବି ଏତାଦୃଶ ଉତ୍ତମ ଦେବତା, ହର-ପାର୍ବତୀ, କିମ୍ବା ଲକ୍ଷ୍ମୀ-ନାରାୟଣ, ପ୍ରଭୃତିଙ୍କ ବିଷୟରେ ଶୃଙ୍ଗାରରସର ରଚନା ନିର୍ମାଣ କଲେ ସେ ସ୍ଥଳରେ ସ୍ପଷ୍ଟଭାବେ ଅବ୍ୟୁତ୍ପତ୍ତି ଦୋଷ ପ୍ରକାଶ ପାଇଯିବ ।

(କବିଶକ୍ତିର ଅଭାବରୁ ଯେଉଁ ରଚନାରେ ଅବ୍ୟୁତ୍ପତ୍ତି ଦୋଷ ଆଚ୍ଛାଦିତ ନ ହୁଏ, ତାହା ବ୍ୟତିରେକ ଦୃଷ୍ଟାନ୍ତର ସ୍ଥଳ ।)

"ଅନବରତ-ନୟନ" ଇତ୍ୟାଦି ସ୍ଥଳ, ବ୍ୟତିରେକ ଦୃଷ୍ଟାନ୍ତର ବିଷୟ ବୋଲି କେହି କେହି ଦର୍ଶାଇଛନ୍ତି, କିନ୍ତୁ ଅନ୍ୟର ଦୋଷ ଦର୍ଶାଇବା ଧ୍ୱନ୍ୟାଲୋକକାରଙ୍କର ମତ ନୁହେ । ଏଣୁ ପାଠକମାନେ କେଉଁଠି ଦୋଷ ଅଛି, ତାହା ନିଜେ ନିଜେ ବିବେଚନା କରିବେ ।

୭୯ । ପ୍ରଶ୍ନ—ଗୁଣସଙ୍ଘଟନା - ଐକ୍ୟବାଦୀଙ୍କ ମତରେ "ଯୋ ଯଃ ଶସ୍ତ୍ରଂ ବିଭର୍ତ୍ତି ।" ଇତ୍ୟାଦି ସ୍ଥଳ ଦୋଷଯୁକ୍ତ କିନ୍ତୁ ସେ ସ୍ଥଳରେ କେବେ-ହେଲେ କେହି ସହୃଦୟ ଅଚାରୁତା (ଦୋଷ) ଅନୁଭବ କରି ନାହାନ୍ତି. ଏଭଳି ନିର୍ଦ୍ଦୋଷ କବିତାରେ (କେବଳ ତୁମ୍ଭ ମତକୁ ପାଳନ କରିବା ପାଇଁ କିଣ ଦୋଷ ଆରୋପ କରିବୁ ?

(ଗ୍ରନ୍ଥକାର ନିଜର ଏହି ପ୍ରଶ୍ନରେ ପ୍ରତିବାଦିପକ୍ଷରୁ କୌଣସି ଉତ୍ତର ଦର୍ଶାଇ ନାହାନ୍ତି, ଏଣୁ ଏହା ଗ୍ରନ୍ଥକାରଙ୍କର ମତ ବୋଲି ବୁଝିବାକୁ ହେବ । ସୁତରାଂ ଗୁଣ ଓ ସଂଘଟନା ଏକରୂପ ହୋଇ ନ ପାରନ୍ତି ଏହା ଧ୍ୱନ୍ୟାଲୋକ-କାରଙ୍କ ମତ ।)

୮୦ । ତସ୍ମାତ୍ ଗୁଣବ୍ୟତିରେକତ୍ୱେ ଗୁଣରୂପତ୍ୱେ ଚ ସଂଘଟନାୟା
ଅନ୍ୟଃ କଶ୍ଚିତ୍ ନିୟମହେତୁର୍ବକ୍ତବ୍ୟ ଇତ୍ୟୁଚ୍ୟତେ ।
"ତନ୍ନିୟମେ ହେତୁରୌଚିତ୍ୟଂ ବକ୍ତୃବାଚ୍ୟୟୋଃ"

୮୧ । ତତ୍ର ବକ୍ତା କବିଃ । କବିନିବଦ୍ଧୋ ବା କଶ୍ଚିତ୍ । କବିନିବଦ୍ଧଶ୍ଚାପି ରସଭାବରହିତୋ ରସଭାବସମନ୍ୱିତୋ ବା । ରସୋଽପି କଥାନାୟକାଶ୍ରୟସ୍ତଦ୍ୱିପକ୍ଷାଶ୍ରୟୋ ବା । କଥାନାୟକଶ୍ଚ ଧୀରୋଦାତ୍ତାଦିଭେଦଭିନ୍ନଃ ପୂର୍ବସ୍ତଦନନ୍ତରମେବେତି ବିକଳ୍ପାଃ ।

୮୨ । ବାଚ୍ୟଂ ଚ ଧ୍ୱନ୍ୟାତ୍ମରସାଙ୍ଗଂ ରସାଭାସାଙ୍ଗଂ ବା

---

୮୦ । ଏହିସବୁ କାରଣରୁ ଗୁଣ ସଂଘଟନାର ବ୍ୟତିରେକ ପକ୍ଷରେ କମ୍ବା ଐକ୍ୟ ପକ୍ଷରେ, ରସ ସଂଘଟନାର ନିୟାମକ ନୁହେ । ସୁତରାଂ ସଂଘଟନାର ଅନ୍ୟ କିଛି ନିୟମ ହେତୁ (ନିୟାମକ) ଅଛି । ତାହା କୁହାଯିବା ଉଚିତ । ଏଣୁ କୁହାଯାଉଛି ଯେ :—

ବକ୍ତା ଓ ବାଚ୍ୟର ଔଚିତ୍ୟ ସଂଘଟନାର ନିୟାମକ ।

୮୧ । ବକ୍ତା ଦୁଇ ପ୍ରକାର :—ଯଥା ୧—ସ୍ୱୟଂ କବି, ୨—କବିଙ୍କ ଦ୍ୱାରା ନିବଦ୍ଧ (କଳ୍ପିତ) ବକ୍ତା । କବିନିବଦ୍ଧ ମଧ ଦୁଇ ପ୍ରକାର, ରସଭାବ ରହିତ ଓ ରସଭାବସହିତ । ରସ ମଧ୍ୟ ଦୁଇ ପ୍ରକାର ଯଥା :-କଥା ନାୟକ (ରସାଦି)ର ଆଶ୍ରିତ ଓ ପ୍ରତିପକ୍ଷ ନାୟକ (ରାବଣାଦି)ର ଆଶ୍ରିତ । ପୁନଶ୍ଚ କଥାନାୟକ ଧୀରୋଦାତ୍ତ, ଧୀରୋଦ୍ଧତ, ଧୀରପ୍ରଶାନ୍ତ, ଧୀରଲଳିତ ପ୍ରଭୃତି ଭେଦରେ ନାନାପ୍ରକାର (ନାୟକର ଅନନ୍ତର) ପ୍ରତିନାୟକ ବା ଉପନାୟକମାନେ ମଧ୍ୟ ଏହିପରି ଧୀରୋଦାତ୍ତ ପ୍ରଭୃତି ଭେଦରେ ନାନାବିଧ । ବକ୍ତାର ଏହିପରି ନାନାପ୍ରକାର ଭେଦ ।

୮୨ । (ବକ୍ତାର ଭେଦ ଦର୍ଶାଇ ବାଚ୍ୟର ଭେଦ ଦଶାଉଛନ୍ତି) ଯଥା—ବାଚ୍ୟ, ରସର ଅଙ୍ଗ (ବ୍ୟଞ୍ଜକ) ବା ରସାଭାସର ଅଙ୍ଗ (ବ୍ୟଞ୍ଜକ) ଭେଦରେ ଦୁଇ ପ୍ରକାର । ପୁନଶ୍ଚ ପ୍ରତ୍ୟେକ ଅଭିନେୟାର୍ଥ (ଯାହାର ଅର୍ଥ

ଅଭିନେୟାର୍ଥମନଭିନେୟାର୍ଥଂ ବା ଉତ୍ତମପ୍ରକୃତ୍ୟା-ଶ୍ରୟଂ ତଦିତରାଶ୍ରୟଂ ଚେତି ବହୁପ୍ରକାରମ୍ ।

୮୩ । ତତ୍ର ଯଦା କବିରପଗତରସଭାବୋ ବକ୍ତା, ତଦା ରଚନାୟାଃ କାମଚାରଃ । ଯଦାପି କବିନିବଦ୍ଧୋ ବକ୍ତା ରସଭାବରହିତଃ ତଦା ସ ଏବ ॥

୮୪ । ଯଦା ତୁ କବିଃ କବିନିବଦ୍ଧୋ ବା ବକ୍ତା ରସଭାବ-ସମନ୍ୱିତୋ, ରସଶ୍ଚ ପ୍ରଧାନଭୂତତ୍ୱାତ୍ ଧ୍ୱନ୍ୟାତ୍ମଭୂତଃ, ତଦାପି ନିୟମେନୈବ ତତ୍ର ଅସମାସା-ମଧ୍ୟମସମାସେ ଏବ ସଂଘଟନେ ।

କରୁଣବିପ୍ରଲମ୍ଭଶୃଙ୍ଗାରୟୋସ୍ତ୍ୱସମାସୈବ ସଂଘଟନା ।

---

ଅଭିନୟ ଦ୍ୱାରା ପ୍ରକାଶ କରାଯାଇ ପାରେ) କିମ୍ବା ଅନଭିନେୟାର୍ଥ ଭାବରେ ଦୁଇ ପ୍ରକାର (ଆଉ ପୁଣି ଏ ପ୍ରତ୍ୟେକ ଭେଦ ମୁନି ଦେବତା ପ୍ରଭୃତି ଉତ୍ତମ ପ୍ରକୃତିଙ୍କ ଆଶ୍ରିତ କିମ୍ବା ଉତ୍ତମ ପ୍ରକୃତ୍ୟାଶ୍ରୟରୁ ଭିନ୍ନ ଏହିପରି ବାଚ୍ୟ ବହୁପ୍ରକାର ।

୮୩ । ଯେଉଁଠି ରସାବେଶ ଶୂନ୍ୟ କବି ସ୍ୱୟଂ ବକ୍ତା ହୋଇଥାଏ । ସେଠାରେ ଇଚ୍ଛା ଅନୁସାରେ ରଚନା କରାଯାଇ ପାରେ ଅର୍ଥାତ୍ ସେପରି ସ୍ଥଳେ ସଂଘଟନାରେ କୌଣସି ନିୟମ ନାହିଁ । ଯେଉଁଠି କବିନିବଦ୍ଧ ବକ୍ତା ମଧ୍ୟ ରସାବେଶ ଶୂନ୍ୟ ହୋଇଥାଏ ସେଠାରେ ମଧ୍ୟ ସଂଘଟନାର କୌଣସି ନିୟମ ନାହିଁ ।

୮୪ । କିନ୍ତୁ ଯେଉଁଠି ସ୍ୱୟଂ କବି କିମ୍ବା କବି ନିବଦ୍ଧବକ୍ତା ରସାବିଷ୍ଟ ହୋଇଥାଏ, ଏବଂ ରସ ପ୍ରଧାନଭାବେ ଥାଇ ଧ୍ୱନି ହେଉଥାଏ, ସେଠାରେ ଅସମାସା ଓ ମଧ୍ୟମସମାସା ସଂଘଟନା ନିୟମ ପୂର୍ବକ କରାଯିବ । ମାତ୍ର—

କରୁଣ ରସ ଓ ବିପ୍ରଲମ୍ଭ ଶୃଙ୍ଗାରରେ ଅସମାସା ସଂଘଟନାହିଁ କେବଳ ପ୍ରୟୋଗ କରାଯିବ ଏହା ନିୟମ ।

୮୪ । କଥମିତି ଚେତ୍ ।

୮୬ । ଉଚ୍ୟତେ—ରସୋ ଯଦା ପ୍ରାଧାନ୍ୟେନ ପ୍ରତିପାଦ୍ୟଃ ତଦା ତତ୍ପ୍ରତୀତୌ ବ୍ୟବଧାୟକା ବିରୋଧିନଶ୍ଚ ସର୍ବାତ୍ମନୈବ ପରିହାର୍ଯ୍ୟାଃ ।

୮୭ । ଏବଂ ଚ ଦୀର୍ଘସମାସା ସଂଘଟନା ସମାସାନାମନେକପ୍ରକାରସମ୍ଭାବନୟା କଦାଚିତ୍ ରସପ୍ରତୀତିଂ ବ୍ୟବଦଧାତୀତି ତସ୍ୟାଂ ନାତ୍ୟନ୍ତମଭିନିବେଶଃ ଶୋଭତେ ।

୮୮ । ବିଶେଷତୋଽଭିନେୟାର୍ଥେ କାବ୍ୟେ, ତତୋଽନ୍ୟତ୍ର ଚ ବିଶେଷତଃ କରୁଣ-ବିପ୍ରଲମ୍ଭଶୃଙ୍ଗାରୟୋଃ । ତୟୋର୍ହି ସୁକୁମାରତରତ୍ୱାତ୍ ସ୍ୱଳ୍ପାୟାମପ୍ୟସ୍ୱଚ୍ଛତାୟାଂ ଶବ୍ଦାର୍ଥୟୋଃ ପ୍ରତୀତିର୍ମନ୍ଥରୀ ଭବତି ।

---

୮୫ । ପ୍ରଶ୍ନ—ଏହିପରି ନିୟମ କରିବାର ପ୍ରୟୋଜନ କଅଣ ?

୮୬ । ଉତ୍ତର—ଯେଉଁଠାରେ ରସକୁ ପ୍ରଧାନଭାବେ ପ୍ରତିପାଦନ କରାଯାଏ ସେଠାରେ ଯାହା ସବୁ ରସ ପ୍ରତୀତିରେ ବିଳମ୍ବକାରକ (ବ୍ୟବଧାୟକ) ବା ରସ ପ୍ରତୀତିର ପ୍ରତିବନ୍ଧକ (ବିରୋଧୀ) ତାହା ସବୁ ବିଲ୍‌କୁଲ୍ (ସର୍ବାତ୍ମନା) ପରିତ୍ୟାଗ କରିବାକୁ ହେବ ।

୮୭ । ଦୀର୍ଘସମାସା ସଂଘଟନାରେ ସମସ୍ତ ପଦରେ ଅନେକ ପ୍ରକାର ସମାସର ସମ୍ଭାବନା ହୁଏ । ଯଥା—ପୀତପଟଃ, ଏଠାରେ କର୍ମଧାରୟ ଓ ବହୁବ୍ରୀହିର ଶଙ୍କା । ସୁତରାଂ ତହିଁରେ ଅର୍ଥବୋଧର ବିଳମ୍ବ ହେତୁ ବିଳମ୍ବରେ ରସ ପ୍ରତୀତି ହୁଏ । ଏଣୁ ରସଭାବ ସମନ୍ୱିତ କାବ୍ୟରେ ଦୀର୍ଘସମାସ ସଂଘଟନା ପ୍ରୟୋଗ କରିବାରେ ଅତ୍ୟନ୍ତ ଆଗ୍ରହ ଶୋଭାପାଏ ନାହିଁ ।

୮୮ । ଦୀର୍ଘସମାସା ସଂଘଟନା ଶ୍ରବ୍ୟକାବ୍ୟ ଅପେକ୍ଷା ଦୃଶ୍ୟ କାବ୍ୟର ଅଧିକ ଶୋଭା ହାନିକରେ । ଶ୍ରବ୍ୟ ଓ ଦୃଶ୍ୟ ଉଭୟ ପ୍ରକାର କାବ୍ୟରେ ମଧ୍ୟ କରୁଣ ରସ ଓ ବିପ୍ରଲମ୍ଭ ରସ ସ୍ଥଳରେ ତାହା ବିଶେଷ ଭାବେ ଶୋଭା

୮୯ । ରସାନ୍ତରେ ପୁନଃ ପ୍ରତିପାଦ୍ୟେ ରୌଦ୍ରାଦୌ, ମଧ୍ୟମ-ସମାସା ସଂଘଟନା, କଦାଚିତ୍ ଧୀରୋଦ୍ଧତନାୟକ-ସମ୍ବନ୍ଧବ୍ୟାପାରାଶ୍ରୟେଣ ଦୀର୍ଘସମାସାଽପି ବା, ତଦା କ୍ଷେପାବିନାଭାବିରସୋଚିତ ବାଚ୍ୟାପେକ୍ଷୟା ନ ବିଗୁଣା ଭବତୀତି ସାପି ନାତ୍ୟନ୍ତଂ ପରିହାର୍ଯ୍ୟା ।

୯୦ । ସର୍ବାସୁ ଚ ସଂଘଟନାସୁ ପ୍ରସାଦାଖ୍ୟୋ ଗୁଣୋ ବ୍ୟାପୀ । ସହି ସର୍ବରସସାଧାରଣଃ ସର୍ବସଂଘଟନା ସାଧାରଣଶ୍ଚେତ୍ୟୁକ୍ତମ୍ ।

୯୧ । ପ୍ରସାଦାତିକ୍ରମେ ହ୍ୟସମାସାଽପି ସଂଘଟନା କରୁଣ-ବିପ୍ରଲମ୍ଭଶୃଙ୍ଗାରୌ ନ ବ୍ୟନକ୍ତି । ତଦପରିତ୍ୟାଗେ ଚ

ହାନି କରେ । କାରଣ ଏହି ଦୁଇ ରସ ଅନ୍ୟ ରସ ଅପେକ୍ଷା ଅଧିକ ସୁକୁମାର । ଏଣୁ ଶବ୍ଦ ଓ ଅର୍ଥର ଅଳ୍ପ ଟିକିଏ କାଠିନ୍ୟ—(ଅସ୍ୱଚ୍ଛତା)ରେ ମଧ୍ୟ ରସ ପ୍ରତୀତିରେ ବିଳମ୍ବ ଘଟେ ।

୮୯ । ଏହି କରୁଣ ରସ ଓ ବିପ୍ରଲମ୍ଭ ରସ ଭିନ୍ନ ରୌଦ୍ର ପ୍ରଭୃତି ଅନ୍ୟ ରସ ପ୍ରତିପାଦନ କରି ଯାଉଥିଲେ ମଧ୍ୟମସମାସା ସଂଘଟନା ବ୍ୟବହାର କରିଯାଇ ପାରିବ । କେବେ କେବେ ଧୀରୋଦ୍ଧତ ନାୟକର ଚରିତ ବର୍ଣ୍ଣନରେ ଦୀର୍ଘସମାସା ସଂଘଟନା ମଧ୍ୟ ବ୍ୟବହାର କରିଯାଇ ପାରେ । ଯେଉଁଠି ବାଚ୍ୟ ଅର୍ଥ ତାଦୃଶ ସଂଘଟନା ବିନା ରୌଦ୍ରାଦିର ରସ ବ୍ୟଞ୍ଜକ ହୋଇ ପାରୁ ନାହିଁ, ସେ ସ୍ଥଳରେ ତାଦୃଶ ସଂଘଟନା ଦୋଷାବହ ନୁହେ, ଏଣୁ ଦୀର୍ଘସମାସା ସଂଘଟନା ମଧ୍ୟ ଏକାନ୍ତତଃ ପରିହାର୍ଯ୍ୟ ନୁହେ ।

୯୦ । ସବୁପ୍ରକାର ସଂଘଟନାରେ ପ୍ରସାଦଗୁଣ ବ୍ୟାପକଭାବେ ରହିବା ଆବଶ୍ୟକ, କାରଣ ସେ ସବୁ ରସ ଓ ସବୁପ୍ରକାର ରଚନା—(ସଂଘଟନା)ରେ ସାଧାରଣ ବୋଲି ପୂର୍ବରୁ କୁହାଯାଇ ଅଛି ।

୯୧ । ଉକ୍ତ ପ୍ରସାଦଗୁଣ ନ ଥିଲେ ଅସମାସା ସଂଘଟନା ମଧ୍ୟ କରୁଣ ଓ ବିପ୍ରଲମ୍ଭ ରସର ବ୍ୟଞ୍ଜକ ହୋଇପାରେ ନାହିଁ ଏବଂ ପ୍ରସାଦଗୁଣ ଥିଲେ

ମଧ୍ୟମସମାସାଽପି ପ୍ରକାଶସ୍ୟୁକ୍ତ । ତସ୍ମାତ୍ ସର୍ବତ୍ର ପ୍ରସାଦୋଽନୁସର୍ତ୍ତବ୍ୟଃ ।

୯୨ । ଅତଏବ "ଯୋ ଯଃ ଶସ୍ତ୍ରଂ ବିଭର୍ତ୍ତି" ଇତ୍ୟାଦୌ ଯଦ୍ୟୋଜସଃ ସ୍ଥିତି ର୍ନେଷ୍ୟତେ, ତତ୍ ପ୍ରସାଦାଖ୍ୟ ଏବ ଗୁଣୋ, ନ ମାଧୁର୍ଯ୍ୟମ୍ । ନ ଚାରୁତ୍ୱମ୍, ଅଭିପ୍ରେତରସ ପ୍ରକାଶନାତ୍ ।

୯୩ । ତସ୍ମାତ୍ ଗୁଣାବ୍ୟତିରିକ୍ତତ୍ୱେ ଗୁଣବ୍ୟତିରିକ୍ତତ୍ୱେ ବା ସଂଘଟନାୟା ଯଥୋକ୍ତାଦୌଚିତ୍ୟାଦ୍ ବିଷୟ ନିୟମୋଽ-ସ୍ତୀତି, ତସ୍ୟା ଅପି ରସବ୍ୟଞ୍ଜକତ୍ୱମ୍, ତସ୍ୟାଶ୍ଚ ରସାଭି-ବ୍ୟକ୍ତି ନିମିତ୍ତଭୂତାୟା ଯୋଽୟମନନ୍ତରୋକ୍ତୋ ନିୟମ-

---

ମଧ୍ୟମସମାସା ସଂଘଟନା ମଧ୍ୟ ଉକ୍ତ ଦୁଇ ରସର ବ୍ୟଞ୍ଜକ ହୋଇପାରେ । ତେଣୁ ସବୁ ରସର କବିତା ଓ ସବୁ ସଂଘଟନାରେ ପ୍ରସାଦଗୁଣକୁ ଅନୁସରଣ କରିବା ଉଚିତ ।

୯୨ । ଅତଏବ "ଯୋ ଯଃ ଶସ୍ତ୍ରଂ ବିଭର୍ତ୍ତି" ଇତ୍ୟାଦି ସ୍ଥଳରେ ଯଦି କାହାର କାହାର ମତରେ ଓଜଗୁଣ ନାହିଁ ତଥାପି ପ୍ରସାଦଗୁଣ ଅଛି । କିନ୍ତୁ ମାଧୁର୍ଯ୍ୟଗୁଣ ନାହିଁ । ଓଜଗୁଣ ନ ଥିଲେ ମଧ୍ୟ ସେଠାରେ ଅଚାରୁତା (ଦୋଷ) ନାହିଁ । ଯେଣୁ ପ୍ରସାଦଗୁଣ ଅଭିଲଷିତ ରୌଦ୍ରାଦି ରସକୁ ପ୍ରକାଶ କରି ପାରୁଛି ।

## ଔଚିତ୍ୟ ନିରୂପଣ

୯୩ । ତେଣୁ ସଂଘଟନା ଗୁଣଠାରୁ ବ୍ୟତିରିକ୍ତ ହେଉ ବା ଗୁଣ ସ୍ୱରୂପ ହେଉ ବକ୍ତା ଓ ବାଚ୍ୟର ଔଚିତ୍ୟ, ତାହାର ନିୟାମକ ହୋଇଥିବା ହେତୁ ସେହି ସଂଘଟନା ମଧ୍ୟ ରସର ବ୍ୟଞ୍ଜକ ହୁଏ ।

ଏହି ରସବ୍ୟଞ୍ଜକ ସଂଘଟନାର ଯେଉଁ ନିୟମ ହେତୁ କୁହା ଯାଇଛି । ତାହା ଗୁଣମାନଙ୍କର ମଧ୍ୟ ନିୟତ ବିଷୟ ଅର୍ଥାତ୍ ଗୁଣମାନେ ମଧ୍ୟ

ହେତୁଃ, ସ ଏବ ଗୁଣାନାଂ ନିୟତୋ ବିଷୟ ଇତି ଗୁଣାଶ୍ରୟେଣ ବ୍ୟବସ୍ଥାନମପ୍ୟବିରୁଦ୍ଧମ୍ ।

୯୪ । ବିଷୟାଶ୍ରୟମପ୍ୟନ୍ୟଦୌଚିତ୍ୟଂ ତାଂ ନିୟଚ୍ଛତି ।
କାବ୍ୟପ୍ରଭେଦାଶ୍ରୟତଃ ସ୍ଥିତା ଭେଦବତୀ ହି ସା । ୭ ।

୯୫ । ଯତଃ କାବ୍ୟସ୍ୟ ପ୍ରଭେଦାଃ ମୁକ୍ତକଂ ସଂସ୍କୃତ ପ୍ରାକୃତାପଭ୍ରଂଶନିବନ୍ଧମ୍, ସନ୍ଦାନିତକବିଶେଷକକଳାପକ-କୁଳକାନି, ପର୍ଯ୍ୟାୟବନ୍ଧଃ, ପରିକଥା, ସକଳ-

---

ବକ୍ତାଦି ଔଚିତ୍ୟ ଅନୁସାରେ ରହିଥାନ୍ତି । ଏଣୁ ଗୁଣମାନଙ୍କୁ ଆଶ୍ରୟ କରି ସଙ୍ଘଟନା ରହିବା ମଧ୍ୟ ବିରୁଦ୍ଧ ନୁହେ ।

୯୪ । ବିଷୟ (ସବନ୍ଧ)ର ଔଚିତ୍ୟ ମଧ୍ୟ ଏହି ସଙ୍ଘଟନାର ନିୟାମକ ହୁଏ, ଏଣୁ ସଙ୍ଘଟନା ମଧ୍ୟ କାବ୍ୟର ପ୍ରଭେଦ ଅନୁସାରେ ବିଭିନ୍ନ ହୋଇଥାଏ । (ବକ୍ତାର ଔଚିତ୍ୟ, ବାଚ୍ୟର ଔଚିତ୍ୟ, ଓ ବିଷୟର ଔଚିତ୍ୟ, ସଙ୍ଘଟନାକୁ ନିୟନ୍ତ୍ରଣ କରେ ।

୯୫ । କାବ୍ୟର ପ୍ରଭେଦ ଯଥା—ଏକ ଶ୍ଳୋକବିଶିଷ୍ଟ କାବ୍ୟ ମୁକ୍ତକ ।

ତାହା ସଂସ୍କୃତ ଭାଷା ନିବଦ୍ଧ, ତଦ୍‌ଭବ ତତ୍ସମପ୍ରଭୃତି ପ୍ରାକୃତଭାଷା ନିବଦ୍ଧ ଓ ଆଭୀରାଦି ଅପଭ୍ରଂଶ ଭାଷାନିବଦ୍ଧ ଭେଦରେ ତ୍ରିବିଧ ।

ସନ୍ଦାନିତକ (ଯୁଗ୍ମକ) ଦ୍ୱିଶ୍ଳୋକ ବିଶିଷ୍ଟ—ବିଶେଷକ, ତ୍ରିଶ୍ଳୋକ-ବିଶିଷ୍ଟ, କଳାପକ—ଶ୍ଳୋକ ଚତୁଷ୍ଟୟ ବିଶିଷ୍ଟ । କୁଳକ, ପଞ୍ଚଶ୍ଳୋକ ବିଶିଷ୍ଟ (ଏମାନେ ମଧ୍ୟ ପ୍ରତ୍ୟେକ ଉପର୍ଯ୍ୟୁକ୍ତ ଭାଷା ଭେଦରେ ବିଭିନ୍ନ) ।

ପର୍ଯ୍ୟାୟ ବନ୍ଧ—ଖଣ୍ଡକାବ୍ୟ ସ୍ୱରୂପ ! ସେଥିରେ ଗ୍ରନ୍ଥ ଶେଷରେ ବସନ୍ତାଦି କୌଣସି ଅବାନ୍ତର ବିଷୟର ବର୍ଣ୍ଣନା ହୋଇଥାଏ ।

ପରିକଥା—ଧର୍ମ୍ମ, ଅର୍ଥ, କାମ, ମୋକ୍ଷ ଏହି ଚତୁର୍ବିଧ ପୁରୁଷାର୍ଥ ମଧ୍ୟରୁ ଯେ କୌଣସି ଗୋଟିଏ ପୁରୁଷାର୍ଥ ଉଦ୍ଦେଶ୍ୟରେ ନାନାପ୍ରକାର ବୃତ୍ତାନ୍ତ ବର୍ଣ୍ଣନା ।

କଥା-ଖଣ୍ଡକଥେ, ସର୍ଗବନ୍ଧୋଽଭିନେୟାର୍ଥମାଖ୍ୟାୟିକା, କଥେତ୍ୟେବମାଦୟଃ । ତଦାଶ୍ରୟେଣାପି ସଂଘଟନା ବିଶେଷବତୀ ଭବତି ।

୯୬ । ତତ୍ର ମୁକ୍ତକେଷୁ ରସବନ୍ଧାଭିନିବେଶିନଃ କବେସ୍ତଦାଶ୍ରୟ-ମୌଚିତ୍ୟମ୍ । ତଚ୍ଚ ଦର୍ଶିତମେବ । ଅନ୍ୟତ୍ର କାମଚାରଃ ।

୯୭ । ମୁକ୍ତକେଷୁ ହି ପ୍ରବନ୍ଧେଷ୍ୱିବ ରସବନ୍ଧାଭିନିବେଶିନଃ କବୟୋ ଦୃଶ୍ୟନ୍ତେ । ଯଥା ହ୍ୟମରୁକସ୍ୟ କବେର୍ମୁକ୍ତକାଃ ଶୃଙ୍ଗାରରସସ୍ୟନ୍ଦିନଃ ପ୍ରବନ୍ଧାୟମାନାଃ ପ୍ରସିଦ୍ଧା ଏବ ।

---

ସକଳକଥା—ଫଳପର୍ଯ୍ୟନ୍ତ ଯାଇଥିବା ବୃତ୍ତାନ୍ତର ବର୍ଣ୍ଣନା ।

ଖଣ୍ଡକଥା—କଥାର ଏକଦେଶ ବର୍ଣ୍ଣନା, ଖଣ୍ଡକଥା ଓ ସକଳକଥା କେବଳ ପ୍ରାକୃତ ଭାଷାରେ ପ୍ରସିଦ୍ଧ ।

ସର୍ଗବନ୍ଧ - ମହାକାବ୍ୟ (ମାଘପ୍ରଭୃତି) ।

ଅଭିନେୟାର୍ଥ—ଦୃଶ୍ୟକାବ୍ୟ (ଶାକୁନ୍ତଳାଦି) ।

ଆଖ୍ୟାୟିକା—ଗଦ୍ୟ ପ୍ରଚୁର ପ୍ରବନ୍ଧ ।

କଥା—ସଜ୍ଜନ ଦୁର୍ଜ୍ଜନ ବୃତ୍ତାନ୍ତ ବର୍ଣ୍ଣନାତ୍ମକ ଗଦ୍ୟମୟ ପ୍ରବନ୍ଧ ।

ଉକ୍ତ ବିଭିନ୍ନ ପ୍ରକାର କାବ୍ୟରେ ସଂଘଟନା ଭିନ୍ନ ଭିନ୍ନ ଭାବେ ରହିଥାଏ ।

୯୬ । ମୁକ୍ତକ ରଚନାରେ କବି ଯଦି ଭାବାବିଷ୍ଟ ହୋଇଥାଏ, ତେବେ ରସାନୁକୂଳ ସଂଘଟନା ଆଶ୍ରୟ କରିବ, ଅନ୍ୟଥା ନିଜ ଇଚ୍ଛା ଅନୁସାରେ ସଂଘଟନା ବ୍ୟବହାର କରିବ । ଏହା ପୂର୍ବରୁ କୁହାଯାଇଅଛି ।

୯୭ । କବିମାନେ ଗୋଟିଏ ଗ୍ରନ୍ଥଭଳି ଗୋଟିଏ ଶ୍ଳୋକ (ମୁକ୍ତକ)ରେ ମଧ୍ୟ ରସଭାବ ନିବେଶ କରି ପାରନ୍ତି । ଯଥା—ଅମରୁକ କବିଙ୍କର ମୁକ୍ତକ-ଗୁଡ଼ିକ ଶୃଙ୍ଗାର-ରସଭରା ହୋଇ ପ୍ରତ୍ୟେକରେ ଗୋଟିଏ ଗୋଟିଏ ପ୍ରବନ୍ଧ ସ୍ୱରୂପ ହୋଇଅଛନ୍ତି ।

୯୮ । ସନ୍ଧାନତକ୍ତାଦପ୍ୟୁ ତୁ ଵିକଟନିବନ୍ଧୌଚିତ୍ୟାତ୍ ମଧ୍ୟମ-
ସମାସାଦୀର୍ଘସମାସେ ଏବ ସଂଘଟନେ ।

୯୯ । ପ୍ରବନ୍ଧାଶ୍ରୟେଷ୍ୱୁ ଯଥୋକ୍ତପ୍ରବନ୍ଧୌଚିତ୍ୟମେବାନୁ-
ସର୍ତ୍ତବ୍ୟମ୍ ।

୧୦୦ । ପର୍ଯ୍ୟାୟବନ୍ଧେ ପୁନରସମାସା-ମଧ୍ୟମସମାସେ ଏବ
ସଂଘଟନେ । କଦାଚିଦର୍ଥୌଚିତ୍ୟାଶ୍ରୟେଣ ଦୀର୍ଘସମା-
ସାୟାମପି ସଂଘଟନାୟାଂ ପରୁଷା ଗ୍ରାମ୍ୟା ଚ ବୃତ୍ତିଃ
ପରିହର୍ତ୍ତବ୍ୟା ।

୧୦୧ । ପରିକଥାୟାଂ ତୁ କାମଚାରଃ । ତତ୍ରେତିବୃତ୍ତମାତ୍ରୋ-
ପନ୍ୟାସେନ ନାତ୍ୟନ୍ତଂ ରସବନ୍ଧାଭିନିବେଶାତ୍ ।

---

୯୮ । ସନ୍ଧାନତକ (ଯୁଗ୍ମକ) ପ୍ରଭୃତିରେ ବିକଟ ନିବନ୍ଧନ ହେତୁ, (ଅର୍ଥାତ୍ କ୍ରିୟା ପଦର ଦୂରବର୍ତ୍ତିତା ହେତୁ ବିଳମ୍ବରେ ଅର୍ଥପ୍ରତୀତି ହେଉ-ଥିବାରୁ ତହିଁରେ ରସାସ୍ୱାଦର ଅପେକ୍ଷା ନ ଥାଏ, ତେଣୁ) ମଧ୍ୟମସମାସା ଓ ଦୀର୍ଘ ସମାସା ସଂଘଟନା ଦୁଇଟି ବ୍ୟବହାର୍ଯ୍ୟ ।

୯୯ । ପ୍ରବନ୍ଧ (ଗ୍ରନ୍ଥ) ଗତ ଯୁଗ୍ମକ ପ୍ରଭୃତିରେ ପ୍ରବନ୍ଧର ଔଚିତ୍ୟ ଅନୁସାରେ ସଂଘଟନା ବ୍ୟବହୃତ ହେବ, ସେଠାରେ ମଧ୍ୟମସମାସା କିମ୍ବା ଦୀର୍ଘସମାସାର ବ୍ୟବହାର କରାଯିବ, ଏପରି ନିୟମ ନାହିଁ ।

୧୦୦ । ପର୍ଯ୍ୟାୟ ବନ୍ଧରେ ଅସମାସା ଓ ମଧ୍ୟମ ସମାସା ଏହି ଦୁଇ ପ୍ରକାର ସଂଘଟନା ।

କୌଣସି କୌଣସି ସ୍ଥଳରେ ଅର୍ଥର ଔଚିତ୍ୟ ଦୃଷ୍ଟିରୁ ଦୀର୍ଘ-ସମାସା ସଂଘଟନାରେ ମଧ୍ୟ ପରୁଷା (ଗୌଡ଼ୀ) ଓ ଗ୍ରାମ୍ୟା (ପାଞ୍ଚାଳୀ) ବୃତ୍ତିକୁ ପରିହାର କରିବାକୁ ହେବ ।

୧୦୧ । ପରିକଥାରେ ଇତିବୃତ୍ତମାତ୍ର ବିନ୍ୟାସ କରାଯାଉଥିବାରୁ ଓ ରସବନ୍ଧ ପ୍ରତି ଅଭିନିବେଶ ନ ଥିବାରୁ ଲେଖକ ନିଜ ଇଚ୍ଛାରେ ସଂଘଟନା ବ୍ୟବହାର କରି ପାରନ୍ତି ।

୧୦୨ । ଖଣ୍ଡକଥାସକଳକଥୟୋଃ ପ୍ରାକୃତପ୍ରସିଦ୍ଧୟୋଃ କୁଳକାଦନବନ୍ଧନଭୂୟସ୍ତ୍ୱାତ୍ ଦୀର୍ଘସମାସାୟାମପି ନ ବିରୋଧଃ । ବୃତ୍ତ୍ୟୌଚିତ୍ୟଂ ତୁ ଯଥାରସମନୁସର୍ତ୍ତବ୍ୟମ୍ ।

୧୦୩ । ସର୍ଗବନ୍ଧେ ତୁ ରସତାତ୍ପର୍ଯ୍ୟେଣ ଯଥାରସମୌଚିତ୍ୟମ୍ । ଅନ୍ୟଥା ତୁ କାମଚାରଃ ।

୧୦୪ । —ଦ୍ୱୟୋରପି ମାର୍ଗୟୋଃ ସର୍ଗବନ୍ଧବିଧାୟିନାଂ ଦର୍ଶନାତ୍ । ରସତାତ୍ପର୍ଯ୍ୟଂ ସାଧୀୟଃ ।

୧୦୫ । ଅଭିନେୟାର୍ଥେ ତୁ ସର୍ବଥା ରସବନ୍ଧେଽଭିନିବେଶଃ କାର୍ଯ୍ୟଃ ।

---

୧୦୨ । ଖଣ୍ଡ କଥା ଓ ସକଳ କଥା ଦୁଇଟି ପ୍ରାକୃତ ଭାଷାରେ ମାତ୍ର ପ୍ରସିଦ୍ଧ । ତହିଁରେ କୁଳକ ପ୍ରଭୃତି ବିଶେଷ ଭାବେ ଥାଏ । କୁଳକାଦିରେ ସ୍ୱଭାବତଃ ଅର୍ଥ ପ୍ରତୀତିର ବିଳମ୍ବ ହେଉଥିବା ହେତୁ ଦୀର୍ଘ ସମାସା ସଂଘଟନା ବ୍ୟବହୃତ ହେବାରେ ବିରୋଧ ନାହିଁ, କିନ୍ତୁ (ପ୍ରବନ୍ଧର) ରସ ଅନୁସାରେ ପରୁଷାଦି ବୃତ୍ତିମାନଙ୍କର ଔଚିତ୍ୟ ଅନୁସରଣ କରିବାକୁ ହେବ ।

୧୦୩ । ସର୍ଗବନ୍ଧ (ମହାକାବ୍ୟ) ରସାଭିମୁଖ ହୋଇଥିଲେ ରସ ଅନୁସାରେ ବୃତ୍ତିମାଙ୍କର ବ୍ୟବସ୍ଥା ବିଧେୟ । ଅନ୍ୟଥା କବି ସ୍ୱ ଇଚ୍ଛାରେ ପ୍ରୟୋଗ କରି ପାରେ ।

୧୦୪ । ମହାକାବ୍ୟ କର୍ତ୍ତାମାନେ ରସ ପ୍ରକାଶ ପର ଓ ତହିଁରୁ ଭିନ୍ନ ଏହିପରି ଦୁଇ ପ୍ରକାରେ କାବ୍ୟ ସୃଷ୍ଟି କରିଥାନ୍ତି ।

ତନ୍ମଧ୍ୟରେ ରସପର ମହାକବି ଶ୍ରେଷ୍ଠ ।

୧୦୫ । ଅଭିନେୟ—ଦୃଶ୍ୟ କାବ୍ୟରେ କବି ସର୍ବଥା ରସବନ୍ଧ ପାଇଁ ମନୋଯୋଗୀ ହେବା ଉଚିତ ।

୧୦୬ । ଆଖ୍ୟାୟିକାକଥୟୋସ୍ତୁ ଗଦ୍ୟନିବନ୍ଧବାହୁଲ୍ୟାତ୍, ଗଦ୍ୟେ ଚ ଛନ୍ଦୋବନ୍ଧଭିନ୍ନପ୍ରସ୍ଥାନତ୍ୱାତ୍ ଇହ ନିୟମେ ହେତୁରକୃତପୂର୍ବୋଽପି ମନାକ୍ କ୍ରିୟତେ—

୧୦୭ । ଏତତ୍ ଯଥୋକ୍ତ ମୌଚିତ୍ୟମେବ ତସ୍ୟା ନିୟାମକମ୍ । ସର୍ବତ୍ର ଗଦ୍ୟବନ୍ଧେଽପି ଛନ୍ଦୋନିୟମବର୍ଜିତେ । ୮ । ଯଦେତଦୌଚିତ୍ୟଂ ବକ୍ତୃବାଚ୍ୟଗତଂ ସଂଘଟନାୟା ନିୟାମକମୁକ୍ତମ୍, ଏତଦେବ ଗଦ୍ୟେ ଛନ୍ଦୋନିୟମ-ବର୍ଜିତେଽପି ବିଷୟାପେକ୍ଷଂ ନିୟମହେତୁଃ ।

୧୦୮ । ତଥାହି—ଅତ୍ରାପି ଯଦା କବିଃ, କବିନିବଦ୍ଧୋ ବା ବକ୍ତା ରସଭାବରହିତଃ, ତଦା କାମଚାରଃ । ରସଭାବ ସମନ୍ୱିତେ ତୁ ବକ୍ତରି ପୂର୍ବୋକ୍ତମେବା-ନୁସର୍ତ୍ତବ୍ୟମ୍ । ତତ୍ରାପି ବା ବିଷୟୌଚିତ୍ୟମେବ ।

---

୧୦୬ । ଆଖ୍ୟାୟିକା ଓ କଥାକାବ୍ୟ ଗଦ୍ୟ ବହୁଳ ହେତୁ ଓ ଗଦ୍ୟ ଲେଖାରେ ଛନ୍ଦୋବଦ୍ଧ ରୀତି (ପ୍ରସ୍ଥାନ) ନ ଥିବାରୁ ତହିଁରେ ସଂଘଟନାର ନିୟମ ପୂର୍ବରୁ କରାଯାଇ ନ ଥିଲେ ମଧ୍ୟ ବର୍ତ୍ତମାନ ତାହାର ନିୟମ କରୁଅଛୁଁ । (ପ୍ରସ୍ଥାନ ରୀତି)

୧୦୭ । ଛନ୍ଦୋ ନିୟମରୁ ବହିର୍ଭୂତ ଗଦ୍ୟ ବନ୍ଧମାନଙ୍କରେ ମଧ୍ୟ ସର୍ବତ୍ର ଏହି ବକ୍ତୃଗତ, ବାଚ୍ୟଗତ, ଓ ପ୍ରବନ୍ଧ ଗତ ଔଚିତ୍ୟ, ସଂଘଟନାର (ତସ୍ୟାଃ) ନିୟାମକ ।

୧୦୮ । ଗଦ୍ୟରେ ମଧ୍ୟ ଯଦି କବି କିମ୍ବା କବିନିବଦ୍ଧବକ୍ତା ରସଭାବ ରହିତ ହୁଏ ତେବେ କୌଣସି ନିୟମ ନାହିଁ । ରସଭାବ ସମନ୍ୱିତ ହେଲେ ପୂର୍ବୋକ୍ତ ସଂଘଟନା ନିୟମମାନ ଅନୁସରଣ କରିବାକୁ ହେବ ।

ସେଭଳି ସ୍ଥଳରେ ମଧ୍ୟ ପ୍ରବନ୍ଧର ଔଚିତ୍ୟ ଅପେକ୍ଷଣୀୟ ।

୧୦୯ । ଆଖ୍ୟାୟିକାୟାଂ ତୁ ଭୂମ୍ନା ମଧ୍ୟମସମାସ-ଦୀର୍ଘସମାସେ
ଏବ ସଂଘଟନେ ।

୧୧୦ । ଗଦ୍ୟସ୍ୟ ବିକଟନିବନ୍ଧାଶ୍ରୟେଣ ଛାୟାବତ୍ତ୍ୱାତ୍ ।

୧୧୧ । କଥାୟାଂ ତୁ ବିକଟବନ୍ଧପ୍ରାଚୁର୍ଯ୍ୟେଽପି ଗଦ୍ୟସ୍ୟ,
ରସବନ୍ଧୋକ୍ତମୌଚିତ୍ୟମେବାନୁସର୍ତ୍ତବ୍ୟମ୍ ।

୧୧୨ । ରସବନ୍ଧୋକ୍ତମୌଚିତ୍ୟଂ ଭାତି ସର୍ବତ୍ର ସଂଶ୍ରିତା ।
ରଚନା, ବିଷୟାପେକ୍ଷଂ ତତ୍ତୁ କିଂଚିଦ୍ବିଭେଦବତ୍ । ୯

୧୧୩ । ଅଥବା ପଦ୍ୟବତ୍ ଗଦ୍ୟବନ୍ଧେଽପି ରସବନ୍ଧୋକ୍ତ
ମୌଚିତ୍ୟଂ ସର୍ବତ୍ର ସଂଶ୍ରିତା ରଚନା ଭାତି । ନ ତୁ
ସର୍ବାକାରମ୍ ।

---

୧୦୯ । ଆଖ୍ୟାୟିକାରେ ମଧ୍ୟମ ସମାସ ଓ ଦୀର୍ଘ ସମାସ ସଂଘଟନା ଦୁଇଟି ବହୁଳଭାବରେ ରହିବା ଉଚିତ ।

୧୧୦ । ଗଦ୍ୟ କାବ୍ୟ ବିକଟ ନିବନ୍ଧ ( ବୃହତ୍ ବାକ୍ୟ ବିଶିଷ୍ଟ ) ହେଲେ ଶୋଭାବହ ହୁଏ, ଏଣୁ ଗଦ୍ୟରେ ବିକଟ ନିବନ୍ଧ ପ୍ରକୃଷ୍ଟ ।

୧୧୧ । କଥା କାବ୍ୟରେ ବିକଟ ବନ୍ଧ ବହୁଳଭାବେ ରହୁଥିଲେ ମଧ୍ୟ ତହିଁରେ ରସବନ୍ଧର ଔଚିତ୍ୟ ରକ୍ଷା କରିବା ଉଚିତ ।

୧୧୨ । ସର୍ବତ୍ର ଗଦ୍ୟ ଓ ପଦ୍ୟରେ ସଂଘଟନା (ରଚନା), ପୂର୍ବୋକ୍ତ ପ୍ରବନ୍ଧ ରସର ଔଚିତ୍ୟକୁ ଆଶ୍ରୟ କରିଥାଏ । କିନ୍ତୁ, ବିଷୟ (ପ୍ରବନ୍ଧ) ଦୃଷ୍ଟିରେ ତହିଁରେ କିଛି ବିଶେଷ ପରିବର୍ତ୍ତନ ହୁଏ ।

(ଅର୍ଥାତ୍ ରସର ଔଚିତ୍ୟ ପ୍ରଧାନ, ତଥାପି ପ୍ରବନ୍ଧ (ଗଦ୍ୟ ପଦ୍ୟାଦି)ର ଔଚିତ୍ୟ ଦୃଷ୍ଟିରେ କ୍ୱଚିତ୍ ସଂଘଟନାର ଆପେକ୍ଷିକ ପରିବର୍ତ୍ତନ ଦେଖାଯାଏ) ।

୧୧୩ । ପଦ୍ୟ ବନ୍ଧ ପରି ଗଦ୍ୟ ବନ୍ଧରେ ମଧ୍ୟ ରସର ଔଚିତ୍ୟକୁ ସଂଘଟନା ଆଶ୍ରୟ କରି ଶୋଭାପାଏ । ତାହା ବିଷୟ ଅନୁସାରେ କ୍ୱଚିତ୍ ଭିନ୍ନ ହୁଏ । କିନ୍ତୁ ବିଲ୍‌କୁଲ୍ (ସର୍ବାକାର) ପରିବର୍ତ୍ତିତ ହୁଏ ନାହିଁ ।

୧୧୪ । ତଥାହି ଗଦ୍ୟବନ୍ଧେଽପି ଅତି ଦୀର୍ଘସମାସା ରଚନା ନ ବିପ୍ରଲମ୍ଭଶୃଙ୍ଗାରକରୁଣୟୋରାଖ୍ୟାୟିକାୟାମପି ଶୋଭତେ ।

୧୧୫ । ନାଟକାଦାବପ୍ୟସମାସୈବ ଘଟନା ।

୧୧୬ । ରୌଦ୍ରବୀରାଦିବର୍ଣ୍ଣନେ ବିଷୟାପେକ୍ଷଂ ତ୍ୱୌଚିତ୍ୟଂ ପ୍ରମାଣତୋଽ ପକୃଷ୍ୟତେ ପ୍ରକୃଷ୍ୟତେ ଚ ।

୧୧୭ । ତଥାହି—ଆଖ୍ୟାୟିକାୟାଂ ନାତ୍ୟନ୍ତମସମାସା, ସ୍ୱ-ବିଷୟେଽପି ନାଟକାଦୌ ନାତିଦୀର୍ଘସମାସା ଚେତି ସଂଘଟନାୟା ଦିଗନୁସର୍ତ୍ତବ୍ୟା ॥

---

୧୧୪ । ଯଥା—ଗଦ୍ୟ ବନ୍ଧ ଆଖ୍ୟାୟିକାରେ ମଧ୍ୟ ବିପ୍ରଲମ୍ଭ ଶୃଙ୍ଗାର କିମ୍ବା କରୁଣରସ ସ୍ଥଳରେ ଅତିଦୀର୍ଘ ସମାସା ସଂଘଟନା ଶୋଭା ପାଏ ନାହିଁ ।

୧୧୫ । ନାଟକାଦି ଦୃଶ୍ୟକାବ୍ୟରେ କେବଳ ଅସମାସା ସଂଘଟନା ଶୋଭାପାଏ ।

(କରୁଣାଦି ରସ ବ୍ୟଞ୍ଜକ ଶ୍ରବ୍ୟ କାବ୍ୟରେ ମଧ୍ୟ କେବଳ ଅସମାସା ସଂଘଟନ ରହିବା ଉଚିତ) ।

୧୧୬ । ରୌଦ୍ରବୀରାଦି ରସ ବର୍ଣ୍ଣନରେ ଆଖ୍ୟାୟିକା, ନାଟକପ୍ରଭୃତି ପ୍ରବନ୍ଧର ଅନୁରୂପେ ଔଚିତ୍ୟ କେଉଁଠି ଊଣା ବା କେଉଁଠି ଅଧିକ ହୁଏ ।

୧୧୭ । ଆଖ୍ୟାୟିକାରେ ଅସମାସା ସଂଘଟନା ଅତ୍ୟଧିକ ମାତ୍ରାରେ ରହିବା ଉଚିତ ନୁହେ, କିମ୍ବା ନାଟକାଦିରେ ରୌଦ୍ରାଦିରସ ଥିଲେ ମଧ୍ୟ ଅତି ଦୀର୍ଘ ସମାସା ସଂଘଟନା ରହିବା ଉଚିତ ନୁହେ । ଏହା ସଂଘଟନା ନିବେଶର ଶୈଳୀ ।

୧୧୮ । ଇତି କାବ୍ୟାର୍ଥବିବେକୋ ଯୋଽୟଂ ଚେତଶ୍ଚମତ୍କୃତି-
ବିଧାୟୀ । ସୂରିଭିରନୁସୃତସାରୈରସ୍ମଦୁପଜ୍ଞୋ ନ
ବିସ୍ମାର୍ଯ୍ୟଃ । ଇତି

୧୧୯ । ଇଦାନୀମଲକ୍ଷ୍ୟକ୍ରମବ୍ୟଙ୍ଗ୍ୟୋ ଧ୍ୱନିଃ ପ୍ରବନ୍ଧାତ୍ମା ରାମା-
ୟଣମହାଭାରତାଦୌ ପ୍ରକାଶମାନଃ ପ୍ରସିଦ୍ଧ ଏବ,
ତସ୍ୟ ତୁ ଯଥାପ୍ରକାଶନଂ, ତତ୍ ପ୍ରତିପାଦ୍ୟତେ ।

୧୨୦ । ବିଭାବଭାବାନୁଭାବ-ସଞ୍ଚାର୍ଯ୍ୟୌଚିତ୍ୟଚାରୁଣଃ ।
ବିଧିଃ କଥାଶରୀରସ୍ୟ ବୃତ୍ତସ୍ୟୋତ୍ପ୍ରେକ୍ଷିତସ୍ୟ ବା ।୧୦।

---

୧୧୮ । ଏହି ଯେଉଁ ଚିତ୍ତବିନୋଦନକାରୀ କାବ୍ୟାର୍ଥ ବିଚାର, ତାହା ଆମ୍ଭଠାରୁ ଆରମ୍ଭ ହୋଇଅଛି । ତତ୍ତ୍ୱାନ୍ୱେଷଣକାରୀ ପଣ୍ଡିତମାନେ ଏହା ଭୁଲିଯିବା ଠିକ୍ ନୁହେ ।

୧୧୯ । (ସଂଘଟନାର ବ୍ୟଞ୍ଜକତା ପ୍ରତିପାଦନ କରିବା ପରେ ପ୍ରବନ୍ଧ-ଗତ ରସାଦି ଧ୍ୱନି ପ୍ରତିପାଦନ କରାଯାଉଅଛି) :—

ଅଧୁନା ପ୍ରବନ୍ଧର ଆତ୍ମା ସ୍ୱରୂପ ଅଲକ୍ଷ୍ୟକ୍ରମବ୍ୟଙ୍ଗ୍ୟ ଧ୍ୱନି (ରସାଦି) ପ୍ରତିପାଦନ କରାଯାଉଛି । ସେ ରାମାୟଣ ମହାଭାରତ ପ୍ରଭୃତିରେ ସୁପ୍ରସିଦ୍ଧ ହୋଇ ରହିଥିଲେହେଁ ତାହାର କିପରି ପ୍ରକାଶ ହେଉଛି ତାହାହିଁ ପ୍ରତିପାଦ୍ୟ ।

୧୨୦ । ବିଭାବ, ଭାବ, ଅନୁଭାବ, ସଞ୍ଚାରିଭାବ ଏମାନେ ପ୍ରସ୍ତୁତ-ରସର ଅନୁକୂଳ ହୋଇ ରହିବା ଦ୍ୱାରା ରମଣୀୟ ହୋଇଥାଏ, ଯେଉଁ କାବ୍ୟ ତାହାର ବୃତ୍ତ (ଐତିହାସିକ ପୌରାଣିକ) କିମ୍ବା ଉତ୍ପ୍ରେକ୍ଷିତ (କବିକଳ୍ପିତ) କଥା ବସ୍ତୁର ସଂଯୋଜନ (ବିଧି), ପ୍ରବନ୍ଧର ରସବ୍ୟଞ୍ଜକତାରେ ପ୍ରଥମ ଉପାଦାନ ।

[ବିଭାବ—୧ । ଆଲମ୍ବନ ବିଭାବ ଓ ୨ । ଉଦ୍ଦୀପନ ବିଭାବ । ଆଲମ୍ବନ ନାୟିକାଦି, ଉଦ୍ଦୀପନ ଚନ୍ଦ୍ରାଦି । ଭାବ—ଦେବାଦି ବିଷୟକ ରତି । ଅନୁଭାବ—କଟାକ୍ଷଭୁଜକ୍ଷେପାଦି । ସଞ୍ଚାରୀ—ବ୍ୟଭିଚାରି ଭାବ (ନିର୍ବେଦ, ଗ୍ଲାନି, ଶଙ୍କା ପ୍ରଭୃତି) ୩୩ ପ୍ରକାର ] ।

୧୨୧ । ଇତିବୃତ୍ତବଶାୟାତାଂ ତ୍ୟକ୍ତ୍ୱାନନୁଗୁଣାଂ ସ୍ଥିତିମ୍ ।
ଉତ୍ପ୍ରେକ୍ଷ୍ୟାପ୍ୟନ୍ତରାଭୀଷ୍ଟ-ରସୋଚିତକଥୋନ୍ନୟଃ ॥

୧୨୨ । ସନ୍ଧି-ସନ୍ଧ୍ୟଙ୍ଗଘଟନଂ ରସାଭିବ୍ୟକ୍ତ୍ୟପେକ୍ଷୟା ।
ନତୁ କେବଳୟା ଶାସ୍ତ୍ରସ୍ଥିତି-ସମ୍ପାଦନେଚ୍ଛୟା । ୧୨ ।

୧୨୩ । ଉଦ୍ଦୀପନ-ପ୍ରଶମନେ ଯଥାବସରମନ୍ତରା ।
ରସସ୍ୟାରବ୍ଧବିଶ୍ରାନ୍ତେରନୁସନ୍ଧାନମଙ୍ଗିନଃ । ୧୩ ।

୧୨୪ । ଅଲଂକୃତୀନାଂ ଶକ୍ତାବପ୍ୟାନୁରୂପ୍ୟେଣ ଯୋଜନମ୍ ।
ପ୍ରବନ୍ଧସ୍ୟ ରସାଦୀନାଂ ବ୍ୟଞ୍ଜକତ୍ୱେ ନିବନ୍ଧନମ୍ । ୧୪ ।

---

୧୨୧ । ଦ୍ୱିତୀୟ ଉପାଦାନ ଯଥା – ଐତିହାସିକ ଘଟନା କ୍ରମେ ଆଗତ ବିଷୟ ପ୍ରକୃତ ରସର ପ୍ରତିବନ୍ଧକ ହେଲେ ତାହାର ତ୍ୟାଗପୂର୍ବକ କବି ସ୍ୱୟଂ କଳ୍ପନା କରି (ଉତ୍ପ୍ରେକ୍ଷ୍ୟ) ମୁଖ୍ୟ ରସର ସମୁଚିତ କଥାବସ୍ତୁ ଚିତ୍ରଣା କରିବା, ପ୍ରବନ୍ଧର ରସବ୍ୟଞ୍ଜକତାରେ ଦ୍ୱିତୀୟ ଉପାଦାନ ।

୧୨୨ । ତୃତୀୟ ଉପାଦାନ ଯଥା—କେବଳ ଭରତାଦିଙ୍କ ଶାସ୍ତ୍ରର ନିୟମ ରକ୍ଷା କରିବା ଉଦ୍ଦେଶ୍ୟ ନ ରଖି ରସର ଅଭିବ୍ୟକ୍ତି ଉଦ୍ଦେଶ୍ୟରେ ପଞ୍ଚବିଧ ସନ୍ଧି ଓ ଚତୁଃଷଷ୍ଟି ସନ୍ଧ୍ୟଙ୍ଗଗୁଡ଼ିକୁ ଯଥୋଚିତଭାବେ ନିବେଶ କରିବା ପ୍ରବନ୍ଧର ରସବ୍ୟଞ୍ଜକତାରେ ତୃତୀୟ ଉପାଦାନ ।

୧୨୩ । ଚତୁର୍ଥ ଉପାଦାନ ଯଥା—ଅବସର ଅନୁସାରେ ମଧ୍ୟେ ମଧ୍ୟେ ରସର ଉଦ୍ଦୀପନ ଓ ପ୍ରଶମନ ଏବଂ ପ୍ରବନ୍ଧର ଆରମ୍ଭଠାରୁ ସମାପ୍ତି ପର୍ଯ୍ୟନ୍ତ (ଆରବ୍ଧ ବିଶ୍ରାନ୍ତେଃ) ଅଙ୍ଗୀରସର ଅନୁସନ୍ଧାନ କରିଯିବା, ପ୍ରବନ୍ଧର ରସବ୍ୟଞ୍ଜକତା ପ୍ରତି ଚତୁର୍ଥ ଉପାଦନ ।

୧୨୪ । କବିର ନାନାବିଧ ଅଳଙ୍କାର ଯୋଗ କରିବା ଶକ୍ତି ଥିଲେ ମଧ୍ୟ ରସର ପୁଷ୍ଟିସାଧନ କରିବା ଭଳି (ଆନୁରୂପ୍ୟେଣ) ଅଳଙ୍କାରମାନଙ୍କୁ ଯୋଗ କରିବା ପ୍ରବନ୍ଧର ରସାଦି ବ୍ୟଞ୍ଜକତାରେ ପଞ୍ଚମ ଉପାଦାନ ।

୧୨୫ । ପ୍ରବନ୍ଧୋଽପି ରସାଦୀନାଂ ବ୍ୟଞ୍ଜକ ଇତ୍ୟୁକ୍ତମ୍, ତସ୍ୟ ବ୍ୟଞ୍ଜକତ୍ୱେ ନିବନ୍ଧନଂ ପ୍ରଥମଂ ତାବତ୍ ବିଭାବ-ଭାବାନୁଭାବସଞ୍ଚାର୍ଯ୍ୟୌଚିତ୍ୟଚାରୁଣଃ କଥା ଶରୀରସ୍ୟ ବିଧିଃ :—ଯଥାଯଥଂ ପ୍ରତିପିପାଦୟିଷିତ ରସଭାବାଦ୍ୟ-ପେକ୍ଷୟା ଯ ଉଚିତୋ ବିଭାବୋ ଭାବୋଽନୁଭାବଃ ସଞ୍ଚାରୀ ବା, ତଦୌଚିତ୍ୟଚାରୁଣଃ କଥା ଶରୀରସ୍ୟ ବିଧିର୍ବ୍ୟଞ୍ଜକତ୍ୱେ ନିବନ୍ଧନମେକମ୍ ।

୧୨୬ । ତତ୍ର ବିଭାବୌଚିତ୍ୟଂ ତାବତ୍ ପ୍ରସିଦ୍ଧମ୍ ।

୧୨୭ । ଭାବୌଚିତ୍ୟଂ ତୁ ପ୍ରକୃତ୍ୟୌଚିତ୍ୟାତ୍ । ପ୍ରକୃତି-ହ୍ୟୁତ୍ତମମଧ୍ୟମାଧମଭାବେନ, ଦିବ୍ୟମାନୁଷାଦି-ଭାବେନ ଚ ବିଭେଦିନୀ । ତାଂ ଯଥାଯଥମନୁସୃତ୍ୟ

---

୧୨୫ । ବୃତ୍ତିର ଅର୍ଥ ;—ପ୍ରବନ୍ଧ ମଧ୍ୟ ରସାଦିର ବ୍ୟଞ୍ଜକ ହୁଏ ବୋଲି କୁହାଯାଇଛି । ପ୍ରବନ୍ଧର ବ୍ୟଞ୍ଜକତାରେ ପ୍ରଥମ ହେତୁ ଯଥା

ଆଲମ୍ବନ ଓ ଉଦ୍ଦୀପନ ବିଭାବ, ଧୈର୍ଯ୍ୟାଦିବିଷୟ ରତିଭାବ, କଟାକ୍ଷ-ପାତାଦି ଅନୁଭାବ, ଓ ନିର୍ବେଦଗ୍ଲାନିପ୍ରଭୃତି ବ୍ୟଭିଚାରିଭାବମାନଙ୍କର ଉଚିତ ସମାବେଶ ହେତୁ ମନୋହର କଥା ବସ୍ତୁର ସଂଯୋଜକ ରସବ୍ୟଞ୍ଜକତାରେ ପ୍ରଥମ କାରଣ ।

୧୨୬ । ଏହିମଧ୍ୟରେ ବିଭାବର ଔଚିତ୍ୟ ସୁପ୍ରସିଦ୍ଧ । ଯଥା—ଶୃଙ୍ଗାର ରସର ବିଭାବ ନାୟକ ଓ ନାୟିକା ଆଲମ୍ବନ ବିଭାବ ଚନ୍ଦ୍ର ଚନ୍ଦନ ବେଲମ୍ବ ଉପବନାଦି ଉଦ୍ଦୀପନ ବିଭାବ, ଏହିପରି ଅନ୍ୟରସମାନଙ୍କର ମଧ୍ୟ ବିଭାବ ଅଛି । ସେମାନଙ୍କର ଔଚିତ୍ୟକୁ ବିଭାବୌଚିତ୍ୟ ବୋଲଯାଏ । ତାହା ଭରତାଦି ଶାସ୍ତ୍ରରେ ଓ ଲୋକରେ ପ୍ରସିଦ୍ଧ ।

୧୨୭ । ଭାବୌଚିତ୍ୟ ପ୍ରକୃତିର ଔଚିତ୍ୟକୁ ଅନୁସରଣ କରେ । ପ୍ରକୃତି ଉତ୍ତମ, ମଧ୍ୟମ, ଅଧମ ଭେଦରେ ତିନି ପ୍ରକାର ଏବଂ ସେମାନେ ମଧ୍ୟ ଦିବ୍ୟ,

ଅସଂକୀର୍ଣ୍ଣଃ ସ୍ଥାୟୀଭାବ ଉପନିବଧ୍ୟମାନ ଔଚିତ୍ୟବାନ ଭବତି ।

୧୬୮ । ଅନ୍ୟଥା ତୁ କେବଳମାନୁଷାଶ୍ରୟେଣ ଦିବ୍ୟସ୍ୟ, କେବଳଦିବ୍ୟାଶ୍ରୟେଣ ବା ମାନୁଷସ୍ୟୋତ୍ସାହାଦୟ ଉପନିବଧ୍ୟମାନା ଅନୁଚିତା ଭବନ୍ତି । ତଥାଚ କେବଳ-ମାନୁଷସ୍ୟ ରାଜାଦେଃ ବର୍ଣ୍ଣନେ ସପ୍ତାର୍ଣ୍ଣବଲଂଘନାଦି-ଲକ୍ଷଣା ବ୍ୟାପାରା ଉପନିବଧ୍ୟମାନାଃ ସୌଷ୍ଠବ-ଭୃତୋଽପି ନୀରସା ଏବ ନିୟମେନ ଭାନ୍ତି । ତତ୍ର ତ୍ୱନୌଚିତ୍ୟମେବ ହେତୁଃ ।

୧୬୯ । ନନୁ ନାଗଲୋକ ଗମନାଦୟଃ ସାତବାହନପ୍ରଭୃତୀନାଂ ଶ୍ରୂୟନ୍ତେ, ତଦଲୋକସାମାନ୍ୟ ପ୍ରଭାବାଦତିଶୟବର୍ଣ୍ଣନେ କିମନୌଚିତ୍ୟଂ ସର୍ବୋର୍ବୀଭରଣକ୍ଷମାଣାଂ କ୍ଷମା-ଭୁଜାମିତି ।

---

ମାନୁଷ, ଓ ଦିବ୍ୟ ମାନୁଷ ଭେଦରେ ବିଭିନ୍ନ, ସେହି ପ୍ରକୃତିକୁ ଯଥାଯଥ ଭାବେ ଅନୁସରଣ କରି ଅନ୍ୟ ପ୍ରତିକୂଳ ଭାବ ସହିତ ଅମିଶ୍ରିତ ଶୁଦ୍ଧ ସ୍ଥାୟୀ ଭାବକୁ ନିବେଶ କରାଗଲେ ଔଚିତ୍ୟ ରକ୍ଷା ହୋଇଛି ବୋଲି ବୋଲାଯାଏ ।

୧୬୮ । ଦିବ୍ୟାଦି ପ୍ରକୃତିକୁ ଯଥାଯଥ ଭାବେ ଅନୁସରଣ ନ କଲେ, ଯଥା—କେବଳ ମାନୁଷ ପ୍ରକୃତି ନାୟିକାଦିକୁ ଆଶ୍ରୟ କରି ଦିବ୍ୟୋଚିତ ଉତ୍ସାହାଦି ବର୍ଣ୍ଣନ କଲେ, କିମ୍ବା କେବଳ ଦିବ୍ୟ ପ୍ରକୃତି ବଶିଷ୍ଠର ମନୁଷ୍ୟୋଚିତ ଉତ୍ସାହାଦି ବର୍ଣ୍ଣିତ ହେଲେ ତାହା ଅନୁଚିତ ହୁଏ । ଯଥା—କେବଳମନୁଷ୍ୟ ରାଜାର ବର୍ଣ୍ଣନାରେ ସପ୍ତସମୁଦ୍ର ଲଙ୍ଘନ ପ୍ରଭୃତି ବ୍ୟାପାର ପ୍ରୀତିକର ହେଲେ ମଧ୍ୟ ନିୟମତଃ ନୀରସ ବୋଧହୁଏ । କାରଣ, ସେଠାରେ ଔଚିତ୍ୟ ନାହିଁ ।

୧୬୯ । ପ୍ରଶ୍ନ—ସାତବାହନପ୍ରଭୃତିଙ୍କର ପାତାଳଲୋକ ଗମନ ପ୍ରଭୃତି ଶୁଣାଅଛି, ଅଶେଷ ଭୂମଣ୍ଡଳାଧିପତିମାନଙ୍କର ସେହି ଅଲୌକିକ ପ୍ରଭାବ ବର୍ଣ୍ଣନାରେ ଅନୌଚିତ୍ୟ ବା କଅଣ ?

୧୩୦ । ନୈତଦସ୍ତି, ନ ବୟଂ ବ୍ରୂମୋ ଯତ୍ପ୍ରଭାବାତଶୟ-ବର୍ଣ୍ଣନମନୁଚିତଂ ରାଜ୍ଞାମ୍, କିନ୍ତୁ କେବଲ ମାନୁଷା-ଶ୍ରୟେଣ ଯା ଉତ୍ପାଦ୍ୟବସ୍ତୁକଥା କ୍ରିୟତେ, ତସ୍ୟାଂ ଦିବ୍ୟମୌଚିତ୍ୟଂ ନ ଯୋଜନୀୟମ୍ । ଦିବ୍ୟମାନୁ-ଷାୟାଂ ତୁ କଥାୟାମୁଭୟମୌଚିତ୍ୟଯୋଜନମବିରୁଦ୍ଧ ମେବ । ଯଥା—ପାଣ୍ଡବାଦି-କଥା ।

୧୩୧ । ସାତବାହନାଦିଷୁ ତୁ ଯେଷୁ ଯାବଦପଦାନଂ ଶ୍ରୂୟତେ, ତେଷୁ ତାବନ୍ମାତ୍ରମନୁଗମ୍ୟମାନମନୁଗୁଣତ୍ୱେନ ପ୍ରତି-ଭାସତେ । ବ୍ୟତିରିକ୍ତଂ ତୁ ତେଷାମେବୋପନିବଧ୍ୟ-ମାନମନୁଚିତମ୍ ।

୧୩୨ । ତଦୟମତ୍ର ପରମାର୍ଥଃ—

"ଅନୌଚିତ୍ୟାଦୃତେ ନାନ୍ୟତ୍ ରସଭଙ୍ଗସ୍ୟ କାରଣମ୍ ।
ପ୍ରସିଦ୍ଧୌଚିତ୍ୟବନ୍ଧସ୍ତୁ ରସସ୍ୟୋପନିଷତ୍ ପରା ।"

---

୧୩୦ । ଉତ୍ତର—ଏହା ନୁହେ; ରାଜାମାନଙ୍କର ପ୍ରଭାବାତିଶୟ ବର୍ଣ୍ଣନ ଅନୁଚିତ ବୋଲି ଆମ୍ଭେମାନେ କହୁ ନାହୁଁ, କିନ୍ତୁ କେବଳ ମାନୁଷ ପ୍ରକୃତିବିଶିଷ୍ଟ ବ୍ୟକ୍ତିକୁ ଆଶ୍ରୟ କରି ଯେଉଁ କଥାବସ୍ତୁ ସଙ୍ଗଠିତ ହୋଇଥାଏ, ତହିଁରେ ଦିବ୍ୟ ଔଚିତ୍ୟ ଯୋଗ କରିବା ଉଚିତ ନୁହେ । ଦିବ୍ୟ ଓ ମାନୁଷ ଉଭୟ ପ୍ରକୃତିବିଶିଷ୍ଟ ବ୍ୟକ୍ତିର ଆଶ୍ରିତ କଥାବସ୍ତୁରେ ଦିବ୍ୟ ଔଚିତ୍ୟ ଓ ମାନୁଷ ଔଚିତ୍ୟ ଯୋଗ କରିବା ବିରୁଦ୍ଧ ନୁହେ । ଯଥା—ପାଣ୍ଡବାଦି କଥା (ତହିଁରେ ଅର୍ଜ୍ଜୁନାଦିଙ୍କର ଦିବ୍ୟ ଓ ମାନୁଷ ଚେଷ୍ଟା ଉପଯୁକ୍ତ) ।

୧୩୧ । ସାତବାହନପ୍ରଭୃତିଙ୍କର ଯାହାକିଛି ପାତାଳଗମନାଦି ବିଶିଷ୍ଟ କାର୍ଯ୍ୟ (ଅପଦାନ) ଶୁଣା ଅଛି, ସେମାନଙ୍କ ସମ୍ବନ୍ଧରେ ସେତିକିମାତ୍ର ବର୍ଣ୍ଣିତ ହେଲେ ରସର ଅନୁଗୁଣ ହୋଇ ଶୋଭାପାଏ । ସେମାନଙ୍କର ମଧ୍ୟ ଉକ୍ତ ପ୍ରକୃତ କାର୍ଯ୍ୟରୁ ଅତିରିକ୍ତ କାର୍ଯ୍ୟ ବର୍ଣ୍ଣନା ଅନୁଚିତ ।

୧୩୨ । ଏଥିରେ ଏହା ସାର ଯେ—"ଅନୌଚିତ୍ୟ ଭିନ୍ନ ଅନ୍ୟ

୧୩୩ । ଅତ ଏବ ଚ ଭଣ୍ୟତେ—ପ୍ରବନ୍ଧପ୍ରଖ୍ୟାତବସ୍ତୁବିଷୟପ୍ରତ୍ୱଂ ପ୍ରଖ୍ୟାତୋଦାତ୍ତନାୟକତ୍ୱଂ ଚ ନାଟକସ୍ୟାବଶ୍ୟ-କର୍ତ୍ତବ୍ୟତୟା ଉପନ୍ୟସ୍ତମ୍ ।

୧୩୪ । ତେନ ହି ନାୟକୌଚିତ୍ୟାନୌଚିତ୍ୟବିଷୟେ କର୍ତ୍ତବ୍ୟେ କବିର୍ନ ବ୍ୟାମୁହ୍ୟତି ।

୧୩୫ । ଯସ୍ତୂତ୍ପାଦ୍ୟବସ୍ତୁ ନାଟକାଦିକୁର୍ଯ୍ୟାତ୍, ତସ୍ୟାପ୍ରସିଦ୍ଧାନୁ-ଚିତନାୟକସ୍ୱଭାବବର୍ଣ୍ଣନେ ମହାନ୍ ପ୍ରମାଦଃ ।

୧୩୬ । ନନୁ ଯଦି ଉତ୍ସାହାଦିଭାବବର୍ଣ୍ଣନେ କଥଂଚିତ୍ ଦିବ୍ୟ-ମାନୁଷ୍ୟାଦ୍ୟୌଚିତ୍ୟପରୀକ୍ଷା କ୍ରିୟତେ, ଇତ୍ୟାଦୌ ତୁ କିଂ ତୟା ପ୍ରୟୋଜନମ୍ ? ରତିହି ଭାରତବର୍ଷୋ-

---

କିଛି ରସଭଙ୍ଗର କାରଣ ନାହିଁ । ସୁପ୍ରସିଦ୍ଧ ଔଚିତ୍ୟର ସମାବେଶ ରସର ଉତ୍କୃଷ୍ଟ ପ୍ରକାଶୋପାୟ (ଉପନିଷଦ୍) ।"

୧୩୩ । ଏଣୁ ଭରତ ତାଙ୍କ ନାଟ୍ୟ ସୂତ୍ରରେ ନାଟକମାନଙ୍କରେ ବିଖ୍ୟାତ ବିଷୟବସ୍ତୁ ସ୍ଥାପନ କରିବା ଓ ବିଖ୍ୟାତ ଧୀରୋଦାତ୍ତ ନାୟକ ନିବଦ୍ଧ ହେବା ଅତ୍ୟନ୍ତ ପ୍ରୟୋଜନ ବୋଲି ଲେଖିଅଛନ୍ତି ।

୧୩୪ । ବିଖ୍ୟାତ ନାୟକ ଓ ବିଖ୍ୟାତ ବିଷୟବସ୍ତୁ ଗୃହୀତ ହୋଇ-ଥିଲେ କବି ନାୟକର ଔଚିତ୍ୟ ଓ ଅନୌଚିତ୍ୟ ବର୍ଣ୍ଣନାରେ ସନ୍ଦିଗ୍ଧ ହେବେ ନାହିଁ ।

୧୩୫ । ଯେଉଁ କବି ବିଷୟବସ୍ତୁ କଳ୍ପନା କରି ନାଟକାଦି ସୃଷ୍ଟି କରେ, ସେ କବି ନାୟକ ସ୍ୱଭାବର ଅନୁଚିତ ବା ଅପ୍ରସିଦ୍ଧ କାର୍ଯ୍ୟ ବର୍ଣ୍ଣନା କରି ପକାଏ । ଏଣୁ ତାହାଠାରେ ପ୍ରମାଦ ସମ୍ଭାବନା ରହୁଛି ।

୧୩୬ । ପ୍ରଶ୍ନ :—ଯଦି ଉତ୍ସାହ ପ୍ରଭୃତି ସ୍ଥାୟୀଭାବ ବର୍ଣ୍ଣନାରେ କୌଣସି ପ୍ରକାର ଦିବ୍ୟ ମାନୁଷ ପ୍ରଭୃତି ଔଚିତ୍ୟ ପରୀକ୍ଷା କରାଯାଇ ପାରେ, ତେବେ ତାହା କରାଯାଉ, କିନ୍ତୁ ରତି ପ୍ରଭୃତିରେ ଔଚିତ୍ୟ ଭେଦରେ କଅଣ ବା ପ୍ରୟୋଜନ ଅଛି ? କାରଣ, ଦିବ୍ୟମାନଙ୍କର ମଧ୍ୟ ଭାରତବର୍ଷୋଚିତ

ଚିତେନୈବ ବ୍ୟବହାରେଣ ଦେବ୍ୟାନାମପି ବର୍ଣ୍ଣନୀ-
ୟେତି ସ୍ଥିତିଃ ।

୧୩୭ । ନୈବ୍, ତତ୍ରୌଚିତ୍ୟାତିକ୍ରମେ ସୁତରାଂ ଦୋଷଃ ।
ତଥାହି—ଅଧମ ପ୍ରକୃତ୍ୟୌଚିତ୍ୟେନୋତ୍ତମପ୍ରକୃତେଃ
ଶୃଙ୍ଗାରୋପନିବନ୍ଧନେ କା ଭବେନ୍ନୋପହାସ୍ୟତା ?
ତ୍ରିବିଧଂ ପ୍ରକୃତ୍ୟୌଚିତ୍ୟଂ ଭାରତେବର୍ଷେଽପ୍ୟସ୍ତି
ଶୃଙ୍ଗାରବିଷୟମ୍ ।

୧୩୮ । ଯତ୍ତ୍ୱନ୍ୟତ୍ ଦିବ୍ୟମୌଚିତ୍ୟଂ, ତତ୍ତ୍ରାନୁପକାରକ-
ମେବେତି ଚେତ୍ ।

୧୩୯ । ନ ବୟଂ ଦିବ୍ୟମୌଚିତ୍ୟଂ ଶୃଙ୍ଗାରବିଷୟମନ୍ୟତ୍
କିଂଚିଦ୍ ବ୍ରୂମଃ ।

---

ବ୍ୟବହାର ଅନୁସାରେ ରତି (ଶୃଙ୍ଗାର ସ୍ଥାୟୀଭାବ) ବର୍ଣ୍ଣନା କରିବାକୁ ହେବ
ବୋଲି ନିର୍ଦ୍ଦେଶ (ସ୍ଥିତି) ଅଛି । ସୁତରାଂ ଶୃଙ୍ଗାର ରସରେ ଦିବ୍ୟ ମାନୁଷ
ଔଚିତ୍ୟ ହେବ ନାହିଁ ।

୧୩୭ । ଉତ୍ତର .—ଏହା ନୁହେ । ରତିରେ ମଧ୍ୟ ଔଚିତ୍ୟାତିକ୍ରମ
ଦୋଷ ଅଛି । ଉତ୍ତମ ପ୍ରକୃତିକ ବ୍ୟକ୍ତିର ଶୃଙ୍ଗାରକୁ ଅଧମ ପ୍ରକୃତ୍ୟୁଚିତଭାବେ
ବର୍ଣ୍ଣନା କଲେ ଉପହାସ ପାତ୍ର ହେବାକୁ ପଡ଼ିବ ନାହିଁ କି ? ଏହା
ଭାରତବର୍ଷରେ ମଧ୍ୟ ନାନାପ୍ରକାର ଲୋକ ଅଛନ୍ତି, ଏଣୁ ଏଠାରେ ମଧ୍ୟ
ନାନାପ୍ରକୃତିର ଔଚିତ୍ୟ ଭେଦରେ ରତି ବିଭିନ୍ନ ହୋଇ ପାରେ ।

୧୩୮ । ପ୍ର :—ଯଦି ଶୃଙ୍ଗାର ବିଷୟରେ ଦିବ୍ୟମାନଙ୍କର ଅନ୍ୟ
ପ୍ରକାର କିଛି ଔଚିତ୍ୟ ଅଛି, ତେବେ ସିନା ତାହା ମନୁଷ୍ୟ ବିଷୟରେ
ଅନୁପକାରକ ହେବ ?

୧୩୯ । ଉ :—ଶୃଙ୍ଗାର ବିଷୟରେ ଅନ୍ୟ ଏକପ୍ରକାର ଦିବ୍ୟ ଔଚିତ୍ୟ
ଅଛି ବୋଲି ଆମ୍ଭେ କହୁ ନାହୁଁ ।

୧୪୦ । କିଂ ତର୍ହି ?

୧୪୧ । ଭାରତବର୍ଷେ ଯଥୋତ୍ତମନାୟକେଷୁ ରାଜାଦଷୁ ଶୃଙ୍ଗାରୋପନିବନ୍ଧଃ, ତଥା ଦିବ୍ୟାଶ୍ରୟୋଽପି ଶୋଭତେ। ନ ଚ ରାଜାଦଷୁ ପ୍ରସିଦ୍ଧ ଗ୍ରାମ୍ୟ ଶୃଙ୍ଗାରୋପନିବନ୍ଧନଂ ପ୍ରସିଦ୍ଧଂ ନାଟକାଦୌ । ତଥୈବ ଦେବେଷୁ ତତ୍ ପରିହର୍ତ୍ତବ୍ୟମ୍ ।

୧୪୨ । ନାଟକାଦେରଭିନେୟତ୍ୱାଦଭିନେୟଶ୍ଚ ଚ ସମ୍ଭୋଗ-ଶୃଙ୍ଗାରବିଷୟତ୍ୱାତ୍ ତତ୍ର ପରିହାର ଇତି ଚେତ୍ ।

୧୪୩ । ନ, ଯଦ୍ୟଭିନେୟାର୍ଥେ ବିଷୟସ୍ୟାସହ୍ୟତା, ତତ୍ କାବ୍ୟସ୍ୟୈବଂ ବିଷୟସ୍ୟ ସା କେନ ବାର୍ଯ୍ୟତେ ।

---

୧୪୦ । ପ୍ର :—ତେବେ କ'ଣ କହୁଛ ?

୧୪୧ । ଉ : ଭାରତବର୍ଷ ଦେଶରେ ରାଜାପ୍ରଭୃତି ଉତ୍ତମ ନାୟକ-ମାନଙ୍କ ସମ୍ବନ୍ଧରେ ଯେଉଁପରି ଶୃଙ୍ଗାର ବର୍ଣ୍ଣିତ ହୁଏ, ଦିବ୍ୟ ନାୟକମାନଙ୍କର ମଧ୍ୟ ସେହିପରି ଶୃଙ୍ଗାର ବର୍ଣ୍ଣିତ ହେଲେ ଶୋଭାପାଏ । ରାଜାପ୍ରଭୃତି ଉତ୍ତମ ନାୟକ ବିଷୟରେ ସୁପ୍ରସିଦ୍ଧ ଗ୍ରାମ୍ୟରୀତିର ଶୃଙ୍ଗାର ଚେଷ୍ଟା ନିବେଶ କରାଯିବା ନାଟକମାନଙ୍କରେ ଅପ୍ରସିଦ୍ଧ । ସେହିପରି ଦେବତାମାନଙ୍କର ମଧ୍ୟ ଅଧମ ରୀତିର ଶୃଙ୍ଗାର ଅପ୍ରସିଦ୍ଧ, ତେଣୁ ଅନୌଚିତ୍ୟ, ସୁତରାଂ ତାହା ପରିହର୍ତ୍ତବ୍ୟ ।

୧୪୨ । ପ୍ର :—ନାଟକାଦି ଦୃଶ୍ୟକାବ୍ୟ ଅଭିନୟ ଦ୍ୱାରା ପ୍ରଦର୍ଶିତ ହୁଏ, କିନ୍ତୁ ସମ୍ଭୋଗ ଶୃଙ୍ଗାର ଅଭିନୟ ଦ୍ୱାରା ପ୍ରଦର୍ଶିତ ହୁଏ ନାହିଁ, (ଏଣୁ ଔଚିତ୍ୟ ଭେଦରେ ରତିର ଭେଦ କଳ୍ପନା ଅସମ୍ଭବ) ସୁତରାଂ ରତିର ଦିବ୍ୟ ମାନୁଷଭେଦ କଳ୍ପନା ଅନାବଶ୍ୟକ ।

୧୪୩ । ଉ :—ଯଦି ଅଭିନେୟ ନାଟକାଦିରେ ସମ୍ଭୋଗ ଶୃଙ୍ଗାର ବର୍ଣ୍ଣନା ଅସହ୍ୟ ହୁଏ । ତେବେ (ଶ୍ରବ୍ୟ) କାବ୍ୟରେ ଏହି ସମ୍ଭୋଗ ଶୃଙ୍ଗାର ବର୍ଣ୍ଣନାକୁ କେହି ହେଲେ ବାରଣ କରନ୍ତି ନାହିଁ ।

୧୪୪ । ତସ୍ମାତ୍ ଅଭିନେୟାର୍ଥେ ଚ କାବ୍ୟେ ଯଦୁତ୍ତମପ୍ରକୃତେ ର୍ରାଜାଦେରୁତ୍ତମପ୍ରକୃତିଭିର୍ନାୟିକାଭିଃ ସହ ଗ୍ରାମ୍ୟ-ସମ୍ଭୋଗବର୍ଣ୍ଣନଂ, ତତ୍ ପିତ୍ରୋଃ ସମ୍ଭୋଗବର୍ଣ୍ଣନ ମିବ ସୁତରାମସହ୍ୟମ୍ । ତଥୈବୋତ୍ତମଦେବତାବିଷୟମ୍ ।

୧୪୫ । ନ ଚ ସମ୍ଭୋଗଶୃଙ୍ଗାରସ୍ୟ ସୁରତଲକ୍ଷଣ ଏବୈକଃ ପ୍ରକାରଃ । ଯାବଦନ୍ୟେଽପି ପ୍ରଭେଦାଃ ପରସ୍ପରପ୍ରେମ-ଦର୍ଶନାଦୟଃ ସମ୍ଭବନ୍ତି । ତେ କସ୍ମାଦୁତ୍ତମପ୍ରକୃତି-ବିଷୟେ ନ ବର୍ଣ୍ଣ୍ୟନ୍ତେ ?

୧୪୬ । ତସ୍ମାତ୍ ଉତ୍ସାହବତ୍ ରତାବପି ପ୍ରକୃତ୍ୟୌଚିତ୍ୟମନୁ-ସର୍ତ୍ତବ୍ୟମ୍ । ତଥୈବ ବିସ୍ମୟାଦିଷୁ ।

୧୪୭ । ଯତ୍ତ୍ୱେବଂବିଧେ ବିଷୟେ ମହାକବୀନାମପ୍ୟସମୀକ୍ଷ୍ୟ-କାରିତା ଲକ୍ଷ୍ୟେ ଦୃଶ୍ୟତେ, ସ ଦୋଷ ଏବ ।

---

୧୪୪ । ଅତଏବ ଦୃଶ୍ୟ ଓ ଶ୍ରବ୍ୟ ଉଭୟବିଧ କାବ୍ୟରେ ରାଜା ପ୍ରଭୃତି ଉତ୍ତମ ପ୍ରକୃତି ନାୟକର ଉତ୍ତମ ପ୍ରକୃତି ନାୟିକା ସହିତ ଗ୍ରାମ୍ୟ ସମ୍ଭୋଗ ବର୍ଣ୍ଣନା, ପିତା ମାତାଙ୍କର ସମ୍ଭୋଗ ବର୍ଣ୍ଣନା ଭଳି ଅସହ୍ୟ । ସେହିପରି ଉତ୍ତମ ଦେବତାମାନଙ୍କର ଶୃଙ୍ଗାର ବର୍ଣ୍ଣନା ମଧ୍ୟ ଅନୁଚିତ ।

୧୪୫ । ସମ୍ଭୋଗ ଶୃଙ୍ଗାର ଏକମାତ୍ର ସୁରତ କ୍ରୀଡ଼ାରେ ସୀମାବଦ୍ଧ ନୁହେ । ପରସ୍ପର ସପ୍ରେମ ଦର୍ଶନ ଆଳାପ ପ୍ରଭୃତି ତାହାର ଅନେକ ପ୍ରକାର ପ୍ରଭେଦ ଅଛି । ତେବେ, ଉତ୍ତମ ପ୍ରକୃତି ବ୍ୟକ୍ତି ବିଷୟରେ ଏହିସବୁ ସପ୍ରେମ ଦର୍ଶନାଦି କାହିଁକି ବା ବର୍ଣ୍ଣିତ ନ ହେବ ?

୧୪୬ । ଏଣୁ ଉତ୍ସାହପରି ରତିରେ ମଧ୍ୟ ପ୍ରକୃତି ଅନୁସାରେ ଔଚିତ୍ୟ ଅନୁସରଣ କରିବାକୁ ହେବ । ବିସ୍ମୟାଦିରେ ମଧ୍ୟ ସେହିଭଳି ଔଚିତ୍ୟ ଭେଦ ଅଛି ।

୧୪୭ । ଯାହାକି ମହାକବିମାନଙ୍କର ମଧ୍ୟ ଏହିଭଳି ଅସମୀକ୍ଷ୍ୟକାରିତା ଦେଖାଯାଏ, ତାହା ମଧ୍ୟ ସେମାନଙ୍କର ଦୋଷ । (ଯଥା—କୁମାରସମ୍ଭବରେ କାଳିଦାସଙ୍କର ଉତ୍ତମ ଦେବତା ବିଷୟକ ଶୃଙ୍ଗାର ବର୍ଣ୍ଣନା ଦୋଷାବହ) ।

୧୪୮ । ସ ତୁ ଶକ୍ତିତିରସ୍କୃତତ୍ୱାତ୍ ତେଷାଂ ନ ଲକ୍ଷ୍ୟତେ, ଇତ୍ୟୁକ୍ତମେବ ।

୧୪୯ । ଅନୁଭାବୌଚିତ୍ୟଂ ତୁ ଭରତାଦୌ ପ୍ରସିଦ୍ଧମେବ ॥

୧୫୦ । ଇୟତ୍ତୂଚ୍ୟତେ—ଭରତାଦିସ୍ଥିତିଂ ଗ୍ରନ୍ଥାନୁବର୍ତ୍ତମାନେନ ମହାକବି ପ୍ରବନ୍ଧାଂଶ୍ଚ ପର୍ଯ୍ୟାଲୋଚୟତା ସ୍ୱପ୍ରତିଭାଂ ଗ୍ରନ୍ଥାନୁସରତା କବିନା ଅବହିତଚେତସା ଭୂତ୍ୱା ବିଭାବା-ଦ୍ୟୌଚିତ୍ୟଭ୍ରଂଶପରିତ୍ୟାଗେ ପରଃ ପ୍ରୟତ୍ନୋ ବିଧେୟଃ ।

୧୫୧ । ଔଚିତ୍ୟବତଃ କଥାଶରୀରସ୍ୟ ବୃତ୍ତସ୍ୟୋତ୍ପ୍ରେକ୍ଷିତସ୍ୟ ବା ଗ୍ରହୋ ବ୍ୟଞ୍ଜକ ଇତ୍ୟନେନୈତତ୍ ପ୍ରତିପାଦୟତି, ଯଦିତିହାସାଦିଷୁ ରସବତୀଷୁ କଥାସୁ ବିବିଧାସୁ ସତୀ-ଷ୍ୱପି, ଯତ୍ତତ୍ର ବିଭାବାଦ୍ୟୌଚିତ୍ୟବତ୍ କଥାଶରୀରଂ, ତଦେବ ଗ୍ରାହ୍ୟଂ, ନେତରତ୍ ।

---

୧୪୮ । କିନ୍ତୁ ସେମାନଙ୍କର ଏହି ଦୋଷ କବି ଶକ୍ତିରେ ଆଚ୍ଛାଦିତ ହୋଇଥିବା ହେତୁ ଲକ୍ଷ୍ୟକରି ହୁଏ ନାହିଁ, ଏହା ପୂର୍ବରୁ କୁହାଯାଇଅଛି ।

୧୪୯ । ଅନୁଭାବରେ ଔଚିତ୍ୟ ଭରତାଦିଙ୍କର ଶାସ୍ତ୍ରରେ ବର୍ଣ୍ଣିତ ହୋଇଅଛି ।

୧୫୦ । ସଂକ୍ଷେପରେ ଏତିକି କୁହାଯାଉଅଛି ଯେ କବି ଭରତାଦିଙ୍କ ଶାସ୍ତ୍ର ମର୍ଯ୍ୟାଦାକୁ ଅନୁସରଣ କରି ଓ ମହାକବିମାନଙ୍କର ଗ୍ରନ୍ଥ ପର୍ଯ୍ୟାଲୋଚନା କରି ସାବଧାନ ହୋଇ ସ୍ୱ ପ୍ରତିଭା ବଳରେ ବିଭାବ ପ୍ରଭୃତିଙ୍କର ଔଚିତ୍ୟ ରକ୍ଷା ଲାଗି ସର୍ବଦା ଚେଷ୍ଟାପର ହେବ ।

୧୫୧ । ଔଚିତ୍ୟଯୁକ୍ତ ଐତିହାସିକ ବା କଳ୍ପନାପ୍ରସୂତ ବିଷୟବସ୍ତୁ ବ୍ୟଞ୍ଜକ ହୁଏ । ଏହା ଦ୍ୱାରା ଏହା ପ୍ରତିପାଦିତ ହେଉଅଛି ଯେ—ଇତି-ହାସାଦିରେ ଅନେକ ରସବନ୍ତ କଥା ଥିଲେ ମଧ୍ୟ, ତନ୍ମଧ୍ୟରେ ଯେଉଁ କଥାଟି

୧୫୨ । ବୃତ୍ତାବପି କଥାଶରୀରାଦୁତ୍ପ୍ରେକ୍ଷିତେ ବିଶେଷତଃ
ପ୍ରଯତ୍ନବତା ଭବିତବ୍ୟମ୍ । ତତ୍ରହ୍ୟନବଧାନାତ୍
ସ୍ଖଲତଃ କବେରବ୍ୟୁତ୍ପତ୍ତି ସମ୍ଭାବନା ମହତୀ ଭବତି ।

୧୫୩ । ପରିକରଶ୍ଳୋକଶ୍ଚାତ୍ର—
କଥା ଶରୀରମୁତ୍ପାଦ୍ୟ ବସ୍ତୁ କାର୍ଯ୍ୟଂ ତଥା ତଥା ।
ଯଥା ରସମୟଂ ସର୍ବମେବୈତତ୍ ପ୍ରତିଭାସତେ ॥

୧୫୪ । ତତ୍ର ଚାଭ୍ୟୁପାୟଃ ସମ୍ୟଗ୍‌ବିଭାବାଦ୍ୟୌଚିତ୍ୟାନୁସରଣମ୍
ତଚ୍ଚ ଦର୍ଶିତମେବ ।

୧୫୫ । କିଂଚ—
ସନ୍ତି ସିଦ୍ଧରସପ୍ରଖ୍ୟା ଯେ ଚ ରାମାୟଣାଦୟଃ ।
କଥାଶ୍ରୟା ନ ତୈର୍ଯୋଜ୍ୟା ସ୍ୱେଚ୍ଛା ରସବିରୋଧିନୀ ॥

---

ଔଚିତ୍ୟଯୁକ୍ତ ତାହାକୁ ହିଁ କାବ୍ୟ ପାଇଁ କବି ଗ୍ରହଣ କରିବ, କିନ୍ତୁ ଔଚିତ୍ୟହୀନ କଥାକୁ ଗ୍ରହଣ କରିବ ନାହିଁ ।

୧୫୨ । ଐତିହାସିକ କଥାରେ ଚିତ୍ରଣ ଅପେକ୍ଷା କଳ୍ପିତ କଥାର ଚିତ୍ରଣରେ କବି ବିଶେଷଭାବେ ଯତ୍ନ କରିବା ବିଧେୟ । କାରଣ, କାଳ୍ପନିକ ବିଷୟରେ କବି ଅସାବଧାନତା ହେତୁ ସ୍ଖଳିତ ହେଲେ ତାହାର ଅବ୍ୟୁତ୍ପତ୍ତି ଦୋଷ ବିଶେଷଭାବେ ପରିଲକ୍ଷିତ ହୁଏ ।

୧୫୩ । ଏ ବିଷୟରେ ପରିକର ଶ୍ଳୋକ ଯଥା—ଏହାପରି ଗୋଟିଏ କଳ୍ପନା ପ୍ରସୂତ (ଉତ୍ପାଦ୍ୟବସ୍ତୁ) କଥାବସ୍ତୁ (କଥା-ଶରୀର) କରିବ, ଯେପରି କି ସମଗ୍ର କଥାଟି ରସମୟ ଭାବେ ଉଦ୍ଭାସିତ ହେଉଥିବ ।

୧୫୪ । କଥା-ଶରୀରକୁ ରସମୟ କରିବାକୁ ହେଲେ ବିଭାବାଦିର ଔଚିତ୍ୟକୁ ଅନୁସରଣ କରିବାକୁ ହୁଏ, ତାହା ପୂର୍ବରୁ ପ୍ରଦର୍ଶିତ ହୋଇଅଛି ।

୧୫୫ । ରସମୟରୂପେ ସୁପ୍ରସିଦ୍ଧ ହୋଇ ଯେଉଁ ରାମାୟଣାଦି ଐତିହାସିକ କଥାମାନ ଅଛି, ତହିଁରେ କବିର ସ୍ୱେଚ୍ଛାଗ୍ରହଣତା; ପ୍ରକୃତ ରସର ବିରୋଧୀ ହୁଏ, ଏଣୁ କବି ତହିଁରେ ସ୍ୱେଚ୍ଛା ବ୍ୟବହାର କରିବ ନାହିଁ ।

୧୫୬ । ତେଷୁ କଥାଶ୍ରୟେଷୁ ତାବତ୍ ସ୍ୱେଚ୍ଛୈବ ନ ଯୋଜ୍ୟା ।
ଯଦୁକ୍ତମ୍—"କଥାମାର୍ଗେ ନ ଗ୍ୟତିକ୍ରମଃ ।" ସ୍ୱେଚ୍ଛାଽପି
ଯଦି ଯୋଜ୍ୟା, ତତ୍ ରସବିରୋଧିନୀ ନ ଯୋଜ୍ୟା ।

୧୫୭ । ଇଦମପରଂ ପ୍ରବନ୍ଧସ୍ୟ ରସାଭିବ୍ୟଞ୍ଜକତ୍ୱେ ନିବନ୍ଧନମ୍-
ଇତିବୃତ୍ତବଶାୟାତାଂ କଥଂଚିତ୍ ରସାନନୁଗୁଣାଂ
ସ୍ଥିତିଂ ତ୍ୟକ୍ତ୍ୱା, ପୁନରୁତ୍ପ୍ରେକ୍ଷ୍ୟାଽପ୍ୟନ୍ତରଭୀଷ୍ଟ-
ରସୋଚିତକଥୋନ୍ନୟୋ ବିଧେୟଃ । ଯଥା କାଳିଦାସ-
ପ୍ରବନ୍ଧେଷୁ ।

---

ଅର୍ଥାତ୍ ରାମାୟଣାଦି ପ୍ରସିଦ୍ଧ କଥାକୁ ଭିନ୍ନ ପ୍ରକାରରେ ବର୍ଣ୍ଣନା କରିବା ଉଚିତ ନୁହେ ।

୧୫୬ । ରାମାୟଣାଦି କଥାରେ ସ୍ୱେଚ୍ଛା ବ୍ୟବହାର କରିବ ନାହିଁ । ଯେଣୁ କୁହାଯାଇଛି (ରାମାଭ୍ୟୁଦୟ ନାଟକରେ ଯଶୋବର୍ମା କହିଛନ୍ତି)—"ପ୍ରକୃତ କଥାକୁ ଅତିକ୍ରମ କର ନାହିଁ ।"

ଯଦି ବା କବି ସ୍ୱେଚ୍ଛାପ୍ରଣୋଦିତ ହୋଇ ପ୍ରସିଦ୍ଧ କଥାର ପରିବର୍ତ୍ତନ କରେ, ତେବେ ରସାନୁକୂଳ ଭାବରେ ପରିବର୍ତ୍ତନ କରିବ, କିନ୍ତୁ ରସାଦି-ବିରୋଧ ପରିବର୍ତ୍ତନ କରିବ ନାହିଁ ।

୧୫୭ । ପ୍ରବନ୍ଧର ରସାଭିବ୍ୟଞ୍ଜକତାରେ ଏହା ଆଉ ଗୋଟିଏ କାରଣ ଯଥା—ଇତିହାସ ପ୍ରସିଦ୍ଧ ହୋଇଥିଲେ ସୁଦ୍ଧା କୌଣସି ପ୍ରକାର ରସର ଅନୁଗୁଣ ହୋଇ ନ ଥିବା ଘଟନାକୁ ପରିତ୍ୟାଗ କରି ପୁନଶ୍ଚ ଅଭିମତ ରସର ପୁଷ୍ଟି ନିମନ୍ତେ ନୂତନଭାବେ କଳ୍ପନା କରିବା ଉଚିତ, ଯଥା—କାଳିଦାସଙ୍କ ରଚନାରେ । (କାଳିଦାସଙ୍କ ରଘୁବଂଶରେ ଇନ୍ଦୁମତୀ ସ୍ୱୟମ୍ବର ବର୍ଣ୍ଣନାଦି କଳ୍ପିତ ।)

୧୫୮ । ଯଥା ଚ ସର୍ବସେନ ବିରଚିତେ ହରି-ବିଜୟେ ।
ଯଥା ଚ ମମୈବ ଏବାର୍ଜୁନଚରିତେ ମହାକାବ୍ୟେ ।

୧୫୯ । କବିନା ପ୍ରବନ୍ଧମୁପନିବଧ୍ନତା ସର୍ବାତ୍ମନା ରସପରତନ୍ତ୍ରେଣ ଭବିତବ୍ୟମ୍ । ତତ୍ରେତିବୃତ୍ତେ ଯଦି ରସାନନୁଗୁଣାଂ ସ୍ଥିତିଂ ପଶ୍ୟେତ୍, ତାଂ ଭଂକ୍ତ୍ୱାପି ସ୍ୱତନ୍ତ୍ରତୟା ରସାନୁଗୁଣଂ କଥାନ୍ତରମୁତ୍ପାଦୟେତ୍ ।

୧୬୦ । ନ ହି କବେରିତିବୃତ୍ତମାତ୍ରନିର୍ବହଣେନ କିଂଚିତ ପ୍ରୟୋଜନମ୍ । ଇତିହାସାଦେବ ତତ୍ସିଦ୍ଧେଃ ।

୧୬୧ । ରସାଦିବ୍ୟଞ୍ଜକତ୍ୱେ ପ୍ରବନ୍ଧସ୍ୟ ଚେଦମନ୍ୟନ୍ମୁଖ୍ୟଂ ନିବନ୍ଧନଂ—ଯତ୍ ସନ୍ଧୀନାଂ ମୁଖ-ପ୍ରତିମୁଖ-ଗର୍ଭ-

---

୧୫୮ । ଅଥବା ସର୍ବସେନଙ୍କ ବିରଚିତ ହରିବିଜୟରେ । (ହରିବିଜୟରେ ପାରିଜାତ ହରଣାଦି କଳ୍ପିତ) ।

ଅଥବା ମୋ ରଚିତ ଅର୍ଜୁନ-ଚରିତ-ମହାକାବ୍ୟରେ (ଅର୍ଜୁନଙ୍କର ପାତାଳ ବିଜୟାଦି ନୂତନ ଭଙ୍ଗୀରେ ସ୍ଥାପିତ) ।

୧୫୯ । କବି କାବ୍ୟ ନିର୍ମାଣ କରିବାବେଳେ ସବୁପ୍ରକାରେ ରସ-ପରତନ୍ତ୍ର (ରସମୟ ଲେଖା ପାଇଁ ଯତ୍ନବାନ୍) ହେବ । କାବ୍ୟ ପାଇଁ ଗୃହୀତ ଐତିହାସିକ ବିଷୟବସ୍ତୁରେ ଯଦି, ରସର ପ୍ରତିକୂଳ ସ୍ଥିତି ଦେଖିବ, ତେବେ ସେ ସ୍ଥିତି (ଘଟନା)କୁ ପରିତ୍ୟାଗ କରି ସ୍ୱତନ୍ତ୍ରଭାବେ ରସାନୁକୂଳ ଅନ୍ୟ କଥା କଳ୍ପନା କରି ସଂଯୋଜନ କରିବ ।

୧୬୦ । କାରଣ, ଐତିହାସିକ ବାର୍ତ୍ତାମାନର ଉଲ୍ଲେଖ ଦ୍ୱାରା କବିର କିଛି ପ୍ରୟୋଜନ ନାହିଁ, ଅର୍ଥାତ୍ ବାର୍ତ୍ତାମାନ କାବ୍ୟ ନୁହେଁ, ଯେଣୁ ତାହା ଇତିହାସ ପାଠ ଦ୍ୱାରା ସିଦ୍ଧ ହୁଏ । (ଅତଏବ ରସମୟ ପ୍ରବନ୍ଧ ନିବନ୍ଧନ ହିଁ କବିର କରିବା) ।

୧୬୧ । ପ୍ରବନ୍ଧର ରସବ୍ୟଞ୍ଜକତାରେ ଏହା ଆଉ ଗୋଟିଏ ପ୍ରଧାନ କାରଣ ଯଥା—(ଦୃଶ୍ୟ କାବ୍ୟରେ) ମୁଖ, ପ୍ରତିମୁଖ, ଗର୍ଭ, ବିମର୍ଶ,

ବିମର୍ଶ-ନିର୍ବହଣାଖ୍ୟାନାଂ, ତଦଙ୍ଗାନାଂ ଚୋପକ୍ଷେପା-
ଦୀନାଂ ଘଟନଂ ରସାଭିବ୍ୟକ୍ତ୍ୟପେକ୍ଷୟା । ଯଥା—
ରତ୍ନାବଲ୍ୟାମ୍ ।

୧୬୨ । "ନ ତୁ କେବଲଂ ଶାସ୍ତ୍ରସ୍ଥିତି ସମ୍ପାଦନେଚ୍ଛୟା ।"
ଯଥା—ବେଣୀସଂହାରେ ବିଲାସାଖ୍ୟସ୍ୟ ପ୍ରତିମୁଖ-
ସନ୍ଧ୍ୟଙ୍ଗସ୍ୟ ପ୍ରକୃତରସନିବନ୍ଧାନନୁଗୁଣମପି ଦ୍ୱିତୀ-
ୟେଽଙ୍କେ ଭରତମତାନୁସରଣମାତ୍ରେଚ୍ଛୟା ଘଟନମ୍ ।

୧୬୩ । ଇଦଂ ଚାପରଂ ପ୍ରବନ୍ଧସ୍ୟ ରସବ୍ୟଞ୍ଜକତ୍ୱେ ନିମିତ୍ତମ୍—
ଯଦୁଦ୍ଦୀପନପ୍ରଶମନେ ଯଥାବସରଂ ନିବଧ୍ୟେୟାତାଂ
ରସସ୍ୟ । ଯଥା—ରତ୍ନାବଲ୍ୟାମେବ ।

---

ଉପସଂହାରନାମକ ପାଞ୍ଚଗୋଟି ସନ୍ଧି ଓ ଉପକ୍ଷେପପ୍ରଭୃତି ସନ୍ଧ୍ୟଙ୍ଗମାନଙ୍କୁ ରସପ୍ରକାଶକ ଭାବେ ନିବେଶ କରିବା ଯଥା—ରତ୍ନାବଳୀ ନାଟିକାରେ ।

୧୬୨ । କେବଳ ଶାସ୍ତ୍ରନିୟମ ରକ୍ଷା କରିବା ଉଦ୍ଦେଶ୍ୟରେ ସନ୍ଧି ଓ ସନ୍ଧ୍ୟଙ୍ଗ ନିବେଶ କରିବା ଉଚିତ ନୁହେ । ଯଥା—ବେଣୀସଂହାର ନାଟକରେ ଦ୍ୱିତୀୟ ଅଙ୍କରେ ଭରତମୁନିଙ୍କ ମତ ପାଳନ କରିବା ଇଚ୍ଛାରେ ବିଳାସନାମକ ପ୍ରତିମୁଖ ସନ୍ଧିର ଅଙ୍ଗ ବର୍ଣ୍ଣନା କରାଯାଇଛି, କିନ୍ତୁ ତାହା ପ୍ରକୃତ ରସର ଅନୁଗୁଣ ନୁହେ । (ଯୁଦ୍ଧପ୍ରବୃତ୍ତ ଦୁର୍ଯୋଧନର ଶୃଙ୍ଗାର ବର୍ଣ୍ଣନା କରାଯାଇଛି, ତାହା ବୀରରସର ପ୍ରତିକୂଳ ଏତାଦୃଶ ଶାସ୍ତ୍ର ନିୟମ ମାନର ପାଳନ ଦ୍ୱାରା କାବ୍ୟର ଶୋଭା ବଢ଼େ ନାହିଁ) ।

୧୬୩ । ପ୍ରବନ୍ଧର ରସବ୍ୟଞ୍ଜକତାରେ ଆଉ ଗୋଟିଏ କାରଣ ଯଥା—ପ୍ରବନ୍ଧର ମଝିରେ ମଝିରେ ଅବସର ଦେଖି ରସର ଉଦ୍ଦୀପନ ଓ ପ୍ରଶମନ କରିବା, ଯଥା—ରତ୍ନାବଳୀରେ, (ରତ୍ନାବଳୀରେ ଅନଙ୍ଗ ପୂଜା ଓ ଚିତ୍ରଫଳକ ଦର୍ଶନରେ ଶୃଙ୍ଗାରର ଉଦ୍ଦୀପନ ଓ ବାସବଦତ୍ତାଙ୍କ ସ୍ୱସ୍ଥାନରୁ ନିଷ୍କ୍ରମଣ ଓ ସୁସଙ୍ଗତା ପ୍ରବେଶ ଦ୍ୱାରା ପ୍ରଶମନ ମୁଖ୍ୟ ଶୃଙ୍ଗାରରସର ପୋଷକ) ।

୧୬୪ । ପୁନଶ୍ଚାରମ୍ଭବିଶ୍ରାନ୍ତେ ରସସ୍ୟାଙ୍ଗିନୋଽନୁସନ୍ଧିଶ୍ଚ ।

ଯଥା—ତାପସବତ୍ସରାଜେ ।

୧୬୫ । ପ୍ରବନ୍ଧବିଶେଷସ୍ୟ ନାଟକାଦେ ରସବ୍ୟକ୍ତିନିମିତ୍ତମିଦଂ ଚାବଗନ୍ତବ୍ୟଂ—ଯଦଲଂକୃତୀନାଂ ଶକ୍ତାବପ୍ୟାନୁରୂପ୍ୟେଣ ଯୋଜନମ୍ ।

୧୬୬ । ଶକ୍ତୋହି କବିଃ କଦାଚିଦଲଂକାରନିବନ୍ଧନେ ତଦାକ୍ଷିପ୍ତତୟୈବାନପେକ୍ଷିତରସବନ୍ଧଃ ପ୍ରବନ୍ଧମାରଭତେ, ତଦୁପଦେଶାର୍ଥମିଦମୁକ୍ତମ୍ । ଦୃଶ୍ୟନ୍ତେ ଚ କବୟୋଽଲଂକାରନିବନ୍ଧନୈକରସା ଅନପେକ୍ଷିତରସାଃ ପ୍ରବନ୍ଧେଷୁ ।

---

୧୬୪ । ପୁନଶ୍ଚ ଗ୍ରନ୍ଥର ଆରମ୍ଭଠାରୁ ସମାପ୍ତି ପର୍ଯ୍ୟନ୍ତ ପ୍ରଧାନ ରସର ଅନୁସନ୍ଧାନ କରିବା, ଯଥା – ତାପସ ବତ୍ସରାଜ ନାଟକରେ । (ବାସବଦତ୍ତାଙ୍କର ପ୍ରେମବନ୍ଧ ସେଥିରେ ସର୍ବତ୍ର ବ୍ୟାପ୍ତ ଅଛି) ।

୧୬୫ । ନାଟକ ପ୍ରଭୃତି ପ୍ରବନ୍ଧବିଶେଷ ରସର ବ୍ୟଞ୍ଜକ ହେବାରେ ଏହା ଆଉ ଗୋଟିଏ କାରଣ ବୋଲି ଜାଣିବା ଉଚିତ, ଯଥା—ଅଳଙ୍କାର ରଚନାରେ କବିର ସାମର୍ଥ୍ୟ ଥିଲେ ମଧ୍ୟ ରସର ଅନୁକୂଳ ଭାବେ (ପୂର୍ବୋକ୍ତ ପ୍ରକାରେ) ଅଳଙ୍କାର ସମାବେଶ କରିବା ।

୧୬୬ । ଅଳଙ୍କାର—ନିବନ୍ଧନରେ ସମର୍ଥ କବିମାନେ କେବେ କେବେ ଅଳଙ୍କାର-ରଚନାରେ ଭାସିଯାଇ (ତଦାକ୍ଷିପ୍ତ ତୟା) ରସବନ୍ଧରେ ଦୃଷ୍ଟି ଦିଅନ୍ତି ନାହିଁ, ସେହିଭଳି କବିମାନଙ୍କୁ ଉପଦେଶ ଦେବା ପାଇଁ ଏହା କହିଲୁ । ଦେଖାଯାଏ ଯେ କବିମାନେ ଅଳଙ୍କାର ରଚନାରେ ମାତି କାବ୍ୟରେ ରସପ୍ରତି ଅପେକ୍ଷା ରଖନ୍ତି ନାହିଁ ।

୧୬୭ । କିଂଚ
ଅନୁସ୍ୱାନୋପମାତ୍ମାଽପି ପ୍ରଭେଦୋ ଯ ଉଦାହୃତଃ ।
ଧ୍ୱନେରସ୍ୟ ପ୍ରବନ୍ଧେଷୁ ଭାସତେସୋଽପିକେଷୁଚିତ୍ ।

୧୬୮ । ଅସ୍ୟ ବିବକ୍ଷିତାନ୍ୟପର୍‌ବାଚ୍ୟଧ୍ୱନେ ରନୁରଣନରୂପ-ବ୍ୟଙ୍ଗ୍ୟୋଽପି ଯଃ ପ୍ରଭେଦ ଉଦାହୃତୋ ଦ୍ୱିପ୍ରକାରଃ ସୋଽପି ପ୍ରବନ୍ଧେଷୁ କେଷୁଚିତ୍ ଦ୍ୟୋତତେ ।

୧୬୯ । ତଦ୍‌ଯଥା—ମଧୁମଥନ ବିଜୟେ ପାଞ୍ଚଜନ୍ୟୋକ୍ତିଷୁ ।

୧୭୦ । ଯଥାବା ମମୈବ—କାମଦେବସ୍ୟ ସହଚର-ସମାଗମେ ବିଷମବାଣଲୀଳାୟାମ୍ ।

---

୧୬୭ । ବିବକ୍ଷିତାନ୍ୟପରବାଚ୍ୟ ଧ୍ୱନିର ସଂଲକ୍ଷ୍ୟକ୍ରମ ବ୍ୟଙ୍ଗ୍ୟ ନାମରେ ଯେଉଁ ଭେଦ କୁହାଯାଇଅଛି, ସେହି ଧ୍ୱନିଭେଦ, କେତେକ ପ୍ରବନ୍ଧରେ ମଧ୍ୟ ଦେଖାଯାଏ ।

ଅର୍ଥାତ୍ ଅନୁରଣନାତ୍ମକ ଧ୍ୱନି ମଧ୍ୟ ପ୍ରବନ୍ଧଗତ ଭାବେ ଦେଖାଯାଏ ।

୧୬୮ । (ବୃତ୍ତିର ଅର୍ଥ) ଏହି ବିବକ୍ଷିତାନ୍ୟପର (ଅଭିଧାମୂଳ) ବାଚ୍ୟଧ୍ୱନିର ଯେଉଁ ଅନୁରଣନରୂପ ବ୍ୟଙ୍ଗ୍ୟ ପ୍ରଭେଦଟି ଦୁଇପ୍ରକାରେ କୁହାଯାଇଅଛି, ତାହା କୌଣସି କୌଣସି ସ୍ଥଳରେ ପ୍ରବନ୍ଧରୁ ମଧ୍ୟ ପ୍ରକାଶପାଏ ।

(ଅଭିନବ ଗୁପ୍ତଙ୍କ ମତରେ ଏହି ପ୍ରବନ୍ଧଗତ ସଂଲକ୍ଷ୍ୟକ୍ରମ ଧ୍ୱନି ରସାଦି ଧ୍ୱନିରେ ପର୍ଯ୍ୟବସିତ ହୁଏ, ଅନ୍ୟଥା ପାଞ୍ଚଜନ୍ୟୋକ୍ତି ଗୃଧ୍ର ଗୋମାୟୁ ସମ୍ବାଦପ୍ରଭୃତି ନୀରସ ହୁଅନ୍ତା) ।

୧୬୯ । ଅନୁରଣନାତ୍ମକ ଧ୍ୱନି ବ୍ୟଞ୍ଜକ ପ୍ରବନ୍ଧର ଉଦାହରଣ—ମଧୁ-ମଥନ-ବିଜୟରେ ପାଞ୍ଚଜନ୍ୟର ଉକ୍ତିରେ ।

୧୭୦ । ଅଥବା ମୋ ରଚିତ ବିଷମବାଣଲୀଳାରେ—କାମଦେବଙ୍କର ସହଚର ସମାଗମ ସମୟରେ ।

୧୭୧ । ଯଥା ଚ ଗୃଧ୍ରଗୋମାୟୁସମ୍ବାଦାଦୌ—ମହାଭାରତେ ।

୧୭୨ । ସୁପ୍ତିଙ୍ବଚନସମ୍ବନ୍ଧୈସ୍ତଥା କାରକଶକ୍ତିଭିଃ
କୃତ୍ତଦ୍ଧିତସମାସୈଶ୍ଚ ଦ୍ୟୋତ୍ୟୋଽଲକ୍ଷ୍ୟକ୍ରମଃ କ୍ୱଚିତ୍ ॥

---

୧୭୧ । ଯଥା ବା ମହାଭାରତରେ ଗୃଧ୍ର ଗୋମାୟୁ—ସମ୍ବାଦରେ—

ଗୃଧ୍ରବାକ୍ୟ  ଅଲଂସ୍ଥିତ୍ୱା ଶ୍ମଶାନେଽସ୍ମିନ୍ ଗୃଧ୍ରଗୋମାୟୁ ସଙ୍କୁଳେ
କଙ୍କାଳ ବହୁଳେ ଘୋରେ ସର୍ବପ୍ରାଣି-ଭୟଂକରେ ।
ନଚେହ ଜୀବିତଃ କଶ୍ଚିତ୍ କାଳଧର୍ମ-ମୁପାଗତଃ
ପ୍ରିୟୋ ବା ଯଦିବା ଦ୍ୱେଷ୍ୟଃ ପ୍ରାଣିନାଂ ଗତିରୀଦୃଶୀ ।

ଅର୍ଥ—ମୃତ ବାଳକ-ଶରୀରକୁ ଘେନି ଆସିଥିବା ବାନ୍ଧବମାନଙ୍କୁ ଗୃଧ୍ରର ଉକ୍ତି—ଏହି ଶ୍ମଶାନରେ ଶାଗୁଣା ବିଲୁଆ ପଲ ପଲ ହେଉଛନ୍ତି । କଙ୍କାଳଗୁଡ଼ାଏ ପଡ଼ିଛି । ଏଣୁ ସମସ୍ତଙ୍କର ଭୟ ଉତ୍ପାଦନ କରୁଥିବା ଏହି ସ୍ଥାନରେ ରହିବା ବୃଥା । ପ୍ରିୟହେଉ ବା ଅପ୍ରିୟ ହେଉ କୌଣସି ମୃତବ୍ୟକ୍ତି ଜୀବିତ ହୁଏ ନାହିଁ; ଏହା ପ୍ରାଣୀମାନଙ୍କର ଗତି ।

ଏହି ବାକ୍ୟରେ ଦିବସରେ ଆମିଷାର୍ଥୀ ଗୃଧ୍ର ବାନ୍ଧବମାନଙ୍କୁ ଭରିତ ବିଦାୟ ପାଇଁ ଉପଦେଶ ଦେଉଅଛି ।

ଶୃଗାଳର ବାକ୍ୟ—ଆଦିତ୍ୟୋଽୟଂ ସ୍ଥିତୋ ମୂଢ଼ାଃସ୍ନେହଂ କୁରୁତସାମ୍ପ୍ରତଂ
ବହୁବିଘ୍ନୋ ମୁହୂର୍ତ୍ତୋଽୟଂ ଜୀବେଦପି କଦାଚନ ।
ଅମୁଂ କନକବର୍ଣ୍ଣାଭଂ ବାଳମପ୍ରାପ୍ତ-ଯୌବନମ୍
ଗୃଧ୍ର ବାକ୍ୟାତ୍କଥଂ ବାଳାସ୍ତ୍ୟକ୍ଷ୍ୟ-ମବଶଙ୍କିତାଃ ॥

ଅର୍ଥ—ହେ ମୂର୍ଖ ! ସୂର୍ଯ୍ୟ ଅଛନ୍ତି, ପିଲାଟାଠାରେ ଟିକିଏ ହେଲେ ସ୍ନେହ କର । ଏ ବେଳାଟା ବିଘ୍ନବେଳା । କଦା ବା ବଞ୍ଚିପାରେ । ଏହି ସୁନାପରି ଗୋରା ଅପ୍ରାପ୍ତ ଯୌବନ ପିଲାକୁ ଶାଗୁଣାଟା କଥାରେ ନିଃସନ୍ଦେହରେ ଛାଡ଼ି ଯାଉଛ ?

ରାତିରେ ଶାଗୁଣା କୁଅ ପ୍ରଭୃତି ଅନ୍ତରିତ ହେଲେ ଏକମାତ୍ର ଶୃଗାଳ ଶବମାଂସ ଭକ୍ଷଣ କରିବ ଏହାହିଁ ଶୃଗାଳ ବାକ୍ୟର ତାତ୍ପର୍ଯ୍ୟ ।

୧୭୨ । କ୍ୱଚିତ୍ ଅଲକ୍ଷ୍ୟକ୍ରମ ବ୍ୟଙ୍ଗ୍ୟ (ରସାଦି) ଧ୍ୱନି, ସୁବନ୍ତ ତିଙନ୍ତ, ବଚନ, ସମ୍ବନ୍ଧ, ତଥା କାରକ ଶକ୍ତି ଓ କୃଦନ୍ତ ତଦ୍ଧିତ, ଏବଂ ସମାସ ଦ୍ୱାରା ଅଭିବ୍ୟକ୍ତ ହୁଏ ।

୧୭୩ । ଅଲକ୍ଷ୍ୟକ୍ରମୋ ଧ୍ୱନେରାତ୍ମା ରସାଦିଃ, ସୁବ୍‌ବିଶେଷୈ-
ସ୍ତିଙ୍‌ବିଶେଷୈର୍ବଚନବିଶେଷୈଃ ସମ୍ବନ୍ଧବିଶେଷୈଃ
କାରକଶକ୍ତିଭି କୃଦ୍‌ବିଶେଷୈସ୍ତଦ୍ଧିତବିଶେଷୈଃ
ସମାସୈଶ୍ଚେତି ଚ ଶବ୍ଦାନ୍ନିପାତୋପସର୍ଗକାଳାଦିଭିଃ
ପ୍ରଯୁକ୍ତୈରଭିବ୍ୟଜ୍ୟମାନୋ ଦୃଶ୍ୟତେ ॥

୧୭୪ । ଯଥା—

ନ୍ୟକ୍କାରୋହ୍ୟୟମେବ ମେ ଯଦରୟ-
ସ୍ତତ୍ରାପ୍ୟସୌ ତାପସଃ
ସୋଽପ୍ୟତ୍ରୈବ ନିହନ୍ତି ରାକ୍ଷସକୁଳଂ
ଜୀବତ୍ୟହୋ ରାବଣଃ ।
ଧିଗ୍‌ଧିକ୍‌ଛକ୍ରଜିତଂ ପ୍ରବୋଧିତବତା
କିଂ କୁମ୍ଭକର୍ଣ୍ଣେନ ବା,
ସ୍ୱର୍ଗଗ୍ରାମଟିକା-ବିଲୁଣ୍ଠନବୃଥୋଚ୍ଛୂନୈଃ
କିମେଭିର୍ଭୁଜୈଃ ॥

---

୧୭୩ । (ବୃତ୍ତିର ଅର୍ଥ) ଅଲକ୍ଷ୍ୟକ୍ରମ ଧ୍ୱନିର ଆତ୍ମା ରସାଦି ଧ୍ୱନି ସୁପ୍ ବିଶେଷ, ତିଙ୍ ବିଶେଷ, ସମ୍ବନ୍ଧ ବିଶେଷ, କାରକ ଶକ୍ତି, କୃଦନ୍ତ ବିଶେଷ, ତଦ୍ଧିତ ବିଶେଷ ଓ ସମାସ ଦ୍ୱାରା, ବ୍ୟଙ୍ଗ୍ୟ ହୁଏ ଏବଂ କାରକାଗତ ଚ ଶବ୍ଦ ବଳରୁ ନିପାତ ଉପସର୍ଗ ଓ କାଳ ପ୍ରଭୃତି ଦ୍ୱାରା ମଧ୍ୟ ବ୍ୟଙ୍ଗ୍ୟ ହେବାର ଦେଖାଯାଏ ।

୧୭୪ । ଯଥା—ରାମଚନ୍ଦ୍ର ରାକ୍ଷସକୁଳ କ୍ଷୟ କରନ୍ତେ, ରାବଣର ଉକ୍ତି—ମୋର ପୁଣି ଗୁଡ଼ାଏ ଶତ୍ରୁ, ଏହା ଗୋଟାଏ ନିନ୍ଦା, ସେଥିରେ ପୁଣି ସେ ଗୋଟାଏ ତାପସ, ସେ (ତାପସ) ପୁଣି ଏଇଠି ଅଛି !! (ଆଉ ପୁଣି) ରାକ୍ଷସମାନଙ୍କୁ ମାରୁଛି !! ଅହୋ ; ରାବଣ ଫେରେ ବଞ୍ଚିଛି !!! ଇନ୍ଦ୍ରଜିତକୁ ଧିକ୍ ଧିକ୍ । ପ୍ରବୋଧ ହେଉଥିବା କୁମ୍ଭକର୍ଣ୍ଣଠାରେ କଅଣ ବା ପ୍ରୟୋଜନ ।

୧୭୫ । ଅତ୍ର ହି ଶ୍ଳୋକେ ଭୂୟସା ସର୍ବେଷାମପ୍ୟେଷାଂ ସ୍ଫୁଟ-ମେବ ବ୍ୟଞ୍ଜକତ୍ୱଂ ଦ୍ୟୋତ୍ୟତେ ।

୧୭୬ । ତତ୍ର "ମେ ଯଦରୟଃ" ଇତ୍ୟନେନ ସୁପ୍‌ସମ୍ବନ୍ଧ-ବଚନାନାମଭିବ୍ୟଞ୍ଜକତ୍ୱମ୍ ।

୧୭୭ । "ତତ୍ରାପ୍ୟସୌ ତାପସଃ" ଇତ୍ୟତ୍ର ତଦ୍ଧିତନିପାତୟୋଃ

୧୭୮ । "ସୋଽପ୍ୟତ୍ରୈବ ନିହନ୍ତି ରାକ୍ଷସକୁଳଂ ଜୀବତ୍ୟହୋ ରାବଣଃ" ଇତ୍ୟତ୍ର ତିଙଃ କାରକଶକ୍ତେଶ୍ଚ ।

୧୭୯ । "ଧିକ୍ ଧିକ୍ ଶକ୍ରଜିତମ୍" ଇତ୍ୟାଦୌ ଶ୍ଳୋକାର୍ଦ୍ଧେ କୃଦ୍ଧିତସମାସୋପସର୍ଗାଣାମ୍ ॥

---

ସ୍ୱର୍ଗ ଗାଁଟାକୁ ଲୁଟି କରିବାରେ ବୃଥା ଦର୍ପିଷ୍ଠ ହୋଇଥିବା ଏହି (ମାଙ୍କର) ଭୁଜମାନଙ୍କ ଦ୍ୱାରା ବା କଅଣ ପ୍ରୟୋଜନ ।

୧୭୫ । ଏହି ଶ୍ଳୋକରେ କାରକ କଥିତ ସୁବନ୍ତ ତଙନ୍ତପ୍ରଭୃତି ପ୍ରାୟ ସମସ୍ତେ ବ୍ୟଞ୍ଜକ ହୋଇଅଛନ୍ତି ।

୧୭୬ । "ମେ ଯଦରୟଃ" ଏଥିରେ ସୁବନ୍ତବ୍ୟଞ୍ଜକ । 'ଅରି' ପଦର ବହୁବଚନ ବ୍ୟଞ୍ଜକ, ଏବଂ 'ମେ' ପଦର ଅରିପଦସହ ସମ୍ବନ୍ଧ ମଧ୍ୟ ବ୍ୟଞ୍ଜକ ।

୧୭୭ । "ତତ୍ରାପ୍ୟସୌ ତାପସଃ" ଏଠାରେ 'ତାପସ' ପଦରେ ତଦ୍ଧିତ "ତତ୍ର" ଓ "ଅପି" ପଦରେ ନିପାତନ (ଅବ୍ୟୟ) ବ୍ୟଞ୍ଜକ ।

୧୭୮ । "ସୋଽପ୍ୟତ୍ରୈବ ନିହନ୍ତି ରାକ୍ଷସକୁଳଂ ଜୀବତ୍ୟହୋ ରାବଣଃ" ଏଠାରେ ତିଙ୍ ଓ କାରକ ଶକ୍ତି ବ୍ୟଞ୍ଜକ ।

୧୭୯ । "ଧିକ୍ ଧିକ୍ ଶକ୍ରଜିତଂ, ଇତ୍ୟାଦି ଶ୍ଳୋକର ଦ୍ୱିତୀୟାର୍ଦ୍ଧରେ "ଶକ୍ରଜିତ' 'ପ୍ରବୋଧିତବତା' ପଦରେ କୃଦନ୍ତ, ଗ୍ରାମଟିକା" ପଦରେ ତଦ୍ଧିତ, "ସ୍ୱର୍ଗଗ୍ରାମ" ଇତ୍ୟାଦି ପଦରେ ସମାସ, ଏବଂ ବିଲୁଣ୍ଠନ ଶବ୍ଦରେ ବିଶେଷରୂପ ଅର୍ଥ ପ୍ରତିପାଦନ କରୁଥିବା "ବି" ଉପସର୍ଗ ଓ (ବୃଥା ଶବ୍ଦ ମଧ୍ୟ) ବ୍ୟଞ୍ଜକ ।

୧୮୦ । ଏବଂ ବିଧସ୍ୟ ବ୍ୟଞ୍ଜକଭୂୟସ୍ତ୍ବେ ଚ ଘଟମାନେ କାବ୍ୟସ୍ୟ ସର୍ବାତିଶାୟିନୀ ବନ୍ଧଚ୍ଛାୟା ସମୁନ୍ମୀଲତି ।

୧୮୧ । ଯତ୍ର ହି ବ୍ୟଙ୍ଗ୍ୟାବଭାସିନଃ ପଦସ୍ୟୈକସ୍ୟୈବ ତାବଦାବିର୍ଭାବଃ, ତତ୍ରାପି କାବ୍ୟେ କାପି ବନ୍ଧଚ୍ଛାୟା, କିମୁତ ଯତ୍ର ତେଷାଂ ବହୂନାଂ ସମବାୟଃ । ଯଥାଽତ୍ରା-ନନ୍ତରୋଦିତଶ୍ଲୋକେ ।

୧୮୨ । ଅତ୍ର ହି "ରବଣଃ" ଇତ୍ୟସ୍ମିନ୍ ପଦେ ଅର୍ଥାନ୍ତର-ସଂକ୍ରମିତବାଚ୍ୟେନ ଧ୍ୱନିପ୍ରଭେଦେନାଲଂକୃତେଽପି, ପୁନରନନ୍ତରୋକ୍ତାନାଂ ବ୍ୟଞ୍ଜକପ୍ରକାରାଣାମୁଦ୍-ଭାସନମ୍ ।

---

୧୮୦ । ଏହିପରି ବ୍ୟଞ୍ଜକମାନଙ୍କର ବାହୁଲ୍ୟ ସନ୍ନିବେଶିତ ହୋଇ-ଥିଲେ, କାବ୍ୟର ସଙ୍ଘଟନା ଶୋଭା ସର୍ବାତିଶାୟିନୀ ହୋଇ ବିକସିତ ହୁଏ ।

୧୮୧ । ଯେଉଁ କାବ୍ୟରେ ଗୋଟିଏ ମଧ୍ୟ ବ୍ୟଞ୍ଜକ ପଦ ଥାଏ, ସେ କାବ୍ୟର ଅନିର୍ବଚନୀୟ ବନ୍ଧଶୋଭା ପ୍ରକାଶ ପାଏ, ଯେଉଁଥିରେ ବ୍ୟଞ୍ଜକମାନେ ବହୁଳଭାବେ ଥାଆନ୍ତି, ସେ କାବ୍ୟର ଶୋଭା କଥା କଅଣ ବା କହିବା ? ଯଥା—ଏହି "ନ୍ୟକ୍କାର" ଇତ୍ୟାଦି ଶ୍ଲୋକରେ ।

୧୮୨ । ଏହି ଶ୍ଲୋକରେ "ଜୀବତ୍ୟହୋ ରାବଣଃ" ଏହି "ରାବଣ" ପଦ ରାବଣର ସ୍ୱ ଉକ୍ତିରେ ପୁନରୁକ୍ତ ହୋଇ ବ୍ୟର୍ଥ ହୁଅନ୍ତେ "ତ୍ରିଭୁବନ ବିଜୟାଦ୍ୟଶେଷ ଖ୍ୟାତିରୂପ ଧର୍ମାନ୍ତର ବିଶିଷ୍ଟ ରାବଣ ଅର୍ଥକୁ ବୁଝାଉଛି । ସୁତରାଂ ଏଠାରେ ରାବଣ ପଦରେ ପଦଗତ ଅର୍ଥାନ୍ତର-ସଂକ୍ରମିତବାଚ୍ୟ-ଧ୍ୱନି ରହିଛି । ଏବଂ ତାହା ସହିତ ପୂର୍ବୋକ୍ତ ବ୍ୟଞ୍ଜକ ପଦମାନଙ୍କ ଦ୍ୱାରା ଉଦ୍ଭାସିତ ରସାଦିଧ୍ୱନି ରହିବାରୁ ଏଥିରେ ଶୋଭାତିଶଯ୍ୟ ରହିଛି ।

୧୮୩ । ଦୃଶ୍ୟନ୍ତେ ଚ ମହାତ୍ମନାଂ ପ୍ରତିଭାବିଶେଷଭାଜାଂ
ବାହୁଲ୍ୟେନୈବଂବିଧାଃ ପ୍ରକାରାଃ ।

୧୮୪ । ଯଥା ମହର୍ଷେର୍ବ୍ୟାସସ୍ୟ
"ଅତିକ୍ରାନ୍ତସୁଖାଃ କାଳାଃ ପ୍ରତ୍ୟୁପସ୍ଥିତଦାରୁଣାଃ ।
ଶ୍ୱଃ ଶ୍ୱଃ ପାପୀୟଦିବସା ପୃଥିବୀ ଗତଯୌବନା ॥

୧୮୫ । ଅତ୍ର ହ୍ୟବିବକ୍ଷିତବାଚ୍ୟସ୍ୟୈବାଲକ୍ଷ୍ୟକ୍ରମବ୍ୟଙ୍ଗ୍ୟଃ "ପୃଥିବୀ-ଗତଯୌବନା" ଇତ୍ୟନେନ ପଦେନାତ୍ୟନ୍ତତିରସ୍କୃତ-ବାଚ୍ୟୋ ଧ୍ୱନିଃ ପ୍ରକାଶିତଃ ।

---

୧୮୩ । ପ୍ରତିଭାସମ୍ପନ୍ନ ମହାତ୍ମା କବିମାନଙ୍କର ଏବଂବିଧ ରଚନା, ବହୁଳଭାବେ ଦେଖାଯାଏ ।

୧୮୪ । ଯଥା ମହର୍ଷି ବ୍ୟାସଦେବଙ୍କର—କାଳ ଅତିକ୍ରାନ୍ତ ସୁଖ ଅର୍ଥାତ୍ ସୁଖଭୋଗ କାଳ ଚାଲିଗଲାଣି, ତାର ଆଉ ସମ୍ଭାବନା ନାହିଁ । ଓଲଟି ଦୁଃଖଭୋଗ କାଳ ଉପସ୍ଥିତ ହୋଇଛି । ଆସନ୍ତା କାଲିକୁ କାଲି ଭବିଷ୍ୟତ ଦିନଗୁଡ଼ିକ ପାତକମୟ, ଏତାଦୃଶ ଭବିଷ୍ୟତକାଳ ବିଶିଷ୍ଟ ପୃଥିବୀ ଗତଯୌବନା ଅର୍ଥାତ୍ ବୃଦ୍ଧା ନାରୀପରି ଅନୁପଭୋଗ୍ୟା ।

୧୮୫ । ଏ ଶ୍ଳୋକରେ ଅତିକ୍ରାନ୍ତ ଶବ୍ଦର "କ୍ତ" ପ୍ରତ୍ୟୟ (କୃତ୍), ପାପୀୟ ଶବ୍ଦର ଇୟ ପ୍ରତ୍ୟୟ (ତଦ୍ଧିତ) ଓ କାଳ ପଦର "ବହୁବଚନ" ନିର୍ବେଦ ସ୍ଥାୟିଭାବକ ଶାନ୍ତରସକୁ ବ୍ୟଞ୍ଜନ କରୁଅଛନ୍ତି । ଆଉ ପୁଣି "ପୃଥିବୀ ଗତଯୌବନା" ଏଥିରେ ଜଡ଼ ପୃଥିବୀର ଯୌବନ ଅସମ୍ଭବ ହେତୁ ଯୌବନ ପଦର ମୁଖ୍ୟ ଅର୍ଥ ବାଧିତ ହୋଇ ଉପଭୋଗ କ୍ଷମତାରୂପ ଲକ୍ଷ୍ୟାର୍ଥ ବୁଝାଉଛି । ସୁତରାଂ ଏଠାରେ ହେୟତାରୂପ ଅତ୍ୟନ୍ତ ତିରସ୍କୃତ ବାଚ୍ୟଧ୍ୱନି ଅଛି ।

୧୮୬ । ଏଷାଂ ଚ ସୁବାଦୀନାମେକୈକଶଃ, ସମୁଦିତାନାଂ ଚ
ବ୍ୟଞ୍ଜକତ୍ୱଂ ମହାକବୀନାଂ ପ୍ରବନ୍ଧେଷୁ ଦୃଶ୍ୟତେ ।

୧୮୭ । ସୁବନ୍ତସ୍ୟ ବ୍ୟଞ୍ଜକତ୍ୱଂ ଯଥା—
"ତାଳୈଃ ଶିଞ୍ଜାବଲୟସୁଭଗୈଃ କାନ୍ତୟା ନର୍ତ୍ତିତୋ ମେ,
ଯାମଧ୍ୟାସ୍ତେ ଦିବସବିଗମେ ନୀଲକଣ୍ଠଃ ସୁହୃଦ୍‌ବଃ ।"

---

୧୮୬ । ମହାକବିମାନଙ୍କ ଗ୍ରନ୍ଥରେ କାରକା ବର୍ଣ୍ଣିତ ସୁବନ୍ତାଦିର ଗୋଟି ଗୋଟି କରି ଓ ମିଳିତଭାବରେ ବ୍ୟଞ୍ଜକ ଅଛି ।

୧୮୭ । ସୁବନ୍ତର ବ୍ୟଞ୍ଜକତା ଯଥା—
(ମେଘଦୂତରେ ମେଘପ୍ରତି ଯକ୍ଷର ଉକ୍ତି—
ତନ୍ମଧ୍ୟେଚ ସ୍ଫଟିକଫଳକା କାଞ୍ଚନୀ ବାସଯଷ୍ଟି—
ର୍ମୂଳେବଦ୍ଧା ମଣିଭି-ରନତି-ପ୍ରୌଢ଼-ବଂଶ ପ୍ରକାଶୈଃ ।
ତାଳୈଃ ଶିଞ୍ଜା-ବଲୟ-ସୁଭଗୈଃ କାନ୍ତୟା ନର୍ତ୍ତିତୋ ମେ
ଯାମଧ୍ୟାସ୍ତେ ଦିବସବିଗମେ ନୀଲକଣ୍ଠଃ ସୁହୃଦ୍‌ବଃ ।)

ଅର୍ଥ—ହେ ମେଘ ! ରକ୍ତାଶୋକ ଓ କେଶର ଦୁଇ ବୃକ୍ଷଙ୍କ ମଧ୍ୟରେ ଗଜାଳିଆ-ବାଉଁଶ-ବର୍ଣ୍ଣର ରତ୍ନ (ମରକତ) ଦ୍ୱାରା ନିର୍ମିତ ପିଣ୍ଡୀ ଉପରେ, ଗୋଟିଏ ସୁବର୍ଣ୍ଣମୟ ଯଷ୍ଟି ପୋତା ହୋଇଅଛି ଓ ତାହା ଉପରେ ଗୋଟିଏ ସ୍ଫଟିକ ପଟା ଖଞ୍ଜା ଯାଇଛି, ଯହିଁ ଉପରେ କି ଦିନ ଶେଷରେ (ସନ୍ଧ୍ୟାବେଳେ) ତୁମ୍ଭର ପ୍ରିୟ ମିତ୍ର ମୟୂରକୁ ମୋର କାନ୍ତା କଙ୍କଣ ଧ୍ୱନି ମିଶ୍ରଣହେତୁ ମଞ୍ଜୁଳ କରତାଳ ଦ୍ୱାରା ନଚାଏ ।

ଏଠାରେ ସୁବନ୍ତ ତାଳପଦଗତ ବହୁବଚନ ତାଳର ଅନେକ ବିଧତା ଓ ତାହା ସଙ୍ଗେ ସଙ୍ଗେ ପ୍ରିୟାର ସଙ୍ଗୀତ ଜ୍ଞାନକୁ ସୂଚାଇ ବିପ୍ରଲମ୍ଭ ଶୃଙ୍ଗାରକୁ ପୁଷ୍ଟ କରୁଅଛି ।

୧୮୮ । ଉଦ୍ଦଣ୍ଡସ୍ୟ ଯଥା—

ଅବଧର ରୋଉଁଚଅ ଣିମ୍ମିଆଇଁ ମା ପୁଂସ ମେ ହୁଅଛୀଇଁ

ଧସଂଣମେତ୍ତୁମତ୍ତେହିଂ ଜେହିଂ ହୁଅଅଂ ଭୁହଣ ଣାଅମ୍

(ଅବସର ରୋଦତୁମେବ ନମିତେ

ମୋତ୍ପୁଂସସ୍ୟ ମେ ଦତ୍ତାଯିଣୀ ।

ଦର୍ଶନମାତ୍ରୋନ୍ମତ୍ତାଭ୍ୟାଂ

ଯାଭ୍ୟାଂ ହୃଦୟଂ ତବ ନ ଜ୍ଞାତମ୍ । ଇତିଚ୍ଛାୟା) ।

୧୮୯ । ଯଥା ବା—

"ମାପନ୍ଥଂ ରୁନ୍ଧୀତ ଅବେହି ବାଳଅ !

ଅହୋସି ଅହ୍ରୀଓ ।

ଅମ୍ହେଅ ଣିରଚ୍ଛାଓ ଶୁଣ୍ଣଘରଂ ରକ୍ଖିଦବ୍ବଂଣୋ ॥

---

୧୮୮ । ଉଦ୍ଦଣ୍ଡର ବ୍ୟଞ୍ଜକତା ଯଥା—(ଖଣ୍ଡିତା ନାୟିକାର ଅନୁନୟ-କାରୀ ଶଠନାୟକ ପ୍ରତି ଉକ୍ତି ।

ହେ ଶଠ ! ତୁମ୍ଭଙ୍କୁ ଦେଖିବାମାତ୍ରେ ମୋର ଯେଉଁ ନେତ୍ର ଦୁଇଟି, ତୁମ୍ଭର ହୃଦୟକୁ ନ ଜାଣି କେବଳ ଦର୍ଶନମାତ୍ରେ ଉନ୍ମତ୍ତ ହୋଇପଡ଼ିଲେ ମୋର ସେହି ଆଖି ଦୁଇଟିକୁ ତୁମ୍ଭେ (କପଟ ଅନୁନୟ କରିବା ଦ୍ୱାରା କ୍ରନ୍ଦନ ଅଧିକ ହେତୁ) ଅଧିକ ଫୁଲାଅ ନାହିଁ । ଅପସର ଯାଅ । ମୋ ଆଖି ଦୁଇଟି କାନ୍ଦିବାକୁ ହିଁ ଜନ୍ମ ହୋଇଛନ୍ତି । ମାତ୍ର କୌଣସି ଦର୍ଶନ ସୁଖ ଅନୁଭବ କରିବାକୁ ଜନ୍ମ ହୋଇ ନାହାନ୍ତି । (ଏଠାରେ ଅପସର ପଦରେ ଉଦ୍ଦଣ୍ଡ ଦ୍ୱାରା "ତୁମ୍ଭର ଅଶ୍ରୁନିବେଧ ବୃଥା ଅଟେ" ଏହି ବ୍ୟଙ୍ଗ୍ୟାର୍ଥ ପ୍ରକାଶ ପାଉଅଛି) ।

୧୮୯ । ଅଥବା :—ଆରେ ବାଳକ, ଗୁଳିଯାଅ, ବାଟ ରୋକ ନାହିଁ, ଆରେ, ତୁ ନିଷ୍କଳ୍ପ ଅଟୁ । ଆମର ଇଚ୍ଛା ନାହିଁ । ଆମର ଶୂନ୍ୟ ଘର ଜଗିବା କର୍ତ୍ତବ୍ୟ ଅଟେ ।

(ମା ପନ୍ଥାନଂ ରୁଧୋଃପେହ୍ଣ ବାଳକ, ଅହୋ ଅସ୍ୟ ହ୍ରୀକଃ । ବୟଂ ନରଚ୍ଛାଃ ଶୂନ୍ୟଗୃହଂ ରକ୍ଷିତବ୍ୟଂ ନଃ ଇତଚ୍ଛାୟା) ।

୧୯୦ । ସମ୍ବନ୍ଧସ୍ୟ ଯଥା—

ଅଣ୍ଣତ୍ତ ବଚ ବାଳଅ ! ଅହ୍ଣାଅନ୍ତ କିସମଲୋ ଏସିଏଅମ୍ । ହୋ ଜାଆଭୀରୁଆଣ ତୁହ୍ଣାଣସମ୍ବନ୍ଧୋ ଚିଅଣ ହୋଇ ।
(ଅନ୍ୟତ୍ର ବ୍ରଜବାଳକ ! ତୃଷ୍ଣାୟମାଣଃ କଥମାଲୋକୟ୍-ସ୍ୟେତତ୍, ଭୋ ଜାୟାଭୀରୁକାଣାଂ ଯୁଷ୍ମାକଂ ସମ୍ବନ୍ଧ ଏବ ନ ଭବତି । ଇତି ଛାୟା) ।

୧୯୧ । କୃତ "କ" ପ୍ରୟୋଗେଷୁ ପ୍ରାକୃତେଷୁ ତଦ୍ଧିତ ବିଷୟେ ବ୍ୟଞ୍ଜକତ୍ୱମାବେଦ୍ୟତ ଏବ ।

---

ଏଥିରେ ତୁ ଅପ୍ରୌଢ଼ ହେତୁ ଲୋକ ସମକ୍ଷରେ ରହସ୍ୟ ପ୍ରକାଶ କରୁଛୁ । ମୋର ଶୂନ୍ୟ ମନ୍ଦିର ସଙ୍କେତ ସ୍ଥାନ । ସେଠାକୁ ଆସି ମନୋରଥ ପୂରଣ କର । ଏହା ଧ୍ୱନ୍ୟମାନ ଅର୍ଥ । ତାହା "ଅପେହ୍ଣ" ତଦନ୍ତ ଦ୍ୱାରା ବ୍ୟଙ୍ଗ୍ୟ ହେଉଅଛି ।

୧୯୦ । ସମ୍ବନ୍ଧର ବ୍ୟଞ୍ଜକତା ଯଥା—

ହେ ବାଳକ ! ଅନ୍ୟତ୍ର ଯାଅ, ତୃଷ୍ଣାକୁଳ ହୋଇ କାହିଁକି ଏହାକୁ (ନିଜକୁ ଲକ୍ଷ୍ୟ କରି) ଚାହୁଁଛ ? ତୁମ୍ଭ ଭଳି ଭାର୍ଯ୍ୟା ଭୟାଳୁ (ଧର୍ମପତ୍ନୀକୁ ଡରି ଚଳୁଥିବା ଲୋକ) ମାନଙ୍କ ପକ୍ଷେ ଏ ସମ୍ବନ୍ଧ ଅସମ୍ଭବ । ଅର୍ଥାତ୍ ତୁମ୍ଭପରି କୁତ୍ସିତଲୋକେ ଅନ୍ୟ ପ୍ରଣୟିନୀ ସମ୍ଭୋଗ ପାଆନ୍ତି ନାହିଁ ।

୧୯୧ । ଏ ଶ୍ଳୋକରେ "ଜାୟା ଭୀରୁକ" ପଦରେ ଯେଉଁ ପ୍ରାକୃତ ଭାଷାର ତଦ୍ଧିତରେ ଅତ୍ୟନ୍ତ ଅବଜ୍ଞା ଅର୍ଥରେ "କ" ପ୍ରତ୍ୟୟ କରାଯାଇଛି, ତାହା ବ୍ୟଞ୍ଜକ । ଧର୍ମପତ୍ନୀର ଭ୍ରୂଭଙ୍ଗାଦିରେ ସେ ଶଙ୍କିତ, ପରକୀୟା ପ୍ରୀତି ତାଙ୍କର ସୁଦୁର୍ଲ୍ଲଭ । ଅତଏବ ସେ କୁତ୍ସିତ, ଏହା ଧ୍ୱନି ।

୧୯୨ । ସମାସାନାଞ୍ଚ ବୃତ୍ତ୍ୟୈାଚିତ୍ୟେନ ବିନିଯୋଜନେ ।

୧୯୩ । ନିପାତାନାଂ ବ୍ୟଞ୍ଜକତା ଯଥା—

"ଅୟମେକପଦେ ତୟା ବିୟୋଗଃ
ପ୍ରିୟୟୋପଗତଃ ସୁଦୁଃସହୋ ମେ ।
ନବବାରିଧରୋଦୟାଦହୋଭି-
ର୍ଭବିତବ୍ୟଂ ଚ ନିରାତପତ୍ୱରମ୍ୟୈଃ ॥

୧୯୪ । ଚତ୍ୟତ "ଚ" ଶବ୍ଦଃ ।

୧୯୫ । ଯଥା ବା—

ମୁହୁରଙ୍ଗୁଳିସଂବୃତାଧରୋଷ୍ଠଂ
ପ୍ରତିଷେଧାକ୍ଷରବିକ୍ଳବାଭିରାମମ୍ ।
ମୁଖମଂସବିବର୍ତ୍ତି ପକ୍ଷ୍ମଳାକ୍ଷ୍ୟାଃ,
କଥମପ୍ୟୁନ୍ନମିତଂ ନ ଚୁମ୍ବିତଂ ତୁ ॥

---

୧୯୨ । ବୃତ୍ତି ଅନୁସାରେ ପ୍ରୟୋଗ କରାଗଲେ ସମାସମାନେ ମଧ୍ୟ ବ୍ୟଞ୍ଜକ ହୁଅନ୍ତି ।

୧୯୩ । ନିପାତମାନଙ୍କର ବ୍ୟଞ୍ଜକତା ଯଥା—(ବିକ୍ରମୋର୍ବଶୀୟରେ) ସେହି ପ୍ରିୟା ଉର୍ବଶୀଙ୍କ ସହିତ ମୋର ଅକସ୍ମାତ୍ ଦୁଃସହ ବିରହ ଘଟିଗଲା । ନୂତନ ମେଘମାନଙ୍କର ଉଦୟ ହେତୁ (ବର୍ଷାକାଳ ହେତୁ) ଦିନମାନେ ଆତପହୀନ ହୋଇ ରମ୍ୟ ହେବେ । (ବିଚ୍ଛେଦ ପରେ ବର୍ଷାକାଳର ଉଦ୍ଦୀପକତା ଅତି ଅସହ୍ୟ) ।

୧୯୪ । ଏଠାରେ "ଚ" ଶବ୍ଦ (ନିପାତନ) ପ୍ରିୟା ବିଚ୍ଛେଦ ଓ ଦିବସ ରମ୍ୟତାକୁ ଏକାଧାରରେ ଅସହ୍ୟ ବୋଲି ବୁଝାଇବାରେ ବ୍ୟଞ୍ଜକ ହୋଇଛି ।

୧୯୫ । ଯଥା ବା—ଅଭିଜ୍ଞାନ-ଶାକୁନ୍ତଳ ନାଟକରେ ଦୁଷ୍ୟନ୍ତଙ୍କର ଅନୁତାପ—

୧୯୬ । ଅତ୍ର "ତ୍ରୁ" ଶବ୍ଦଃ ।

୧୯୭ । ନିପାତାନାଂ ପ୍ରସିଦ୍ଧମପୀହ ଦ୍ୟୋତକତ୍ୱଂ ରସାଦ୍ୟ-
ପେକ୍ଷୟୋକ୍ତମିତି ଦ୍ରଷ୍ଟବ୍ୟମ୍ ।

୧୯୮ । ଉପସର୍ଗାଣାଂ ବ୍ୟଞ୍ଜକତ୍ୱଂ ଯଥା—
"ନୀବାରାଃ ଶୁକଗର୍ଭକୋଟରମୁଖଭ୍ରଷ୍ଟାସ୍ତରୁଣାମଧଃ,
ପ୍ରସ୍ନିଗ୍ଧାଃ କ୍ୱଚିଦଙ୍ଗୁଦୀଫଳଭିଦଃ ସୂଚ୍ୟନ୍ତ ଏବୋପଲାଃ ॥

---

ପ୍ରିୟା ଶକୁନ୍ତଳା ବାରମ୍ବାର ଅଙ୍ଗୁଳି ଦ୍ୱାରା ତଳ ଓଷ୍ଠଟି ଆଚ୍ଛାଦନ କରି ବ୍ୟାକୁଳଭାବେ ମୁଖଟିକୁ ସ୍କନ୍ଧ ଆଡ଼କୁ ବୁଲାଇ ରଖି (ଲଜ୍ଜା ଓ ପାପ ଭୟରୁ) ବ୍ୟାକୁଳଭାବେ ପ୍ରତିଷେଧାକ୍ଷର ନାହିଁ ନାହିଁ ବୋଲି ଉଚ୍ଚାରଣ କରିବା ଦ୍ୱାରା ତାଙ୍କ ମୁଖଟି ବଡ଼ କମନୀୟ ହୋଇଥିଲା । ମୁଁ ପକ୍ଷ୍ମଳାକ୍ଷୀଙ୍କର ମୁଖଟିକୁ ଅତି କଷ୍ଟରେ (ଚୁମ୍ବନ ପାଇଁ) ଉପରକୁ ଟେକିଲି, ମାତ୍ର ଚୁମ୍ବନ କରି ପାରିଲି ନାହିଁ ।

୧୯୬ । ଏ ଶ୍ଳୋକରେ 'ତୁ' ଶବ୍ଦ (ନିପାତନ) ପଶ୍ଚାତ୍ତାପ ସୂଚକ ହୋଇ, ସେହି ଚୁମ୍ବନ ଲାଭ ମାତ୍ରରେ କୃତକୃତ୍ୟତା ସମ୍ପାଦିତ ହୋଇଥାନ୍ତା ବୋଲି ଧ୍ୱନିକୁ ପ୍ରକାଶ କରୁଅଛି ।

୧୯୭ । ବୈୟାକରଣମାନଙ୍କ ମତରେ ନିପାତନମାନେ ବାଚକ ନୁହନ୍ତି କିନ୍ତୁ ସେମାନେ ଦ୍ୟୋତକ (ବ୍ୟଞ୍ଜକ), ଏହା ପ୍ରସିଦ୍ଧ ହୋଇଥିଲେ ମଧ୍ୟ ଏଠାରେ ସେମାନଙ୍କର ପୁନର୍ବାର ବ୍ୟଞ୍ଜକତା ପ୍ରତିପାଦନ କରିବା ପୁନରୁକ୍ତ ନୁହେ, କାରଣ ସେମାନଙ୍କର ଅର୍ଥ ବ୍ୟଞ୍ଜକତା ପ୍ରସିଦ୍ଧ ଥିଲା, କିନ୍ତୁ ଏଠାରେ ରସାଦି ବ୍ୟଞ୍ଜକତା ଉକ୍ତ ହେଲା ।

୧୯୮ । ଉପସର୍ଗମାନଙ୍କର ବ୍ୟଞ୍ଜକତା ଯଥା—(ଅଭିଜ୍ଞାନ ଶାକୁନ୍ତଳ) ଦୁଷ୍ମନ୍ତଙ୍କର କଣ୍ୱାଶ୍ରମ ନିରୂପଣ—

ଗଛତଳମାନଙ୍କରେ ଶୁଆ ବସାକରି ରହୁଥିବା କୋରଡ଼ମାନଙ୍କରୁ ବାଜୁଙ୍ଗା (ନୀବାର) ପଡ଼ୁଛି, ଠାଏ ଠାଏ ଚିକ୍କଣ ପଥରଗୁଡ଼ା ପୁଇଁଗୁନ୍ଦିଆ ଫଳ (ଇଙ୍ଗୁଦୀ) ଛେଚା ହେବାର ସୂଚନା ଦେଉଅଛି । ମନୁଷ୍ୟମାନଙ୍କର

ବିଶ୍ୱାସୋପଗମାଦଭିନ୍ନଗତୟଃ ଶବ୍ଦଂ ସହନ୍ତେ ମୃଗା-
ସ୍ତୋୟାଧାରପଥାଶ୍ଚ ବଲ୍କଲଶିଖାନିଷ୍ୟନ୍ଦଲେଖାଙ୍କିତାଃ ॥

୧୯୯ । ମଦମୁଖରକପୋତମୁନ୍ମୟୂରଂ
ପ୍ରବିରଲବାମନ ବୃକ୍ଷସନ୍ନିବେଶମ୍ ।
ବନମିଦମବଗାହମାନ-ଭୀମଂ
ବ୍ୟସନମିବୋପରି ଦାରୁଣତ୍ୱମେତି ॥

୨୦୦ । ଇତ୍ୟାଦୌ ପ୍ରଶବ୍ଦସ୍ୟ ଔପଚ୍ଛନ୍ଦସିକସ୍ୟ ଚ ବ୍ୟଞ୍ଜକତ୍ୱ-
ମଧିକଂ ଦ୍ୟୋତତେ ।

୨୦୧ । ଦ୍ୱିତ୍ରାଣାଂ ଚୋପସର୍ଗାଣା 'ମେକତ୍ରପଦେ ଯଃ ପ୍ରୟୋଗଃ'
ସୋଽପି ରସବ୍ୟକ୍ତ୍ୟନୁଗୁଣତୟୈବ ନିର୍ଦ୍ଦୋଷଃ ।

---

ବିଶ୍ୱାସ ଲାଭ କରିଥିବାରୁ ମୃଗମାନେ ଶବ୍ଦ ସହୁଛନ୍ତି, (ରଥଧ୍ୱନିପ୍ରଭୃତିରେ ଅତର୍କିହୋଇ ପଳାଇ ଯାଉ ନାହାନ୍ତି) ଏବଂ ଜଳାଶୟ -ମାର୍ଗଗୁଡ଼ିକରେ ବକଳ ଓ କଣ୍ଠାରୁ ଟୋପା ଟୋପା ପାଣି ନିଗିଡ଼ି ପଡ଼ିବାର ଚିହ୍ନ ଦେଖା-ଯାଉଛି । ଅତଏବ ଏହିସବୁ କାରଣରୁ ଏଠାରେ ଗୋଟିଏ ଆଶ୍ରମ ରହିଥିବା ଅନୁମାନ କରାଯାଉଛି । (ଏହି ଶ୍ଳୋକରେ 'ପ୍ର' ଶବ୍ଦ (ନିପାତନ) ପ୍ରସ୍ତର-ମାନଙ୍କର ଅତ୍ୟନ୍ତ ସ୍ନିଗ୍ଧତା ଓ ଇଙ୍ଗୁଦୀଫଳର ଅତି ସରସତାକୁ ବୁଝାଇ ପରମ୍ପରାରେ ଶାନ୍ତ ରସକୁ ସୂଚାଉଛି) ।

୧୯୯ । ଆନନ୍ଦରେ କଳରବ କରୁଥିବା କପୋତମାନଙ୍କରେ ଯୁକ୍ତ, ଏବଂ ଆନନ୍ଦରେ ନୃତ୍ୟ କରୁଥିବା ମୟୂର ଯୁକ୍ତ, ଏହି କେତେକ ଗ୍ରୋଟି ଗଛଥିବା ବନଟି ପ୍ରବେଶ ପାଇଁ ଭୟଙ୍କର ହୋଇ ବ୍ୟସନପରି ପରିଣାମ ଦାରୁଣ ହୋଇଅଛି ।

୨୦୦ । ପ୍ରଥମ ଶ୍ଳୋକରେ ପ୍ର ଉପସର୍ଗ ଓ ଦ୍ୱିତୀୟ ଶ୍ଳୋକରେ ଔପଚ୍ଛନ୍ଦସିକ ବୃତ୍ତ, ବ୍ୟଞ୍ଜକ ହୋଇ ଅଧିକ ଶୋଭାଧାୟକ ହୋଇଛନ୍ତି ।

୨୦୧ । ଯେଉଁଠି ଏକବା ଦୁଇ ତିନୋଟି ଉପସର୍ଗର ପ୍ରୟୋଗ ହୋଇଥାଏ, ତାହା ମଧ୍ୟ ରସାନୁଗୁଣ ହୋଇଥିଲେ ନିର୍ଦ୍ଦୋଷ ପ୍ରୟୋଗ ବୋଲି ଜାଣିବାକୁ ହେବ ।

୨୦୨ । ଯଥା—"ପ୍ରଭ୍ରଶ୍ୟଦୁତ୍ତରୀୟତ୍ୱିଷି ତମସି ସମୁଦ୍‌ବୀକ୍ଷ୍ୟ ବୀତାବୃତୀନ୍ ଦ୍ରାକ୍" ଇତ୍ୟାଦୌ ।

୨୦୩ । ଯଥା ବା—"ମନୁଷ୍ୟବୃତ୍ତ୍ୟା ସମୁପାଚରନ୍ତମ୍"

---

୨୦୨ । ଉଦାହରଣ ଯଥା—(ସୂର୍ଯ୍ୟଶତକ ୪ର୍ଥ ଶ୍ଳୋକ) ।

ସମ୍ପୂର୍ଣ୍ଣ ଶ୍ଳୋକ

ପ୍ରଭ୍ରଶ୍ୟଦୁତ୍ତରୀୟତ୍ୱିଷି ତମସି ସମୁଦ୍‌ବୀକ୍ଷ୍ୟ ବୀତାବୃତୀନ୍ ଦ୍ରାକ୍
ଜନ୍ତୂଂସ୍ତନ୍ତୂନ୍ ଯଥା ଯାନତନୁ ବିତନୁତେ ତିଗ୍ମରୋଚିର୍ମରୀଚୀନ୍ ।
ତେ ସାନ୍ଦ୍ରୀଭୂୟ ସଦ୍ୟଃ କ୍ରମବିଶଦ-ଦଶାଶା-ଦଶାଳୀ-ବିଶାଳଂ
ଶଶ୍ୱତ୍ ସମ୍ପାଦୟନ୍ତୋଽମ୍ବରମମଳମଳଂ ମଙ୍ଗଳଂ ବୋ ଦିଶନ୍ତୁ ॥

ଅର୍ଥ :—ସୂର୍ଯ୍ୟୋଦୟ ବର୍ଣ୍ଣନ :—ଅନ୍ଧକାର, ଯିଏ କି ଉତ୍ତରୀୟ ପରି ଜନ୍ତୁମାନଙ୍କୁ ଆବୃତ କରିଥିଲା । ପ୍ରତ୍ୟୁଷରୁ ଉକ୍ତ ଆଚ୍ଛାଦନବସ୍ତ୍ର (ଦୋପଟ୍ଟା) ସଦୃଶ ଅନ୍ଧକାର ଗଳିତ ହୁଅନ୍ତେ ଜନ୍ତୁମାନଙ୍କୁ ହଠାତ୍ ଆବରଣଶୂନ୍ୟ ହେବାର ଦେଖି ଭଗବାନ୍ ସୂର୍ଯ୍ୟଦେବ, ଅତି ବିସ୍ତୃତ ତନ୍ତୁସ୍ୱରୂପ ହୋଇଥିବା ନିଜର କିରଣମାନଙ୍କୁ ବିସ୍ତାର କଲେ । ସେହି କିରଣମାନେ ଘନୀଭୂତ ହୋଇ, କ୍ରମଶଃ ପରିସ୍ଫୁଟ ହୋଇଥିବା ଦଶଦିଗରୂପୀ (ଲୁଗାର) ଦଶୀମାନଙ୍କ ଦ୍ୱାରା ବିଶାଳ ତଥା ସୁନିର୍ମଳ ଓ ପ୍ରଶସ୍ତ ଅମ୍ବର (ବସ୍ତ୍ର)କୁ ନିତ୍ୟ ସମ୍ପାଦନ କରି (ଅନ୍ୟପକ୍ଷେ) କିରଣମାନେ ଅମ୍ବର (ଆକାଶକୁ) ଉତ୍ତମଭାବେ ନିତ୍ୟ ନିର୍ମଳ କରି, ଆପଣମାନଙ୍କର ମଙ୍ଗଳ ବିଧାନ କରନ୍ତୁ ।

ଏ ପଦ୍ୟରେ "ସମୁଦ୍‌ବୀକ୍ଷ୍ୟ ପଦରେ ସମ୍, ଉତ୍, ବି, ଉପସର୍ଗଗୁଡ଼ିକ ଯଥାକ୍ରମେ "ସମ୍ୟକ୍‌ଭାବେ, ଉଚ୍ଚରୁ ବିଶେଷଭାବେ ; ଏହି ଅର୍ଥକୁ ବୁଝାଇ ଭଗବାନ୍ ସୂର୍ଯ୍ୟ ଦେବଙ୍କର ଲୋକମାନଙ୍କଠାରେ ଅନୁକମ୍ପାତିଶଯ୍ୟ-ରୂପବ୍ୟଙ୍ଗ୍ୟ ଅର୍ଥର ବ୍ୟଞ୍ଜକ ହେଉଅଛନ୍ତି ।

୨୦୩ । ଉପସର୍ଗମାନଙ୍କ ବ୍ୟଞ୍ଜକତାର ଅନ୍ୟ ଉଦାହରଣ ଯଥା :—

ସମ୍ପୂର୍ଣ୍ଣ ଶ୍ଳୋକ :— ମନୁଷ୍ୟ ବୃତ୍ତ୍ୟା ସମୁପାଚରନ୍ତଂ
ସ୍ୱବୁଦ୍ଧିସାମାନ୍ୟ—କୃତାନୁମାନାଃ ॥
ଯୋଗୀଶ୍ୱରୈ ରପ୍ୟସୁବୋଧମୀଶଂ
ତ୍ୱାଂ ବୋଦ୍ଧୁମିଚ୍ଛନ୍ତ୍ୟବୁଧାଃ କୁତର୍କୈଃ ॥

୨୦୪ । ନିପାତାନାମପି ତଥୈବ ।
ଯଥା—"ଅହୋ ବତାସି ସ୍ପୃହଣୀୟବୀର୍ଯ୍ୟଃ"
ଇତ୍ୟାଦୌ ।

---

ଅର୍ଥ :—(ଭକ୍ତ ଭଗବାନଙ୍କୁ କହୁଅଛି)—

ହେ ପ୍ରଭୋ ! ଆପଣ ପ୍ରଧାନ ପ୍ରଧାନ ଯୋଗୀମାନଙ୍କର ଅବୋଧ ହୋଇଥିଲେ ମଧ୍ୟ ସାଧାରଣ ମନୁଷ୍ୟପରି ଆଚରଣ କରୁଥିବାରୁ ମୂର୍ଖ ଲୋକମାନେ ନିଜ ନିଜ ବୁଦ୍ଧି ଅନୁସାରେ ଦୋଷଦୁଷ୍ଟ ଅନୁମାନ କରି ଆପଣଙ୍କୁ ଜାଣିବାକୁ ଇଚ୍ଛା କରୁଅଛନ୍ତି ।

ଦୋଷଦୁଷ୍ଟ ଅନୁମାନ ଯଥା—ହ୍ରଦରେ ବହ୍ନି ଅଛି, ବାଷ୍ପ ଦେଖାଯାଉଥିବାରୁ ।

ଏ ଶ୍ଳୋକରେ "ସମୁପାଚରନ୍ତଂ" ପ୍ରଦରେ ସମ୍, ଉପ, ଆ, ଉପସର୍ଗଗୁଡ଼ିକ ଯଥାକ୍ରମେ ସମ୍ୟଗ୍‌ଭାବେ, ଉପାଂଶୁରୂପେ ଓ ସମନ୍ତାତ୍ (ସର୍ବଦା) ଅର୍ଥକୁ ବୁଝାଇ "ଭଗବାନ୍ ନିଜର କୌଣସି ବଡ଼ିମା ପ୍ରକାଶ ନ କରି ମୌନକର୍ମୀରୂପେ ଉତ୍ତମଭାବେ ସର୍ବଦା ବିଚରଣ କରୁଛନ୍ତି ଏହି ବାଚ୍ୟାର୍ଥକୁ ବୁଝାଉଛନ୍ତି । ଏଥିରେ, ଭଗବାନ୍ ଅନ୍ୟର ଅଗ୍ରାହ୍ୟ ହେଲେ ମଧ୍ୟ ଲୋକାନୁଗ୍ରହ ଇଚ୍ଛାରେ ବିଚରଣ କରୁଛନ୍ତି, ସୁତରାଂ "ତାଙ୍କର ଲୋକାନୁଗ୍ରହାଭିଳାଷ ଅଛି", ଏହା ଧ୍ୱନି ।

୨୦୪ । ନିପାତମାନେ ମଧ୍ୟ ସେହିପରି ବ୍ୟଞ୍ଜକ ହୁଅନ୍ତି ଯଥା—(ସମ୍ପୂର୍ଣ୍ଣ ଶ୍ଳୋକ) କୁମାରସମ୍ଭବ ୩ୟ ସର୍ଗ—

"ସୁରାଃ ସମଭ୍ୟର୍ଥୟିତାର ଏତେ, କାର୍ଯ୍ୟଂ ତ୍ରୟାଣାମପିବିଷ୍ଟପାନାମ୍ ।
ଚାପେନ ତେ କର୍ମ ନଚାତିହିଂସ୍ରଂ । ଅହୋବତାସି ସ୍ପୃହଣୀୟବୀର୍ଯ୍ୟଃ

ଅର୍ଥ—(ଇନ୍ଦ୍ର କାମଦେବଙ୍କୁ କହୁଛନ୍ତି)—ହେ କନ୍ଦର୍ପ ! ଏହିସବୁ ଦେବତା ତୁମ୍ଭଙ୍କୁ ପ୍ରାର୍ଥନା କରୁଛନ୍ତି । କାର୍ଯ୍ୟଟି ମଧ୍ୟ ତିନିଲୋକର କାର୍ଯ୍ୟ । ତୁମ୍ଭ ଧନୁକୁ ମଧ୍ୟ ଏହା ବେଶୀ ଭିଡ଼ କାମ ନୁହେ । ଅହୋ ? ତୁମ୍ଭେ କିଭଳି ପ୍ରଶସ୍ତ ଶକ୍ତିଶାଳୀ ?

ଏ ଶ୍ଳୋକରେ "ଅହୋ" "ବତ" ଏହି ନିପାତ ଦୁଇଟି ଅଦ୍ଭୁତରସର ବ୍ୟଞ୍ଜକ ।

୨୦୫ । ଯଥା ବା—

"ଯେ ଜୀବନ୍ତି ନ ମାନ୍ତି ଯେ ସ୍ମବପୁଷି
ପ୍ରୀତ୍ୟା ପ୍ରନୃତ୍ୟନ୍ତି ଯେ
ପ୍ରସ୍ୟନ୍ଦପ୍ରମଦାଶ୍ରବଃ ପୁଲକିତା
ଦୃଷ୍ଟେ ଗୁଣିନ୍ୟୂର୍ଜିତେ ।
ହା ଧିକ୍ କଷ୍ଟମହୋ ! କ୍ୱ ଯାମି ଶରଣଂ
ତେଷାଂ ଜନାନାଂ କୃତେ;
ନୀତାନାଂ ପ୍ରଳୟଂ ଶଠେନ ବିଧିନା
ସାଧୁଦ୍ୱିଷଃ ପୁଷ୍ୟତା । ଇତ୍ୟାଦୌ ।"

୨୦୬ । ପଦପୌନରୁକ୍ତ୍ୟଂ ଚ ବ୍ୟଞ୍ଜକତ୍ୱାପେକ୍ଷୟୈବ କଦାଚିତ୍ ପ୍ରଯୁଜ୍ୟମାନଂ ଶୋଭାମାବହତି । ଯଥା—

---

୨୦୫ । ଅଥବା—(ସଜ୍ଜନମାନଙ୍କର ଅବନତି ଓ ଦୁର୍ଜନମାନଙ୍କର ଉନ୍ନତିରେ ଖିନ୍ନ ହୋଇଥିବା ଲୋକର ଉକ୍ତି)—

ଗୁଣବନ୍ତ ବିଶିଷ୍ଟ ଲୋକମାନଙ୍କୁ ଦେଖି ଯେଉଁମାନେ ନିଜ ଜୀବନକୁ ସାର୍ଥକ ମନେକରନ୍ତି ଓ ଆନନ୍ଦରେ ଫୁଲେଇ ହୋଇ ନିଜ ଦେହରେ ସମ୍ଭାଇ ହୁଅନ୍ତି ନାହିଁ, ଏବଂ ପ୍ରେମରେ ନାଚିଉଠନ୍ତି, ପୁନଶ୍ଚ ରୋମାଞ୍ଚିତ ହୋଇ ଆନନ୍ଦାଶ୍ରୁ ବର୍ଷଣ କରନ୍ତି; ଶଠ ବିଧାତା ସେହି ସଜ୍ଜନମାନଙ୍କୁ ବିନାଶ କରି ସାଧୁବିଦ୍ୱେଷୀ ଦୁର୍ଜନମାନଙ୍କୁ ସମୃଦ୍ଧ କରୁଥିବା ବଡ଼ ଦୁଃଖର କଥା, (ଏ ଅବସ୍ଥାରେ) ମୁଁ କେଉଁଠାରେ ଶରଣ ପ୍ରାପ୍ତ ହେବି ? ଯେଣୁ ଏହି ଅନ୍ୟାୟୀ ବିଧାତାର ରାଜ୍ୟରେ ରହିବାକୁ ଇଚ୍ଛା ହେଉ ନାହିଁ । ଏଠାରେ ହା, ଧିକ୍, ନିପାତ ଦୁଇଟି ବ୍ୟଞ୍ଜକ ।

୨୦୬ । କୌଣସି କୌଣସି ସ୍ଥଳରେ ବ୍ୟଞ୍ଜକଭାବେ ପ୍ରୟୋଗ କରାଯାଇଥିଲେ ପଦମାନଙ୍କର ପୁନରୁକ୍ତି ମଧ୍ୟ ଶୋଭାଧାୟକ ହୁଏ । ଯଥା—

"ଯଦ୍‌ବଞ୍ଚନାହିତମତ୍ତି ବହୁଚଟୁଗର୍ଭଂ
କାର୍ଯ୍ୟୋନ୍ମୁଖଃ ଖଳଜନଃ କୃତକଂ ବ୍ରବୀତି ।
ତତ୍ ସାଧବୋ ନ ନ ବିଦନ୍ତି ବଦନ୍ତି କିନ୍ତୁ
କର୍ତ୍ତୁଂ ବୃଥା ପ୍ରଣୟମସ୍ୟ ନ ପାରୟନ୍ତି ।" ଇତ୍ୟାଦୌ ।

୨୦୭ । କାଲସ୍ୟ ବ୍ୟଞ୍ଜକତ୍ୱଂ ଯଥା—
ସମବିସମଣିବ୍ୱିସେସା ସମନ୍ତଓ ମନ୍ଦମନ୍ଦସଂଆରା ।
ଅଇରା ହୋଇନ୍ତି ପହା ମଣୋରହାଂ ପି ଦୁଲ୍ଲଂଘା ॥
(ସମବିଷମନିର୍ବିଶେଷାଃ ସମନ୍ତତୋ ମନ୍ଦ ମନ୍ଦ ସଞ୍ଚାରାଃ
ଅଚିରାତ୍ ଭବିଷ୍ୟନ୍ତି ପନ୍ଥାନୋ ମନୋରଥାନାମପି
ଦୁର୍ଲଂଘାଃ ।) ଇତିଚ୍ଛାୟା ।

---

"ଖଳ ଲୋକମାନେ ପ୍ରତାରକଭାବେ ନିଜର କାର୍ଯ୍ୟସିଦ୍ଧି ପାଇଁ ଯାହାକି ବହୁ ଖୋସାମତିଆ (ଚାଟୁ) କଥା କହନ୍ତି, ସାଧୁଲୋକମାନେ ତାହା ଯେ ଜାଣି ନ ପାରନ୍ତି ଏହା ନୁହେ; ଜାଣନ୍ତି, କିନ୍ତୁ ଏହି ଖଳ-ଲୋକର ବାହ୍ୟ ପ୍ରଣୟକୁ ବ୍ୟର୍ଥ (ବୃଥା) କରି ପାରନ୍ତି ନାହିଁ ।

ଖଳର କପଟକୁ ଜାଣିଲେ ମଧ୍ୟ ସଜ୍ଜନମାନେ ନିଜର ଉଦାରତାରେ ଭୁଲିଯାନ୍ତି, କିନ୍ତୁ ସେମାନେ ଅଜ୍ଞ ନୁହନ୍ତି । ଏହି ବ୍ୟଙ୍ଗ୍ୟ ଅର୍ଥଟିକୁ ଦ୍ୱିରୁକ୍ତ ବିଦନ୍ତି ପଦ ବୁଝାଉଅଛି ।

୨୦୭ । କାଳର ବ୍ୟଞ୍ଜକତା ଯଥା—

ଅଳ୍ପ ସମୟ ମଧ୍ୟରେ ଗୃହଆଡ଼େ ଖାଲଢିପସବୁ ବାଟରେ (କାଦୁଅ ହେତୁ) ପଥିକମାନେ ଧୀରେ ଧୀରେ ଚାଲିବେ । ସେ ବାଟସବୁ ମନୋରଥର ମଧ୍ୟ ଦୁର୍ଲଂଘନୀୟ ହେବ । (ଗୋଡ଼କଥା ବା କଅଣ କହିବା ?)

ଭାବାର୍ଥ - ବର୍ଷାଦିନେ ବାର୍ତ୍ତାହରମାନଙ୍କର ମଧ୍ୟ ଯିବା ଆସିବା ଅସମ୍ଭବ ହେଉଥିବାରୁ ବାର୍ତ୍ତାପ୍ରାପ୍ତି ପ୍ରଭୃତିରେ ମଧ୍ୟ ସମ୍ଭାବନା ନ ଥାଏ । ତେଣୁ ବର୍ଷାକାଳ ପଡ଼ିଆସାନ୍ତେ ବିଦେଶଯାତ୍ରା ବିଧେୟ ନୁହେ ।

୨୦୮ । ଅତ୍ର "ଅଶଗତ୍ ଭବିଷ୍ୟନ୍ତି ପନ୍ଥାନଃ" ଇତ୍ୟତ୍ର ଭବିଷ୍ୟନ୍ତୀତ୍ୟସ୍ମିନ୍ ପଦେ ପ୍ରତ୍ୟୟଃ କାଲବିଶେଷାଭିଧାୟୀ ରସପରିପୋଷହେତୁଃ ପ୍ରକାଶତେ । ଅୟଂ ହି ଗାଥାର୍ଥଃ ପ୍ରବାସବିପ୍ରଲମ୍ଭଶୃଙ୍ଗାରବିଭାବତୟା ବିଭାବ୍ୟମାନୋ ରସବାନ୍ ।

୨୦୯ । ଯଥାତ୍ର ପ୍ରତ୍ୟୟାଂଶୋ ବ୍ୟଞ୍ଜକଃ, ତଥା କ୍ୱଚିତ ପ୍ରକୃତ୍ୟଂଶୋଽପି ଦୃଶ୍ୟତେ ଯଥା—

"ତଦ୍‌ଗେହଂ ନତଭିତ୍ତି, ମନ୍ଦିରମିଦଂ
ଲବ୍ଧାବଗାହଂ ଦିବଃ
ସା ଧେନୁର୍ଜରତୀ, ଚରନ୍ତି କରିଣା-
ମେତା ଘନାଭାଘଣ୍ଟାଃ ।
ସ କ୍ଷୁଦ୍ରୋ ମୁସଲଧ୍ୱନିଃ, କଲମିଦଂ
ସଙ୍ଗୀତକଂ ଯୋଷିତା-
ମାଶ୍ଚର୍ଯ୍ୟଂ ଦିବସୈ ର୍ଦ୍ୱିଜୋଽୟ
'ମିୟତୀଂ ଭୂମିଂ ସମାରୋପିତଃ ।

---

୨୦୮ । ଏ ଶ୍ଳୋକରେ "ଭବିଷ୍ୟନ୍ତି" ପଦରେ ତିଙ୍ ପ୍ରତ୍ୟୟ ଭବିଷ୍ୟତ୍ କାଳକୁ ଅଭିଧାନ କରି ରସପରିପୋଷକ ହୋଇଅଛି । ଏ ଶ୍ଳୋକର ଅର୍ଥଟି ପ୍ରବାସ ବିପ୍ରଲମ୍ଭ ଶୃଙ୍ଗାରର ଉଦ୍ଦୀପକ ହୋଇ ରସବନ୍ତ ହୋଇଅଛି ।

୨୦୯ । ଉକ୍ତ "ସମବିସମ" ଶ୍ଳୋକରେ ପ୍ରତ୍ୟୟ ଅଂଶଟି ଯେପରି ବ୍ୟଞ୍ଜକ ହୋଇଅଛି, ସେହିପରି କୌଣସି କୌଣସି ସ୍ଥଳରେ ପ୍ରକୃତି ଅଂଶ ମଧ୍ୟ ବ୍ୟଞ୍ଜକ ହୋଇ ରହିଅଛି । ଯଥା—

(ଦରିଦ୍ର ସୁଦାମାଙ୍କର ଅବସ୍ଥା ପରିବର୍ତ୍ତନ ଦେଖି କେହି ଦ୍ରଷ୍ଟା କହୁଛନ୍ତି) ସେ କାନ୍ଥ ଆବଜା ଘର ଏ ଗଗନଚୁମ୍ବି (ଅଦ୍ଭୁତ) ପ୍ରାସାଦ ? !

୨୧୦ । ଅତ୍ର ଶ୍ଳୋକେ "ଦିବସୈରିତ୍ୟେତସ୍ମିନ୍ ପଦେ ପ୍ରକୃତ୍ୟଂଶୋଽପି ଦ୍ୟୋତକଃ ।"

୨୧୧ । ସର୍ବନାମ୍ନାଂ ଚ ବ୍ୟଞ୍ଜକତ୍ୱଂ ଯଥାତ୍ରୈବାନନ୍ତ- ରୋକ୍ତେଶ୍ଳୋକେ ।

୨୧୨ । ଅତ୍ ସର୍ବନାମ୍ନାମେବ ବ୍ୟଞ୍ଜକତ୍ୱଂ ହୃଦି ବ୍ୟବସ୍ଥାପ୍ୟ କବିନା କ୍ୱେତ୍ୟାଦିଶବ୍ଦପ୍ରୟୋଗୋ ନ କୃତଃ ।

୨୧୩ । ଅନୟା ଦିଶା ସହୃଦୟୈରନ୍ୟେଽପି ବ୍ୟଞ୍ଜକବିଶେଷାଃ ସ୍ୱୟମୁତ୍ପ୍ରେକ୍ଷଣୀୟାଃ । ଏତଚ୍ଚ ସର୍ବଂ ପଦବାକ୍ୟ- ରଚନାଦ୍ୟୋତନୋକ୍ତ୍ୟୈବ ଗତାର୍ଥମପି ବୈଚିତ୍ର୍ୟେଣ ବ୍ୟୁତ୍ପତ୍ତୟେ ପୁନରୁକ୍ତମ୍ ॥

---

ସେ ବୁଢ଼ୀ ଗାଈ ମେଢଖଣ୍ଡ ପରି ଏ ହାତୀପଲ ଚରୁଛନ୍ତି ? ! ସେ ଘ୍ରୋଟ ମୁସଳ ଧ୍ୱନି (ଢିଙ୍କିଶବ୍ଦ ; !) ସ୍ତ୍ରୀମାନଙ୍କର ଏ ସଙ୍ଗୀତ ଧ୍ୱନି ! !

ଆଶ୍ଚର୍ଯ୍ୟର କଥା, ଅଳ୍ପ କେତେଟା ଦିନରେ ବ୍ରାହ୍ମଣ ଏତେ ଉନ୍ନତ କଲା ?

୨୧୦ । ଏ ଶ୍ଳୋକରେ "ଦିବସୈଃ" ପଦରେ ପ୍ରକୃତ ଅଂଶ (ଦିବସ ଶବ୍ଦ) ବ୍ୟଞ୍ଜକ ହୋଇଅଛି ।

୨୧୧ । ସର୍ବନାମମାନେ ମଧ୍ୟ ବ୍ୟଞ୍ଜକ ହୁଅନ୍ତି ଯଥା—ଉକ୍ତ "ତଦ୍‌ଗେହଂ" ଶ୍ଳୋକରେ 'ତତ୍' ଇଦଂପ୍ରଭୃତି ସର୍ବନାମଶବ୍ଦ ବିଲକ୍ଷଣସ୍ମରଣ ଓ ବିଲକ୍ଷଣ ଅନୁଭବକୁ ସୂଚାଉ ଅଛନ୍ତି ।

୨୧୨ । ଏହି ଶ୍ଳୋକରେ ସର୍ବନାମମାନେ ବ୍ୟଞ୍ଜକ ହେଉଛନ୍ତି ବୋଲି ମନରେ ଭାବି, କବି "କ୍ୱାକାର୍ଯ୍ୟଂ ଶଶଲକ୍ଷ୍ମଣଃ କ୍ୱ ଚ କୁଳଂ" ଇତ୍ୟାଦି ଶ୍ଳୋକ ପରି କ୍ୱପ୍ରଭୃତି ଶବ୍ଦ ପ୍ରୟୋଗ କରି ସେ ଖଣ୍ଡିଆଘର କେଉଁଠି ? ଏ ମନ୍ଦିର କେଉଁଠି ? ଏପରି ଲେଖି ନାହାନ୍ତି ।

୨୧୩ । ସହୃଦୟମାନେ ଏହି ରୀତିରେ ସୁପ୍ ତିଙ୍, ନିପାତ ପ୍ରଭୃତି ଭିନ୍ନ ଅନ୍ୟବ୍ୟଞ୍ଜକମାନଙ୍କୁ ମଧ୍ୟ କଳ୍ପନା କରିବେ । ପୂର୍ବୋକ୍ତ ପଦ, ବାକ୍ୟ

୨୧୪ । ନନୁ ଗୁର୍ଥସାମର୍ଥ୍ୟାକ୍ଷେପ୍ୟା ରସାଦୟ ଇତ୍ୟୁକ୍ତମ୍ ।
ତଥାଚ ସୁବାଦୀନାଂ ବ୍ୟଞ୍ଜକତ୍ୱକଥନମନନ୍ୱିତମେବ ।

୨୧୫ । ଉକ୍ତମତ୍ର ପଦାନାଂ ବ୍ୟଞ୍ଜକତ୍ୱୋକ୍ତ୍ୟବସରେ ॥

୨୧୬ । କ୍ୱଂଗୁର୍ଥବିଶେଷାକ୍ଷେପ୍ୟତ୍ୱେଽପି ରସାଦୀନାଂ ତେଷା-
ମର୍ଥବିଶେଷାଣାଂ ବ୍ୟଞ୍ଜକଶବ୍ଦାବିନାଭାବିତ୍ୱାତ୍ ଯଥା-
ପ୍ରଦର୍ଶିତଂ ବ୍ୟଞ୍ଜକସ୍ୱରୂପପରିଜ୍ଞାନଂ ବିଭଜ୍ୟୋପ-
ଯୁଜ୍ୟତ ଏବ ।

---

ଓ ରଚନାର ବ୍ୟଞ୍ଜକତାରେ ଏହି ସୁପ୍ ତିଙ୍ ପ୍ରଭୃତି ଗତାର୍ଥ ହେଉଥିଲେ ସୁଦ୍ଧା ଉତ୍ତମରୂପେ ବୁଝାଇବା ପାଇଁ ପୁନର୍ବାର କୁହାଗଲା ।

୨୧୪ । ପ୍ରଶ୍ନ :—ରସାଦିମାନେ ଅର୍ଥର ସାମର୍ଥ୍ୟରେ ଆକ୍ଷିପ୍ତ ହୁଅନ୍ତି ବୋଲି କୁହାଯାଇଛି । ସୁତରାଂ ସୁପ୍ ତିଙ୍ ପ୍ରଭୃତିଙ୍କର ବ୍ୟଞ୍ଜକତା ଅସଙ୍ଗତ । (କାରଣ ବୈୟାକରଣଙ୍କ ମତରେ ସୁବାଦିମାନେ ତ ଅର୍ଥପ୍ରତିପାଦକ ନୁହନ୍ତି ତେବେ ସେମାନେ ଅର୍ଥ ସାମର୍ଥ୍ୟରୁ ଆକ୍ଷିପ୍ତ ରସାଦିଙ୍କୁ କିପରି ବୁଝାଇବେ ? ଏଣୁ ଅସଙ୍ଗତ ।)

୨୧୫ । ଉତ୍ତର :—ପଦମାନଙ୍କର ବ୍ୟଞ୍ଜକତା ପ୍ରତିପାଦନ କରିବା ସମୟରେ ଏହା କୁହାଯାଇଅଛି । ଅର୍ଥାତ୍ ବାକ୍ୟ ଶକ୍ତିବାଦୀମାନଙ୍କ ମତରେ ପଦମାନେ ସ୍ୱତନ୍ତ୍ରଭାବେ ବ୍ୟଞ୍ଜକ ହୋଇ ନ ପାରନ୍ତି ବୋଲି ପ୍ରଶ୍ନ ଉଠିଥିଲା, ସେହି ପ୍ରଶ୍ନର ଯେଉଁ ରୀତିରେ ସମାଧାନ କରାଯାଇଛି, ଏଠାରେ ମଧ୍ୟ ସେହି ରୀତିରେ ସୁବାଦିମାନଙ୍କର ବ୍ୟଞ୍ଜକତା ପ୍ରତିପାଦନ କରିବାକୁ ହେବ ।

୨୧୬ । ରସାଦିମାନେ ଅର୍ଥବିଶେଷ (ବିଭାବାଦି) ଦ୍ୱାରା ଆକ୍ଷିପ୍ତ ହେଉଥିଲେ ମଧ୍ୟ ଉକ୍ତ ଅର୍ଥବିଶେଷ ଓ ବ୍ୟଞ୍ଜକ ଶବ୍ଦମାନଙ୍କ ମଧ୍ୟରେ ଅବିନାଭାବ ସମ୍ବନ୍ଧ ରହିଥିବାରୁ ଶବ୍ଦ ଓ ଅର୍ଥ ଉଭୟ ସ୍ୱତନ୍ତ୍ରଭାବେ (ବିଭଜ୍ୟ) ବ୍ୟଞ୍ଜକ ହେବା ସଙ୍ଗତ ।

୨୧୭ । ଶବ୍ଦବିଶେଷାଣାଂ ତତ୍ରାନ୍ୟତ୍ର ଚ ଗୁରୁତ୍ୱଂ ଯଦ୍ ବିଭାଗେନୋପଦର୍ଶିତମ୍, ତଦପି ତେଷାଂ ବ୍ୟଞ୍ଜକତ୍ୱେ ନୈବାବସ୍ଥିତମିତ୍ୟବଗନ୍ତବ୍ୟମ୍ ।

୨୧୮ । ଯତାପି ନ ତତ୍ ପ୍ରତିଭାସତେ, ତତ୍ରାପି ବ୍ୟଞ୍ଜକେ ରଚନାନ୍ତରେ ଯଦ୍ ଦୃଷ୍ଟଂ ସୌଷ୍ଠବଂ ତେଷାଂ ପ୍ରବାହ-ପତିତାନାଂ ତଦେବାଭ୍ୟାସାଦପୋଦ୍ଧୃତାନାମପ୍ୟବ-ଭାସତ ଇତ୍ୟବସ୍ଥାତବ୍ୟମ୍ ।

---

୨୧୭ । ପଦମାନଙ୍କର ବ୍ୟଞ୍ଜକତା ଉକ୍ତ ସ୍ଥଳରେ (ତଦ) ଓ ଅନ୍ୟତ୍ର (ଭାମହଗ୍ରନ୍ଥରେ) ମଧ୍ୟ ଶବ୍ଦବିଶେଷମାନଙ୍କର ବିଭାଗକ୍ରମେ ଯେଉଁ ଗୁରୁତା ପ୍ରଦର୍ଶିତ ହୋଇଅଛି, ସେହି ଗୁରୁତା ସେମାନଙ୍କର ବ୍ୟଞ୍ଜକତା ଅନୁସାରେ ହୁଏ ବୋଲି ଜାଣିବାକୁ ହେବ । (ଲୋଚନର ଆଶୟ) ।

ସ୍ରକ୍ ଚନ୍ଦନାଦି ଶବ୍ଦ ଶୃଙ୍ଗାରର ବ୍ୟଞ୍ଜକ, ଏଣୁ ଶୃଙ୍ଗାର କାବ୍ୟରେ ତାର ଗୁରୁତା ଅଛି । ଉକ୍ତ ଶବ୍ଦମାନେ ବୀଭତ୍ସର ବିରୋଧୀ, ସୁତରାଂ ବୀଭତ୍ସରେ ସେମାନଙ୍କର ଗୁରୁତା ନାହିଁ । ଅତଏବ କେବଳ ଶବ୍ଦମାନଙ୍କର ଗୁରୁତା ନ ଥାଏ । ସେମାନେ ବ୍ୟଞ୍ଜକ ହେଲେ ସେମାନଙ୍କଠାରେ ଗୁରୁତା ରହେ । ସଂକ୍ଷେପତଃ ଗୁରୁତାର ହେତୁ ବ୍ୟଞ୍ଜକତା ।

୨୧୮ । ଯେଉଁ ଶବ୍ଦମାନଙ୍କର (ବ୍ୟଞ୍ଜକତା ଅଭାବରୁ) ଗୁରୁତା ନାହିଁ, ସେହି ଶବ୍ଦମାନଙ୍କର ମଧ୍ୟ ଅନ୍ୟ ସ୍ଥଳରେ ଯେଉଁଠି କି ସେମାନେ ବ୍ୟଞ୍ଜକ ହୋଇଛନ୍ତି, ସେ ସ୍ଥାନରେ, ଗୁରୁତା (ସୌଷ୍ଠବ) ଦେଖାଯାଇଥାଏ । ଶବ୍ଦ ପ୍ରବାହରେ ପତିତ ତାଦୃଶ ଶବ୍ଦମାନଙ୍କର ଏକ ସ୍ଥଳରେ ଗୁରୁତା ଓ ଅନ୍ୟ ସ୍ଥଳରେ ଅଗୁରୁତା ଅଭ୍ୟାସ ବଶତଃ ପୃଥକ୍ ପୃଥକ୍ ଭାବେ ପ୍ରତୀତ ହୁଏ ବୋଲି ସ୍ୱୀକାର କରିବାକୁ ହେବ ।

୨୧୯ । ନୋଽନ୍ୟଥା ତୁଲ୍ୟେ ବାଚକତ୍ୱେ ଶବ୍ଦାନାଂ ଗୁରୁତ୍ୱ-ବିଷୟୋ ବିଶେଷଃ ସ୍ୟାତ୍ ।

୨୨୦ । ଅନ୍ୟ ଏବାସୌ ସହୃଦୟସମ୍ବେଦ୍ୟ ଇତି ଚେତ୍,

୨୨୧ । କମିଦଂ ସହୃଦୟତ୍ୱଂ ନାମ ? (୧) କିଂ ରସଭାବାନପେକ୍ଷକାବ୍ୟାଶ୍ରିତସମୟବିଶେଷାଭିଜ୍ଞତ୍ୱମ୍ ? (୨) ଉତ ରସଭାବାଦିମୟ-କାବ୍ୟ-ସ୍ୱରୂପ ପରିଜ୍ଞାନନୈପୁଣ୍ୟମ୍ ?

୨୨୨ । ପୂର୍ବସ୍ମିନ୍ ପକ୍ଷେ ତଥାବିଧ ସହୃଦୟବ୍ୟବସ୍ଥାପିତାନାଂ ଶବ୍ଦବିଶେଷଣାଂ ଗୁରୁତ୍ୱନିୟମୋ ନ ସ୍ୟାତ୍ । ସମୟାନ୍ତରେଣାନ୍ୟଥାପି ବ୍ୟବସ୍ଥାପନ-ସମ୍ଭବାତ୍ ।

---

୨୧୯ । ଅନ୍ୟଥା ଶବ୍ଦମାନଙ୍କର ବାଚ୍ୟ ଅର୍ଥ (ଯଥା ସ୍ରକ୍ ଶବ୍ଦର ଅର୍ଥ ପୁଷ୍ପମାଳା) ସମାନ ହୋଇଥିବା ସ୍ଥଳେ ସବର ଗୁରୁତ୍ୱ ବିଷୟକ ବୈଶିଷ୍ଟ୍ୟ କାହିଁକି ବା ପ୍ରତିପାଦିତ ହୁଅନ୍ତା ? ଅର୍ଥାତ୍ ଏକ ଅର୍ଥକ ଶବ୍ଦ ଏକ ସ୍ଥଳରେ ଗୁରୁ ଓ ଅନ୍ୟସ୍ଥଳରେ ଅଗୁରୁ କିଭଳି ହୁଅନ୍ତା ?

୨୨୦ । ପ୍ରଶ୍ନ ବା ପୂର୍ବପକ୍ଷ :—ଶବ୍ଦମାନଙ୍କର ଏହି ଗୁରୁତା ବିଷୟକ ବିଶେଷ ଅର୍ଥାତ୍ ଶବ୍ଦଟି କେଉଁଠି ଗୁରୁ ଓ କେଉଁଠି ଗୁରୁ ନୁହେ, ତାହା ସହୃଦୟମାନଙ୍କର କେବଳ ସମ୍ବେଦ୍ୟ ।

୨୨୧ । ସହୃଦୟତା କଅଣ ?

(୧) ରସଭାବନିରପେକ୍ଷ କାବ୍ୟର ନିୟମ-(ସମୟ)-ବିଶେଷରେ ଅଭିଜ୍ଞତା ଅର୍ଜନ କଲେ ସହୃଦୟ ବୋଲାଯାଏ ? କିମ୍ବା (୨) ରସାଦିମୟ କାବ୍ୟର ସ୍ୱରୂପଜ୍ଞାନରେ ନିପୁଣତା ଥିବା ଲୋକଙ୍କୁ ସହୃଦୟ ବୋଲାଯାଏ ?

୨୨୨ । ପ୍ରଥମ ପକ୍ଷରେ—ତଥାବିଧ ରସାଦି ଜ୍ଞାନଶୂନ୍ୟ ସହୃଦୟ-ମାନଙ୍କ ବ୍ୟବସ୍ଥା ଅନୁସାରେ "ଏ ଶବ୍ଦ ଗୁରୁ, ଏ ଶବ୍ଦ ଅଗୁରୁ, ଏହିପରି ଶବ୍ଦଗୁରୁତା ନିୟମ ହୋଇ ନ ପାରେ, ଯେ ହେତୁ ଏତାଦୃଶ ସହୃଦୟ-

୨୨୩ । ଦ୍ୱିତୀୟପକ୍ଷେ ତୁ ରସଜ୍ଞତୈବ ସହୃଦୟତ୍ୱମିତି । ତଥାବିଧୈଃ ସହୃଦୟୈଃ ସମ୍ବେଦ୍ୟୋ ରସାଦିସମର୍ପଣ ସାମର୍ଥ୍ୟମେବ ନୈସର୍ଗିକଂ ଶବ୍ଦାନାଂ ବିଶେଷ ଇତି ବ୍ୟଞ୍ଜକତ୍ୱାଶ୍ରୟ୍ୟ ଏବ ତେଷାଂ ମୁଖ୍ୟଂ ଚାରୁତ୍ୱମ୍ ।

୨୨୪ । ବାଚକତ୍ୱାଶ୍ରୟସ୍ତୁ ପ୍ରସାଦ ଏବାର୍ଥାପେକ୍ଷାୟାଂ ତେଷାଂ ବିଶେଷଃ । ଅର୍ଥାନପେକ୍ଷାୟାଂ ତୁ ଅନୁପ୍ରାସଦରେବ ॥

---

ମାନଙ୍କ ଛଡ଼ା ଅନ୍ୟ (ପ୍ରକୃତ ସହୃଦୟ)ମାନଙ୍କ ମତରେ ମଧ୍ୟ ଭିନ୍ନ ପ୍ରକାର ଶବ୍ଦଚାରୁତ୍ୱ ନିୟମ ବ୍ୟବସ୍ଥିତ ହେବାର ସମ୍ଭାବନା ରହିଅଛି ।

(ଶବ୍ଦମାନଙ୍କର ଚାରୁତା ସମ୍ବନ୍ଧେ ଭିନ୍ନ ଭିନ୍ନ ଦଳଙ୍କ ମତ ଅନୁସାରେ ଭିନ୍ନ ଭିନ୍ନ ପ୍ରକାର ନିୟମ କରିବା ଅସଙ୍ଗତ ଏଣୁ ପ୍ରଥମ ପକ୍ଷ କ୍ଷୋଦକ୍ଷମ ନୁହେଁ) ।

୨୨୩ । ଦ୍ୱିତୀୟ ପକ୍ଷରେ -- ରସଜ୍ଞତା ଦ୍ୱାରା ସହୃଦୟତା ନିରୂପିତ ହେଉଥିବାରୁ ରସଜ୍ଞ ହିଁ ସହୃଦୟ । ତାଦୃଶ ସହୃଦୟମାନଙ୍କର କେବଳ ଜ୍ଞାତବ୍ୟ ରସାଦି ବ୍ୟଞ୍ଜକତା ଶବ୍ଦମାନଙ୍କର ନୈସର୍ଗିକ ବିଶେଷ । ଏଣୁ ଶବ୍ଦର ଚାରୁତା, ବ୍ୟଞ୍ଜକତାକୁ ଅପେକ୍ଷା କରେ । ଏହି ଚାରୁତା ହିଁ ମୁଖ୍ୟ ଚାରୁତା ।

୨୨୪ । ବ୍ୟଞ୍ଜକତା ନ ଥାଇ ମଧ୍ୟ ଶବ୍ଦମାନଙ୍କର ଦୁଇ ପ୍ରକାର ଚାରୁତା ଦେଖାଯାଏ । ତନ୍ମଧ୍ୟରେ ବାଚକତାକୁ ଆଶ୍ରୟ କରିଥିବା ପ୍ରସାଦ ଗୁଣ ମଧ୍ୟ ଝଟିତି ଅର୍ଥ ପ୍ରତୀତ କରାଇବା ପାଇଁ (ଅର୍ଥାପେକ୍ଷାୟାଂ) ଶବ୍ଦ-ମାନଙ୍କର ବିଶେଷ ।

ବ୍ୟଙ୍ଗ୍ୟ ବା ବାଚ୍ୟ ଉଭୟ ଅର୍ଥର ନିରପେକ୍ଷଭାବେ କେବଳ ଶ୍ରୁତିସୁଖ ସମ୍ପାଦନ ନିମନ୍ତେ ଅନୁପ୍ରାସାଦି ଅଳଙ୍କାର ମଧ୍ୟ ଶବ୍ଦମାନଙ୍କର ବିଶେଷ ।

୨୨୫ । ଏବଂ ରସାଦୀନାଂ ବ୍ୟଞ୍ଜକସ୍ୱରୂପମଭିଧାୟ ତେଷାମେବ ବିରୋଧିରୂପଂ ଲକ୍ଷୟିତୁମିଦମୁପକ୍ରମ୍ୟତେ ।

୨୨୬ । ପ୍ରବନ୍ଧେ ମୁକ୍ତକେ ବାଽପି ରସାଦୀନ୍ ବନ୍ଧୁମିଚ୍ଛତା ।
ଯତ୍ନଃ କାର୍ଯ୍ୟଃ ସୁମତିନା ପରିହାରେ ବିରୋଧିନାମ୍ ।
ପ୍ରବନ୍ଧେ ମୁକ୍ତକେ ବାଽପି ରସଭାବନିବନ୍ଧନଂ ପ୍ରତି, ଆଦୃତମନାଃ କବିର୍ବିରୋଧିପରିହାରେ ପରଂ ଯତ୍ନମାଦଧୀତ ।

୨୨୭ । ଅନ୍ୟଥା ତ୍ୱସ୍ୟ ରସମୟଃ ଶ୍ଳୋକଃ ଏକୋଽପି ସମ୍ୟକ୍ ନ ସମ୍ପଦ୍ୟତେ ॥

୨୨୮ । କାନି ପୁନସ୍ତାନି ବିରୋଧୀନି ? ଯାନି ଯତ୍ନତଃ କବେଃ ପରିହର୍ତ୍ତବ୍ୟାନୀତ୍ୟୁଚ୍ୟତେ—

---

## ରସାଦିର ବିରୋଧ ବିଚାର

୨୨୫ । ଏହିପରି ରସାଦିର ବ୍ୟଞ୍ଜକ ବର୍ଣ୍ଣ, ପଦ ଓ ବାକ୍ୟର ସ୍ୱରୂପ କହିସାରି ଉକ୍ତ ରସାଦିର ଯାହା ପରସ୍ପର ବିରୋଧୀ ତାହାର ଲକ୍ଷଣ କରିବାକୁ ଉପକ୍ରମ କରାଯାଉଛି, ଯଥା—

୨୨୬ । ପ୍ରବନ୍ଧ କିମ୍ବା ମୁକ୍ତକ କବିତାରେ ରସାଦିକୁ ଆଦରପୂର୍ବକ ଉପନ୍ୟାସ କରିବାକୁ ଇଚ୍ଛା କରିଥିବା କବି ରସପ୍ରତୀତିରେ ବିରୋଧୀମାନଙ୍କର ପରିହାରପାଇଁ ବିଶେଷତଃ ଯତ୍ନ କରିବା ଆବଶ୍ୟକ ।

୨୨୭ । ବିରୋଧୀ (ପ୍ରତିବନ୍ଧକ) ପରିହାର ପାଇଁ ଚେଷ୍ଟା ନ କଲେ କବିର ଗୋଟିଏ ହେଲେ ଶ୍ଳୋକ ଉତ୍ତମରୂପେ ରସମୟ ହୋଇ ପାରିବ ନାହିଁ ।

୨୨୮ । ପ୍ରଶ୍ନ—ସେହିସବୁ ରସାଦିପ୍ରତୀତିର ପ୍ରତିବନ୍ଧକ କିଏ ? ଯାହାକୁ କି କବି ଯତ୍ନପୂର୍ବକ ପରିହାର କରିବ ?

୨୨୯ । (୧) ବିରୋଧି ରସସମ୍ବନ୍ଧି ବିଭାବାଦିପରିଗ୍ରହଃ ।
(୨) ବିସ୍ତରେଣାନ୍ୱିତସ୍ୟାପି ବସ୍ତୁନୋଽନ୍ୟସ୍ୟବର୍ଣ୍ଣନମ୍
(୩) ଅକାଣ୍ଡ ଏବ ବିଚ୍ଛିତ୍ତି(୪)ରକାଣ୍ଡେ ଚ ପ୍ରକାଶନମ୍
(୫) ପରିପୋଷଂ ଗତସ୍ୟାପି ପୌନଃ
ପୁନ୍ୟେନ ଦୀପନମ ।
ରସସ୍ୟ ସ୍ୟାଦ୍ ବିରୋଧାୟ (୬) ବୃତ୍ତ୍ୟନୌଚିତ୍ୟ
ମେବଚ । ୧୯ ।

୨୩୦ । ପ୍ରସ୍ତୁତରସାପେକ୍ଷୟା ବିରୋଧୀ ଯୋ ରସଃ ତସ୍ୟ ସମ୍ବନ୍ଧିନାଂ ବିଭାବାନୁଭାବ-ବ୍ୟଭିଚାରିଣାଂ ପରିଗ୍ରହୋ ରସ ବିରୋଧ ହେତୁରେକଃ ସମ୍ଭବନୀୟଃ ॥

---

୨୨୯ । ଉତ୍ତର—
୧ । ବର୍ଣ୍ଣନୀୟ ରସ ଦୃଷ୍ଟିରେ ବିରୋଧି ରସର ବିଭାବାଦିମାନଙ୍କୁ ନିବେଶ କରିବା,
୨ । ପ୍ରକୃତରସର ପରିପୋଷକ ହୋଇ ନ ଥିବା ଅନ୍ୟ ବିଷୟବସ୍ତୁକୁ ଅତି ବିସ୍ତୃତଭାବେ ବର୍ଣ୍ଣନା କରିବା,
୩ । (କ) ଅସମୟରେ ବର୍ଣ୍ଣନୀୟ ରସାଦିର ବିଚ୍ଛେଦ,
(ଖ) ଅସମୟରେ ଅନ୍ୟ କୌଣସି ରସାଦିର ଅବତାରଣା,
୪ । ରସ ସର୍ବତୋଭାବେ ପରିପୁଷ୍ଟ ହୋଇଥିଲେ ମଧ୍ୟ, ତାକୁ ପୁଣି ପୁଣି ଉଦ୍ଦୀପିତ କରିବା,
୫ । ବ୍ୟକ୍ତିର ବ୍ୟବହାରକୁ ତାହା ଅନୁରୂପେ ବର୍ଣ୍ଣନା ନ କରି ତାହାର ଅନୁଚିତଭାବେ ବର୍ଣ୍ଣନା କରିବା,
ଏହି ଉଲ୍ଲିଖିତ ଛଅଗୋଟି ରସର ବିରୋଧୀ (ରସପୁଷ୍ଟିରେ ବାଧକ) ।

୨୩୦ । ୧ମ ରସଭଙ୍ଗ ହେତୁ ଯଥା :—ପ୍ରସ୍ତୁତ (ବର୍ଣ୍ଣନୀୟ) ରସର ଯେଉଁସବୁ ରସ ବିରୋଧୀ, ସେହି ବିରୋଧୀର ବିଭାବ ଅନୁଭାବ ବ୍ୟଭିଚାରି-ଭାବମାନଙ୍କୁ ଗ୍ରହଣ କରିବା ରସ ବିରୋଧର ଗୋଟିଏ କାରଣ ।

୨୩୧ । ତତ୍ର ବିରୋଧିରସବିଭାବପରିଗ୍ରହୋ ଯଥା—ଶାନ୍ତରସ
ବିଭାବେଷୁ ତଦ୍‌ବିଭାବତୟୈବ ନିରୂପିତେଷ୍ୱନନ୍ତର
ମେବ ଶୃଙ୍ଗାରବର୍ଣ୍ଣନେ ॥

୨୩୨ । ବିରୋଧିରସଭାବପରିଗ୍ରହୋ ଯଥା—ପ୍ରିୟଂ ପ୍ରତି
କଲହକୁପିତାସୁ କାମିନୀଷୁ ବୈରାଗ୍ୟକଥାଭିରନୁନୟେ

୨୩୩ । ବିରୋଧିରସାନୁଭାବପରିଗ୍ରହୋ ଯଥା—ପ୍ରଣୟକୁପି-
ତାୟାଂ ପ୍ରିୟାୟାମପ୍ରସୀଦନ୍ତ୍ୟାଂ ନାୟକସ୍ୟ କୋପା-
ବେଶବିବଶସ୍ୟ ରୌଦ୍ରାନୁଭାବବର୍ଣ୍ଣନେ ॥

୨୩୪ । ଅନ୍ୟଂ ଶୃଣୁ ରସଭଙ୍ଗହେତୁ—ଯତ୍ ପ୍ରସ୍ତୁତରସା-
ଦ୍ୟପେକ୍ଷୟା ବସ୍ତୁନୋଽନ୍ୟସ୍ୟ କଥଂଚିଦନ୍ୱିତସ୍ୟାପି

---

୨୩୧ । ବିରୋଧ ରସର ବିଭାବ ପରିଗ୍ରହ ଯଥା—ଶାନ୍ତରସର ଆଲମ୍ବନ—ବିଭାବ ମୁନି ଋଷି ପ୍ରଭୃତି । ଶାନ୍ତରସର ଆଲମ୍ବନରୂପେ ନିରୂପିତ ହୋଇଥିବା ସେମାନଙ୍କଠାରେ ଶୃଙ୍ଗାରାଦ ବର୍ଣ୍ଣନା କରିବା ।

୨୩୨ । ବିରୋଧ ରସର ବ୍ୟଭିଚାରିଭାବ ଗ୍ରହଣ ଯଥା—ବଲ୍ଲଭ ପ୍ରତି ପ୍ରଣୟ ହେତୁକ କଳହରେ କୁପିତା ହୋଇଥିବା କାମିନୀଠାରେ ବୈରାଗ୍ୟ କଥାମାନ କହି ଅନୁନୟ କରିବା ।

୨୩୩ । ବିରୋଧରସର ଅନୁଭାବ ଗ୍ରହଣ ଯଥା—ପ୍ରଣୟକୁପିତା ପ୍ରିୟତମା ଯଦି ପ୍ରସନ୍ନ ନ ହେଲା, ତେବେ ତାହା ପ୍ରତି ନାୟକ ଅତ୍ୟନ୍ତ କୋପାବିଷ୍ଟ ହୋଇ ରୌଦ୍ରରସର ଚିହ୍ନ ଧାରଣ କରିବା । (ମୁଖ ନେତ୍ର ରକ୍ତବର୍ଣ୍ଣ କରିବା ପ୍ରଭୃତି ରୌଦ୍ର ରସର ଚିହ୍ନ) ।

୨୩୪ । ଏହା ଆଉ ଗୋଟିଏ ରସଭଙ୍ଗର ହେତୁ (ପୂ ଯଥା) :—କଥାବସ୍ତୁ ସହିତ କୌଣସି ପ୍ରକାର ଐତିହାସିକ ସମ୍ବନ୍ଧ ଥିଲେ ମଧ୍ୟ ପ୍ରକୃତ ରସ ଦର ପରିପୋଷକ ହେଉ ନ ଥିବା ବିଷୟ ବସ୍ତୁକୁ ବିସ୍ତୃତଭାବେ ବର୍ଣ୍ଣନା

ବସ୍ତରେଣ କଥନମ୍ । ଯଥା—ବିପ୍ରଲମ୍ଭଶୃଙ୍ଗାରେ ନାୟକସ୍ୟ କସ୍ୟଚିତ୍ ବର୍ଣ୍ଣୟିତୁମୁପକ୍ରାନ୍ତସ୍ୟ କବେ-ର୍ଯମକାଦ୍ୟଲଂକାରନିବନ୍ଧରସିକତୟା ମହତା ପ୍ରବ-ନ୍ଧେନ ପର୍ବତାଦିବର୍ଣ୍ଣନେ ॥

୨୩୫ । ଅୟଂ ଚାପରୋ ରସଭଙ୍ଗହେତୁରବଗନ୍ତବ୍ୟୋ ଯଦ-କାଣ୍ଡ ଏବ ବିଚ୍ଛିତ୍ତୀ ରସସ୍ୟାକାଣ୍ଡେ ଚ ପ୍ରଥନମ୍ ॥

୨୩୬ । ତତ୍ରାନବସରେ ବିରାମୋ ଯଥା—

ନାୟକସ୍ୟ କସ୍ୟଚିତ୍ ସ୍ପୃହଣୀୟ ସମାଗମୟା ନାୟିକୟା କୟାଚିତ୍ ପରାଂ ପରିପୋଷପଦବୀଂ ପ୍ରାପ୍ତେ ଶୃଙ୍ଗାରେ, ବିଦିତେ ଚ ପରସ୍ପରାନୁରାଗେ ସମାଗମୋ-ପାୟଚିନ୍ତୋଚିତ-ବ୍ୟବହାରମୁତ୍ସୃଜ୍ୟ ସ୍ୱତନ୍ତ୍ରତୟା ବ୍ୟାପାରାନ୍ତରବର୍ଣ୍ଣନେ ।

---

କରିବା । ଯଥା— କବି କୌଣସି ନାୟକ ସମ୍ବନ୍ଧରେ ବିପ୍ରଲମ୍ଭ ଶୃଙ୍ଗାରରସ ବର୍ଣ୍ଣନା କରିବାକୁ ଉଦ୍ୟତ ହେଉଥିବା ସ୍ଥଳେ, ଯମକାଦି ଅଳଂକାର ସଂଯୋଜନରେ ଆଗ୍ରହ ପ୍ରକାଶ କରି ମହା ଆଡ଼ମ୍ବରରେ ପର୍ବତାଦି ବର୍ଣ୍ଣନା କରିବା ।

୨୩୫ । ଏହାକୁ ଆଉ ଗୋଟିଏ (ଅନ୍ୟ) ରସଭଙ୍ଗର ହେତୁ ବୋଲି ଜାଣିବାକୁ ହେବ । ଯଥା— ଅସମୟରେ ଅକାଣ୍ଡେ) ରସର ବିଚ୍ଛେଦ ଓ ଅସମୟରେ ରସର କଥନ ।

୨୩୬ । ତନ୍ମଧ୍ୟରେ ଅସମୟରେ ରସର ବିଚ୍ଛେଦ ଯଥା—

କୌଣସି ଏକ ଗୁଣବତୀ ନାୟିକା ଯାହା ସହିତ ସମାଗମ, ଲୋକରେ ପ୍ରଶଂସାର୍ହ ତାହା ସହିତ କୌଣସି ଏକ ନାୟକର ଶୃଙ୍ଗାର, ପରିପୋଷ-ଅବସ୍ଥାକୁ ପ୍ରାପ୍ତ ହୋଇଅଛି ଏବଂ ନାୟକ ନାୟିକାଙ୍କର ପରସ୍ପର ପ୍ରତି ଅନୁରାଗ ଥିବା ବାହାରେ ପ୍ରକାଶ ପାଇଛି । ଏ ଅବସ୍ଥାରେ ସେହି

୨୩୭ । ଅନବସରେ ଚ ପ୍ରକାଶନଂ ରସସ୍ୟ ଯଥା—

ପ୍ରବୃତ୍ତେ ପ୍ରବୃଦ୍ଧବିବିଧବୀରସଂକ୍ଷୟେ କଳ୍ପସଂକ୍ଷୟ-କଳ୍ପେ ସଂଗ୍ରାମେ, ଦେବପ୍ରାୟସ୍ୟ ତାବନ୍ନାୟକସ୍ୟ ଅନୁପକ୍ରାନ୍ତବିପ୍ରଲମ୍ଭ-ଶୃଙ୍ଗାରସ୍ୟ ନିମିତ୍ତମୁଚିତମନ୍ତ-ରେଣୈବ ଶୃଙ୍ଗାରକଥାୟାମବତାରବର୍ଣ୍ଣନେ ॥

୨୩୮ । ନ ଚୈବଂବିଧେ ବିଷୟେ ଦୈବବ୍ୟାମୋହିତତ୍ୱଂ କଥାପୁରୁଷସ୍ୟ ପରିହାରଃ, ଯତୋ ରସବନ୍ଧ ଏବ କବେଃ ପ୍ରଧାନେନ ପ୍ରବୃତ୍ତିନିବନ୍ଧନଂ ଯୁକ୍ତମ୍ ॥

---

ନାୟକ ନାୟିକାଙ୍କ ମଧ୍ୟରେ କିଭଳି ସମାଗମ ହେବ ତାହାର ଉପାୟ ଚିନ୍ତା ଓ ଦୂତୀ ପ୍ରେରଣାଦି ସମୁଚିତ ବ୍ୟବହାର ବର୍ଣ୍ଣନା ନ କରି ସ୍ୱଚ୍ଛନ୍ଦଭାବେ ଅନ୍ୟ ବିଷୟ ବର୍ଣ୍ଣନା କରିବା ।

୨୩୭ । ଅସମୟରେ ରସର ସଂଯୋଜନ ଯଥା—

ଯେଉଁ ଯୁଦ୍ଧରେ ଅତି ବିଶିଷ୍ଟ ବୀରମାନେ ନିହତ ହେଉଅଛନ୍ତି ଏବଂ ପ୍ରଳୟକାଳର ଲୋକକ୍ଷୟଭଳି ଲୋକକ୍ଷୟ ଘଟୁଛି, ସେହି ସାମରିକ ପରିସ୍ଥିତିରେ ଦେବତା ସଦୃଶ ନାୟକ ପକ୍ଷେ, ପୂର୍ବରୁ ବିପ୍ରଲମ୍ଭ ଶୃଙ୍ଗାରର ଉପକ୍ରମ ନ ଦର୍ଶାଇ କିମ୍ବା ସମୁଚିତ କାରଣ ବର୍ଣ୍ଣନା ନ କରି, ହଠାତ୍ ସମ୍ଭୋଗ ଶୃଙ୍ଗାର ରସର ଅବତାରଣା ଓ ବର୍ଣ୍ଣନା କରିବା ।

(ଯୁଦ୍ଧ ପରିସ୍ଥିତିରେ ଶୃଙ୍ଗାର ବର୍ଣ୍ଣନା ଦୋଷ । ଦେବପ୍ରକୃତି ନାୟକ ପକ୍ଷେ ତାହା ଅଧିକ ଦୋଷ । ଉପକ୍ରମରେ ବିପ୍ରଲମ୍ଭ ବର୍ଣ୍ଣନା ନ କରି ହଠାତ୍ ସମ୍ଭୋଗ ଅବତାରଣା କରିବା ଆହୁରି ଅଧିକ ଦୋଷ । ପୁନଶ୍ଚ କୌଣସି ଉଦ୍ଦୀପନ ବିଭାବ ବ୍ୟତିରେକେ ସମ୍ଭୋଗ ବର୍ଣ୍ଣନ ସର୍ବତୋଭାବେ ଦୋଷଯୁକ୍ତ ।

୨୩୮ । ଏଭଳି ସ୍ଥଳରେ କଥାବସ୍ତୁର ପ୍ରତିନାୟକ ଦୈବ ଦୋଷରୁ ମୋହଗ୍ରସ୍ତ ହୋଇଛନ୍ତି । ଏଣୁ ତାଙ୍କପକ୍ଷେ ତାହା ଦୋଷାବହ ନୁହେ ;

୨୩୯ । ଇତିବୃତ୍ତବର୍ଣ୍ଣନଂ ତଦୁପାସ୍ୟ ଏବେତ୍ୟୁକ୍ତଂ ପ୍ରାକ୍—
ଆଲୋକାର୍ଥୀ ଯଥା ଦୀପଶିଖାୟାଂ ଯତ୍ନବାନ୍ ଜନଃ
"ଇତ୍ୟାଦିନା"

୨୪୦ । ଅତଏବ ଚେତିବୃତ୍ତମାତ୍ରବର୍ଣ୍ଣନପ୍ରାଧାନ୍ୟେଽଙ୍ଗାଙ୍ଗି-ଭାବରହିତରସଭାବନିବନ୍ଧେନ ଚ କବୀନାମେବଂ ବିଧାନି ସ୍ଖଳିତାନି ଭବନ୍ତୀତି ରସାଦି 'ରୂପବ୍ୟଙ୍ଗ୍ୟ ତାତ୍ପର୍ଯ୍ୟମେବୈଷାଂ' ଯୁକ୍ତମିତି ଯତ୍ନୋଽସ୍ମାଭିରାରବ୍ଧୋ ନ ଧ୍ୱନିପ୍ରତିପାଦନମାତ୍ରାଭିନିବେଶେନ ॥

---

ଏପରି ସମାଧାନ କରାଯାଇ ନ ପାରେ ; ଯେଣୁ ରସାନ୍ୱିତ କାବ୍ୟ ରଚନା (ରସବନ୍ଧ)ରେ କବି ପ୍ରଧାନତଃ ସ୍ୱକର୍ତ୍ତବ୍ୟ ପାଳନ କରିବା ବିଧେୟ, ଅର୍ଥାତ୍ ପ୍ରତିନାୟକ ସିନା ଦୈବଦୋଷରେ ମୋହଗ୍ରସ୍ତ କିନ୍ତୁ କବି ତ ଦୈବ-ଦୋଷରେ ଲିପ୍ତ ନୁହେ, ତେବେ ଏଭଳି କାବ୍ୟ ନିର୍ମାଣରେ ସେ କିପରି ବାଚ୍ୟ ନ ହେବ ?

୨୩୯ । କବିର ରସପରିବେଷଣ ମୁଖ୍ୟକର୍ମ । କୌଣସି ବିଷୟବସ୍ତୁ ବ୍ୟତିରେକେ ତାହା ଅସମ୍ଭବ ହେଉଥିବାରୁ କାବ୍ୟର କାରଣ ସ୍ୱରୂପ ଐତିହାସିକ ବିଷୟବସ୍ତୁର ଉଲ୍ଲେଖ କରାଯିବ, କିନ୍ତୁ ଇତିହାସ ବର୍ଣ୍ଣନା ମୁଖ୍ୟ ନୁହେ, ଏହା "ଆଲୋକାର୍ଥୀ ଯଥା" ଇତ୍ୟାଦି କାରିକାରେ କୁହାଯାଇଅଛି ।

୨୪୦ । ଅତଏବ ପ୍ରଧାନତଃ କେବଳ ଇତିବୃତ୍ତ ବର୍ଣ୍ଣନା ହୋଇ-ଥିବା ସ୍ଥଳରେ ରସଭାବସନ୍ୱିତ କଥାବସ୍ତୁର ଅଙ୍ଗାଙ୍ଗିଭାବ ସମ୍ବନ୍ଧ ରହୁ ନ ଥିବା ହେତୁ ଏହିଭଳି ଦୋଷ ରହିଯାଉ; ଏଣୁକରି ରସାଦି ବ୍ୟଙ୍ଗ୍ୟ ପ୍ରକାଶ ଉଦ୍ଦେଶ୍ୟରେ ଶବ୍ଦାଦିର ବିନ୍ୟାସ ବିଧେୟ ବୋଲି ଆମ୍ଭେ ଯତ୍ନ ଆରମ୍ଭ କରିଅଛୁଁ । କିନ୍ତୁ କେବଳମାତ୍ରକ ଧ୍ୱନିକୁ ପ୍ରତିପାଦନ କରିବା ଆଗ୍ରହରେ ଏଭଳି ଚେଷ୍ଟା କରିନାହୁଁ ।

୨୪୧ । ପୁନଷ୍ଟାଖ୍ୟମନ୍ୟୋ ରସଭଙ୍ଗ ହେତୁ ରବଧାରଣୀୟୋ- ଯତ୍ ପରିପୋଷଂ ଗତସ୍ୟାପି ରସସ୍ୟ ପୌନଃପୁନ୍ୟେନ ଦୀପନମ୍ ॥

୨୪୨ । ଉପଭୁକ୍ତୋ ହି ରସଃ ସ୍ୱସାମଗ୍ରୀଲବ୍ଧପରିପୋଷଃ ପୁନଃ ପୁନଃ ପରାମୃଶ୍ୟମାଣଃ ପରିମ୍ଳାନକୁସୁମକଳ୍ପଃ କଳ୍ପତେ ।

୨୪୩ । ତଥା ବୃତ୍ତେର୍ବ୍ୟବହାରସ୍ୟ ଯଦନୌଚିତ୍ୟଂ ତଦପି ରସଭଙ୍ଗହେତୁରେବ ॥

୨୪୪ । ଯଥା—ନାୟକଂ ପ୍ରତି ନାୟିକାୟାଃ କସ୍ୟାଶ୍ଚିଦୁ- ଚିତାଙ୍ଗଭଙ୍ଗୀମନ୍ତରେଣ ସ୍ୱୟଂ ସମ୍ଭୋଗାଭିଲାଷ- କଥନେ ।

---

୨୪୧ । ପୁନଶ୍ଚ ଆଉ ଗୋଟିଏ (୪ର୍ଥ) ରସଭଙ୍ଗ ହେତୁ ବୋଲି ସ୍ଥିର କରିବ ଯାହା କି, ରସ ପରିପୋଷ ଅବସ୍ଥାକୁ ପ୍ରାପ୍ତ ହୋଇଥିଲେ ମଧ୍ୟ ତାହାକୁ ପୁନଃ ପୁନଃ ଦୀପ୍ତ କରିବା ।

୨୪୨ । କାରଣ ରସର ସାମଗ୍ରୀ ବିଭାବ, ଅନୁଭାବ, ବ୍ୟଭିଚାରି- ଭାବମାନଙ୍କ ଦ୍ୱାରା ପରିପୁଷ୍ଟ ହୋଇ ସାମାଜିକମାନଙ୍କ ଉପଭୋଗରେ ଆସିଥିବା ରସକୁ, ପୁନଃ ପୁନଃ ଛେଡ଼ିଲେ ତାହା ମଉଳିଯାଇଥିବା ବାସି ଫୁଲ ପରି ଅସ୍ପୃହଣୀୟ ହୋଇଯାଏ ।

୨୪୩ । ଆଉ ଗୋଟିଏ (୫ମ) ରସଭଙ୍ଗର ହେତୁ :—

ଯେଉଁଭଳି ଲୋକର ଯେଉଁଭଳି ଆଚରଣ ବିଧେୟ, ତାହାକୁ ସେଭଳି ବର୍ଣ୍ଣନା ନ କରି ଅନୁଚିତଭାବେ ବର୍ଣ୍ଣନା କରିବା ।

୨୪୪ । ଯଥା—କୌଣସି ନାୟିକା ନାୟକ ପ୍ରତି ଶୃଙ୍ଗାର ସ୍ପୃହାର ସମୁଚିତ ଅଙ୍ଗଭଙ୍ଗୀ ପ୍ରଦର୍ଶନ କରିବା ବ୍ୟତିରେକରେ, ସ୍ୱୟଂ କଣ୍ଠରେ ସମ୍ଭୋଗ ଅଭିଳାଷକୁ ବ୍ୟକ୍ତ କରିବା । ଏହା ବୃତ୍ତ୍ୟନୌଚିତ୍ୟ (ଏଠାରେ ବୃତ୍ତି ଶବ୍ଦର ଅର୍ଥ-ବ୍ୟବହାର) ।

୨୪୫ । ଯଚ୍ଚ ବା ବୃତ୍ତୀନାଂ ଭରତପ୍ରସିଦ୍ଧାନାଂ କୈଶିକ୍ୟା-
ଦୀନାଂ, କାବ୍ୟାଲଂକାରାନ୍ତରପ୍ରସିଦ୍ଧାନାମୁପନାଗରି-
କାଦ୍ୟାନାଂ ବା ଯଦନୌଚିତ୍ୟମବିଷୟେ ନିବନ୍ଧନଂ,
ତଦପି ରସଭଙ୍ଗହେତୁଃ ।

୨୪୬ । ଏବମେଷାଂ ରସବିରୋଧିନାମନ୍ୟେଷାଂ ଚ ଦିଶା ସ୍ୱୟମୁତ୍ପ୍ରେକ୍ଷିତାନାଂ ପରିହାରେ ସତ୍-
କବିଭିରବହିତୈର୍ଭବିତବ୍ୟମ୍ ॥

୨୪୭ । ପରିକରଶ୍ଲୋକାଶ୍ଚାତ୍ର—
ମୁଖ୍ୟା ବ୍ୟାପାରବିଷୟାଃ ସୁକବୀନାଂ ରସାଦୟଃ ।
ତେଷାଂ ନିବନ୍ଧନେ ଭାବ୍ୟଂ ତୈଃ ସଦୈବା-
ପ୍ରମାଦିଭିଃ ।

---

୨୪୫ । ଅଥବା ଭରତ ନାଟ୍ୟଶାସ୍ତ୍ରୋକ୍ତ କୈଶିକ୍ୟାଦି ବୃତ୍ତିମାନଙ୍କର କିମ୍ବା ଉଦ୍ଭଟାଦିଙ୍କ ଅନ୍ୟ ଅଳଙ୍କାର ଗ୍ରନ୍ଥମାନଙ୍କରେ ଉକ୍ତ ଉପନାଗରିକା-ପ୍ରଭୃତି ବୃତ୍ତିମାନଙ୍କର ଅନୌଚିତ୍ୟ ଅର୍ଥାତ୍ ଯେଉଁସ୍ଥଳରେ ଯେଉଁ ବୃତ୍ତି ବ୍ୟବହାର୍ଯ୍ୟ ନୁହେ, ସେଠାରେ ସେହି ବୃତ୍ତିକୁ ବ୍ୟବହାର କରିବା ମଧ୍ୟ ରସଭଙ୍ଗର ହେତୁ ।

୨୪୬ । ଉକ୍ତ ରୀତିରେ ଯାହା ସବୁ ରସବିରୋଧୀ ବୋଲି ପ୍ରଦର୍ଶିତ ହୋଇଅଛି ତାହା ସବୁ ଏବଂ କବି ସ୍ୱୟଂ ରସର ପ୍ରତିବନ୍ଧକ ବୋଲି ଯାହାକୁ ନିର୍ଣ୍ଣୟ କରିବ ତାହାକୁ ମଧ୍ୟ ପରିତ୍ୟାଗ କରିବା ବିଷୟରେ ସତ୍‌କବି ସାବଧାନ ରହିବା ବିଧେୟ ।

୨୪୭ । ଏହି ବିଷୟରେ ୪ଗୋଟି ପରିକର ଶ୍ଲୋକ ଯଥା—

ସତ୍‌କବିମାନଙ୍କର ରସାଦି ସନ୍ନିବେଶ ମୁଖ୍ୟ ବ୍ୟାପାର । ସେହି ରସାଦି ସଂଯୋଜନା ପାଇଁ ସେମାନେ ସର୍ବଦା ସାବଧାନ ହେବା ଆବଶ୍ୟକ ।

୨୪୮ । ନୀରସସ୍ତୁ ପ୍ରବନ୍ଧୋଯଃ ସୋଽପଶବ୍ଦୋ ମହାନ୍ କବେଃ ।
ସ ତେନାକବିରେବ ସ୍ୟାଦନ୍ୟେନାସ୍ମୃତଲକ୍ଷଣଃ ॥

୨୪୯ । ପୂର୍ବେ ବିଶୃଙ୍ଖଲଗିରଃ କବୟଃ ପ୍ରାପ୍ତକୀର୍ତ୍ତୟଃ ।
ତାନ୍ ସମାଶ୍ରିତ୍ୟ ନ ତ୍ୟାଜ୍ୟା ନୀତିରେଷା ମନୀଷିଣା ॥

୨୫୦ । ବାଲ୍ମୀକିବ୍ୟାସମୁଖ୍ୟାଶ୍ଚ ଯେ ପ୍ରଖ୍ୟାତାଃ କବୀଶ୍ୱରାଃ
ତଦଭିପ୍ରାୟବାହ୍ୟୋଽୟଂ ନାସ୍ମାଭିର୍ଦର୍ଶିତୋ ନୟଃ ॥

୨୫୧ । ବିବକ୍ଷିତେତରସେ ଲବ୍ଧ ପ୍ରତିଷ୍ଠେ ତୁ ବିରୋଧିନାମ୍ ।
ବାଧ୍ୟାନାମଙ୍ଗଭାବଂ ବା ପ୍ରାପ୍ତାନାମୁକ୍ତିରଚ୍ଛଲା ॥ ୨୦
ସ୍ୱ ସାମଗ୍ରୀ ଲବ୍ଧପରିପୋଷେ ତୁ ବିବକ୍ଷିତେ ରସେ
ବିରୋଧିନାଂ ବିରୋଧିରସାଙ୍ଗାନାଂ ବାଧ୍ୟାନାମଙ୍ଗଭାବଂ
ବା ପ୍ରାପ୍ତାନାଂ ସତାମୁକ୍ତି ର୍ନିର୍ଦ୍ଦୋଷା ॥

---

୨୪୮ । କବିର ରସହୀନ ପ୍ରବନ୍ଧ ମହାନ୍ ଅପଶବ୍ଦ । ତାଦୃଶ ରସହୀନ ପ୍ରବନ୍ଧ ସଂଯୋଜନ ଦ୍ୱାରା କବି କବିଶବ୍ଦେ ବାଚ୍ୟ ନ ହୋଇ ଅକବି ପଦବାଚ୍ୟ ହୁଏ ଏବଂ କେହି ତାକୁ ସ୍ମରଣ କରନ୍ତି ନାହିଁ ।

୨୪୯ । ପୂର୍ବକାଳରେ କବିମାନେ ଶୃଙ୍ଖଳହୀନ ବାଣୀ ବ୍ୟବହାର କରି କୀର୍ତ୍ତିଲାଭ କରିଅଛନ୍ତି । ଏହା ବୋଲି ସେମାନଙ୍କୁ ଅନୁସରଣ କରି ବୁଦ୍ଧିମାନ୍ କବି (ଆମ୍ଭ ଦ୍ୱାରା ପ୍ରଦର୍ଶିତ) ଏହି ନୀତିକୁ ପରିତ୍ୟାଗ କରିବା ଉଚିତ ନୁହେ ।

୨୫୦ । ବାଲ୍ମୀକି ବ୍ୟାସପ୍ରଭୃତି ଯେଉଁମାନେ ମହାକବି ବୋଲି ଖ୍ୟାତିଲାଭ କରିଅଛନ୍ତି, ଏହି ନୀତି ସେମାନଙ୍କର ଅଭିପ୍ରାୟକୁ ବହନ କରିଅଛି । ଆମ୍ଭେ କେବଳ ଏହାକୁ ଦର୍ଶାଇ ନାହୁଁ । ଅର୍ଥାତ୍ ଆମ୍ଭର ଯାହା ମତ ତାହା ବାଲ୍ମୀକି ପ୍ରଭୃତିଙ୍କର ଅଭିପ୍ରେତ ।

୨୫୧ । ଯେଉଁଠି ପ୍ରସ୍ତୁତ ରସ (ବିବକ୍ଷିତ) ସାମଗ୍ରୀ ସଦ୍‌ଭାବ ହେତୁ ପରିପୋଷ ପ୍ରାପ୍ତ ହୋଇଥାଏ ସେଠାରେ ବିରୋଧିରସ କିମ୍ବା ବିରୋଧି ରସାଙ୍ଗମାନେ ବାଧ୍ୟ ଭାବରେ ବା ଅଙ୍ଗଭାବରେ ଉକ୍ତ ହେବା ଦୋଷ ନୁହେ ।

୨୫୨ । ବାଧତ୍ୱଂ ହି ବିରୋଧିନାଂ ଶକ୍ୟାଭିଭବତ୍ୱେ ସତି, ନାନ୍ୟଥା ।

୨୫୩ । ତେଷାମୁକ୍ତିଃ ପ୍ରସ୍ତୁତରସପରିପୋଷାୟୈବ ସମ୍ପଦ୍ୟତେ ।

୨୫୪ । ଅଙ୍ଗଭାବଂ ପ୍ରାପ୍ତାନାଂ ଚ ତେଷାଂ ତାବଦୁକ୍ତାବବିରୋଧ ଏବ ॥

୨୫୫ । ଯଥା ବିପ୍ରଲମ୍ଭଶୃଙ୍ଗାରେ ବ୍ୟାଧ୍ୟାଦୀନାଂ ତଦଙ୍ଗାନା-ମେବାଽଦୋଷୋ ନାତଦଙ୍ଗାନାମ୍ ।

୨୫୬ । ତଦଙ୍ଗତ୍ୱେ ଚ ସମ୍ଭବତି ମରଣୋପନ୍ୟାସୋ ନ ନ୍ୟାଯ୍ୟଃ । ଆଶ୍ରୟବିଚ୍ଛେଦେ ରସସ୍ୟାତ୍ୟନ୍ତ ବିଚ୍ଛେଦ-ପ୍ରାପ୍ତେଃ ॥

---

୨୫୨ । ବିରୋଧିରସମାନେ ଯଦି ମୁଖ୍ୟରସ ଦ୍ୱାରା ଅଭିଭୂତ ହୋଇଥିବେ ତେବେ ସେମାନଙ୍କୁ ବାଧ ବୋଲି ଜାଣିବାକୁ ହେବ । ଯଦି ସେମାନେ ବଳବାନ୍ ହୋଇ ରହିଥିବେ ତେବେ ସେଠାରେ ସେମାନେ ବାଧ ନ ହୋଇ ବାଧକ ବୋଲାଇବେ ।

୨୫୩ । ଏତାଦୃଶ ବାଧରସମାନଙ୍କର ସନ୍ନିବେଶ, ପ୍ରସ୍ତୁତ (ମୁଖ୍ୟ) ରସର ପରିପୁଷ୍ଟି ନିମିତ୍ତକ ହୋଇଥାଏ ।

୨୫୪ । ଉକ୍ତ ବିରୋଧୀମାନେ ଅଙ୍ଗ ହୋଇଥିଲେ, ଉକ୍ତିରେ ବିରୋଧ ରହେ ନାହିଁ ।

୨୫୫ । ଯଥା—ବିପ୍ରଲମ୍ଭ ଶୃଙ୍ଗାରରେ ତାହାର ଅଙ୍ଗରୂପେ ବ୍ୟାଧି ପ୍ରଭୃତିର ଉକ୍ତି ଅଦୋଷ କିନ୍ତୁ ତାହା ଅଙ୍ଗ ହୋଇ ନ ଥିଲେ ଦୋଷାବହ ।

୨୫୬ । ମରଣ ବ୍ୟଭିଚାରିଭାବ ବିପ୍ରଲମ୍ଭ ଶୃଙ୍ଗାରର ଅଙ୍ଗରୂପରେ ସମ୍ଭାବିତ ହେଲେ ମଧ୍ୟ ତାହାର ବିନ୍ୟାସ ବିଧେୟ ନୁହେ । କାରଣ ସେଠାରେ ଶୃଙ୍ଗାରର ଆଶ୍ରୟ ନାୟକନାୟିକାଙ୍କର ବିଚ୍ଛେଦ ଦ୍ୱାରା ରସର ଆତ୍ୟନ୍ତିକ ବିଚ୍ଛେଦ ଅଟେ ।

୨୫୭ । କରୁଣସ୍ୟ ତୁ ତଥାବିଧେ ବିଷୟେ ପରିପୋଷୋ ଭବିଷ୍ୟତୀତି ଚେତ ନ, ତସ୍ୟ ଅପ୍ରସ୍ତୁତତ୍ୱାତ୍ ପ୍ରସ୍ତୁତ-ସ୍ୟଚ ବିଚ୍ଛେଦାତ୍। ଯତ୍ର ତୁ କରୁଣସ୍ୟୈବ କାବ୍ୟାର୍ଥତ୍ୱଂ ତତ୍ର ବିରୋଧଃ ॥

୨୫୮ । ଶୃଙ୍ଗାରେ ବା ମରଣସ୍ୟାଦୀର୍ଘକାଳପ୍ରତ୍ୟାପତ୍ତିସମ୍ଭବେ କଦାଚିଦୁପନିବନ୍ଧୋ ନାତ୍ୟନ୍ତବିରୋଧୀ ।

୨୫୯ । ଦୀର୍ଘକାଳପ୍ରତ୍ୟାପତ୍ତୌ ତୁ ତସ୍ୟାନ୍ତରା ପ୍ରବାହବିଚ୍ଛେଦ ଏବେତ୍ୟେବଂବିଧେତି ବୃତ୍ତୋପନିବନ୍ଧନଂ ରସବନ୍ଧ ପ୍ରଧାନେନ କବିନା ପରିହର୍ତ୍ତବ୍ୟମ୍ ॥

---

୨୫୭ । ପ୍ରଶ୍ନ—ବିପ୍ରଲମ୍ଭରେ ମରଣ ବର୍ଣ୍ଣନା କରିବାରେ କରୁଣ ରସ ତ ପରିପୁଷ୍ଟ ହେଉଅଛି ।

ଉ—ତା' ନୁହେ, କାରଣ କରୁଣ ସେଠାରେ ପ୍ରସ୍ତୁତ ନୁହେ । ଶୃଙ୍ଗାର ସେଠାରେ ପ୍ରସ୍ତୁତ । ମରଣ ବର୍ଣ୍ଣନା ଦ୍ୱାରା ଶୃଙ୍ଗାରର ବିଚ୍ଛେଦ ଘଟେ । ଏଣୁ ମରଣ ସେଠାରେ ରସାଙ୍ଗ ହୋଇ ନ ପାରେ । ଯେଉଁଠି କରୁଣ-ରସ କାବ୍ୟର ମୁଖ୍ୟ ଉଦ୍ଦେଶ୍ୟ ହୋଇଥିବ- ସେଠାରେ ମରଣ ବର୍ଣ୍ଣନାରେ ବିରୋଧ ନାହିଁ ।

୨୫୮ । ଯଦି ମରଣର ଅଳ୍ପକାଳ ପରେ ପୁନର୍ଜୀବନ ସମ୍ଭାବନା ଥାଏ ତାହାହେଲେ ଶୃଙ୍ଗାର ରସରେ ମଧ୍ୟ ତାଦୃଶ ମରଣ କଦାଚିତ୍ ଉକ୍ତ ହେଲେ ରସର ଅତ୍ୟନ୍ତ ବିରୋଧୀ ହୁଏ ନାହିଁ ।

୨୫୯ । ଦୀର୍ଘକାଳ ପରେ ପୁନର୍ଜୀବନ ଘଟିଥିଲେ ରସବୋଧ-ଧାରାରେ ବିଚ୍ଛେଦ ଘଟିବ । ଏଣୁ ରସବନ୍ଧର ପ୍ରାଧାନ୍ୟ ଲକ୍ଷ୍ୟ କରୁଥିବା କବି ଯତ୍ନପୂର୍ବକ ଏତାଦୃଶ ଐତିହାସିକ ବୃତ୍ତାନ୍ତ ଉଲ୍ଲେଖକୁ ପରିତ୍ୟାଗ କରିବା ଉଚିତ ।

୨୬୦ । ତତ୍ର ଲବ୍ଧପ୍ରତିଷ୍ଠେ ତୁ ରସେ ବିରୋଧିରସାଙ୍ଗାନାଂ
ବାଧକତ୍ୱେନୋକ୍ତାବଦୋଷଃ—

୨୬୧ । ଯଥା—

କ୍ୱାକାର୍ଯ୍ୟଂ ଶଶଲକ୍ଷ୍ମଣଃ କ୍ୱଚକୁଳଂ,
ଭୂୟୋଽପି ଦୃଶ୍ୟେତ ସା,
ଦୋଷାଣାଂ ପ୍ରଶମାୟ ନଃ ଶ୍ରୁତମହୋ, !
କୋପେଽପି କାନ୍ତଂ ମୁଖମ୍ ।

---

୨୬୦ । ବିବକ୍ଷିତ (ପ୍ରସ୍ତୁତ) ରସ ଲବ୍ଧପ୍ରତିଷ୍ଠ ହୋଇଥିଲେ ଏବଂ ଯେଉଁଠାରେ ବିରୋଧିରସର ଅଙ୍ଗମାନେ ବାଧକତ୍ୱରେ ଉକ୍ତ ହୋଇଥିଲେ ଦୋଷ ହୁଏ ନାହିଁ ।

୨୬୧ । ଯଥା - (ଉର୍ବଶୀଙ୍କୁ ଦେଖି ପୁରୁରବାଙ୍କର ଚିନ୍ତା) ବେଶ୍ୟା ଆସକ୍ତରୂପକ ଅକାର୍ଯ୍ୟ କେଉଁଠି ? ଚନ୍ଦ୍ରଙ୍କର ସମୁଜ୍ଜ୍ୱଳ ବଂଶ କେଉଁଠି ? ଆଉ ଥରେ ସେ ଦେଖା ହୁଅନ୍ତା କି ; କାମ କ୍ରୋଧାଦି ଦୋଷମାନଙ୍କର ପ୍ରଶମନ ସକାଶେ ତ ଆମ୍ଭେ ପାଠ ପଢ଼ିଛୁଁ । ଅହୋ ! ରାଗିଲାବେଳେ ବି ମୁହଁ ସୁନ୍ଦର ! (ଅନ୍ୟବେଳେ କେଡ଼େ ସୁନ୍ଦର ହୋଇ ନ ଥିବ ?) ସଦାଗୁଣନିଷ୍ଠ ସନ୍ଥଲୋକମାନେ ମୋତେ କଅଣ କହିବେ ? ସେ ସ୍ତ୍ରୀ, ସ୍ୱପ୍ନରେ ସୁଦ୍ଧା ଦୁର୍ଲ୍ଲଭ ! ଆରେ ମନ, ଥିର ହୁଅ (ସ୍ଥିର ହୁଅ) । କେଉଁ ସୌଭାଗ୍ୟବାନ୍ (ଧନ୍ୟ) ଯୁବକ ତାର ଅଧରପାନ କରିବ ?

ଏ ପଦ୍ୟରେ ପ୍ରଥମାଂଶରେ "ବେଶ୍ୟାସକ୍ତ କେଉଁଠି ? ଚନ୍ଦ୍ରବଂଶ କେଉଁଠି ? ଏହି ମହା ବୈଷମ୍ୟମୂଳକ ବିତର୍କ ପ୍ରକାଶ ପାଉଛି । ତାହା (ବିତର୍କ) ଶାନ୍ତରସର ବ୍ୟଭିଚାରୀ ।"

୨ୟ ଅଂଶରେ "ଆଉଥରେ ଦେଖା ହୁଅନ୍ତା କି ? ବାକ୍ୟରେ ଔତ୍ସୁକ୍ୟ ପ୍ରକାଶ ପାଉଛି । ତାହା ଶୃଙ୍ଗାର ରସର ବ୍ୟଭିଚାରୀ । ଏଠାରେ ଶୃଙ୍ଗାରର ବିରୋଧୀ ଶାନ୍ତରସର ବ୍ୟଭିଚାରୀ ବିତର୍କକୁ ଔତ୍ସୁକ୍ୟ ବାଧା ଦେଉଛି ।

କିଂ ବକ୍ଷନ୍ତ୍ୟପକଳ୍ପଷାଃ କୃତଧିୟଃ, ସ୍ୱପ୍ନେଽପି ସା
ଦୁର୍ଲଭା, ଚେତଃ ସ୍ୱାସ୍ଥ୍ୟମୁପେହି, କଃ ଖଲୁ ଯୁବା
ଧନ୍ୟୋଽଧରଂ ପାସ୍ୟତି ॥

---

୫ମ୍ଭ ଅଂଶରେ "ଦୋଷ ନାଶ ପାଇଁ ଆମ୍ଭେ ପଢ଼ୁଛୁ ।" ଏହି ବାକ୍ୟରୁ ମତି ପ୍ରକାଶିତ ହେଉଛି । ତାହା (ମତି) ଶାନ୍ତର ବ୍ୟଭିଚାରୀ । ସେ ଏଠାରେ ଶୃଙ୍ଗାରର ବ୍ୟଭିଚାରୀ ଔତ୍ସୁକ୍ୟକୁ ବାଧାଦେଉଛି ।

୪ର୍ଥ ଅଂଶରେ "କୋପରେ ମଧ୍ୟ ମୁଖ କମନୀୟ ।" ଏ ବାକ୍ୟରୁ ସ୍ମୃତି ପ୍ରତୀତ ହେଉଅଛି ତାହା (ସ୍ମୃତି) ଶୃଙ୍ଗାରର ବ୍ୟଭିଚାରୀ । ସେ ମଧ୍ୟ ମତିକୁ ବାଧାଦେଉଛି ।

୫ମ ଅଂଶରେ 'ସଜ୍ଜନମାନେ କଅଣ କହିବେ ?" ଏହି ବାକ୍ୟରୁ ଶାନ୍ତ ରସର ବ୍ୟଭିଚାରୀଭାବ ଶଙ୍କା ପ୍ରତୀତ ହେଉଛି । ସେ ସ୍ମୃତିକୁ ବାଧାଦେଉଛି ।

୬ଷ୍ଠ ଅଂଶରେ "ସ୍ୱପ୍ନରେ ମଧ୍ୟ ଦୁର୍ଲଭ ।" ବାକ୍ୟରୁ ନାଇକର ଦୈନ୍ୟ ପ୍ରକାଶ ପାଉଛି । ଦୈନ୍ୟ ଶୃଙ୍ଗାରର ଅଙ୍ଗ । ତାହା ଦ୍ୱାରା ସ୍ମୃତି ବାଧିତ ହୋଇଅଛି ।

୭ମ ଅଂଶରେ "ଚିତ୍ତ ସ୍ଥିର ହୁଅ" ବାକ୍ୟରେ ଶାନ୍ତର ବ୍ୟଭିଚାରୀ ଧୃତି (ଧୈର୍ଯ୍ୟ) ବ୍ୟକ୍ତ ହେଉଛି । ସେ ଦୈନ୍ୟର ବାଧକଭାବେ ରହିଅଛି ।

୮ମ ଅଂଶରେ "କୌଣସି ଧନ୍ୟ ଯୁବକ ତାର ଅଧର ରସ ପାନ କରିବ କିନ୍ତୁ ମୋଭଳି ଅଧନ୍ୟ ନୁହେ ।" ଏହି ବାକ୍ୟରୁ ଚିନ୍ତା ପ୍ରକାଶ ପାଉଛି, ତାହା ଶୃଙ୍ଗାରର ବ୍ୟଭିଚାରୀ ଓ ତାହା ଦ୍ୱାରା ଧୃତି ବାଧାପ୍ରାପ୍ତ ହେଉଅଛି ।

ପରିଶେଷରେ ଶୃଙ୍ଗାର ବ୍ୟଭିଚାରୀ ଚିନ୍ତା ମୁଖ୍ୟଭାବେ ରହିଥିବାରୁ ଏ ପଦ୍ୟରେ ବିପ୍ରଲମ୍ଭ ଶୃଙ୍ଗାର ପ୍ରଧାନ । ଶ୍ଳୋକ ମଧ୍ୟରେ ଶୃଙ୍ଗାରର ବିରୋଧିରସ ଶାନ୍ତରସର ବ୍ୟଭିଚାରୀ, ବିତର୍କ, ମତି, ଶଙ୍କା ଧୃତି, ଏହି ଗୁରିଗୋଟି ବ୍ୟଭିଚାରିଭାବ ଶୃଙ୍ଗାରର ବାଧ୍ୟରୂପେ ରହିଅଛନ୍ତି । ଏଠାରେ ବିରୋଧିରସର ଭାବମାନେ ବାଧ୍ୟରୂପେ ରହିଥିବାରୁ ବିରୋଧିରସର ଉପନିବନ୍ଧ ଦୋଷାବହ ନୁହେ ।

୨୬୨ । ଯଥା ବା—

ପୁଣ୍ଡରୀକସ୍ୟ ମହାଶ୍ୱେତାଂ ପ୍ରତି ପ୍ରବୃତ୍ତନିର୍ଭରାନୁ-
ରାଗସ୍ୟ ଦ୍ୱିତୀୟମୁନିକୁମାରୋପଦେଶବର୍ଣ୍ଣନେ ॥

୨୬୩ । ସ୍ୱାଭାବିକ୍ୟାମଙ୍ଗଭାବପ୍ରାପ୍ତାବଦୋଷୋ ଯଥ—

୨୬୪ । "ଭ୍ରମିମରତିମଳସହୃଦୟତାଂ ପ୍ରଳୟଂ ମୂର୍ଚ୍ଛାଂ ତମଃ
ଶରୀରସାଦମ୍ । ମରଣଂ ଚ ଜଳଦ ଭୁଜଗଜଂ ପ୍ରସହ୍ୟ
କୁରୁତେ ବିଷଂ ବିୟୋଗିନୀନାମ୍" ଇତ୍ୟାଦୌ ।

୨୬୫ । ସମାରୋପିତାୟାମପ୍ୟବିରୋଧୋ ଯଥା—

---

୨୬୨ । ଅଥବା କାଦମ୍ବରୀ କଥାରେ ମହାଶ୍ୱେତାପ୍ରତି ଅତ୍ୟନ୍ତ ଅନୁରାଗବନ୍ତ ପୁଣ୍ଡରୀକଙ୍କୁ କପିଞ୍ଜଳର ଉପଦେଶ ବର୍ଣ୍ଣନା ସ୍ଥଳରେ । ସେଠାରେ ଶୃଙ୍ଗାର ବିରୋଧି ଶାନ୍ତ ରସର ଅଙ୍ଗ ବୈରାଗ୍ୟମୂଳକ ଉପଦେଶ ବାଧିତ ହୋଇ ପର୍ଯ୍ୟବସାନରେ ଶୃଙ୍ଗାରକୁ ପୁଷ୍ଟ କରୁଅଛି । ଏଣୁ ସେଠାରେ ଦୋଷ ନାହିଁ ।

୨୬୩ । ବିରୋଧି ରସ ସ୍ୱଭାବତଃ ଅନ୍ୟ ବିରୋଧୀର ଅଙ୍ଗ ହେବା ଦୋଷ ନୁହେ ।

୨୬୪ । ଯଥା :—ଭ୍ରମିମରତିଂ "ଇତ୍ୟାଦି ଶ୍ଳୋକ" ଏ ଶ୍ଳୋକର ଅର୍ଥ ୨ୟ ଉଦ୍ୟୋତରେ ଲେଖା ଯାଇଅଛି । ସେଥିରେ ଶୃଙ୍ଗାର ରସ ପ୍ରଧାନ । ତହିଁରେ ଉକ୍ତ ହୋଇଥିବା "ଭ୍ରମି" ପ୍ରଭୃତି ଶୃଙ୍ଗାର ବିରୋଧି କରୁଣ ରସର ପୋଷକ, କିନ୍ତୁ ବିରୋଧି ରସର ଭାବଗୁଡ଼ିକ ଶୃଙ୍ଗାରରେ ଅଙ୍ଗ ଭାବରେ ଆରୋପିତ ହୋଇଥିବାରୁ ସେଠାରେ ଦୋଷ ନାହିଁ ।

୨୬୫ । ସମାରୋପରେ ମଧ୍ୟ ବିରୋଧ ହୁଏ ନାହିଁ । ଯଥା—

ପାଣ୍ଡୁ କ୍ଷାମଂ ବଦନଂ ହୃଦୟଂ ସରସଂ ତବାଲସଂ ଚ ବପୁଃ ।
ଆବେଦୟତି ନିତାନ୍ତଂ କ୍ଷେତ୍ରିୟରୋଗଂ ସଖି ! ହୃଦନ୍ତଃ ॥

"ପାଣ୍ଡୁକ୍ଷାମମ୍" ଇତ୍ୟାଦୌ ॥

୨୬୭ । ଯଥା ବା—

"କୋପାତ୍କୋମଲଲୋଳ ବାହୁଲତିକାପାଶେନ"

ଇତ୍ୟାଦୌ ।

୨୬୮ । ଇୟଂ ଶୃଙ୍ଗାରବିପ୍ରାପ୍ତିରନ୍ୟା, ଯଦାଧିକାରିକତ୍ୱାତ୍ ପ୍ରଧାନ ଏକସ୍ମିନ୍ ବାକ୍ୟାର୍ଥେ ରସୟୋର୍ଭାବୟୋର୍ବା

---

ଅର୍ଥ :—ପ୍ରିୟସଖୀର ବିରହ ଦଶାକୁ ଆଚ୍ଛାଦନ କରି ସଖୀ କହୁଅଛି ।:—ହେ ସଖି ! ତୁମ୍ଭର-ପାଣ୍ଡୁର ବର୍ଣ୍ଣ ତଥା କୃଶ ମୁଖମଣ୍ଡଳ ଓ ସରସ (ବିରହ ପକ୍ଷେ ସାନୁରାଗ, ରୋଗପକ୍ଷେ ଅମ୍ଳ ବା ଦାଗଯୁକ୍ତ) ହୃଦୟ ଏବଂ ଆଳସ୍ୟଯୁକ୍ତ ଶରୀର ଏମାନେ ତୋ ହୃଦୟ ମଧ୍ୟରେ କ୍ଷେତ୍ରିୟ ରୋଗ (ବିରହ ପକ୍ଷେ ପୁରୁଷ ପ୍ରୀତି, ରୋଗପକ୍ଷେ ରାଜଯକ୍ଷ୍ମାଦି ଅସାଧ୍ୟ ରୋଗ ।) ରହିଅଛି ବୋଲି ଜଣାଇ ଦେଉଛନ୍ତି ।

ଏ ପଦରେ ରାଜଯକ୍ଷ୍ମାଦିର ଚିହ୍ନ ପାଣ୍ଡୁତାଦି କରୁଣ ରସର ଅନୁଭାବରୂପେ ପ୍ରସିଦ୍ଧ । କରୁଣରସ ମଧ୍ୟ ଶୃଙ୍ଗାରର ବିରୋଧୀ । ଶ୍ଳେଷ ମହିମାରୁ ଏଠାରେ ପ୍ରସ୍ତୁତ ବିପ୍ରଲମ୍ଭରେ କରୁଣ ରସୋଚିତ ବ୍ୟାଧିର ଆରୋପ କରାଯାଇ ଥିବାରୁ ଏଠାରେ ବିରୋଧ ନାହିଁ ।

୨୬୭ । "କୋପାତ୍ କୋମଳ" ଇତ୍ୟାଦି ପଦ୍ୟର ଅର୍ଥ ୨ୟ ଉଦ୍ୟୋତରେ ଲେଖା ଯାଇଅଛି । ଏଠାରେ ବର୍ଣ୍ଣିତ କୋପ, ବନ୍ଧନ, ତାଡ଼ନପ୍ରଭୃତି ରୌଦ୍ରରସର ଅଙ୍ଗ, ତେଣୁ ସେମାନେ ପ୍ରସ୍ତୁତ ଶୃଙ୍ଗାର ରସର ବିରୋଧୀ । କିନ୍ତୁ ବାହୁଲତା ଉପରେ ପାଶ ଆରୋପ କରିଯିବାରୁ ରୌଦ୍ରରସ ପୁଷ୍ଟ ହୋଇ ନ ପାରି ପ୍ରସ୍ତୁତ ଶୃଙ୍ଗାରର ଅଙ୍ଗ ହୋଇ ରହିଅଛି । ସୁତରାଂ ଏଠାରେ ବିରୋଧୀର ଉକ୍ତି ଦୋଷାବହ ନୁହେ ।

୨୬୬ । ଯେଉଁଠାରେ ପରସ୍ପର ବିରୁଦ୍ଧ ଦୁଇଗୋଟି ରସ କିମ୍ବା ଦୁଇଗୋଟି ପରସ୍ପର ବିରୁଦ୍ଧ ଭାବ ଗୋଟିଏ ପ୍ରଧାନୀଭୂତ ପ୍ରାକରଣିକ ବାକ୍ୟାର୍ଥର ଅଙ୍ଗ ହୁଅନ୍ତି, ସେଠାରେ ବିରୋଧ ନିବନ୍ଧନରେ ଦୋଷ ନାହିଁ ।

ପରସ୍ପରବିରୋଧିନୋର୍ଦ୍ୱୟୋରଙ୍ଗଭାବଗମନଂ, ତସ୍ୟା-
ମପି ନ ଦୋଷଃ ।

୨୬୮ । ଯଥୋକ୍ତମ୍ "କ୍ଷିପ୍ତୋ ହସ୍ତାବଲଗ୍ନଃ" ଇତ୍ୟାଦୌ ।

୨୬୯ । କଥମବିରୋଧ ଇତି ଚେତ୍ ?
ଦ୍ୱୟୋରପି ତୟୋରନ୍ୟପରତ୍ୱେନ ବ୍ୟବସ୍ଥାନାତ୍ ।

୨୭୦ । ଅନ୍ୟପରତ୍ୱେଽପି ବିରୋଧିନୋଃ କଥଂ ବିରୋଧ
ନିବୃତ୍ତିରିତି ଚେତ୍ ?

---

ଏହା ସ୍ୱାଭାବିକ ଅଙ୍ଗଭାବ ପ୍ରାପ୍ତି ଓ ଶ୍ଳେଷମୂଳକ ଅଙ୍ଗଭାବ ପ୍ରାପ୍ତି ଭିନ୍ନ ଆଉ ଏକ ପ୍ରକାର ଅଙ୍ଗଭାବ ପ୍ରାପ୍ତି ।

୨୬୮ । ପୂର୍ବରୁ ୨ୟ ଉଦ୍ୟୋତରେ "କ୍ଷିପ୍ତୋହସ୍ତାବଲଗ୍ନଃ" ଇତ୍ୟାଦି ଶ୍ଳୋକର ଅର୍ଥ ଲେଖା ଯାଇଅଛି । ସେଥିରେ ପରସ୍ପର ବିରୁଦ୍ଧ ଶୃଙ୍ଗାର ଓ କରୁଣ ଦୁଇଟି ରସ ବାକ୍ୟାର୍ଥୀଭୂତ ତ୍ରିପୁରାରି ପ୍ରଭାବାତିଶୟର ଅଙ୍ଗଭାବେ ରହି ଥିବାରୁ ବିରୋଧ ନାହିଁ ।

୨୬୯ । ପ୍ରଶ୍ନ—ଆଚ୍ଛା ; ସେଠାରେ କାହିଁକି ବିରୋଧ ନାହିଁ ?

ଉତ୍ତର—ସେଠାରେ ଦୁଇଟିଯାକ ରସ ଅସ୍ୱତନ୍ତ୍ରଭାବେ ଥାଇ ଅନ୍ୟର ଅଙ୍ଗ ହୋଇଛନ୍ତି ଏଣୁ ଦୋଷ ନାହିଁ ।

୨୭୦ । ପ୍ରଶ୍ନ—ଅନ୍ୟର ଅଙ୍ଗ ହେଲେ (ଅନ୍ୟପର), ଦୁଇ ବିରୋଧୀଙ୍କର କପରି ବିରୋଧ ନଷ୍ଟ ହେଉଛି ?

ଉତ୍ତର—ବିଧିରେ ଦୁଇ ବିରୋଧୀଙ୍କର ସମାବେଶ ଦୋଷ କିନ୍ତୁ ଅନୁବାଦରେ ନୁହେ । ବିଧି—"ଅପ୍ରାପ୍ତ ପ୍ରାପଣଂ ବିଧିଃ" ଯାହାର ପୂର୍ବରୁ ପ୍ରାପ୍ତି ନ ଥିଲା ତାହାର ପ୍ରାପ୍ତି ବିଧି ।

ଅନୁବାଦ-ପ୍ରାପ୍ତସ୍ୟ ପୁନରୁକ୍ତିରନୁବାଦଃ । ଯାହାର ପୂର୍ବରୁ ପ୍ରାପ୍ତ ଅଛି ତାହାର ପୁନର୍ବାର କଥନ ଅନୁବାଦ । ଯଥା ଦଧିରେ ହୋମ କରୁଛି ଏ ବାକ୍ୟରେ ଦଧି ଓ ହୋମ କରିବା ଉଭୟ ବିଧି । ଦଧିରେ ଇନ୍ଦ୍ରିୟ

ଉଚ୍ୟତେ—ବିଧୌ ବିରୁଦ୍ଧସମାବେଶସ୍ୟ
ଦୁଷ୍ଟତ୍ୱଂ, ନାନୁବାଦେ ।

୨୭୧ । ଯଥା—

ଏହି ଗଚ୍ଛ, ପତୋତ୍ତିଷ୍ଠ, ବଦ ମୌନଂ ସମାଚର ।
ଏବମାଶାଗ୍ରହଗ୍ରସ୍ତୈଃ କ୍ରୀଡ଼ନ୍ତି ଧନିନୋଽର୍ଥିଭିଃ ॥
ଇତ୍ୟାଦୌ

୨୭୨ । ଅତ୍ର ହି ବିଧିପ୍ରତିଷେଧୟୋଃ ଅନୂଦ୍ୟମାନତ୍ୱେନ ସମାବେଶେ ନ ବିରୋଧଃ, ତଥେହାପି ଭବିଷ୍ୟତି ।

୨୭୩ । ଶ୍ଳୋକେ ହ୍ୟସ୍ମିନ୍ ଈର୍ଷ୍ୟାବିପ୍ରଲମ୍ଭଶୃଙ୍ଗାର—କରୁଣବସ୍ତୁନୋର୍ନ ବିଧୀୟମାନତ୍ୱମ୍, ତ୍ରିପୁରରିପୁପ୍ରଭାବାତି-

---

କାମନାରେ ହୋମ କରୁଛି । ଏ ବାକ୍ୟରେ ଇନ୍ଦ୍ରତ୍ୱକାମନା ବିଧି । ଦଧି ଓ ହୋମ ଅନୁବାଦ ଯଥା :—

୨୭୧ । ଧନୀମାନେ ଆଶାରୂପକ ଗ୍ରହ ଦ୍ୱାରା ଗ୍ରାସି ହୋଇଥିବା ଅର୍ଥୀମାନଙ୍କ ସହିତ ଆସ, ଯାଅ, ପଡ଼, ଉଠ, କହ, ତୁନି ହୁଅ, ଏହିପରି କ୍ରୀଡ଼ା କରନ୍ତି । (ଏଠାରେ ଆସ, ଯାଅ ପ୍ରଭୃତି ପରସ୍ପର ବିରୋଧୀଗୁଡ଼ିକ ବିଧେୟ ଧନୀର କ୍ରୀଡ଼ା ଉଦ୍ଦେଶ୍ୟରେ ପଠିତ ହୋଇଥିବାରୁ ଦୋଷ ନାହିଁ ।)

୨୭୨ । ଏ ପଦ୍ୟରେ ବିଧି (ଆସ) ଓ ପ୍ରତିଷେଧ (ଯାଅ) ଉଭୟର ଅନୁବାଦ ରୂପରେ ସମାବେଶ କରାଯାଇ ଥିବାରୁ ଦୋଷ ନାହିଁ । ସେହିପରି "କ୍ଷିପ୍ତୋ ହସ୍ତାବଲଗ୍ନଃ" ପଦ୍ୟରେ ଶୃଙ୍ଗାର ଓ କରୁଣ ଦୁହେଁ ଅନୁବାଦରୂପେ ଥିବାରୁ ଦୋଷ ନାହିଁ । (ଧନିକୋଚରିତ ଆସ, ଯାଅ, ପ୍ରଭୃତି କଥା ବଳରେ ଅନୁବାଦ ମାତ୍ର) ।

୨୭୩ । "କ୍ଷିପ୍ତୋହସ୍ତାବଲଗ୍ନଃ" ଶ୍ଳୋକରେ ଈର୍ଷ୍ୟା ବିପ୍ରଲମ୍ଭ-ଶୃଙ୍ଗାର ଓ କରୁଣ ଏ ଦୁହିଁଙ୍କର ବିଧାନ କରାଯାଉ ନାହିଁ । ଏଣୁ ସେ ଦୁହେଁ

ଶୃଙ୍ଗସ୍ୟ ବାକ୍ୟାର୍ଥତ୍ୱାତ୍ । ତଦଙ୍ଗ-ତ୍ୱେନ ଚ ତୟୋର୍ବ୍ୟ-
ବସ୍ଥାନାତ୍ ।

୨୭୪ । ନଚ ରସେଷୁ ବିଧ୍ୟନୁବାଦବ୍ୟବହାରୋ ନାସ୍ତୀତି ଶକ୍ୟଂ ବକ୍ତୁମ୍, ତେଷାଂ ବାକ୍ୟାର୍ଥତ୍ୱେନ ଅଭ୍ୟୁପଗମାତ୍ ।

୨୭୫ । ବାକ୍ୟାର୍ଥସ୍ୟ ବାଚ୍ୟସ୍ୟ ଚ ଯୌ ବିଧ୍ୟନୁବାଦୌ ତୌ ତଦାକ୍ଷିପ୍ତାନାଂ ରସାନାଂ କେନ ବାର୍ଯ୍ୟେତେ ।

୨୭୬ । ଯୈର୍ବା ସାକ୍ଷାତ୍ କାବ୍ୟାର୍ଥତା ରସାଦୀନାଂ ନାଭ୍ୟୁପ-ଗମ୍ୟତେ, ତୈସ୍ତେଷାଂ ତନ୍ନିମିତ୍ତତା ତାବଦବଶ୍ୟ ମଭ୍ୟୁପଗନ୍ତବ୍ୟା । ତଥାପ୍ୟତ୍ର ଶ୍ଲୋକେ ନ ବିରୋଧଃ ।

---

ବିଧି ନୁହନ୍ତି । ସେଠାରେ ବିପୁରଙ୍କର ପ୍ରଭାବାତିଶୟ୍ୟ ବାକ୍ୟାର୍ଥ । ଶୃଙ୍ଗାର ଓ କରୁଣ ତାହାର ଅଙ୍ଗରୂପେ ଉକ୍ତ ହୋଇଅଛନ୍ତି ।

୨୭୪ । ପୂର୍ବପକ୍ଷ :—ବାଚ୍ୟ ଦଶାରେ ବିଧି ଓ ଅନୁବାଦର ବ୍ୟବ-ହାର ଥାଏ । ରସ ତ ବାଚ୍ୟ ନୁହେ, ସେ ବ୍ୟଙ୍ଗ୍ୟବୋଲି ପୂର୍ବରୁ ପ୍ରତିପାଦନ କରାଯାଇଛି । ତେଣୁ ରସରେ ବିଧି ଓ ଅନୁବାଦର ବ୍ୟବହାର ନାହିଁ ।

ଉତ୍ତର—ଏପରି କହିପାରିବ ନାହିଁ । କାରଣ ବାଚ୍ୟ ଅର୍ଥ ପରି ବ୍ୟଙ୍ଗ୍ୟ ଅର୍ଥ ମଧ୍ୟ ବାକ୍ୟର ଅର୍ଥ । ରସାଦିମାନେ ବ୍ୟଙ୍ଗ୍ୟ ହୋଇଥିବାରୁ ବାକ୍ୟାର୍ଥ ହେବା ସୁନିଶ୍ଚିତ । (ଅତଏବ ରସରେ ବିଧି ଓ ଅନୁବାଦର ବ୍ୟବହାର ରହିବା ସଙ୍ଗତ) ।

୨୭୫ । ବାକ୍ୟାର୍ଥଭୂତ ବାଚ୍ୟ ଅର୍ଥରେ ଯେତେବେଳେ ବିଧି ଓ ଅନୁବାଦ ରହୁଛି ସେତେବେଳେ ଉକ୍ତ ବାଚ୍ୟାର୍ଥ ଦ୍ୱାରା ଆକ୍ଷିପ୍ତ ରସରେ ତାହା (ବିଧି ଓ ଅନୁବାଦ)କୁ ରହିବାକୁ କିଏ ବାରଣ କରିବ ?

୨୭୬ । ଅଥବା ଯେଉଁମାନେ ରସାଦିକୁ କାବ୍ୟର ଅର୍ଥ ବୋଲି ସ୍ୱୀକାର ନ କରନ୍ତି ସେମାନେ, ନିଶ୍ଚୟ ବିଭାବାଦି ରୂପ କାବ୍ୟର ଅର୍ଥକୁ ରସର ନିମିତ୍ତ ବୋଲି ସ୍ୱୀକାର କରିବେ । ତେଣୁ ସେମାନଙ୍କ ମତରେ ମଧ୍ୟ "କ୍ଷିପ୍ତୋ ହସ୍ତାବଲଗ୍ନଃ) ଶ୍ଲୋକରେ ବିରୋଧ ରହୁ ନାହିଁ ।

୨୭୭ । ଯସ୍ମାଦନୂଦ୍ୟମାନାଙ୍ଗନଦିଗ୍ଧୋଭୟରସବସ୍ତୁସହ-
କାରିଣୋ ବଧ୍ୟମାନାଂଶାତ୍ ଭାବବିଶେଷପ୍ରତୀତି-
ରୁତ୍ପଦ୍ୟତେ, ତତସ୍ତ ନ କଷ୍ଟ ନ ବିରୋଧଃ ।

୨୭୮ । ଦୃଶ୍ୟତେ ବିରୁଦ୍ଧୋଭୟସହକାରଣଃ କାରଣାତ୍ କାର୍ଯ୍ୟ-
ବିଶେଷୋପୃତ୍ତିଃ ।

୨୭୯ । ବିରୁଦ୍ଧୋଫଳୋତ୍ପାଦନହେତୁତ୍ୱଂ ହି ଯୁଗପଦେକସ୍ୟ
କାରଣସ୍ୟ ବିରୁଦ୍ଧତ୍ୱମ୍, ନ ତୁ ବିରୁଦ୍ଧୋଭୟସହ-
କାରତ୍ୱମ୍ ।

---

୨୭୭ । ଏ ଶ୍ଳୋକରେ ଶତ୍ରୁଶରାଗ୍ନି କୃତ ଦୁରନ୍ତଦାହ ବିଧି ଓ ନିପୁର ଯୁବତି କୃତ ହସ୍ତକ୍ଷେପାଦି ଅନୁବାଦ । ଏହି ହସ୍ତକ୍ଷେପାଦି ରୂପ କାବ୍ୟାର୍ଥ ଶୃଙ୍ଗାର ଓ କରୁଣ, ଏହି ରସ ଦୁଇଟିର ବିଭାବାଦିରୂପେ ନିମିତ୍ତ ହୋଇ ରହିଅଛନ୍ତି । ସୁତରାଂ ଶୃଙ୍ଗାର ଓ କରୁଣ ଅନୁବାଦାଙ୍ଗ ବିଭାବାଦି ଦ୍ୱାରା ପ୍ରକାଶିତ ହେଉଥିବାରୁ ଅନୁବାଦ ସ୍ୱରୂପ । ପୁନଶ୍ଚ ଅନୁବାଦାଙ୍ଗ ଏହି ରସ ଦୁଇଟି ବିଧୀୟମାନ ଶତ୍ରୁଶରାଗ୍ନି କୃତ ଦୁରନ୍ତ ଦାହର ସହକାରୀ-ରୂପେ ରହିଅଛନ୍ତି । ଦୁଇ ସହକାରୀ ଦ୍ୱାରା ପୁଷ୍ଟ ବିଧ୍ୟଂଶ (ଶତ୍ରୁଶରାଗ୍ନି କୃତ ଦୁରନ୍ତ ଦାହ)ରୁ ନିପୁରର ବିଷୟକ ରତିଭାବ ପ୍ରତୀତ ହେଉଅଛି । (ତତଃ) ଦୁଇ ବିରୁଦ୍ଧ ରସ ଅନୁବାଦାଂଶରେ ରହିବାରୁ ଓ ସହକାରୀ କାରଣରୂପେ ଉକ୍ତ ହୋଇଥିବାରୁ ଏଠାରେ ଦୁଇ ବିରୋଧି ସମାବେଶ ହେତୁକ ଦୋଷ ନାହିଁ । ସୁତରାଂ ଏ ଶ୍ଳୋକରେ ବିରୋଧ ନାହିଁ ।

୨୭୮ । ଦୁଇ ବିରୁଦ୍ଧ ଯାହାର ସହକାରୀ ତାଦୃଶ କାରଣରୁ କୌଣସି କୌଣସି କାର୍ଯ୍ୟର ଉତ୍ପତ୍ତି ମଧ୍ୟ ଦେଖାଯାଏ । ଯଥା ପରସ୍ପର ବିରୁଦ୍ଧ ଅଗ୍ନି ଓ ଜଳ ମିଳିତଭାବେ ଚାଉଳକୁ ଅନ୍ନ କରିବା କାର୍ଯ୍ୟପ୍ରତି ସହକାରୀ କାରଣ ହେଉଅଛନ୍ତି । ସେହିପରି ଏଠାରେ ଶୃଙ୍ଗାର ଓ କରୁଣ ମିଳି ଶତ୍ରୁଶରାଗ୍ନି କୃତ ଦୁରନ୍ତ ଦାହର ନିପୁରର ବିଷୟକ ରତିଭାବ ବ୍ୟଞ୍ଜନ ପ୍ରତି ସହକାରୀ—କାରଣ ହେଉଅଛନ୍ତି ।

୨୭୯ । ପ୍ରଶ୍ନ :—ତେବେ ଦୋଷ କେଉଁଠି ?

୨୮୦ । ଏବଂ ବିରୁଦ୍ଧପଦାର୍ଥବିଷୟଃ କଥମଭିନେୟଃ ପ୍ରୟୋକ୍ତବ୍ୟ ଇତି ଚେତ୍, ଅନୂଦ୍ୟମାନୈର୍ବିଧେୟାବିଷୟେ ଯା ବାର୍ତ୍ତା ସାଽତ୍ରାପି ଭବିଷ୍ୟତି ।

୨୮୧ । ଏବଂ ବିଧ୍ୟନୁବାଦନୟାଶ୍ରୟେଣାତ୍ର ଶ୍ଳୋକେ ପରିହୃତସ୍ତାବଦ୍ଵିରୋଧଃ ।

୨୮୨ । କିଂଚ ନାୟକସ୍ୟ ଅଭିନନ୍ଦନୀୟୋଦୟସ୍ୟ କସ୍ୟଚିତ୍ ପ୍ରଭାବାତିଶୟବର୍ଣ୍ଣନେ, ତତ୍ ପ୍ରତିପକ୍ଷାଣାଂ ଯଃ କରୁଣୋ ରସଃ, ସ ପରୀକ୍ଷକାଣାଂ ନ ବୈକ୍ଲବ୍ୟମାଦଧାତି ।

---

ଉତ୍ତର :—ଗୋଟିଏ କାରଣ ପରସ୍ପର ବିରୁଦ୍ଧ କାର୍ଯ୍ୟମାନଙ୍କର ଏକକାଳୀନ ଉତ୍ପତ୍ତି ପ୍ରତି ହେତୁ ହେବା ଦୋଷାବହ କିନ୍ତୁ କୌଣସି କାର୍ଯ୍ୟର ଉତ୍ପତ୍ତି ପ୍ରତି ପରସ୍ପର ବିରୁଦ୍ଧ ବସ୍ତୁ ଦୁଇଟି ସହକାରୀ କାରଣରୂପେ ରହିବା ଦୋଷାବହ ନୁହେ ।

୨୮୦ । ପ୍ରଶ୍ନ :—ଆଚ୍ଛା ଦୃଶ୍ୟକାବ୍ୟମାନଙ୍କରେ ଏହିପରି ପରସ୍ପର ବିରୁଦ୍ଧ ବିଷୟବସ୍ତୁମାନଙ୍କର ଅଭିନୟ କିପରି ସମ୍ଭବ ହେବ ?

ଉତ୍ତର :—ଶ୍ରବ୍ୟକାବ୍ୟ "ଏହି ଗଚ୍ଛ ସମୁତ୍ପତ୍ତିଷ୍ଟୁ" ଇତ୍ୟାଦି ସ୍ଥଳରେ ଯେପରି ଅନୁବାଦାଂଶରେ ପରସ୍ପର ବିରୋଧୀମାନଙ୍କର ସମାବେଶ କରିଯାଇଛି, ସେହିପରି ଦୃଶ୍ୟକାବ୍ୟମାନଙ୍କର ମଧ୍ୟ ଅନୁବାଦାଂଶରେ ପରସ୍ପର ବିରୁଦ୍ଧ ବସ୍ତୁକୁ ଦର୍ଶାଇବାକୁ ହେବ । ତାହାହେଲେ କାବ୍ୟରେ କୌଣସି ବିରୋଧ ସମାବେଶ-ହେତୁକ ଦୋଷ ରହିବ ନାହିଁ ।

୨୮୧ । ଏହିପରି ବିଧି ଅନୁବାଦ ନ୍ୟାୟ ଅନୁସାରେ ଉକ୍ତ ' କ୍ଷିପ୍ତୋହସ୍ତାବଲଗ୍ନଃ'' ଶ୍ଳୋକରେ ବିରୋଧ ପରିହାର କରାଗଲା ।

୨୮୨ । ଅନ୍ୟପ୍ରକାରେ ବିରୋଧ ପରିହାର କରାଯାଉଛି ଯଥା :—ଆଉ ପୁଣି ଯାହାଙ୍କର ବିଜୟ ଅଭିନନ୍ଦନ ଯୋଗ୍ୟ ତାଦୃଶ କୌଣସି ନାୟକଙ୍କର ପ୍ରଭାବାତିଶୟ ବର୍ଣ୍ଣନା କରାଯାଉଥିବା ସ୍ଥଳରେ ତାହାଙ୍କ

ଧାତ । ପ୍ରତ୍ୟୁତ ପ୍ରୀତ୍ୟତିଶୟନିମିତ୍ତତାଂ ପ୍ରତିପଦ୍ୟତେ ଇତ୍ୟତସ୍ତସ୍ୟ କୁଣ୍ଠଶକ୍ତିକତ୍ୱାତ୍ ତଦ୍‌ବିରୋଧବିଧାୟିନୋ ନ କଶ୍ଚିଦ୍ଦୋଷଃ ।

୨୮୩ । ତସ୍ମାତ୍ ବାକ୍ୟାର୍ଥୀଭୂତସ୍ୟ ରସସ୍ୟ ଭାବସ୍ୟ ବା ବିରୋଧୀ ଯୋ ରସଃ ସ ରସବିରୋଧୀତି ବକ୍ତୁଂ ନ୍ୟାଯ୍ୟଃ । ନ ତ୍ୱଙ୍ଗଭୂତସ୍ୟ କସ୍ୟଚିତ୍ ।

୨୮୪ । ଅଥବା ବାକ୍ୟାର୍ଥୀଭୂତସ୍ୟାପି କସ୍ୟଚିତ୍ କରୁଣରସ ବିଷୟସ୍ୟ ତାଦୃଶେନ ଶୃଙ୍ଗାରବସ୍ତୁନା ଭଙ୍ଗିବିଶେଷାଶ୍ରୟେଣ ସଂଯୋଜନଂ ରସପରିପୋଷାୟୈବ ଜାୟତେ ।

୨୮୫ । ଯତଃ ପ୍ରକୃତିମଧୁରାଃ ପଦାର୍ଥାଃ ଶୋଚନୀୟତାଂ ପ୍ରାପ୍ତାଃ ପ୍ରାଗବସ୍ଥାଭାବିଭିଃ ସଂସ୍ମର୍ଯ୍ୟମାଣୈର୍ବିଲାସୈରଧିକତରଂ ଶୋକାବେଶମୁପଜନୟନ୍ତି ।

---

ପ୍ରତିପକ୍ଷମାନଙ୍କର ଯେଉଁ କରୁଣ ରସ, ତାହା ସାମାଜିକମାନଙ୍କର ଦୁଃଖଦାୟକ ହୁଏ ନାହିଁ । ଓଲଟି ଅତ୍ୟନ୍ତ ପ୍ରୀତିସମ୍ପାଦନ ପ୍ରତି ହେତୁ ହୁଏ । ଏଣୁ ଏହି ଶ୍ଳୋକ ବର୍ଣ୍ଣିତ ସେହି କରୁଣ ରସର (ତସ୍ୟ) ଶକ୍ତି କ୍ଷୀଣ । ତେଣୁ ତାଦୃଶ ବିରୋଧ ସମାବେଶରେ କୌଣସି ଦୋଷ ନାହିଁ ।

୨୮୩ । ତେଣୁ ବାକ୍ୟାର୍ଥଭୂତ ରସ କିମ୍ବା ଭାବର ଯେଉଁ ରସ ବିରୋଧୀ, ତାହାକୁ ରସବିରୋଧୀ ବୋଲି କହିବା ସଙ୍ଗତ । କିନ୍ତୁ ଅଙ୍ଗଭୂତ କୌଣସି ରସକୁ ବିରୋଧୀ ବୋଲି କହିବା ସଙ୍ଗତ ନୁହେ ।

୨୮୪ । ଅଥବା କୌଣସି ସ୍ଥଳରେ ବାକ୍ୟାର୍ଥୀଭୂତ କରୁଣ ରସର ଅଙ୍ଗଭୂତ ଶୃଙ୍ଗାରରସ ସହିତ ଭଙ୍ଗୀ ବିଶେଷରେ ସଂଯୋଗ କରିବା ଦ୍ୱାରା ରସ ପରିପୁଷ୍ଟି ହେଉଅଛି ।

୨୮୫ । (ଶୃଙ୍ଗାର ଦ୍ୱାରା କିପରି କରୁଣପୁଷ୍ଟି ହେଉଛି ?) ଯେଣୁ ସ୍ୱଭାବତଃ ରମଣୀୟ ପଦାର୍ଥମାନେ ଶୋଚନୀୟ ଅବସ୍ଥାକୁ ପ୍ରାପ୍ତ ହେଲେ

୨୮୭ । ଯଥା—

"ଅୟଂସ ରଶନୋତ୍କର୍ଷୀ ପୀନସ୍ତନବିମର୍ଦ୍ଦନଃ ।
ନାଭ୍ୟୂରୁଜଘନସ୍ପର୍ଶୀ ନୀବୀବିସ୍ରଂସନଃ କରଃ ॥
ଇତ୍ୟାଦୌ ॥

୨୮୭ । ତଦତ୍ର ତ୍ରିପୁରଯୁବତୀନାଂ ଶାମ୍ଭବଃ ଶରାଗ୍ନିର୍ଯଦ୍ଵା-
ପରାଧଃ କାମୀ ଯଥା ବ୍ୟବହରତି, ତଥା ବ୍ୟବହୃତ-
ବାନିତ୍ୟନେନାପି ପ୍ରକାରେଣାସ୍ତ୍ୟେବ ନିର୍ବିରୋଧତ୍ଵମ୍ ।

---

ତାଙ୍କର ପୂର୍ବାବସ୍ଥାର ବିଳାସ ସ୍ମୃତି ପଥକୁ ଆସିବା ଦ୍ୱାରା ସେମାନେ ଶୋକର ଆବେଗକୁ ଅତ୍ୟଧିକ ଉତ୍ପାଦନ କରାନ୍ତି ।

୨୮୭ । ଯଥା—ଯୁଦ୍ଧରେ ଭୂରିଶ୍ରବାଙ୍କର ଛିନ୍ନଭୂଜ ଦେଖି ତାଙ୍କ ପତ୍ନୀଙ୍କ ବିଳାପ । ଏ ଯେଉଁ ଭୁଜ ଯେଉଁ ଭୁଜ (ସୁରତାରମ୍ଭ କାଳରେ) ଆମ୍ଭର କଟିସୂତ୍ର (ରଶନା) ଆକର୍ଷଣ କରୁଥିଲା । ପୃଥୁଳ ସ୍ତନଦ୍ୱୟକୁ ବିଶେଷଭାବେ ମର୍ଦ୍ଦନ କରୁଥିଲା, ଏବଂ ନାଭି ଊରୁ ଜଘନପ୍ରଭୃତି ଗୁପ୍ତଅଙ୍ଗ-ମାନଙ୍କୁ ସ୍ପର୍ଶ କରିବାରେ ବ୍ରତୀ ଥିଲା, ପୁନଶ୍ଚ କଟିବନ୍ଧନ (ନୀବୀ)କୁ ଦୁଗାଳି ଦେଉଥିଲା । ଏ ଶ୍ଳୋକରେ ଶୃଙ୍ଗାରର ଅନୁକୂଳ ସ୍ମୃତିପଥାଗତ ରଶନା-କର୍ଷଣାଦି ଦ୍ୱାରା ବ୍ୟଙ୍ଗ୍ୟ ଶୃଙ୍ଗାର ରସ ସମ୍ପ୍ରତି ତାହାର ସ୍ମରଣ ଦ୍ୱାରା ଦୁଃଖ ବୃଦ୍ଧି ପ୍ରାପ୍ତ ହେଉଥିବାରୁ କରୁଣ ରସର ଅଙ୍ଗ ହୋଇ ହେଉଅଛି । ଶ୍ଳୋକାର୍ଥର ଶୋକରେ ବିଶ୍ରାମ ହେଉଥିବାରୁ କରୁଣ ଏଠାରେ ଅଙ୍ଗୀ । ଅତଏବ ଏଠାରେ ଦୁଇ ବିରୁଦ୍ଧ ସମାବେଶ ଦୋଷାବହ ନୁହେଁ ।

୨୮୭ । ତେଣୁ ଏହି "କ୍ଷିପ୍ତୋ ହସ୍ତାବଲଗ୍ନଃ" ଶ୍ଳୋକରେ ଶମ୍ଭୁଙ୍କର ଶରାଗ୍ନି ତ୍ରିପୁର ଯୁବତୀଙ୍କ ସମ୍ବନ୍ଧରେ ସଦା ଅପରାଧୀ କାମୀ ଯେପରି ବ୍ୟବହାର କରେ ସେହିପରି ବ୍ୟବହାର କରିଥିଲା । ଏଠାରେ ମଧ୍ୟ ଏହି ପ୍ରକାରେ ଦୋଷ ନାହିଁ । ଏ ଶ୍ଳୋକରେ ଶୃଙ୍ଗାର, କରୁଣର ଅଙ୍ଗ । କରୁଣ ତ୍ରିପୁରରିପୁ ପ୍ରଭାବାତିଶୟର ଅଙ୍ଗ ।

୨୮୮ । ତସ୍ମାଦ୍ ଯଥା ଯଥା ନିରୂପ୍ୟତେ, ତଥା ତଥାଽତ୍ର ଦୋଷାଭାବଃ ।

୨୮୯ । ଇତ୍ଥଂ ଚ ।

୨୯୦ । ଆମନ୍ତ୍ର୍ୟଃ କ୍ଷତକୋମଲାଙ୍ଗୁଲିଗଳଦ୍ରକ୍ତୈଃ
ସଦର୍ଭାଃ ସ୍ଥଲୀଃ,
ପାଦୈଃ ପାତିତଯାବକୈରିବ ପତଦ୍ବାଷ୍ପାମ୍ବୁ
ଧୌତାନନାଃ ।
ଭୀତା ଭର୍ତ୍ତୃକରାବଲମ୍ବିତକରାସ୍ତ୍ୱଦ୍‌ବୈରି—
ନାର୍ଯ୍ୟୋଽଧୁନା,
ଦାବାଗ୍ନିଂ ପରିତୋ ଭ୍ରମନ୍ତି ପୁନରପ୍ୟୁଦ୍ୟଦ୍ବିବାହା ଇବ ।

---

୨୮୮ । ତେଣୁ ଯେଉଁ ପ୍ରକାରେ ନିରୂପଣ କଲେ ମଧ୍ୟ ସେ ପ୍ରକାରରେ ଦୋଷ ନାହିଁ । ଅର୍ଥାତ୍ ବିଧି ଅନୁବାଦ ନ୍ୟାୟରେ କିମ୍ବା ରସରେ ବିଶ୍ରବାଦ—ହେତୁ ତା ନ୍ୟାୟରେ ଏଠାରେ ଦୋଷ ନାହିଁ ।

୨୮୯ । ଏହିପରି "ଆମନ୍ତ୍ର୍ୟଃ" ଇତ୍ୟାଦି ଶ୍ଳୋକରେ ଦୋଷ ନାହିଁ ।

୨୯୦ । (ଖୋସାମଦିକାରୀ ରାଜାଙ୍କୁ କହୁଅଛି)

ହେ ରାଜନ୍ ! ତୁମ୍ଭର ଶତ୍ରୁ ସ୍ତ୍ରୀମାନେ ବର୍ତ୍ତମାନ କୁଶକଣ୍ଟାରେ କୋମଳ ଆଙ୍ଗୁଠିଗୁଡ଼ିକ କ୍ଷତ ହେବାରୁ ସର ସର ଅଳତାଲଗା ପାଦ ପରି ରକ୍ତବୁହା ପାଦରେ କୁଶବଣରେ (ବିବାହ ପକ୍ଷେ) କୁଶଯୁକ୍ତ ବେଦୀ ଉପରେ (ପ୍ରକୃତ ପକ୍ଷେ ଦୁଃଖରେ) ବିବାହ ପକ୍ଷେ ହୋମାଗ୍ନି ଧୂମ ସଂପୋଟରୁ ଲୋତକ ଧାରାରେ ଧୌତମୁଖ ହୋଇ (ପ୍ରକୃତ ପକ୍ଷେ ଶତ୍ରୁ ଦେଖିବା ବୋଲି, ବିବାହ ପକ୍ଷେ ସ୍ୱାମୀର ଅନୁରାଗରେ ସନ୍ଦେହ କରି) ଅତ୍ୟନ୍ତ ଭୟ-ଭୀତ ହୋଇ ସ୍ୱାମୀର କର ସହିତ ନିଜ କର ମିଳାଇ ପୁନର୍ବାର ବିବାହ ପାଇଁ ଉଦ୍ୟତ ହେଲା ପରି ବନାଗ୍ନିର (ବିବାହ ପକ୍ଷେ) ହୋମାଗ୍ନିର ଚାରିପାଖେ ବୁଲୁଅଛନ୍ତି ।

୨୯୧ । ଇତ୍ୟେବମାଗାନାଂ ସର୍ବେଷାମେବ ନବିରୋଧତ୍ୱମବ-
ଗନ୍ତବ୍ୟମ୍ ।

୨୯୨ । ଏବଂ ତାବତ୍ ରସାଗାନାଂ ବରୋଧିରସାଦଭିଃ ସମାବେଶାସମାବେଶୟୋର୍ବିଷୟବଭାଗୋ ଦର୍ଶିତଃ । ଇଦାନୀଂ ତେଷାମେକପ୍ରବନ୍ଧନିବେଶନେ ନ୍ୟାଯ୍ୟୋ ଯଃ କ୍ରମସ୍ତଂ ପ୍ରତିପାଦୟିତୁମୁଚ୍ୟତେ :—

୨୯୩ । ପ୍ରସିଦ୍ଧେଽପି ପ୍ରବନ୍ଧାନାଂ ନାନାରସନିବନ୍ଧନେ ।
ଏକୋ ରସୋଽଙ୍ଗୀକର୍ତ୍ତବ୍ୟସ୍ତେଷାମୁତ୍କର୍ଷମିଚ୍ଛତା ॥୨୧

୨୯୪ । ପ୍ରବନ୍ଧେଷୁ ମହାକାବ୍ୟାଦଷୁ ନାଟକାଦଷୁ ବା ବପ୍ର-କୀର୍ଣ୍ଣତୟା ଅଙ୍ଗାଙ୍ଗିଭାବେନ ବା ବହବୋ ରସା ଉପନିବଧ୍ୟନ୍ତ ଇତ୍ୟତ୍ର ପ୍ରସିଦ୍ଧୌ ସତ୍ୟାମପି, ଯଃ

---

୨୯୧ । ଏହି ଶ୍ଳୋକରେ ରାଜବିଷୟକ ରତିଭାବ ପ୍ରଧାନ । ପରସ୍ପର ବିରୁଦ୍ଧ କରୁଣ ଓ ଶୃଙ୍ଗାର, ଦୁହେଁ ତାହାର ଅଙ୍ଗଭାବେ ରହିଥିବାରୁ ଏଠାରେ ବିରୋଧ ନାହିଁ ବୋଲି ଜାଣିବ ।

୨୯୨ । ରସାଦି, ବିରୋଧୀ ରସାଦି ସହିତ କିଭଳି ସମାବେଶ କରାଯିବ କିଭଳି ବା ସମାବେଶ କରା ନ ଯିବ, ତାହା ଏହିପରି ଉଦାହରଣ ମୁଖରେ ପ୍ରଦର୍ଶିତ ହେଲା । ବର୍ତ୍ତମାନ ସେହି ରସାଦିମାନଙ୍କୁ ଏକ ଗ୍ରନ୍ଥରେ ନିବେଶ କରିବାକୁ ହେଲେ ଯେଉଁ କ୍ରମ ନ୍ୟାୟସଂଗତ ତାହା ପ୍ରତିପାଦନ କରା ଯାଉଅଛି ।

୨୯୩ । ଧ୍ୱନ୍ୟାତ୍ମକ୍ୟାଦି ପ୍ରବନ୍ଧମାନଙ୍କରେ ନାନା ରସର ସଂଯୋଜନ ପ୍ରସିଦ୍ଧ ହୋଇଥିଲେ ମଧ୍ୟ ଉକ୍ତ ପ୍ରବନ୍ଧମାନଙ୍କର ଉତ୍କର୍ଷ ଇଚ୍ଛା କରୁଥିବା କବି ତନ୍ମଧ୍ୟରୁ ଗୋଟିଏ ରସକୁ ଅଙ୍ଗୀରସ ଭାବରେ ସ୍ଥାନ ଦେବ ।

୨୯୪ । ବୃତ୍ତିର ଅର୍ଥ—ମହାକାବ୍ୟ କିମ୍ବା ନାଟକାଦି ପ୍ରବନ୍ଧ-ମାନଙ୍କରେ ପରସ୍ପର ନିରପେକ୍ଷ ବା ସାପେକ୍ଷଭାବରେ ବହୁରସ ନିବେଶ କରାଯିବା ପ୍ରସିଦ୍ଧ ହୋଇଥିଲେ ମଧ୍ୟ, ଯେଉଁ କବି ଗ୍ରନ୍ଥର ଅଧିକ ସୌନ୍ଦର୍ଯ୍ୟ

ପ୍ରବନ୍ଧାନାଂ ଚ୍ଛାୟାଭିଶଯ୍ୟମିଚ୍ଛତ, ତେନ ତେଷାଂ ରସାନାମନ୍ୟତମଃ କଶ୍ଚିଦ୍ ବିବକ୍ଷିତୋ ରସୋଽଙ୍ଗି-ତ୍ୱେନ ନିବେଶୟିତବ୍ୟ ଇତ୍ୟୟଂ ଯୁକ୍ତତରୋମାର୍ଗଃ ।

୨୯୫ । ନନୁ ରସାନ୍ତରେଷୁ ବହୁଷୁ ପ୍ରାପ୍ତପରିପୋଷେଷୁ ସତ୍ସୁ, କଥମେକସ୍ୟ ଅଙ୍ଗିତା ନ ବିରୁଧ୍ୟତ ଇତ୍ୟାଶଙ୍କ୍ୟେଦ-ମୁଚ୍ୟତେ—

୨୯୬ । ରସାନ୍ତରସମାବେଶଃ ପ୍ରସ୍ତୁତସ୍ୟ ରସସ୍ୟ ଯଃ ।
ନୋପହନ୍ତ୍ୟଙ୍ଗିତାଂ ସୋଽସ୍ୟ ସ୍ଥାୟିତ୍ୱେନାବଭାସିନଃ ॥

ପ୍ରବନ୍ଧେଷୁ ପ୍ରଥମତରଂ ପ୍ରସ୍ତୁତଃ ସନ୍ ପୁନଃ ପୁନ-ରନୁସନ୍ଧୀୟମାନତ୍ୱେନ ସ୍ଥାୟୀ ଯୋ ରସଃ, ତସ୍ୟ ସକଳସନ୍ଧିବ୍ୟାପିନୋ ରସାନ୍ତରୈରନ୍ତରାଳବର୍ତ୍ତିଭିଃ ସମାବେଶୋ ଯଃ, ସ ନାଙ୍ଗିତାମୁପହନ୍ତି ॥

୨୯୭ । ଏତଦେବୋପପାଦୟିତୁମୁଚ୍ୟତେ—

---

ଇଚ୍ଛା କରିବ, ସେ ପ୍ରବନ୍ଧନିବଦ୍ଧ ରସମାନଙ୍କ ମଧ୍ୟରୁ କୌଣସି ଗୋଟିଏ ରସକୁ ନିଜର ବିବକ୍ଷା ଅନୁସାରେ ଅଙ୍ଗିରସ ରୂପେ ନିବେଶ କରିବ । ଏହା ଉପଯୁକ୍ତ ମାର୍ଗ ।

୨୯୫ । ସମବଳମାନଙ୍କର ଅଙ୍ଗାଙ୍ଗିଭାବ କଳ୍ପନା କରାଯାଏ ନାହିଁ ଯେଣୁ ତାହା ବିରୁଦ୍ଧ, ତେବେ ଅନେକ ରସ ପରିପୁଷ୍ଟ ଭାବରେ ରହିଥିଲେ ସେମାନଙ୍କ ମଧ୍ୟରେ ଗୋଟିଏ ରସକୁ ଅଙ୍ଗିଭାବରେ ରଖାଯିବା କିପରି ବିରୁଦ୍ଧ ନ ହେବ ?

୨୯୬ । ପ୍ରବନ୍ଧର ପ୍ରାରମ୍ଭରୁ ଉପାଦୀୟମାନ ହୋଇ ଗ୍ରନ୍ଥବ୍ୟାପି ସ୍ଥାୟୀଭାବରେ ପ୍ରକାଶିତ ହେଉଥିବା ରସର ଅଙ୍ଗିଭାବ, ଅନ୍ୟ ଗ୍ରନ୍ଥ— ମଧ୍ୟବର୍ତ୍ତୀ (ପରିପୁଷ୍ଟ) ରସମାନଙ୍କସହିତ ସମ୍ବନ୍ଧ ଦ୍ୱାରା ବିନଷ୍ଟ ହୁଏ ନାହିଁ ।

୨୯୭ । ଏହି ବିଷୟକୁ ଉପପାଦନ କରିବା ପାଇଁ କୁହା ଯାଉଛି ।

୨୯୮ । କାର୍ଯ୍ୟମେକଂ ଯଥା ବ୍ୟାପି ପ୍ରବନ୍ଧସ୍ୟ ବିଧୀୟତେ ।
ତଥା ରସସ୍ୟାପି ବିଧୌ ବିରୋଧୋ ନୈବ ବିଦ୍ୟତେ । ୨୩ ।

୨୯୯ । ସନ୍ଧ୍ୟାଦ୍ୟଙ୍ଗମୟସ୍ୟ ହି ପ୍ରବନ୍ଧଶରୀରସ୍ୟ ଯଥା କାର୍ଯ୍ୟମେକମନୁଯାୟି ବ୍ୟାପକଂ କଳ୍ପ୍ୟତେ, ନଚ ତତ୍ କାର୍ଯ୍ୟାନ୍ତରୈର୍ନ ସଂକୀର୍ଯ୍ୟତେ ନ ଚ ତୈଃ ସଂକୀର୍ଯ୍ୟମାଣସ୍ୟାଽପି ତସ୍ୟ ପ୍ରାଧାନ୍ୟମପଚୀୟତେ, ତଥୈବ ରସସ୍ୟାପ୍ୟେକସ୍ୟ ସନ୍ନିବେଶେ କ୍ରିୟମାଣେ ବିରୋଧୋ ନ କଶ୍ଚିତ୍ । ପ୍ରତ୍ୟୁତ ପ୍ରତ୍ୟୁଦିତ ବିବେକାନାମନୁସନ୍ଧାନବତାଂ ସଚେତସାଂ ତଥାବିଧେ ବିଷୟେ ପ୍ରହ୍ଲାଦାତିଶୟଃ ପ୍ରବର୍ତ୍ତତେ ।

---

୨୯୮ । ଯେପରି ପ୍ରବନ୍ଧମାନଙ୍କରେ ଅନେକ ପ୍ରାସଙ୍ଗିକ କାର୍ଯ୍ୟ ଥିବା ସତ୍ତ୍ୱେ ଗୋଟିଏ କାର୍ଯ୍ୟକୁ ବ୍ୟାପକଭାବେ ନିବଦ୍ଧ କରା ଯାଇଥାଏ, ସେହିପରି ପ୍ରବନ୍ଧମାନଙ୍କରେ ପ୍ରାସଙ୍ଗିକ ଭାବେ ଅନେକ ରସ ଥିବା ସତ୍ତ୍ୱେ ଗୋଟିଏ ରସକୁ ମୁଖ୍ୟଭାବେ ନିବେଶ କରିବାରେ ବିରୋଧ ରହେ ନାହିଁ ।

୨୯୯ । (ବୃତ୍ତିର ଅର୍ଥ) :—ମୁଖ, ପ୍ରତିମୁଖ, ଗର୍ଭ ବିମର୍ଶ, ଉପସଂହାର ଭେଦରେ ପାଞ୍ଚଗୋଟି ସନ୍ଧି । ଉପକ୍ଷେପପ୍ରଭୃତି ଉପସନ୍ଧି । ଏହି ସନ୍ଧି, ଉପସନ୍ଧିପ୍ରଭୃତି କାବ୍ୟର ଶରୀର ! ତାଦୃଶ କାବ୍ୟ ଶରୀରରେ ଗୋଟିଏ କାର୍ଯ୍ୟ ଯେଭଳି ବ୍ୟାପକଭାବେ କଳ୍ପିତ ହୋଇଥାଏ, ଏବଂ ସେହି ମୁଖ୍ୟ କାର୍ଯ୍ୟ ଅନ୍ୟ କାର୍ଯ୍ୟମାନଙ୍କ ସହିତ ଅଙ୍ଗାଙ୍ଗିଭାବେ ମିଶ୍ରିତ (ସମ୍ପୃକ୍ତ) ହୋଇଥିଲେ ମଧ୍ୟ ତାହାର (ମୁଖ୍ୟ କାର୍ଯ୍ୟର) ପ୍ରାଧାନ୍ୟ ନଷ୍ଟ, ନହୁଏ, ସେହିପରି (କାବ୍ୟରେ ବ୍ୟାପକଭାବେ) ଗୋଟିଏ ରସକୁ ସନ୍ନିବେଶ କଲେ କୌଣସି ବିରୋଧ ରହେ ନାହିଁ । ଓଲଟି ଅନୁସନ୍ଧିତ୍ସୁ ବିବେକୀ ସହୃଦୟମାନଙ୍କର ତାଦୃଶ ରଚନାରେ ଆହ୍ଲାଦ ବୃଦ୍ଧିପ୍ରାପ୍ତ ହୁଏ ।

୩୦୦ । ନନୁ ଯେଷାଂ ରସାନାଂ ପରସ୍ପରବିରୋଧଃ, ଯଥା—
ବୀରଶୃଙ୍ଗାରୟୋଃ, ଶୃଙ୍ଗାରହାସ୍ୟୟୋଃ, ରୌଦ୍ର-
ଶୃଙ୍ଗାରୟୋଃ, ବୀରାଦ୍ଭୁତୟୋଃ, ବୀରରୌଦ୍ରୟୋଃ,
ରୌଦ୍ରକରୁଣୟୋଃ, ଶୃଙ୍ଗାରାଦ୍ଭୁତୟୋର୍ବା ତତ୍ର ଭବ-
ତ୍ୱଙ୍ଗାଙ୍ଗିଭାବଃ । ତେଷାଂ ତୁ ସ କଥଂ ଭବେନ୍ନ,
ଯେଷାଂ ପରସ୍ପରଂ ବାଧ୍ୟବାଧକଭାବଃ ;
ଯଥା—ଶୃଙ୍ଗାରବୀଭତ୍ସୟୋ ବୀରଭୟାନକୟୋ-
ଶାନ୍ତରୌଦ୍ରୟୋଃ ଶାନ୍ତଶୃଙ୍ଗାରୟୋର୍ବା ?
ଇତ୍ୟାଶଙ୍କ୍ୟେଦମୁଚ୍ୟତେ :—

୩୦୧ । ଅବିରୋଧୀ ବିରୋଧୀ ବା ରସୋଽଙ୍ଗିନି ରସାନ୍ତରେ ।
ପରିପୋଷଂ ନ ନେତବ୍ୟ ସ୍ତଥାସ୍ୟାଦବିରୋଧିତା ॥ ୨୪
ଅଙ୍ଗିନି ରସାନ୍ତରେ ଶୃଙ୍ଗାରାଦୌ ପ୍ରବନ୍ଧବ୍ୟଙ୍ଗ୍ୟେ
ସତି ଅବିରୋଧୀ ବିରୋଧୀ ବା ରସଃ ପରିପୋଷଂ
ନ ନେତବ୍ୟଃ ।

---

୩୦୦ । ବକ୍ଷ୍ୟମାଣ କାରିକାର ପୂର୍ବାଭାସ :—ଯେଉଁ ରସମାନଙ୍କ ମଧ୍ୟରେ ପରସ୍ପର ବିରୋଧ ରହିଅଛି । ଯଥା—ବୀର ଓ ଶୃଙ୍ଗାର, ଶୃଙ୍ଗାର ଓ ହାସ୍ୟ, ରୌଦ୍ର ଓ ଶୃଙ୍ଗାର, ବୀର ଓ ଅଦ୍ଭୁତ. ରୌଦ୍ର ଓ ବୀର, ରୌଦ୍ର ଓ କରୁଣ, ତଥା ଶୃଙ୍ଗାର ଓ ଅଦ୍ଭୁତ । ଏମାନଙ୍କ ମଧ୍ୟରେ ପରସ୍ପର ଅଙ୍ଗାଙ୍ଗିଭାବ ରହିପାରେ, କିନ୍ତୁ ଯେଉଁ ରସମାନଙ୍କ ମଧ୍ୟରେ ପରସ୍ପର ବାଧ୍ୟ-ବାଧକଭାବ ରହିଅଛି ଯଥା—ଶୃଙ୍ଗାର ଓ ବୀଭତ୍ସ, ବୀର ଓ ଭୟାନକ, ଶାନ୍ତ ଓ ରୌଦ୍ର, ଶାନ୍ତ ଓ ଶୃଙ୍ଗାର ଏମାନଙ୍କ ମଧ୍ୟରେ ଅଙ୍ଗାଙ୍ଗିଭାବ ସମ୍ବନ୍ଧ କିପରି ସମ୍ଭବିବ ? ଏହି ଆଶଙ୍କାରେ କୁହାଯାଉଛି ଯଥା :—

୩୦୧ । କାବ୍ୟରେ ଶୃଙ୍ଗାରାଦି କୌଣସି ଗୋଟିଏ ରସ ଅଙ୍ଗୀ ହୋଇ ରହିଥିଲେ ତାହାର ବିରୋଧୀ ହେଉ ବା ଅବିରୋଧୀ ହେଉ ଅନ୍ୟ-ରସକୁ ପରିପୁଷ୍ଟ କରିବ ନାହିଁ, ତାହାହେଲେ ପ୍ରବନ୍ଧଗତ ରସମାନଙ୍କ ମଧ୍ୟରେ ଅବିରୋଧିତା ରହି ପାରିବ ।

୩୦୨ । ତତ୍ର ଅବିରୋଧିରସସ୍ୟ ଅଙ୍ଗିରସାପେକ୍ଷୟାଽ ତ୍ୟନ୍ତ-
ମାଧିକ୍ୟଂ ନ କର୍ତ୍ତବ୍ୟମିତ୍ୟୟଂ ପ୍ରଥମଃ ପରିପୋଷ
ପରିହାରଃ ।

୩୦୩ । ଉତ୍କର୍ଷସାମ୍ୟେଽପି ତୟୋର୍ବିରୋଧାସମ୍ଭବାତ୍ ।

୩୦୪ । ଯଥା—

ଏକନ୍ତୋ ରୁଅଇ ପିଆ ଅଣ୍ଣନ୍ତୋ ସମର—
ତୂରିଣିଗ୍‌ଘୋସୋ ।
ଣେହେଣ ରଣରସେଣ ଅ ଭଡ଼ସ୍ସ ଦୋଲାଇ
ଅଂହିଅ ଅଅମ୍ ॥
(ଏକତୋ ରୋଦିତି ପ୍ରିୟାଽନ୍ୟତଃ
ସମରତୂର୍ଯ୍ୟନିର୍ଘୋଷଃ ।
ସ୍ନେହେନ ରଣରସେନ ଚ ଭଟସ୍ୟ ଦୋଲାୟିତଂ
ହୃଦୟମ୍ ॥ ଇତି ଚ୍ଛାୟା)

---

୩୦୨ । ଅଙ୍ଗରସର ପରିପୁଷ୍ଟି ପରିହାର ପ୍ରକାର ଯଥା :—

ଅବିରୋଧୀ ଅଙ୍ଗରସର ଅଙ୍ଗିରସ ଅପେକ୍ଷା ଅଧିକ ପରିପୁଷ୍ଟି ବିଧେୟ ନୁହେ ଏହା ପ୍ରଥମ ପରିପୋଷ ପରିହାର ପ୍ରକାର ।

୩୦୩ । ଅଙ୍ଗିରସ ଓ ଅଙ୍ଗରସ ଉଭୟଙ୍କ ମଧ୍ୟରେ ଉତ୍କର୍ଷ ସମାନ ହେଲେ ମଧ୍ୟ ବିରୋଧର ସମ୍ଭାବନା ହୁଏ ନାହିଁ । (ଏଣୁ କେବଳ ଅଙ୍ଗରସର ଉତ୍କର୍ଷାଧିକ୍ୟ ହିଁ ବିରୋଧର ହେତୁ ବୋଲି ଜାଣିବାକୁ ହେବ ।)

୩୦୪ । ଯଥା ଗୋଟିଏ ଆଡେ ପ୍ରିୟା ରୋଦନ କରୁଛି । ଅନ୍ୟଆଡେ ସମର ତୂରୀର (ରଣବାଦ୍ୟର) ନିର୍ଘୋଷ । ବୀରର ହୃଦୟ ପ୍ରିୟାସ୍ନେହ ଓ ଯୁଦ୍ଧୋତ୍ସାହରେ ଦୋଳାୟିତ (ଏ ପାଖ ସେ ପାଖ) ହେଉଅଛି ।

ଏ ଶ୍ଳୋକରେ ଦୋଳାୟିତ ପଦ ଦ୍ୱାରା, ସ୍ନେହପଦ ପ୍ରତିପାଦ୍ୟ—ରତି ସ୍ଥାୟିଭାବକ- ଶୃଙ୍ଗାର ରସର ତଥା ରଣରସ ଓ ଭଟ—ପଦ ପ୍ରତିପାଦ୍ୟ ଉତ୍ସାହ—ସ୍ଥାୟିଭାବକ ବୀର ରସର ସମାନଭାବେ ଉତ୍କର୍ଷ ପ୍ରତି-ପାଦିତ ହୋଇଥିଲେ ମଧ୍ୟ ଦୋଷ ନାହିଁ ।

୩୦୫ । କଣ୍ଠାଚ୍ଛିତ୍ତ୍ୱାଽକ୍ଷମାଲାବଲୟମିବ
କରେ ହାରମାବର୍ତ୍ତୟନ୍ତୀ,
କୃତ୍ୱା ପର୍ଯ୍ୟଙ୍କବନ୍ଧଂ ବିଷଧରପତିନା
ମେଖଳାୟା ଗୁଣେନ ।
ମିଥ୍ୟା ମନ୍ତ୍ରାଭିଜାପ-ସ୍ଫୁରଦଧରପୁଟ—
ବ୍ୟଞ୍ଜିତା ବ୍ୟକ୍ତହାସା,
ଦେବୀ ସନ୍ଧ୍ୟାଽଭ୍ୟସୂୟା ହସିତପଶୁପତି
ସ୍ତତ୍ରଦୃଷ୍ଟା ଭୁ ବୋଽବ୍ୟାତ୍ । ଇତ୍ୟତ୍ର ।

୩୦୬ । ଅଙ୍ଗିରସ ବିରୁଦ୍ଧାନାଂ ବ୍ୟଭିଚାରିଣାଂ ପ୍ରାଚୁର୍ଯ୍ୟେଣୋଽ-
ନିବେଶନମ୍ ।

---

୩୦୫ । ଶିବଙ୍କୁ ସଂଧ୍ୟା—(ନିତ୍ୟକର୍ମ ବିଶେଷ ଓ ସଂଧ୍ୟା ନାମ୍ନୀ ନାୟିକା)ରେ ଆସକ୍ତ ଦେଖି, ସନ୍ଧ୍ୟାଠାରେ ଅସୂୟା ହେତୁ ଶିବଙ୍କୁ ଉପହାସ କରି ନିଜ କଣ୍ଠରୁ ହାର ଉତ୍ତାରି ସ୍ତେଠ ଅକ୍ଷମାଳ ଜପ କଲା ପରି ହାତରେ ତାକୁ ଗଡ଼ାଇ, ଅଣ୍ଟା ସୂତାରେ, ବାସୁକି ଦ୍ୱାରା ଶିବ ପର୍ଯ୍ୟଙ୍କ—ବନ୍ଧ (ଯୋଗାସନ ବିଶେଷ) କଲାପରି କରି ମିଛରେ ମନ୍ତ୍ର ଜପିଲା ପରି ଅଧର-ପୁଟକୁ କମ୍ପନ କରି ଶିବଙ୍କପ୍ରତି ଅବ୍ୟକ୍ତ ହାସକୁ ପ୍ରକାଶ କରୁଥିବା ଦେବୀ ପାର୍ବତୀ ସେଠାରେ ଦୃଷ୍ଟା ହୋଇ ଆପଣଙ୍କୁ ରକ୍ଷା କରନ୍ତୁ ।

ଏ ଶ୍ଳୋକରେ ଅସୂୟା ପଦ ଦ୍ୱାରା ବ୍ୟଙ୍ଗ୍ୟ—ବିପ୍ରଲମ୍ଭ ଶୃଙ୍ଗାରର ଓ ମନ୍ତ୍ର ଜପାଦି କ୍ରିୟା ଦ୍ୱାରା ବ୍ୟଙ୍ଗ୍ୟ ଶାନ୍ତରସର, ସମାନଭାବେ ଉତ୍କର୍ଷ ପ୍ରତିପାଦିତ ହୋଇଅଛି । ତେଣୁ ତାହା ପୂର୍ବ-ଶ୍ଳୋକ ନ୍ୟାୟରେ ବିରୋଧ ନୁହେ ।

୩୦୬ । ପରିପୋଷ ପରିହାରର ଦ୍ୱିତୀୟ ପ୍ରକାର ଯଥା—

ଅଙ୍ଗିରସର ପୋଷକ ହେଲେ ମଧ୍ୟ ଅଙ୍ଗିରସର ବିରୋଧୀ ବ୍ୟଭିଚାରି ଭାବମାନଙ୍କୁ ପ୍ରଚୁରଭାବେ ନିବେଶ କରିବ ନାହିଁ । ଯଦ୍ୱା

ନଚେଦ୍ବେଶନେ ବା କ୍ଷିପ୍ରମେବାଙ୍ଗି ରସବ୍ୟଭିଚାର୍ଯ୍ୟନୁ-
ବୃତ୍ତିରଡ଼ ଦ୍ୱିତୀୟଃ ॥

୩୦୭ । ଅଙ୍ଗତ୍ୱେନ ପୁନଃପୁନଃ ପ୍ରତ୍ୟବେକ୍ଷା ପରିପୋଷଂ
ନୀୟମାନସ୍ୟାପ୍ୟଙ୍ଗଭୂତସ୍ୟ ରସସ୍ୟେତି ତୃତୀୟଃ
ପ୍ରକାରଃ ।

୩୦୮ । ଅନୟା ଦଶା ଅନ୍ୟେଽପି ପ୍ରକାରା ଉତ୍ପ୍ରେକ୍ଷଣୀୟାଃ ।

୩୦୯ । ବିରୋଧିନସ୍ତୁ ରସସ୍ୟାଙ୍ଗିରସାପେକ୍ଷୟା କସ୍ୟଚିଦ୍ନ୍ୟୂ-
ନତା ସମ୍ପାଦନୀୟା । ଯଥା—ଶାନ୍ତେଽଙ୍ଗିନି ଶୃଙ୍ଗାରସ୍ୟ,
ଶୃଙ୍ଗାରେ ବା ଶାନ୍ତସ୍ୟ ॥

୩୧୦ । ପରିପୋଷରହିତସ୍ୟ କଥଂ ରସତ୍ୱମିତିଚେତ୍,

ନିବେଶ କରିବ ତେବେ ଶୀଘ୍ର ଅଙ୍ଗରସ ବ୍ୟଭିଚାରୀମାନଙ୍କର ଅନୁସନ୍ଧାନ
କରିବ ।

୩୦୭ । ପରିପୋଷ ପରିହାରର ତୃତୀୟ ପ୍ରକାର ଯଥା—ଅଙ୍ଗୀଭୂତ
ରସ ପରିପୋଷ ପ୍ରାପ୍ତ ହୋଇଥିଲେ ମଧ୍ୟ ସେ ଯେପରି ଅଙ୍ଗି-ରସର ଅଙ୍ଗ-
ଭାବେ ରହିବ ସେଥିପାଇଁ ବାରମ୍ବାର ଦୃଷ୍ଟିଦେବାକୁ ହେବ ।

୩୦୮ । ଏହି ରୀତିରେ ଅଙ୍ଗରସମାନଙ୍କର (ଏତଦ୍ ଭିନ୍ନ) ଅନ୍ୟ-
ପ୍ରକାର ପରିପୋଷ ପରିହାର ପ୍ରକାରମାନ ମଧ୍ୟ କଳ୍ପନା କରାଯାଇପାରେ ।

୩୦୯ । (ଅବିରୋଧୀ ଅଙ୍ଗରସ ବିଷୟ କୁହାଯାଇ ବର୍ତ୍ତମାନ
ବିରୋଧୀ ଅଙ୍ଗରସ ବିଷୟରେ କୁହାଯାଉଛି) ।

ଅଙ୍ଗିରସର ବିରୋଧୀ ଅଙ୍ଗରସକୁ ଅଙ୍ଗିରସ ଅପେକ୍ଷା ଅପୁଷ୍ଟ
କରିବ । (ଯେପରି ସେ ମୁଖ୍ୟରସକୁ ବାଧାଦେଇ ନ ପାରିବ) । ଯଥା—ଯଥା
ଶାନ୍ତରସ ଅଙ୍ଗୀ ଥିବା ସ୍ଥଳେ ଅଙ୍ଗଭୂତ ଶୃଙ୍ଗାରର, ଶୃଙ୍ଗାର ରସ
ଅଙ୍ଗୀ ଥିବା ସ୍ଥଳେ ଅଙ୍ଗଭୂତ ଶାନ୍ତର ନ୍ୟୂନତା ବିଧେୟ ।

୩୧୦ । ପ୍ରଶ୍ନ—ଯଦି ରସର ପରିପୋଷ କରା ନ ଯିବ, ତେବେ
ତାହାର ରସତ୍ୱ କିପରି ରହିବ ? କାରଣ ପରିପୁଷ୍ଟ ନ ହେଲେ ଆସ୍ୱାଦ୍ୟ
ହେବ ନାହିଁ । ଆସ୍ୱାଦ୍ୟ ନ ହେଲେ ରସ ନୁହେ । ଯେଣୁ ରସ ଆସ୍ୱାଦ
ରୂପ ।

୩୧୧ । ଉକ୍ତମଙ୍ଗାଙ୍ଗିରସାପେକ୍ଷୟୈବ । ଅଙ୍ଗିନୋହି ରସସ୍ୟ ଯାବାନ୍ ପରିପୋଷଃ, ତାବାଂସ୍ତସ୍ୟ ନ କର୍ତ୍ତବ୍ୟଃ । ସ୍ୱଗତସ୍ତୁ ସମ୍ଭବପରିପୋଷଃ କେନ ବାର୍ଯ୍ୟତେ ?

୩୧୨ । ଏତଚ୍ଚାପେକ୍ଷିକଂ ପ୍ରକର୍ଷଯୋଗିତ୍ୱମେକସ୍ୟ ରସସ୍ୟ ବହୁରସେଷୁ ପ୍ରବନ୍ଧେଷୁ ରସାନାମଙ୍ଗାଙ୍ଗିଭାବମନଭ୍ୟୁପଗଚ୍ଛତାପ୍ୟଶକ୍ୟପ୍ରତିକ୍ଷେପମିତ୍ୟନେନ ପ୍ରକାରେଣ ବିରୋଧିନାମବିରୋଧିନାଂ ଚ ରସାନାମଙ୍ଗାଙ୍ଗିଭାବେନ ସମାବେଶେ ପ୍ରବନ୍ଧେଷୁ ସ୍ୟାଦବିରୋଧିତା ।

---

୩୧୧ । ଉତ୍ତର—ଏଠାରେ ରସର ପରିପୁଷ୍ଟି ନିଷେଧ କରାଯାଉ ନାହିଁ । କିନ୍ତୁ କେବଳ ଅଙ୍ଗରସମାନଙ୍କର ଅଙ୍ଗରସ ତୁଳନାରେ ପରିପୁଷ୍ଟି ନିଷେଧ କରାଯାଇଛି ମାତ୍ର । ଅଙ୍ଗୀରସର ଯେତେ ପରିପୋଷ ବିଧେୟ; ଅଙ୍ଗରସର ତେତେ ପରିପୋଷ ବିଧେୟ ନୁହେ । ଏହା ବୋଲି ଅଙ୍ଗରସମାନଙ୍କର ସ୍ୱଗତ ପରିପୋଷ ଯାହାକି ମୁଖ୍ୟ ରସର ଅପ୍ରତିକୂଳ (ସମ୍ଭବୀ) ତାହାକୁ କିଏ ବାରଣ କରୁଛି ?

୩୧୨ । ଯେଉଁମାନେ ରସମାନଙ୍କର ଅଙ୍ଗାଙ୍ଗିଭାବ ସମ୍ବନ୍ଧକୁ ସ୍ୱୀକାର ନ କରନ୍ତି ସେମାନେ ମଧ୍ୟ ବହୁରସଯୁକ୍ତ ପ୍ରବନ୍ଧମାନଙ୍କରେ ଗୋଟିଏ ରସର ଅପେକ୍ଷାକୃତ ପ୍ରକର୍ଷ (ଯାହା କି ଆମ୍ଭ ଦ୍ୱାରା ପ୍ରଦର୍ଶିତ ହୋଇଅଛି)କୁ ଅସ୍ୱୀକାର କରି ପାରିବେ ନାହିଁ । ଏଣୁ ପ୍ରବନ୍ଧମାନଙ୍କରେ ବିରୋଧୀ ଓ ଅବିରୋଧୀ ରସମାନଙ୍କୁ ଉକ୍ତ ରୀତିରେ ଅଙ୍ଗାଙ୍ଗିଭାବରେ ସମାବେଶ କଲେ ବିରୋଧିତା ରହିବ ନାହିଁ । (କେତେକଙ୍କ ମତରେ ରସାସ୍ୱାଦ ବ୍ରହ୍ମାସ୍ୱାଦର ସହୋଦର, ଅଖଣ୍ଡ ଓ ବେଦ୍ୟାନ୍ତର ସ୍ପର୍ଶଶୂନ୍ୟ । ତେଣୁ ତାହାର ଅନ୍ୟରସ ସହିତ ମିଶ୍ରଣ ଅସମ୍ଭବ । ଏଣୁ ରସମାନଙ୍କର ଅଙ୍ଗାଙ୍ଗିଭାବ ହୋଇ ନ ପାରେ) ।

୩୧୩ । ଏତଞ୍ଚ ସର୍ବଂ ଯେଷାଂ "ରସୋ ରସାନ୍ତରସ୍ୟ ବ୍ୟଭିଚାରୀ ଭବତି, ଇତି ଦର୍ଶନଂ ତନ୍ମତେ-ନୋଚ୍ୟତେ ।

୩୧୪ । ମତାନ୍ତରେ ତୁ ରସାନାଂ ସ୍ଥାୟିନୋ ଭାବା ଉପଚାରାଦ୍ ରସଶବ୍ଦେନୋକ୍ତାଃ, ତେଷାମଙ୍ଗତ୍ୱେନ ନିର୍ବିରୋଧ-ତ୍ୱମେବ ।

୩୧୫ । ଏବମବିରୋଧିନାଂ ବିରୋଧିନାଂ ଚ ପ୍ରବନ୍ଧସ୍ଥେନା-ଙ୍ଗିନା ରସେନ ସମାବେଶେ ସାଧାରଣମବିରୋଧୋ-

---

୩୧୩ । ଏହା ସବୁ ସେହିମାନଙ୍କ ମତରେ କୁହାଗଲା ; ଯେଉଁମାନଙ୍କ ମତରେ ଗୋଟିଏ ରସ ଅନ୍ୟରସର ବ୍ୟଭିଚାରୀ ହୁଏ । ସେମାନଙ୍କ ମତ ଯଥା—

ଯେଉଁ ଗ୍ରନ୍ଥମାନଙ୍କରେ ବହୁରସ ସମାବେଶ ହୋଇଥାନ୍ତି । ସେଠାରେ ଯେଉଁ ରସର ଆସ୍ୱାଦ ବ୍ୟାପକଭାବେ ଅନୁଭୂତ ହୁଏ, ସେ ସ୍ଥାୟୀ ଓ ଅନ୍ୟମାନେ ବ୍ୟଭିଚାରୀ ହୁଅନ୍ତି । ସ୍ଥାୟୀରସ ଅଙ୍ଗୀ ହୁଏ । ଅସ୍ଥାୟୀ ବା ବ୍ୟଭିଚାରୀମାନେ ଅଙ୍ଗ ହୁଅନ୍ତି । ଯଥା "ଅୟଂ ସ ରସନୋତ୍କର୍ଷୀ" ଶ୍ଲୋକରେ କରୁଣ ସ୍ଥାୟୀ ; ତେଣୁ ଅଙ୍ଗୀ ଶୃଙ୍ଗାର ସଞ୍ଚାରୀ ତେଣୁ ଅଙ୍ଗ ।

୩୧୪ । ଯେଉଁମାନେ ରସମାନଙ୍କର ଅଙ୍ଗାଙ୍ଗିଭାବ ସମ୍ବନ୍ଧ ସ୍ୱୀକାର କରନ୍ତି ନାହିଁ, ସେମାନେ କହନ୍ତି ଯେ "ରତ୍ୟାଦି ସ୍ଥାୟିଭାବମାନେ ଲକ୍ଷଣା ବୃତ୍ତିରେ ଶୃଙ୍ଗାରାଦି ରସନାମରେ ଅଭିହିତ ହେଉଅଛନ୍ତି । ତେଣୁ ତାଙ୍କ ମତରେ ମଧ୍ୟ ରସମାନଙ୍କର ଅଙ୍ଗାଙ୍ଗିଭାବ ସମ୍ବନ୍ଧ ହେବାରେ କିଛି ବିରୋଧ ନାହିଁ । ଯେଣୁ ସେମାନେ ସଞ୍ଚାରି ଭାବମାନଙ୍କୁ ରତ୍ୟାଦି ସ୍ଥାୟିଭାବମାନଙ୍କର ଅଙ୍ଗରୂପେ ଗ୍ରହଣ କରନ୍ତି ।

୩୧୫ । ଉକ୍ତ ରୀତରେ ଅବିରୋଧୀ ଓ ବିରୋଧୀ ରସମାନଙ୍କର ପ୍ରବନ୍ଧଗତ ଅଙ୍ଗିରସ ସହିତ ସମାବେଶ କରିବା ବିଷୟରେ ସାଧାରଣ

ପାୟଂ ପ୍ରତିପାଦୟିତୁମିଦମୁଚ୍ୟତେ ।—

ପାୟଂ ପ୍ରତିପାଦ୍ୟେଦାନୀଂ ବିରୋଧିବିଷୟେ ତଂ ପ୍ରତିପାଦୟିତୁମିଦମୁଚ୍ୟତେ ।—

୩୧୬ । ବିରୁଦ୍ଧୈକାଶ୍ରୟୋ ଯସ୍ତୁ ବିରୋଧୀ
ସ୍ଥାୟିନୋ ଭବେତ୍ ।
ସ ବିଭିନ୍ନାଶ୍ରୟଃ କାର୍ଯ୍ୟସ୍ତସ୍ୟ ପୋଷେଽପ୍ୟଦୋଷତା ॥

୩୧୬ । ଐକାଧିକରଣ୍ୟ ବିରୋଧୀ ନୈରନ୍ତର୍ଯ୍ୟ ବିରୋଧୀ ଚେତି ଦ୍ୱିବିଧୋ ବିରୋଧୀ । ତତ୍ର ପ୍ରବନ୍ଧସ୍ଥେନ ସ୍ଥାୟିନା ଅଙ୍ଗିନା ରସେନୌଚିତ୍ୟାପେକ୍ଷୟା ବିରୁଦ୍ଧୈକାଶ୍ରୟୋ ଯୋ ବିରୋଧୀ, ଯଥା—ବୀରେଣ ଭୟାନକଃ, ସ ବିଭିନ୍ନାଶ୍ରୟଃ କାର୍ଯ୍ୟଃ । ତସ୍ୟ ବୀରସ୍ୟ ଯ ଆଶ୍ରୟଃ କଥା ନାୟକଃ, ତଦ୍ ବିପକ୍ଷବିଷୟେ

---

ଅବରୋଧର ଉପାୟ ପ୍ରତିପାଦନ କରସାର ବର୍ତ୍ତମାନ ବିରୋଧୀ ରସ-ମାନଙ୍କର ଅବରୋଧୋପାୟ (ତଂ) ପ୍ରତିପାଦନ କରାଯାଉଅଛି । ଯଥା :—

୩୧୬ । ଯେଉଁରସ ପ୍ରବନ୍ଧଗତ ସ୍ଥାୟୀ (ଅଙ୍ଗୀ) ରସର ଏକାଶ୍ରୟରେ ବିରୋଧୀ, ତାହାକୁ ବିଭିନ୍ନାଶ୍ରୟ କରିବ ଅର୍ଥାତ୍ ଭିନ୍ନ ଭିନ୍ନ ବ୍ୟକ୍ତି ବିଷୟରେ ନିବେଶ କରିବ । ତାହାହେଲେ ସେଠାରେ ବିରୋଧୀ ରସର ପରିପୁଷ୍ଟି ଦୋଷାବହ ନୁହେ ।

୩୧୬ । ବୃତ୍ତିର ଅର୍ଥ—

ଐକାଧିକରଣ୍ୟ ବିରୋଧୀ ଓ ନୈରନ୍ତର୍ଯ୍ୟ ବିରୋଧୀ ଭେଦରେ ବିରୋଧୀ ଦୁଇ ପ୍ରକାର । ତନ୍ମଧ୍ୟରେ ଯେଉଁରସ ଏକା ଅଧିକରଣରେ ବିରୋଧୀ ଯଥା :—ବୀର ସହିତ ଭୟାନକ, ତାକୁ ପ୍ରବନ୍ଧଗତ ସ୍ଥାୟୀ ଅଙ୍ଗୀ ବୀର—ରସସହିତ ଔଚିତ୍ୟ ଅନୁସାରେ ବିଭିନ୍ନାଶ୍ରୟ କରି ନିବେଶ କରିବ । ଯଥା :—ସେହି ବୀର ରସର ଆଶ୍ରୟ ଯେଉଁ କଥା—ନାୟକ, ତାହାର ବିପକ୍ଷ ବିଷୟରେ ଭୟାନକ ରସକୁ ନିବେଶ କରିବା ବିଧେୟ । ତାହାହେଲେ ସେହି ବିରୋଧୀ ରସକୁ ପୁଷ୍ଟ କରିବାରେ କୌଣସି ଦୋଷ ନାହିଁ ।

ସନ୍ନିବେଶୟିତବ୍ୟଃ । ତଥା ସତି ଚ ତସ୍ୟ ବିରୋଧି-
ନୋଽପି ଯଃ ପୋଷଃ, ସ ନଦୋଷଃ । ବିପକ୍ଷ ବିଷୟେ
ହି ଉତ୍ସାହାତିଶୟବର୍ଣ୍ଣନେ ନାୟକସ୍ୟ ନୟପରା-
କ୍ରମାଦିସମ୍ପତ୍ ସୁତରାମୁଦ୍ଦ୍ୟୋତିତା ଭବତି ।

୩୧୮ । ଏତଚ୍ଚ ମଦୀୟେଽର୍ଜ୍ଜୁନଚରିତେ ଅର୍ଜ୍ଜୁନସ୍ୟ ପାତାଳା-
ବତରଣ ପ୍ରସଙ୍ଗେ ବୈଶଦ୍ୟେନପ୍ରଦର୍ଶିତମ୍ ।

୩୧୯ । ଏବମେକାଧିକରଣ୍ୟ ବିରୋଧିନଃ ପ୍ରବନ୍ଧସ୍ଥେନ
ସ୍ଥାୟିନା ରସେନ ଅଙ୍ଗଭାବଗମନେ ନିର୍ବିରୋଧିତ୍ୱଂ
ଯଥା, ତଥାଦର୍ଶିତମ୍ ।

୩୨୦ । ଦ୍ୱିତୀୟସ୍ୟ ତୁ ତତ୍ ପ୍ରତିପାଦୟିତୁମୁଚ୍ୟତେ—

---

କାରଣ ବିପକ୍ଷର ଅତ୍ୟନ୍ତ ଭୀତି ବର୍ଣ୍ଣନା କଲେ କଥା ନାୟକର ନୀତି
ପରାକ୍ରମ ପ୍ରଭୃତି ସମ୍ପଦ ସୁସ୍ପଷ୍ଟଭାବେ ପ୍ରକାଶ ପାଏ ।

ସାରାର୍ଥ—(ଏଥିରେ ଏହା ସାର ଯେ ଯେଉଁ ରସ ଏକ ଆଶ୍ରୟରେ
ରହି ନ ପାରିବେ, ଯଥା—ବୀର ଓ ଭୟାନକ, ସେମାନଙ୍କୁ ଗ୍ରନ୍ଥରେ ଭିନ୍ନ
ଭିନ୍ନ ଆଶ୍ରୟରେ ରଖିବ । ଯଥା—ନାୟକଠାରେ ବୀର ଓ ପ୍ରତିନାୟକଠାରେ
ଭୟାନକ, ଏହାଦ୍ୱାରା ପରସ୍ପରରେ ବିରୋଧ ହୁଏ ନାହିଁ ବରଂ ଅଙ୍ଗୀରସ
ଅଧିକ ପୁଷ୍ଟ ହୁଏ) ।

୩୧୮ । ଏହି ବିଷୟ ମୋ ଅର୍ଜ୍ଜୁନ ରଚିତ ବିଜୟ ନାମକ
ମହାକାବ୍ୟରେ ଅର୍ଜ୍ଜୁନଙ୍କର ପାତାଳଗମନ ପ୍ରସଙ୍ଗରେ ବିଶଦଭାବେ ବର୍ଣ୍ଣିତ
ହୋଇଅଛି ।

୩୧୯ । ଏକାଶ୍ରୟ ବିରୋଧୀ ଭୟାନକାଦି ରସ ପ୍ରବନ୍ଧଗତ ସ୍ଥାୟୀ
ଅଙ୍ଗୀରସ ସହିତ ଅଙ୍ଗଭାବେ ରହିବାରେ ଯେପରି ବିରୋଧ ନ ହେବ,
ତାହା ଉକ୍ତ ପ୍ରକାରେ ପ୍ରଦର୍ଶିତ ହେଲା ।

୩୨୦ । ଦ୍ୱିତୀୟ ପ୍ରକାର (ନୈରନ୍ତର୍ଯ୍ୟ ବିରୋଧୀ) ଯେପରି ନିର୍ବି-
ରୋଧରେ ଅଙ୍ଗ ହୋଇପାରିବ ତାହା ନିରୂପଣ କରାଯାଉଛି । :—

୩୨୧ । ଏକାଶ୍ରୟତ୍ୱେ ନର୍ଦ୍ଦୋଷୋ ନୈରନ୍ତର୍ଯ୍ୟେ ବିରୋଧବାନ୍ ।
ରସାନ୍ତର ବ୍ୟବଧିନା ରସୋ ନ୍ୟସ୍ୟଃ ସୁମେଧସା ॥ ୨୬
ଯଃ ପୁନରେକାଧିକରଣତ୍ୱେ ନର୍ବରୋଧୋ, ନୈର-
ନ୍ତର୍ଯ୍ୟେ ତୁ ବିରୋଧୀ, ସ ରସାନ୍ତରବ୍ୟବଧାନେନ
ପ୍ରବନ୍ଧେ ନବେଶୟିତବ୍ୟଃ ।

୩୨୨ । ଯଥା ଶାନ୍ତଶୃଙ୍ଗାରୌ "ନାଗାନନ୍ଦେ" ନବେଶିତୌ ।

୩୨୩ । ଶାନ୍ତଶ୍ଚ ତୃଷ୍ଣାକ୍ଷୟସୁଖସ୍ୟ ଯଃ ପରିପୋଷଃ, ତଲ୍ଲକ୍ଷଣୋ
ରସଃ ପ୍ରତୀୟତ ଏବ ।

---

୩୨୧ । ଯେଉଁ ରସ ଏକ ଆଶ୍ରୟରେ ନର୍ଦ୍ଦୋଷ କନ୍ତୁ ନୈରନ୍ତର୍ଯ୍ୟରେ ବିରୋଧୀ ସେଭଳି ରସକୁ ପ୍ରବନ୍ଧରେ ନବେଶ କରିବାକୁ ହେଲେ ବୁଦ୍ଧିମାନ୍ କବି ଅନ୍ୟ ରସକୁ ବ୍ୟବଧାନକର (ଉଭୟ ବିରୋଧି ରସ ମଧ୍ୟରେ) ତାକୁ ବିନ୍ୟାସ କରିବ । ତେବେ ଦୋଷ ହେବନାହିଁ ।

୩୨୨ । ଏହାର ଉଦାହରଣ ଯଥା :—ହର୍ଷଦେବ କୃତ ନାଗାନନ୍ଦ ନାଟକରେ ଜୀମୂତ ବାହନଙ୍କ ବିଷୟରେ ପରସ୍ପର ବିରୋଧୀ ଶାନ୍ତ ଓ ଶୃଙ୍ଗାର ଦୁଇଟିକୁ"ଅହୋ ବାଦିତଂ ଅହୋ ଗୀତଂ" ଇତ୍ୟାଦି ଅଦ୍ଭୁତ ରସ ବ୍ୟବଧାନ ରଖି ସଂଯୋଜନ କରିଯାଇ ଅଛି ।

୩୨୩ । (କେହି କେହି ଶାନ୍ତକୁ ସ୍ୱତନ୍ତ୍ର ରସରୂପେ ସ୍ୱୀକାର କରନ୍ତି ନାହିଁ; ସେମାନଙ୍କ ମତରେ ଶାନ୍ତ ତ ଧର୍ମବୀର ପ୍ରଧାନ । ତେଣୁ ସେ ଧର୍ମବୀରଭାବେ ବୀର ରସରେ ଅନ୍ତର୍ଭୁକ୍ତ ହୋଇପିବ । ଗ୍ରନ୍ଥକାର ଏହି ମତକୁ ଖଣ୍ଡନ କରି ଶାନ୍ତର ସ୍ୱତନ୍ତ୍ର ରସତ୍ୱ ପ୍ରତିପାଦନ କରୁଅଛନ୍ତି) ଯଥା—

ସର୍ବବିଧ-ବିଷୟାସକ୍ତିରୁ ନବୃତ୍ତିରୂପକ ସୁଖର ପରିପୁଷ୍ଟି ଲାଭ (ଆସ୍ୱାଦ ପଦବୀ ପ୍ରାପ୍ତି) ହେଉଛି ଶାନ୍ତରସ । ଏହାହିଁ ଶାନ୍ତରସର ଲକ୍ଷଣ ।

୩୨୪ । ତଥାଚୋକ୍ତମ୍—

"ଯଚ୍ଚ କାମସୁଖଂ ଲୋକେ ଯଚ୍ଚଦିବ୍ୟଂ ମହତ୍ ସୁଖମ
ତୃଷ୍ଣାକ୍ଷୟ-ସୁଖସ୍ୟୈତେ ନାର୍ହତଃ ଷୋଡ଼ଶୀଂ କଳାମ୍ ।

୩୨୫ । ଯଦ୍ ନାମ ସର୍ବଜନାନୁଭବ ଗୋଚରତା ତସ୍ୟ ନାସ୍ତି,
ନୈତାବତାऽସାବଲୋକସାମାନ୍ୟମହାନୁଭାବଚିତ୍ତବୃତ୍ତି-
ବିଶେଷବତ୍ ପ୍ରତିକ୍ଷେପ୍ତୁଂ ଶକ୍ୟ ।

---

୩୨୪ । ପ୍ରାଚୀନ ଆର୍ଯ୍ୟମାନେ ତୃଷ୍ଣାକ୍ଷୟକୁ ସୁଖରୂପେ ବର୍ଣ୍ଣାଇଛନ୍ତି ।

ଯଥା—ଏହି ସଂସାରରେ ଅଭିଳଷିତ ବସ୍ତୁ ପ୍ରାପ୍ତି ହେତୁ ଯେଉଁ ସୁଖ (କାମସୁଖ) ଏବଂ ସ୍ୱର୍ଗଲୋକରେ ଅତି ମହତ୍ ଇନ୍ଦ୍ରପଦ ପ୍ରାପ୍ତପ୍ରଭୃତି ଯେଉଁ ସୁଖ (ଦିବ୍ୟସୁଖ) ଏହାସବୁ ତୃଷ୍ଣାକ୍ଷୟ—(ବିଷୟାସକ୍ତି ନିବୃତ୍ତି) ସୁଖର ଷୋଳଭାଗର ଏକ ଭାଗକୁ ମଧ୍ୟ ସମାନ ନୁହନ୍ତି ।

୩୨୫ । ଏହି ତୃଷ୍ଣାକ୍ଷୟ ସୁଖ ସବୁଲୋକଙ୍କ ଅନୁଭବରେ ଆସେ-ନାହିଁ, ଏହାବୋଲି ତାହାକୁ ରସରୂପେ ଅସ୍ୱୀକାର କରି ପାରିବେ ନାହିଁ । ଲୋକସାଧାରଣରୁ ଅତୀତ ମହାନୁଭବଜନଙ୍କ ଚିତ୍ତବୃତ୍ତି ବିଶେଷ ପରି ତାହାର ନିଶ୍ଚୟ ଅସ୍ତିତ୍ୱ ଅଛି ।

ବିଶଦାର୍ଥ—ଯାହା ସମସ୍ତଙ୍କ ଅନୁଭବରେ ନ ଆସେ, ତାହା ନାହିଁ, ଏପରି କୁହାଯାଇ ନ ପାରେ; ଏହାହେଲେ ସମସ୍ତଙ୍କ ଅନୁଭବରେ ନ ଆସୁଥିବା ହେତୁ ଈଶ୍ୱରଙ୍କର ମଧ୍ୟ ଅସ୍ତିତ୍ୱ ରହିବ ନାହିଁ । ତେଣୁ କଣେ କଣେ ମହାନୁଭବଜନଙ୍କର ଯେଭଳି ଅସାଧାରଣ ଚିତ୍ତବୃତ୍ତି ରହିଛି, ସେହିପରି କୌଣସି କୌଣସି ସହୃଦୟଙ୍କର ଶାନ୍ତରସାନୁଭବ ସାମର୍ଥ୍ୟ ମଧ୍ୟ ରହିଛି । ସୁତରାଂ ଯେଉଁ ମହାତ୍ମାମାନଙ୍କର ଚିତ୍ତବୃତ୍ତି ଶାନ୍ତରସ ଗ୍ରହଣ କରିବାକୁ ସମର୍ଥ, ସେମାନେ ଶାନ୍ତରସକୁ ଆସ୍ୱାଦନ କରି ପାରନ୍ତି ।

୩୨୬ । ନ ଚ ବୀରେ ତସ୍ୟାନ୍ତର୍ଭାବଃ କର୍ତ୍ତୁଂ ଯୁକ୍ତଃ, ତସ୍ୟାଭିମାନମୟତ୍ୱେନ ବ୍ୟବସ୍ଥାପନାତ୍ । ଅସ୍ୟ ତ୍ୱହଂକାର ପ୍ରଶମୈକରୂପତୟା ସ୍ଥିତେଃ ॥

୩୨୭ । ତୟୋଶ୍ଚୈବଂବିଧ-ବିଶେଷସଦ୍ଭାବେଽପି ଯଦୈକ୍ୟଂ ପରିକଳ୍ପ୍ୟତେ, ତଦ୍ବୀରରୌଦ୍ରୟୋରପି ତଥା ପ୍ରସଙ୍ଗଃ ।

୩୨୮ । ଦୟାବୀରାଦୀନାଂ ଚ ଚିତ୍ତବୃତ୍ତିବିଶେଷାଣାଂ ସର୍ବାକାର-ମହଂକାର-ରହିତତ୍ୱେନ ଶାନ୍ତରସପ୍ରଭେଦତ୍ୱଂ, ଇତରଥା ତୁ ବୀରପ୍ରଭେଦତ୍ୱମିତି ବ୍ୟବସ୍ଥାପ୍ୟମାନେ ନ କଶ୍ଚିଦ୍ ବିରୋଧଃ ।

---

୩୨୬ । ବୀର ରସମଧ୍ୟରେ ଶାନ୍ତକୁ ଅନ୍ତର୍ଭୁକ୍ତ କରିବା ଯୁକ୍ତିଯୁକ୍ତ ନୁହେ, କାରଣ ବୀରରସରେ ଅଭିମାନ ପ୍ରଧାନଭାବେ ରହିଥାଏ । କିନ୍ତୁ ଶାନ୍ତ ରସରେ ସର୍ବବିଧ ଅହଙ୍କାରର କ୍ଷୟ ହୋଇଥାଏ ।

୩୨୭ । ବୀର ଓ ଶାନ୍ତମଧ୍ୟରେ ଏହିପରି ପାର୍ଥକ୍ୟ ଥିବା ସତ୍ତ୍ୱେ ଯଦି ସେ ଦୁହିଁଙ୍କୁ ଗୋଟିଏ ରସ ବୋଲି ପରିକଳ୍ପନା କରାଯାଏ, ତେବେ ବୀର ଓ ରୌଦ୍ର ଦୁଇଟିଙ୍କୁ ମଧ୍ୟ ସେହିପରି ଗୋଟିଏ ରସ ବୋଲି କହିବା ଉଚିତ ହେବ ।

୩୨୮ । ଚିତ୍ତବୃତ୍ତିବିଶେଷରୂପ ଦୟାବୀରାଦିମାନେ ଯଦି ପୂର୍ଣ୍ଣମାତ୍ରାରେ ଅହଙ୍କାରହୀନ ହୁଅନ୍ତି ତେବେ ସେମାନେ ଶାନ୍ତରସର ପ୍ରଭେଦ ହେବେ, ଅର୍ଥାତ୍ ଶାନ୍ତ ରସରେ ଅନ୍ତର୍ଭୁକ୍ତ ହେବେ, (କିନ୍ତୁ ଶାନ୍ତ ରସ ଦୟାବୀରାଦିରେ ଅନ୍ତର୍ଭୁକ୍ତ ହେବ ନାହିଁ) ।

ଯଦି ଦୟାବୀରାଦିମାନେ ଅହଙ୍କାର ସହିତ ହୁଅନ୍ତି (ଇତରଥା) ତେବେ ସେମାନେ ବୀର ରସର ପ୍ରଭେଦ ହେବେ, ଅର୍ଥାତ୍ ବୀର ରସରେ ଅନ୍ତର୍ଭୁକ୍ତ ହେବେ । ଏହିପରି ବ୍ୟବସ୍ଥା କରାଗଲେ—ଶାନ୍ତ ଓ ବୀରର ପାର୍ଥକ୍ୟ ନିରୂପଣରେ କୌଣସି ସନ୍ଦେହ ରହିବ ନାହିଁ ।

୩୨୯ । ତଦେବମପି ଶାନ୍ତୋ ରସଃ । ତସ୍ୟ ଗୁବିରୁଦ୍ଧ-ରସବ୍ୟବଧାନେନ ପ୍ରବନ୍ଧେ ବିରୋଧିରସସମାବେଶେ ସତ୍ୟପି ନିର୍ବିରୋଧତ୍ୱମ୍ । ଯଥା—ପ୍ରଦର୍ଶିତେ ବିଷୟେ—

୩୩୦ । ଏତଦେବ ସ୍ଥିରୀକର୍ତ୍ତୁମିଦମୁଚ୍ୟତେ—

୩୩୧ । ରସାନ୍ତରାନ୍ତରିତୟୋ ରେକବାକ୍ୟସ୍ଥୟୋରପି ।
ନିବର୍ତ୍ତତେ ହି ରସୟୋଃ ସମାବେଶେ ବିରୋଧିତା ॥ ୨୭

୩୩୨ । ରସାନ୍ତରବ୍ୟବହିତୟୋ ରେକପ୍ରବନ୍ଧସ୍ଥୟୋ ର୍ବିରୁଦ୍ଧୟୋ ର୍ବିରୋଧିତା ନିବର୍ତ୍ତ ଇତ୍ୟତ୍ର ନ କାଚିଦ୍ ଭ୍ରାନ୍ତିଃ, ଯସ୍ମାଦେବ ବାକ୍ୟସ୍ଥୟୋରପି ରସୟୋରୁ-କ୍ତୟା ନୀତ୍ୟା ବିରୁଦ୍ଧତା ନିବର୍ତ୍ତତେ ।

---

୩୨୯ । ଅତଏବ ଶାନ୍ତରସ ନିଶ୍ଚୟ ଅଛି । ପ୍ରବନ୍ଧମାନଙ୍କରେ ତାହାର ଅବିରୋଧି ରସକୁ ବ୍ୟବଧାନ କରି ବିରୋଧୀ ରସକୁ ମଧ୍ୟ ନିର୍ଦ୍ଦେଶ କରାଗଲେ କୌଣସି ବିରୋଧ ରହିବ ନାହିଁ । ତାହାର ଉଦାହରଣ "ନାଗାନନ୍ଦ" ନାଟକାଦିରେ ଅଛି ବୋଲି ପ୍ରଦର୍ଶିତ ହୋଇଅଛି ।

୩୩୦ । ଛାତ୍ରମାନଙ୍କ ବୁଦ୍ଧିରେ ଏହି ବିଷୟକୁ ସ୍ଥିର କରିବା ପାଇଁ ପୁନଶ୍ଚ କୁହାଯାଉଅଛି ।

୩୩୧ । ଅନ୍ୟ ଗୋଟିଏ ରସକୁ ବ୍ୟବଧାନ କରି ରଖାଗଲେ ଗୋଟିଏ ବାକ୍ୟରେ ମଧ୍ୟ ଦୁଇ ବିରୋଧୀ ରସଙ୍କର ସମାବେଶରେ ବିରୋଧ ରହେ ନାହିଁ ।

୩୩୨ । (ବୃତ୍ତିର ଅର୍ଥ) ଅନ୍ୟରସ ବ୍ୟବହିତ ହେଲେ ଏକ ପ୍ରବନ୍ଧସ୍ଥ ଦୁଇ ବିରୋଧୀ ରସଙ୍କର ବିରୋଧ ତୁଟିଯାଏ, ଏଥିରେ କୌଣସି ସନ୍ଦେହ ନାହିଁ, ଯେ ହେତୁ ଏକ ବାକ୍ୟରେ ମଧ୍ୟ ଏହି ନ୍ୟାୟରେ ନିବେଶ କଲେ ଦୁଇ ବିରୋଧୀଙ୍କର ବିରୋଧଭାବ ରହେ ନାହିଁ ।

୩୩୩ । ଯଥା—

ଭୂରେଣୁଦଗ୍ଧାନ୍ ନବପାରିଜାତ-
ମାଳା ରଜୋବାସିତବାହୁମଧ୍ୟାଃ ।
ଗାଢ଼ଂ ଶିବାଭିଃ ପରିରଭ୍ୟମାଣାନ୍,
ସୁରାଙ୍ଗନାଶ୍ଳିଷ୍ଟଭୁଜାନ୍ତରାଳାଃ ॥
ସ ଶୋଣିତୈଃ କ୍ରବ୍ୟଭୁଜାଂ ସ୍ଫୁରଦ୍ଭିଃ
ପକ୍ଷୈଃ ଖଗାନାମୁପବୀଜ୍ୟମାନାନ୍ ।
ସଂବୀଜିତାଶ୍ଚନ୍ଦନବାରିସେକୈଃ
ସୁଗନ୍ଧିଭିଃ କଳ୍ପଲତାଦୁକୂଳୈଃ ॥

---

୩୩୩ । ଏକ ବାକ୍ୟରେ ଦୁଇ ବିରୋଧୀଙ୍କର ବିରୋଧାଭାବ, ଯଥା—

(ସମ୍ମୁଖ ସଂଗ୍ରାମରେ ନିହତ ହୋଇ ତତ୍କାଳରେ ସ୍ୱର୍ଗକୁ ଯାଉଥିବା ବୀରମାନଙ୍କ ବର୍ଣ୍ଣନା) ବୀରମାନେ ଦେବତ୍ୱ ପ୍ରାପ୍ତିହେତୁ ନୂତନ ପାରିଜାତ ପୁଷ୍ପମାଳାର ପରାଗ ଦ୍ୱାରା ସୁବାସିତ ବକ୍ଷ ହୋଇ, ସୁରାଙ୍ଗନାମାନଙ୍କ ଦ୍ୱାରା ବକ୍ଷସ୍ଥଳରେ ଆଲିଙ୍ଗନ ପ୍ରାପ୍ତ ହୋଇ, ଚନ୍ଦନ ପାଣି ସେଚନ ଦ୍ୱାରା ସୁବାସିତ କଳ୍ପବୃକ୍ଷର ତନ୍ତୁନିର୍ମିତ ପଟ୍ଟବସ୍ତ୍ର ଦ୍ୱାରା ବିଞ୍ଚାହୋଇ, ବ୍ୟୋମଯାନରେ ପଲଙ୍କ ଉପରେ ବସିଥିବାବେଳେ ଦେବସ୍ତ୍ରୀମାନଙ୍କ ଦ୍ୱାରା ଅଙ୍ଗୁଳି ନିର୍ଦ୍ଦେଶ-ପୂର୍ବକ ନିର୍ଦ୍ଦିଷ୍ଟ ହେଉଥିବା ନିଜ ନିଜର ମୃତ ଦେହଗୁଡ଼ିକୁ ଭୂମିରେ ଧୂଳିଧୂସର ହୋଇ, ମାଈ ବିଲୁଆମାନଙ୍କ ଦ୍ୱାରା ଭୋଜନ ସକାଶେ ଦୃଢ଼ଭାବେ ଆଲିଙ୍ଗିତ ହୋଇ, କଞ୍ଚାମାଂସଖିଆ କୁଆ ଶାଗୁଣାପ୍ରଭୃତି ପକ୍ଷୀଙ୍କ ରକ୍ତବୋଳା ପକ୍ଷରେ ବିଞ୍ଚାହୋଇ ତଳେ ପଡ଼ିଥିବାର ଦେଖିଥିଲେ ।

(ବୀରମାନେ ପାରିଜାତ ପରାଗରେ ରଞ୍ଜିତ, ତାଙ୍କ ମୃତଦେହ-ଗୁଡ଼ା ଧୂଳିଧୂସର । ବୀରମାନେ ଦେବସ୍ତ୍ରୀମାନଙ୍କ ଦ୍ୱାରା ଆଲିଙ୍ଗିତ, ତାଙ୍କ ମୃତଦେହ ଶୃଗାଳମାନଙ୍କ ଦ୍ୱାରା ଆଲିଙ୍ଗିତ, ବୀରମାନେ ଚନ୍ଦନପାଣି ସିଞ୍ଚା କଳ୍ପଲତା ପାଟରେ ବିଞ୍ଚା ହେଉଛନ୍ତି, ତାଙ୍କ ମୃତଦେହ କୁଆ ଶାଗୁଣାଙ୍କ

ବିମାନପର୍ଯ୍ୟଙ୍କତଲେ ନିଷଣ୍ଣାଃ
କୁତୂହଲାବିଷ୍ଟତୟା ତଦାନୀମ୍ ।
ନିର୍ଦ୍ଦିଶ୍ୟମାନାଁଲ୍ଲଳନାଙ୍ଗୁଳୀଭି-
ର୍ବୀରାଃ ସ୍ୱଦେହାନ୍ ପତିତାନପଶ୍ୟନ୍ । ଇତ୍ୟାଦୌ ॥

୩୩୪ । ଅତ୍ର ହି ଶୃଙ୍ଗାରବୀଭତ୍ସୟୋସ୍ତଦଙ୍ଗୟୋର୍ବା ବୀର-
ରସବ୍ୟବଧାନେନ ସମାବେଶୋ ନ ବିରୋଧୀ ।

୩୩୫ ।—

ବିରୋଧମବିରୋଧଞ୍ଚ ସର୍ବତ୍ରେତ୍ଥଂ ନିରୂପୟେତ୍ ।
ବିଶେଷତସ୍ତୁ ଶୃଙ୍ଗାରେ ସୁକୁମାରତମୋହ୍ୟସୌ ॥ ୨୮ ॥

ଯଥୋକ୍ତ ଲକ୍ଷଣାନୁସାରେଣ ବିରୋଧା ବିରୋଧୌ ସର୍ବେଷୁ ରସେଷୁ, ପ୍ରବନ୍ଧେ ଅନ୍ୟତ୍ର ଚ ନିରୂପୟେତ୍ ସହୃଦୟଃ । ବିଶେଷତସ୍ତୁ ଶୃଙ୍ଗାରେ, ସ ହି ରତିପରି-

---

ରକ୍ତବୋଲ ପକ୍ଷୀରେ ବ୍ୟାପ୍ତ ହେଉଅଛନ୍ତି । ବୀରମାନେ ବ୍ୟୋମଯାନରେ ପଲଙ୍କ ଉପରେ ବସିଅଛନ୍ତି, ତାଙ୍କ ମୃତଦେହ ତଳେ ପଡ଼ିଛି) ।

୩୩୪ । (ଉକ୍ତ ତିନିଗୋଟିଯାକ ଶ୍ଳୋକ ଗୋଟିଏମାତ୍ର ବାକ୍ୟ । ଏଥିରେ ବାକ୍ୟାରମ୍ଭଠାରୁ ବାକ୍ୟ ସମାପ୍ତି ପର୍ଯ୍ୟନ୍ତ ସୁରଙ୍ଗନାସମ୍ପର୍କହେତୁକ ଶୃଙ୍ଗାର ଓ ପତିତ ଦେହାଶ୍ରିତ ବୀଭତ୍ସ ପରିପୁଷ୍ଟହୋଇ ବର୍ଣ୍ଣିତ ହୋଇଅଛନ୍ତି । ଏହି ଦୁଇ ରସର ମଧ୍ୟରେ ବୀରପଦ ଦ୍ୱାରା ବୀରରସ ପ୍ରକାଶିତ ହେଉଛି ମାତ୍ର ସେ ଉକ୍ତ ଦୁଇ ରସ ତୁଳନାରେ ପରିପୁଷ୍ଟ ନୁହେ) ।

ଉକ୍ତ ଶ୍ଳୋକତ୍ରୟାତ୍ମକ ବାକ୍ୟ ମଧ୍ୟରେ ବୀରରସ ବ୍ୟବଧାନ ସ୍ୱରୂପ ଥିବାରୁ ପରସ୍ପର ବିରୁଦ୍ଧ ଶୃଙ୍ଗାର ଓ ବୀଭତ୍ସ ରସ ଦୁଇଟିର କିମ୍ବା ତିନି ଦୁଇ ରସର ଅଙ୍ଗ ରତି ଓ ଜୁଗୁପ୍ସାର ସମାବେଶ ଦୋଷାବହ ନୁହେ ।

୩୩୫ । ଉକ୍ତ ଲକ୍ଷଣ ଅନୁସାରେ ସର୍ବବିଧ ରସ ଏବଂ ପ୍ରବନ୍ଧ ମୁକ୍ତକାଦି ସର୍ବବିଧ ରଚନାରେ (ସହୃଦୟ) କିଏ ବିରୁଦ୍ଧ ଓ କିଏ ଅବିରୁଦ୍ଧ

ପୋଷାତ୍ମକତ୍ୱାତ୍, ରତେଶ୍ଚ ସ୍ୱଳ୍ପେନାପି ନିମିତ୍ତେନ ଭଙ୍ଗସମ୍ଭବାତ୍, ସୁକୁମାରତମଃ ସର୍ବେଭ୍ୟୋ ରସେଭ୍ୟଃ, ମନାଗପି ବିରୋଧିସମାବେଶଂ ନ ସହତେ ।

୩୩୬ । ଅବଧାନାତିଶୟବାନ୍ ରସେ ତତ୍ରୈବ ସତ୍କବିଃ ।
ଭବେତ୍ ତସ୍ମିନ୍ ପ୍ରମାଦୋ ହି ଝଟିତ୍ୟେବାବଭାସତେ ।

ତତ୍ରୈବ ଚ ରସେ ସର୍ବେଭ୍ୟୋଽପି ରସେଭ୍ୟଃ ସୌକୁମାର୍ଯ୍ୟାତିଶୟଯୋଗିନି କବିରବଧାନବାନ୍ ପ୍ରଯତ୍ନବାନ୍ ସ୍ୟାତ୍ । ତତ୍ର ହି ପ୍ରମାଦ୍ୟତସ୍ତସ୍ୟ ସହୃଦୟମଧ୍ୟେ କ୍ଷିପ୍ରମେବାବଜ୍ଞାନବିଷୟତା ଭବତି ।

୩୩୭ । ଶୃଙ୍ଗାର ରସୋ ହି ସଂସାରିଣାଂ ନିୟମେନାନୁଭବ ବିଷୟତ୍ୱାତ୍ ସର୍ବରସେଭ୍ୟଃ କମନୀୟତୟା ପ୍ରଧାନଭୂତଃ ।

---

ତାହା ସହୃଦୟ ବିଚାର କରିବ । ଏହି ବିଚାର, ଶୃଙ୍ଗାର ରସରେ ବିଶେଷତଃ ସର୍ବେ ଆବଶ୍ୟକ । କାରଣ ସେହି ଶୃଙ୍ଗାର ରସ ଅତ୍ୟନ୍ତ ସୁକୁମାର ।

ଶୃଙ୍ଗାର ସୁକୁମାର ହେବାରେ କାରଣ ଏହି ଯେ ଶୃଙ୍ଗାର ହେଉଛି ରତି ପରିପୋଷାତ୍ମକ, ଅଳ୍ପ କାରଣରେ ମଧ୍ୟ ରତିର ଭଙ୍ଗ ସମ୍ଭାବନା ଅଛି । ତେଣୁ ସେ ସବୁରସ ଅପେକ୍ଷା ଅଧିକ ସୁକୁମାର ଏବଂ ଟିକିଏ ହେଲେ ସୁଦ୍ଧା ବିରୋଧୀ ସମାବେଶକୁ ସହିପାରେ ନାହିଁ ।

୩୩୬ । ସତ୍‌କବି ସେହି ଅତିସୁକୁମାର ଶୃଙ୍ଗାର ରସର ନିବନ୍ଧନରେ ଅତ୍ୟନ୍ତ ସାବଧାନ ହେବ, ଯେ ହେତୁ ସେହି ଶୃଙ୍ଗାର ରସର ରଚନାରେ ପ୍ରମାଦ ଘଟିଲେ ତାହା ଝଟିତି ପ୍ରକାଶପାଏ, ଏବଂ ତାହା ଦ୍ୱାରା ସହୃଦୟ ସମାଜରେ କବିର ଅବଜ୍ଞା ପ୍ରସାରିତ ହୁଏ ।

୩୩୭ । ଶୃଙ୍ଗାର ରସ ସମସ୍ତ ସଂସାରୀ ଜୀବମାନଙ୍କର ସୁନିଶ୍ଚିତଭାବେ ଅନୁଭବରେ ଆସେ ଏବଂ ସେ ସବୁରସ ଅପେକ୍ଷା କମନୀୟ, ତେଣୁ ଶୃଙ୍ଗାର-ରସ ସବୁରସ ମଧ୍ୟରେ ପ୍ରଧାନ

୩.୩୮ । ଏବଂ ସତି—

୩୩୯ । ବିନେୟୋନ୍ମୁଖୀକର୍ତ୍ତୁଂ କାବ୍ୟଶୋଭାର୍ଥମେବ ବା ।
ତଦ୍‌ବିରୁଦ୍ଧ ରସସ୍ପର୍ଶସ୍ତଦଙ୍ଗାନାଂ ନ ଦୁଷ୍ୟତି । ୩୦ ।
ଶୃଙ୍ଗାରବିରୁଦ୍ଧରସସ୍ପର୍ଶଃ ଶୃଙ୍ଗାରାଙ୍ଗାଣାଂ ଯଃ,
ସ ନ କେବଲମବିରୋଧଲକ୍ଷଣଯୋଗେ ସତି ନ
ଦୁଷ୍ୟତି, ଯାବଦ୍ ବିନେୟୋନ୍ମୁଖୀକର୍ତ୍ତୁଂ କାବ୍ୟ-
ଶୋଭାର୍ଥମେବ ବା କ୍ରିୟମାଣୋ ନ ଦୁଷ୍ୟତି ।

୩୪୦ । ଶୃଙ୍ଗାରରସାଙ୍ଗୈରୁନ୍ମୁଖୀକୃତାଃ ସନ୍ତୋ ହି
ବିନେୟାଃ ସୁଖଂ ବିନୟୋପଦେଶଂ ଗୃହ୍ଣନ୍ତି ।

୩୪୧ । ସଦାଚାରୋପଦେଶରୂପା ହି ନାଟକାଦିଗୋଷ୍ଠୀ
ବିନେୟଜନହିତାର୍ଥମେବ ମୁନିଭିରବତାରିତା ।

---

୩୩୮ । ଶୃଙ୍ଗାର ରସ ସର୍ବଜନ ହୃଦୟହାରୀ ହେବା ହେତୁ :—

୩୩୯ । ବିନେୟ ରାଜପୁତ୍ରାଦିମାନଙ୍କୁ ଉପଦେଶାଭିମୁଖ (ଉନ୍ମୁଖ) କରିବା ସକାଶେ ଓ କାବ୍ୟର ଶୋଭା ବୃଦ୍ଧି ସକାଶେ ଶୃଙ୍ଗାର ରସର ବିଭାବ, ଅନୁଭାବ ଓ ବ୍ୟଭିଚାରିଭାବମାନଙ୍କୁ ଶୃଙ୍ଗାର ବିରୋଧୀ ରସ-ମାନଙ୍କରେ ସମାବେଶ କରିବା ଦୋଷାବହ ନୁହେ ।

୩୪୦ । ଯେଣୁ ଶିକ୍ଷଣୀୟ ରାଜପୁତ୍ରାଦିମାନେ ଶୃଙ୍ଗାର ରସର ବିଭାବାନୁଭାବ-ବ୍ୟଭିଚାରୀ ଭାବମାନଙ୍କ ଦ୍ୱାରା ଶିକ୍ଷାଗ୍ରହଣ ପ୍ରତି ଉନ୍ମୁଖହୋଇ ଅକ୍ଳେଶରେ ବିନୟୋପଦେଶ ଗ୍ରହଣ କରନ୍ତି ।

୩୪୧ । ଭରତାଦି ମୁନିମାନେ ବିନେୟମାନଙ୍କ ହିତ ସାଧନ ସକାଶେ ହିଁ ସଦାଚାରର ଉପଦେଶରୂପକ ନାଟକାଦି ଦୃଶ୍ୟ କାବ୍ୟ ସୃଷ୍ଟି କରି ଅଛନ୍ତି ।

୩୪୨ । କିଂଚ ଶୃଙ୍ଗାରସ୍ୟ ସକଲଜନମନୋଭିରାମତ୍ୱାତ୍ ତଦଙ୍ଗସମାବେଶଃ କାବ୍ୟଶୋଭାତିଶୟଂ ପୁଷ୍ୟତୀତ୍ୟନେନାପି ପ୍ରକାରେଣ ବିରୋଧିରସେ ଶୃଙ୍ଗାରାଙ୍ଗସମାବେଶୋ ନ ବିରୋଧୀ ।

୩୪୩ । ତତଶ୍ଚ—

ସତ୍ୟଂ ମନୋରମା ରାମାଃ ସତ୍ୟଂ ରମ୍ୟା ବିଭୂତୟଃ ।
କିନ୍ତୁ ମତ୍ତାଙ୍ଗନାପାଙ୍ଗ-ଭଙ୍ଗଲୋଲଂ ହି ଜୀବିତମ୍ ।
ଇତ୍ୟାଦିଷୁ ନାସ୍ତି ରସବିରୋଧଦୋଷଃ ।

---

୩୪୨ । ଆଉ ପୁଣି ଶୃଙ୍ଗାର ରସ ସକଳଜନଙ୍କର ମନୋହରଣ କରୁଥିବାରୁ ତାହାର ବିଭାବାନୁଭାବବ୍ୟଭିଚାରିଭାବ ନିବେଶ କାବ୍ୟର ଶୋଭା ବର୍ଦ୍ଧନ କରେ । ଏଣୁ ଉକ୍ତ ରୀତିରେ ବିରୋଧୀ ରସରେ ମଧ୍ୟ ଶୃଙ୍ଗାରାଙ୍ଗ (ବିଭାବାନୁଭାବବ୍ୟଭିଚାରିଭାବ)ମାନଙ୍କୁ ନିବେଶ କରିବା ଦୋଷାବହ ନୁହେ ।

୩୪୩ । ତେଣୁ—(କୌଣସି ବିରାଗୀର ଉକ୍ତି)

ବିଳାସିନୀ ସ୍ତ୍ରୀ (ରାମା)ମାନେ ମନୋହର ଅଟନ୍ତି, ଏହା ସତ୍ୟ । ସମ୍ପତ୍ତି (ବିଭୂତି) ମନୋହର, ଏହା ମଧ୍ୟ ସତ୍ୟ । କିନ୍ତୁ ଯୌବନୋନ୍ମତ୍ତ କାମିନୀର ଅପାଙ୍ଗ ଭଙ୍ଗୀଭଳି ଜୀବନ ଅସ୍ଥିର ।

ଏ ଶ୍ଳୋକରେ ଯୌବନର ଅସ୍ଥିରତା କଥନ ଶାନ୍ତରସର ବିଭାବ । ଶାନ୍ତରସରେ ବିଶ୍ରାନ୍ତ ହେଉଥିବାରୁ ଶାନ୍ତରସ ଏଠାରେ ମୁଖ୍ୟ । ରାମା ଓ ବିଭୂତି ଯଥାକ୍ରମେ ଶୃଙ୍ଗାରର ଆଲମ୍ବନ ଏବଂ ଉଦ୍ଦୀପନ ବିଭାବ । ଏ ଦୁହେଁ ଶାନ୍ତର ବିରୋଧିର ଅଙ୍ଗ ହେଲେ ମଧ୍ୟ କାବ୍ୟର ଶୋଭା ବର୍ଦ୍ଧନ କରୁଅଛନ୍ତି । ଏମାନଙ୍କ ଦ୍ୱାରା ପ୍ରକାଶମାନ ଶୃଙ୍ଗାର ବିନେୟମାନଙ୍କର ଆକର୍ଷକ ହୋଇ, ତତ୍ତ୍ୱୋପଦେଶ ଦାନରେ ସହାୟକ ହୋଇଅଛି । ଏହିପରି ଅନ୍ୟ ସ୍ଥଳମାନଙ୍କରେ ମଧ୍ୟ ରସ ବିରୋଧ ଦୋଷ ନାହିଁ ବୋଲି ଠିକଣା କରିବାକୁ ହେବ ।

୩୪୪ । ଵିଜ୍ଞାଯେତ୍ଥଂ ରସାଦୀନାମଵିରୋଧଵିରୋଧଯୋଃ.
ଵିଷଯଂ, ସୁକଵିଃ କାଵ୍ୟଂ କୁର୍ଵନ୍ ମୁହ୍ୟତି ନ କ୍ଵଚିତ୍ ॥

ଇତ୍ଥମନେନାନନ୍ତରୋକ୍ତେନ ପ୍ରକାରେଣ ରସାଦୀନାଂ ରସଭାଵତଦାଭାସାନାଂ ପରସ୍ପରଂ ଵିରୋଧସ୍ୟାଵିରୋଧସ୍ୟ ଚ ଵିଷଯଂ ଵିଜ୍ଞାଯ, ସୁକଵିଃ କାଵ୍ୟଵିଷଯେ ପ୍ରତିଭାତିଶଯ୍ଵ ଯକ୍ତଃ କାଵ୍ୟଂ କୁର୍ଵନ୍ ନ କ୍ଵଚିନ୍ମୁହ୍ୟତି ।

୩୪୫ । ଏଵଂ ରସାଦିଷୁ ଵିରୋଧାଵିରୋଧନିରୂପଣସ୍ୟୋପଯୋଗିତ୍ଵଂ ପ୍ରତିପାଦ୍ୟ, ଵ୍ୟଞ୍ଜକଵାଚ୍ୟଵାଚକନିରୂପଣସ୍ୟାପି ତଦ୍ଵିଷଯସ୍ୟ ତତ୍ ପ୍ରତିପାଦ୍ୟତେ ।

୩୪୬ । ଵାଚ୍ୟାନାଂ ଵାଚକାନାଂ ଚ ଯଦୌଚିତ୍ୟେନ ଯୋଜନମ୍
ରସାଦିଵିଷଯେଣୈତତ୍ କର୍ମମୁଖ୍ୟଂ ମହାକଵେଃ । ୩୨ ।

ଵାଚ୍ୟାନାମିତିଵୃତ୍ତଵିଶେଷାଣାଂ ଵାଚକାନାଂ ଚ ତଦ୍ଵିଷଯାଣାଂ ରସାଦିଵିଷଯେଣୌଚିତ୍ୟେନ ଯଦ୍ଯୋଜନମ୍, ଏତନ୍ମହାକଵେଃ ମୁଖ୍ୟଂ କର୍ମ ।

---

୩୪୪ । କାବ୍ୟ ନିର୍ମାଣରେ ପ୍ରତିଭାବନ୍ତ କବି ଏହିପରି ରସଭାବ ତଦାଭାସମାନଙ୍କର ପରସ୍ପରରେ ବିରୋଧ ଓ ଅବିରୋଧ ବିଷୟ ଜାଣି କାବ୍ୟରଚନା କଲେ କୁଆପି ଭ୍ରମରେ ପଡ଼େ ନାହିଁ ।

୩୪୫ । ଏହିପରି ରସାଦି ବିଷୟରେ ପରସ୍ପର ବିରୋଧ ଅବିରୋଧ ନିରୂପଣର ଆବଶ୍ୟକତା ପ୍ରତିପାଦନ କରି ସାରି, ରସାଦିର ବ୍ୟଞ୍ଜକ ବାଚ୍ୟ ଓ ବାଚକର ଆବଶ୍ୟକତା ପ୍ରତିପାଦନ କରାଯାଉଅଛି ।

୩୪୬ । ରସାଦି ବିଷୟରେ ଇତିବୃତ୍ତବିଶେଷରୂପକ ବାଚ୍ୟମାନଙ୍କର ଓ ସେହି ବାଚ୍ୟର ପ୍ରତିପାଦକବାଚକମାନଙ୍କର ଔଚିତ୍ୟ ଅନୁସାରେ ସଂଯୋଜନ କରିବା ମହାକବିର ମୁଖ୍ୟ କର୍ମ ।

୩୪୭ । ଅପୃମେବ ହି ମହାକବେ ର୍ମୁଖ୍ୟୋ ବ୍ୟାପାରୋ ଯଦ୍ରସାଦୀନେବ ମୁଖ୍ୟତୟା କାବ୍ୟାର୍ଥୀକୃତ୍ୟ ତଦ୍ବ୍ୟକ୍ତ୍ୟନୁଗୁଣତ୍ୱେନ ଶବ୍ଦାନାମର୍ଥାନାଂ ଚୋପନିବନ୍ଧନଂ ।

୩୪୮ । ଏତଚ୍ଚ ରସାଦିତାତ୍ପର୍ଯ୍ୟେଣ କାବ୍ୟନିବନ୍ଧନଂ ଭରତାଦାବପି ସୁପ୍ରସିଦ୍ଧମେବେତି ପ୍ରତିପାଦୟିତୁମିଦମୁଚ୍ୟତେ ।

୩୪୯ । ରସାଦ୍ୟନୁଗୁଣତ୍ୱେନ ବ୍ୟବହାରୋଽର୍ଥଶବ୍ଦୟୋଃ ।
ଔଚିତ୍ୟବାନ୍ ଯସ୍ତା ଏତା ବୃତ୍ତୟୋ ଦ୍ୱିବିଧାଃ ସ୍ଥିତାଃ ॥

୩୫୦ । ବ୍ୟବହାରୋ ହି ବୃତ୍ତିରିତ୍ୟୁଚ୍ୟତେ । ତତ୍ର ରସାନୁଗୁଣ ଔଚିତ୍ୟବାନ୍ ବାଚ୍ୟାଶ୍ରୟୋ ଯୋ ବ୍ୟବହାରଃ, ତା ଏତାଃ କୈଶିକ୍ୟାଦୟୋ ବୃତ୍ତୟଃ । ବାଚକାଶ୍ରୟାଶ୍ଚୋପନାଗରିକାଦ୍ୟାଃ ।

---

୩୪୭ । ରସାଦିମାନଙ୍କୁ କାବ୍ୟର ମୁଖ୍ୟ ଅର୍ଥରୂପେ ଗ୍ରହଣ କରି ଉକ୍ତ ରସାଦିର ବ୍ୟଞ୍ଜନ ସମର୍ଥ ଶବ୍ଦ ଓ ଅର୍ଥମାନଙ୍କୁ ଗ୍ରନ୍ଥନ କରିବା ମହାକବିମାନଙ୍କର ପ୍ରଧାନ କର୍ତ୍ତବ୍ୟ ।

ରସାଦିର ବିରୋଧାବିରୋଧ ବର୍ଗର ସମାପ୍ତ ।

## ଅଥ ବ୍ୟଞ୍ଜନା ନିରୂପଣ ।

୩୪୮ । ରସାଦିକୁ ମୁଖ୍ୟକରି କାବ୍ୟ ନିର୍ମାଣ କରିବାକୁ ହେବ ବୋଲି ଆମ୍ଭେ ଯେଉଁ ମତ ଦେଲୁଁ ତାହା ଭରତାଦିଙ୍କ ଗ୍ରନ୍ଥରେ ମଧ୍ୟ ସୁପ୍ରସିଦ୍ଧଭାବେ ରହିଅଛି । ଏହା ପ୍ରତିପାଦନ କରିବା ନିମିତ୍ତେ କୁହାଯାଉଛି ।

୩୪୯ । ଅର୍ଥ ଏବଂ ଶବ୍ଦର ରସାଦି ଅନୁଗୁଣ ଭାବରେ ଯେଉଁ ଔଚିତ୍ୟାନୁସାରି ବ୍ୟବହାର, ତାହା ଦୁଇ ପ୍ରକାର ବୃତ୍ତି ।

୩୫୦ । (ବୃତ୍ତିର ଅର୍ଥ) ଶବ୍ଦ ଓ ଅର୍ଥର ବ୍ୟବହାରକୁ ବୃତ୍ତିବୋଲି ବୋଲାଯାଏ । ରସାନୁଗୁଣ ଔଚିତ୍ୟ ଯୁକ୍ତ ଯେଉଁ ବାଚକାଶ୍ରୟ ବ୍ୟବହାର, ତାହା ଉପନାଗରିକାଦି ବୃତ୍ତି । ରସାଶ୍ରୟ ଔଚିତ୍ୟଯୁକ୍ତ ଯେଉଁ ବାଚ୍ୟାଶ୍ରୟ ବ୍ୟବହାର ତାହା କୈଶିକ୍ୟାଦି ବୃତ୍ତି ।

୩୫୧ । ବୃତ୍ତ୍ୟୋ ହି ରସାଦତାତ୍ପର୍ଯ୍ୟେଣ ସନ୍ନିବେଶିତାଃ
କାମପି ନାଟ୍ୟସ୍ୟ କାବ୍ୟସ୍ୟ ଚ ଛାୟାମାବହନ୍ତି ।

୩୫୨ । ରସାଦଯ୍ୟୋ ହି ଦ୍ୱୟୋରପି ତୟୋର୍ଜୀବଭୂତାଃ,
ଇତିବୃତ୍ତାଦି ତୁ ଶରୀରଭୂତମେବ ।

୩୫୩ । ଅତ୍ର କେଚିଦାହୁଃ । ଗୁଣଗୁଣି-ବ୍ୟବହାରେ ରସା-
ଦୀନାମିତିବୃତ୍ତାଦିଭିଃ ସହ, ନତୁ ଜୀବଶରୀର
ବ୍ୟବହାରଃ । ରସାଦମୟଂ ହି ବାଚ୍ୟଂ ପ୍ରତିଭାସତେ,
ନତୁ ରସାଦିଭିଃ ପୃଥଗ୍‌ଭୂତମ୍ ଇତି ।

୩୫୪ । ଅତ୍ରୋଚ୍ୟତେ—ଯଦି ରସାଦମୟମେବବାଚ୍ୟଂ
ଯଥା ଗୌରତ୍ୱମୟଂ ଶରୀରମ୍, ଏବଂ ସତି ଯଥା

---

୩୫୧ । ବୃତ୍ତିଗୁଡ଼ିକ ରସାଦି ତାତ୍ପର୍ଯ୍ୟରେ ସନ୍ନିବେଶିତ ହେଲେ ଦୃଶ୍ୟ ଓ ଶ୍ରବ୍ୟ ଉଭୟପ୍ରକାର କାବ୍ୟର ଅପୂର୍ବ ଶୋଭା ସମ୍ପାଦନ କରନ୍ତି ।

୩୫୨ । ଏହି ଉଭୟ ପ୍ରକାର ବୃତ୍ତିର ରସାଦିମାନେ ଜୀବନ ସ୍ୱରୂପ ଏବଂ ଇତିବୃତ୍ତାଦି ଶରୀରସ୍ୱରୂପ ।

୩୫୩ । (ପୂର୍ବପକ୍ଷ) :—ଏ ବିଷୟରେ କେତେକ କହନ୍ତି ଯେ—ରସାଦିମାନଙ୍କର ଇତିବୃତ୍ତାଦି ସହିତ ଗୁଣଗୁଣି ବ୍ୟବହାର ଠିକ୍, କିନ୍ତୁ ଜୀବ ଶରୀର ବ୍ୟବହାର ଠିକ୍ ନୁହେ । ଯେ ହେତୁ ବାଚ୍ୟ (ଇତିବୃତ୍ତାଦି) ରସାଦିମୟ ହୋଇ ପ୍ରତିଭାସମାନ ହୁଏ କିନ୍ତୁ ରସାଦିରୁ ପୃଥକ୍‌ଭାବେ ପ୍ରତୀତ ହୁଏ ନାହିଁ ।

(ଏହାର ଆଶୟ ଏହି ଯେ ଯେପରି ବସ୍ତ୍ରାଦି ଗୁଣୀ ଶୁକ୍ଳାଦି ଗୁଣରୁ ପୃଥକ୍ ଭାବେ ଦେଖାଯାଏ ନାହିଁ, ସେହିପରି ରସାଦିରୁ ଅତିରିକ୍ତଭାବେ ଇତିବୃତ୍ତର ଗ୍ରହଣ ହୁଏ ନାହିଁ) ।

(ଉକ୍ତ ମତର ଖଣ୍ଡନ)

୩୫୪ । ଏ ମତ ବିଷୟରେ କୁହାଯାଉଅଛି—

ଯଥା ଶରୀର ଗୌରତ୍ୱମୟ ତଥା ଯଦି ବାଚ୍ୟ ରସାଦିମୟ ହୁଏ, ତେବେ ଶରୀର ଜ୍ଞାତ ହେଲେ ଗୌରତ୍ୱ ଅନ୍ଧ ଓ ଚକ୍ଷୁଷ୍ମାନ୍ ସମସ୍ତଙ୍କର

ଶରୀରେ ପ୍ରତିଭାସମାନେ ନସ୍ୟମେନୈବ ଗୌରତ୍ୱଂ ପ୍ରତିଭାସତେ ସର୍ବସ୍ୟ, ତଥା ବାଚ୍ୟେନ ସହୈବ ରସାଦୟୋଽପି ସହୃଦୟାସହୃଦୟସ୍ୟ ଚ ପ୍ରତିଭାସେରନ୍ ।

୩୫୫ । ନ ଚୈବମ୍, ତଥା ଚୈତତ୍ ପ୍ରତିପାଦିତମେବ ପ୍ରଥମୋଦ୍ୟୋତେ ।

୩୫୬ । ସ୍ୟାନ୍ମତମ୍, ରତ୍ନାନାମିବ ଜାତ୍ୟତ୍ୱଂ ପ୍ରତିପତ୍ତୃବିଶେଷସମ୍ବେଦ୍ୟଂ ବାଚ୍ୟାନାଂ ରସାଦିରୂପତ୍ୱମିତି ।

୩୫୭ । ନୈବଂ, ଯତୋ ଯଥା ଜାତ୍ୟତ୍ୱେନ ପ୍ରତିଭାସମାନେ ରତ୍ନେ ରତ୍ନସ୍ୱରୂପାନତିରିକ୍ତତ୍ୱମେବ ଲକ୍ଷ୍ୟତେ,

---

ନିଶ୍ଚିତଭାବେ ଜ୍ଞାତ ହୁଅନ୍ତି । ସେହିପରି ରସାଦିମାନେ ମଧ୍ୟ ବାଚ୍ୟ ସହିତ ନିଶ୍ଚିତଭାବେ ସହୃଦୟ ଅସହୃଦୟ ସାଧାରଣଙ୍କର ଜ୍ଞାତ ହୁଅନ୍ତେ ।

୩୫୫ । କିନ୍ତୁ ଏହା ହୁଏ ନାହିଁ, ଅର୍ଥାତ୍ ସହୃଦୟଭିନ୍ନ ଅନ୍ୟମାନଙ୍କର ରସାବଗତି ହୁଏ ନାହିଁ, ଏହି ବିଷୟ ପ୍ରଥମ ଉଦ୍ୟୋତରେ ପ୍ରତିପାଦିତ ହୋଇଅଛି ।

୩୫୬ । ଯେପରି (ଜ୍ଞାତୃବିଶେଷ ରତ୍ନ ପରୀକ୍ଷକ) ଜାତିଆ ରତ୍ନକୁ ଜାଣି ପାରନ୍ତି ସେହିପରି ଜ୍ଞାତୃବିଶେଷ ଇତିବୃତ୍ତାଦି (ବାଚ୍ୟ)ର ରସାଦି ରୂପତାକୁ ଜାଣି ପାରନ୍ତି, ଅର୍ଥାତ୍ ଇତିବୃତ୍ତାଦି ସହିତ ରସ ବୋଧ କରନ୍ତି, ଏହିପରି ଯଦି ସେମାନଙ୍କର ମତ ହୁଏ—

୩୫୭ । ତେବେ. ତାହା ମଧ୍ୟ ନୁହେ କାରଣ, ଯେପରି ରତ୍ନର ଉତ୍କୃଷ୍ଟ ଜାତିସ୍ୱତାର ଜ୍ଞାନ ରତ୍ନସ୍ୱରୂପରୁ ଅତିରିକ୍ତ ଭାବେ ପ୍ରତୀତ ହୁଏ ନାହିଁ, ସେହିପରି ରସମାନେ ମଧ୍ୟ ବିଭାବାନୁଭାବାଦିରୂପକ ଇତିବୃତ୍ତରୁ ଭିନ୍ନଭାବେ ପ୍ରତୀତ ହୁଅନ୍ତେ ନାହିଁ ।

ତଥା ରସାନାଂ ବିଭାବାନୁଭାବାଦରୂପବାଚ୍ୟାନନ୍ତ-
ରକ୍ତତ୍ତ୍ୱମେବ ଲକ୍ଷ୍ୟତେ, ନ ଚୈବମ୍ ।

୩୫୮ । ନ ହି ବିଭାବାନୁଭାବବ୍ୟଭିଚାରିଣ ଏବ ରସା ଇତି
କସ୍ୟଚିଦବଗମଃ । ଅତଏବ ଚ ବିଭାବାଦପ୍ରତୀତ୍ୟ-
ବିନାଭାବିନୀ ରସାଦୀନାଂ ପ୍ରତୀତିରିତି ତତ୍ପ୍ରତୀତ୍ୟୋଃ
କାର୍ଯ୍ୟକାରଣଭାବେନ ବ୍ୟବସ୍ଥାନାତ୍ କ୍ରମୋଽ-
ବଶ୍ୟମ୍ଭାବୀ, ସ ତୁ ଲାଘବାନ୍ନ ପ୍ରକାଶତ ଇତ୍ୟ-
ଲକ୍ଷ୍ୟକ୍ରମା ଏବ ସନ୍ତୋ ବ୍ୟଙ୍ଗ୍ୟା ରସାଦୟ
ଇତ୍ୟୁକ୍ତମ୍ ।

---

ସାରାର୍ଥ :—(୩୫୪ରୁ ୩୫୭ ପର୍ଯ୍ୟନ୍ତ) (ରସ ଗୌରତ୍ୱାଦି ପରି ଗୁଣ ହେଲେ ସର୍ବସାଧାରଣଙ୍କର ବେଦ୍ୟ ହୁଅନ୍ତା କିନ୍ତୁ ତାହା ନୁହେ । ରସ ଉତ୍କୃଷ୍ଟ ଜାତିପ୍ରତାପରି ଗୁଣ ହେଲେ ବାଚ୍ୟରୁ ଅଭିନ୍ନ ହୁଅନ୍ତା, କିନ୍ତୁ ତାହା ନୁହେ ଯେଣୁ ସେ ବିଭାବାଦିରୁ ଭିନ୍ନ) ।

୩୫୮ । (ରସାଦିରୁ ବିଭାବାଦି ବାଚ୍ୟର ଭେଦ ଦର୍ଶାଉଅଛନ୍ତି) ।

ବିଭାବ, ଅନୁଭାବ ଓ ବ୍ୟଭିଚାରିଭାବମାନେ ରସବୋଲି କାହାରି ହେଲେ ପ୍ରତୀତ ହୁଏ ନାହିଁ । ତେଣୁ ବିଭାବାଦି ପ୍ରତୀତିର ରସ ପ୍ରତୀତି ଅବିନାଭାବିନୀ, ଅର୍ଥାତ୍ ବିଭାବାଦି ପ୍ରତୀତି ବ୍ୟତିରେକେ ରସପ୍ରତୀତି ହୁଏ ନାହିଁ । ଅତଏବ ବିଭାବାଦି ପ୍ରତୀତି ଓ ରସ-ପ୍ରତୀତି ଏ ଦୁହିଁଙ୍କ ମଧ୍ୟରେ କାରଣ କାର୍ଯ୍ୟଭାବସମ୍ବନ୍ଧ ରହିଅଛି । ସର୍ବଦା କାରଣ ଓ କାର୍ଯ୍ୟରେ ପୂର୍ବାପର କ୍ରମ ରହିଥାଏ, ତେଣୁ ଏଠାରେ ଏ ଉଭୟ ପ୍ରତୀତି ମଧ୍ୟରେ ପୂର୍ବାପର କ୍ରମ ନିଶ୍ଚୟ ରହିଅଛି । କିନ୍ତୁ ପ୍ରତୀତିର ଅତିଶୀଘ୍ରତା ହେତୁ ପୂର୍ବାପର କ୍ରମ ଲକ୍ଷ୍ୟ କରାଯାଇ ପାରୁ ନାହିଁ । ଏହି କାରଣରୁ ରସାଦିମାନଙ୍କୁ ଅଲକ୍ଷ୍ୟ-କ୍ରମ ବ୍ୟଙ୍ଗ୍ୟ ବୋଲି ପୂର୍ବରୁ କୁହାଯାଇଅଛି ।

୩୬୯ । (କ) ନନୁ ଶବ୍ଦ ଏବ ପ୍ରକରଣାଦ୍ୟବଚ୍ଛିନ୍ନୋ ବାଚ୍ୟ-
ବ୍ୟଙ୍ଗ୍ୟୟୋଃ ସମମେବ ପ୍ରତୀତିମୁପଜନୟତୀତି
କିଂ ତତ୍ର କ୍ରମକଲ୍ପନୟା ?

(ଖ) ନହି ଶବ୍ଦସ୍ୟ ବାଚ୍ୟପ୍ରତୀତିପରାମର୍ଶ ଏବ
ବ୍ୟଞ୍ଜକତ୍ୱେ ନିବନ୍ଧନମ୍ । ତଥାହି—ଗୀତା-
ଦିଶବ୍ଦେଭ୍ୟୋଽପି ରସାଦ୍ୟଭିବ୍ୟକ୍ତିରସ୍ତି, ନ ଚ
ତେଷାମନ୍ତରା ବାଚ୍ୟପରାମର୍ଶଃ ।

୩୭୦ । ଅତ୍ରାପି ବ୍ରୂମଃ—ପ୍ରକରଣାଦ୍ୟବଚ୍ଛେଦେନ ବ୍ୟଞ୍ଜକତ୍ୱଂ
ଶବ୍ଦାନାମିତ୍ୟନୁମତ ମେବୈତଦସ୍ମାକମ୍ । କିନ୍ତୁ ତଦ୍
ବ୍ୟଞ୍ଜକତ୍ୱଂ ତେଷାଂ କଦାଚିତ୍ ସ୍ୱରୂପବିଶେଷ-
ନିବନ୍ଧନମ୍, କଦାଚିତ୍ ବାଚକଶକ୍ତିନିବନ୍ଧନମ୍,
ତତ୍ର ଯେଷାଂ ବାଚକଶକ୍ତିନିବନ୍ଧନମ୍, ତେଷାଂ ଯଦି

---

୩୬୯ । (କ) ପ୍ରଶ୍ନ—କେବଳ ଶବ୍ଦ ତ ପ୍ରକରଣାଦି ବିଶିଷ୍ଟ ହୋଇ ବାଚ୍ୟ ଓ ବ୍ୟଙ୍ଗ୍ୟ ଦୁହିଁକୁ ଏକାବେଳକେ ପ୍ରତୀତ କରାଏ । ସେଥିରେ କ୍ରମ କଳ୍ପନା କରିବାରେ କି ଆବଶ୍ୟକତା ଅଛି ?

(ବାଚ୍ୟ ଓ ବ୍ୟଙ୍ଗର କାରଣ କାର୍ଯ୍ୟ ଭାବର ଖଣ୍ଡନ ପାଇଁ ପ୍ରଶ୍ନ)—ଶବ୍ଦର ବାଚ୍ୟ ପ୍ରତୀତ ବ୍ୟଙ୍ଗ୍ୟପ୍ରତୀତି ପ୍ରତି କାରଣ (ନିବନ୍ଧନ) ନୁହେ । ଉଦାହରଣ ସ୍ୱରୂପ ଗୀତ, ବାଦ୍ୟ ପ୍ରଭୃତିରେ କେବଳ ଶବ୍ଦରୁ ମଧ୍ୟ ରସାଦିର ଆସ୍ୱାଦ ହୁଏ । ସେଠାରେ ତ ଶବ୍ଦ ଶ୍ରବଣ ଓ ରସ ଆସ୍ୱାଦ ମଧ୍ୟରେ ବାଚ୍ୟ ପ୍ରତୀତିର ଅପେକ୍ଷା ନ ଥାଏ । (ତେବେ ବାଚ୍ୟପ୍ରତୀତି ବ୍ୟଙ୍ଗ୍ୟ ପ୍ରତୀତିର କାହିଁକି କାରଣ ହେବ) ?

୩୭୦ । ଏହି ଆକ୍ଷେପର ଉତ୍ତର ସ୍ୱରୂପ ଆମ୍ଭେ କହୁଅଛୁଁ—ପ୍ରକରଣାଦି ବୈଶିଷ୍ଟ୍ୟରେ ଶବ୍ଦମାନେ ବ୍ୟଞ୍ଜକ ହୁଅନ୍ତି, ଏହା ଆମ୍ଭର ମଧ୍ୟ ମତ, କିନ୍ତୁ ତାଙ୍କର ସେହି ବ୍ୟଞ୍ଜକତା କେବେ କେବେ ସ୍ୱରୂପ ବୈଶିଷ୍ଟ୍ୟ ଦ୍ୱାରା ଓ ଅନେକ କେବେ ଅଭିଧା ଶକ୍ତି (ବାଚକ ଶକ୍ତି) ଦ୍ୱାରା ହୁଏ । ଯେଉଁ ଶବ୍ଦମାନେ ଅଭିଧା ଶକ୍ତି ଦ୍ୱାରା ବ୍ୟଞ୍ଜକ ହୁଅନ୍ତି ସେମାନଙ୍କର ଯଦି ବାଚ୍ୟ

ବାଚ୍ୟପ୍ରତୀତିମନ୍ତରେଣୈବ ସ୍ୱରୂପପ୍ରତୀତ୍ୟା ନିଷ୍ପନ୍ନଂ ତଦ୍-ଭବେତ୍, ନ ତର୍ହି ବାଚକଶକ୍ତିନିବନ୍ଧନମ୍ । ଅଥ ତନ୍ନିବନ୍ଧନମ୍, ତନ୍ନିୟମେନୈବ ବାଚ୍ୟବାଚକ-ପ୍ରତୀତ୍ୟୁତ୍ତରକାଳତ୍ୱଂ ବ୍ୟଙ୍ଗ୍ୟପ୍ରତୀତେଃ ପ୍ରାପ୍ତମେବ ।

୩୬୧ । ସ ତୁ କ୍ରମୋ ଯଦି ଲାଘବାନ୍ନ ଲକ୍ଷ୍ୟତେ, ତତ୍ କିଂ କ୍ରିୟତାମ୍ ।

୩୬୨ । ଯଦି ଚ ବାଚ୍ୟପ୍ରତୀତିମନ୍ତରେଣୈବ ପ୍ରକରଣାଦ୍ୟ-ବଚ୍ଛିନ୍ନଶବ୍ଦମାତ୍ରସାଧ୍ୟା ରସାଦିପ୍ରତୀତିଃ ସ୍ୟାତ୍, ତଦ୍ ଅନବଧାରିତପ୍ରକରଣାନାଂ ବାଚ୍ୟବାଚକଭାବେ ଚ ସ୍ୱୟମବ୍ୟୁତ୍ପନ୍ନାନାଂ ପ୍ରତିପତ୍ତୃଣାଂ କାବ୍ୟମାତ୍ରଶ୍ରବଣା-ଦେବାସୌ ଭବେତ୍ ।

---

ପ୍ରତୀତି ବ୍ୟତିରେକେ କେବଳ ସ୍ୱରୂପ ପ୍ରତୀତି ଦ୍ୱାରା ବ୍ୟଞ୍ଜକତା ନିଷ୍ପନ୍ନ ହୁଏ, ତେବେ ତାହା ବାଚକ ଶକ୍ତି ନିବନ୍ଧନ ଶକ୍ତି ନୁହେ । ଯଦିବା ତାହା ବାଚକଶକ୍ତିନିବନ୍ଧନ ହେବ, ତେବେ ବାଚ୍ୟ-ବାଚକ-ପ୍ରତୀତି— (ଅଭିଧେୟାର୍ଥ ବୋଧ) ପରେ ବ୍ୟଙ୍ଗ୍ୟ ପ୍ରତୀତି ହେବ, ଏହା ସୁନିଶ୍ଚିତ ।

୩୬୧ । ଅତଏବ ବାଚ୍ୟ ପ୍ରତୀତି ଓ ବ୍ୟଙ୍ଗ୍ୟ ପ୍ରତୀତି ମଧ୍ୟରେ ନିଶ୍ଚିତ କ୍ରମ ଅଛି । ଯଦି ଅତି ଲାଘବ (ଚଞ୍ଚଳତା) ହେତୁ ସେ କ୍ରମ ଲକ୍ଷ୍ୟ କରି ନ ହେଲା ତେବେ କଅଣ କରାଯିବ ?

୩୬୨ । ଯଦିବା ବାଚ୍ୟ ପ୍ରତୀତି ବ୍ୟତିରେକେ ପ୍ରକରଣାଦି ବର୍ହିଭୂତ କେବଳ ଶବ୍ଦ, ରସାଦି ପ୍ରତୀତି କରାଇ ପାରନ୍ତା, ତେବେ ପ୍ରକରଣ ଜ୍ଞାନଶୂନ୍ୟ ଓ ବାଚ୍ୟାର୍ଥ ବୋଧରେ ଅସମର୍ଥ ନିର୍ବୋଧମାନଙ୍କର ମଧ୍ୟ କାବ୍ୟ ଶ୍ରବଣ ମାତ୍ରକେ ରସାଦି ପ୍ରତୀତି ହୋଇପାଆନ୍ତା ?

(ଅତଏବ ବ୍ୟଙ୍ଗ୍ୟ ପ୍ରତୀତି ପାଇଁ ବାଚ୍ୟ ପ୍ରତୀତିର ଅପେକ୍ଷା ଅଛି) ।

୩୬୩ । ସହଭାବେ ଚ ବାଚ୍ୟ ପ୍ରତୀତେରନୁପଯୋଗଃ । ଉପ-
ଯୋଗେ ନ ସହଭାବଃ ।

୩୬୪ । ଯେଷାମପି ସ୍ୱରୂପବିଶେଷପ୍ରତୀତିନିମିତ୍ତଂ ବ୍ୟଞ୍ଜକତ୍ୱଂ,
ଯଥା—ଗୀତାଦିଶବ୍ଦାନାମ୍, ତେଷାମପି ସ୍ୱରୂପ-
ପ୍ରତୀତେ ବ୍ୟଙ୍ଗ୍ୟପ୍ରତୀତେଶ୍ଚ ନିୟମଭାବୀ କ୍ରମଃ ।

୩୬୫ । ତତ୍ ତୁ ଶବ୍ଦସ୍ୟ କ୍ରିୟା ପୌର୍ବାପର୍ଯ୍ୟମନନ୍ୟସାଧ୍ୟତତ୍-
ଫଲଘଟନାସ୍ୱାଶୁଭାବିନୀଷୁ ବାଚ୍ୟେନାବିରୋଧିନ୍ୟଭି-
ଧେୟାନ୍ତରବିଲକ୍ଷଣେ ରସାଦୌ ନ ପ୍ରତୀୟତେ ।

---

୩୬୩ । ଆଉ ପୁଣି ଯଦି ବାଚ୍ୟ ଓ ବ୍ୟଙ୍ଗ୍ୟ ଦୁହେଁ ଯୁଗପତ୍ (ପଶୁର ବାମ ଦକ୍ଷିଣ ଶୃଙ୍ଗ ଉଠିବାଭଳି) ପ୍ରତୀତ ହୁଅନ୍ତେ, ତେବେ ମଧ୍ୟ ବାଚ୍ୟ ପ୍ରତୀତିର ଆବଶ୍ୟକତା ରହନ୍ତା ନାହିଁ । ଯଦି ବାଚ୍ୟପ୍ରତୀତିର ଆବଶ୍ୟକତା ରହନ୍ତା ନାହିଁ । ଯଦି ବାଚ୍ୟ ପ୍ରତୀତିର ଯୌଗପଦ୍ୟ (ସହଭାବ) ନାହିଁ । (ଯେଣୁ କାର୍ଯ୍ୟ ଓ କାରଣ ମଧ୍ୟରେ ଯୋଗପଦ୍ୟ ରହେ ନାହିଁ) ।

୩୬୪ । ଆଉ ମଧ୍ୟ ଯେଉଁ ଶବ୍ଦମାନେ ସ୍ୱରୂପ ପ୍ରତୀତି ଦ୍ୱାରା ବ୍ୟଞ୍ଜକ ହୁଅନ୍ତି, ଯଥା—ଗୀତାଦି ଶବ୍ଦ । ସେହି ଶବ୍ଦମାନଙ୍କର ମଧ୍ୟ ସ୍ୱରୂପ ପ୍ରତୀତି ଓ ବ୍ୟଙ୍ଗ୍ୟ ପ୍ରତୀତି ମଧ୍ୟରେ କ୍ରମ ନିଶ୍ଚିତ ଭାବେ ରହିଅଛି (ଯେଣୁ ପ୍ରଥମେ ଗୀତ ଶବ୍ଦର ସ୍ୱରୂପ ପ୍ରତୀତ ହୁଏ ତଦନନ୍ତର ବ୍ୟଙ୍ଗ୍ୟରସାଦି ପ୍ରତୀତ ହୁଏ ତେଣୁ ଗୀତ ଶ୍ରବଣରେ ଯେଉଁ ରସ ପ୍ରତୀତ ହୁଏ ସେଠାରେ ମଧ୍ୟ କ୍ରମ ରହିଅଛି) ।

୩୬୫ । ଯଦି ରସାଦି ପ୍ରତୀତିରେ କ୍ରମ ଅଛି ତେବେ ସେ କ୍ରମ କାହିଁକି ଜଣାଯାଉ ନାହିଁ, ଏହି ପ୍ରଶ୍ନର ଉତ୍ତର ସ୍ୱରୂପ ତତ୍ତୁ ଇତ୍ୟାଦି କୁହାଯାଉଛି :—

କାବ୍ୟରେ ଗୀତାଦିଶବ୍ଦ ପରି ସ୍ୱରୂପ ପ୍ରତୀତି ଓ ରସାଦି ପ୍ରତୀତି ମଧ୍ୟରେ କ୍ରମ ରହିଥିଲେ ମଧ୍ୟ, ବାଚ୍ୟ ଅର୍ଥର ଅବିରୋଧୀ ଓ ବାଚ୍ୟ ଅର୍ଥରୁ ବିଲକ୍ଷଣ ଏଭଳି ଅଟେ ଯେଉଁ ରସାଦିରୂପକ ବ୍ୟଙ୍ଗ୍ୟ ଅର୍ଥ, ତାହାର ବୋଧ ପାଇଁ ଆଶୁ ରସାଦି ବୋଧ କରାଉଥିବା ବ୍ୟଙ୍ଗ୍ୟପର ସଙ୍ଘଟନାମାନଙ୍କରେ

୩୬୭ । କ୍ୱଚତ୍ ଲକ୍ଷ୍ୟତ ଏବ । ଯଥା—ଅନୁରଣନରୂପବ୍ୟଙ୍ଗ୍ୟ ପ୍ରତୀତୌ ।

୩୬୭ । ତତ୍ରାପି କଥମିତି ଚେତ୍—

୩୬୮ । ଉଚ୍ୟତେ—ଅର୍ଥଶକ୍ତିମୂଳାନୁରଣନରୂପବ୍ୟଙ୍ଗ୍ୟଧ୍ୱନୌ ତାବଦଭିଧେୟସ୍ୟ ତତ୍ ସାମର୍ଥ୍ୟାକ୍ଷିପ୍ତସ୍ୟ ଚାର୍ଥସ୍ୟାଭି-ଧେୟାନ୍ତରବିଲକ୍ଷଣସ୍ୟ ଅତ୍ୟନ୍ତବିଲକ୍ଷଣେ ଯେ ପ୍ରତୀତୀ, ତୟୋରଶକ୍ୟନିହ୍ନବୋ ନିମିତ୍ତନିମିତ୍ତିଭାବ ଇତି ସ୍ଫୁଟମେବ ତତ୍ର ପୌର୍ବାପର୍ଯ୍ୟମ୍ । ଯଥା—

---

ସେହି କ୍ରମ ପ୍ରତୀତ ହୁଏ ନାହିଁ । ତଥା ବାଚ୍ୟ ଓ ବ୍ୟଙ୍ଗ୍ୟ ମଧ୍ୟରେ କ୍ରମ ଥିଲେ ମଧ୍ୟ ରସ ପ୍ରତୀତିର ଆଶୁଭାବିତା ଦୃଷ୍ଟିରୁ ଉଭୟଙ୍କ ମଧ୍ୟରେ କ୍ରମ ଜଣାଯାଏ ନାହିଁ ।

ବ୍ୟାସବାକ୍ୟ—(କ୍ରିୟା ପୌର୍ବାପର୍ଯ୍ୟଂ କ୍ରିୟୟୋଃ ବାଚ୍ୟ-ବ୍ୟଙ୍ଗ୍ୟୟୋଃ ପୌର୍ବାପର୍ଯ୍ୟମ୍ । ଅନନ୍ୟ ସାଧ୍ୟତତ୍ଫଲ ଘଟନାସୁ—ନ ଅନ୍ୟତ୍ ସାଧ୍ୟଂ ଯାସାଂ, ତଥା ତତ୍ ରସାଦି ପ୍ରତିପାଦନଂ ଫଳଂ ଯାସାଂ ତାସୁ ଘଟନାସୁ ) ।

୩୬୭ । କୌଣସି କୌଣସି ସ୍ଥଳରେ ବାଚ୍ୟ ଓ ବ୍ୟଙ୍ଗ୍ୟ ମଧ୍ୟରେ କ୍ରମ ଲକ୍ଷିତ ହୁଏ ।

ଯଥା—ଅନୁରଣନରୂପ ବ୍ୟଙ୍ଗ୍ୟ ପ୍ରତୀତି ସ୍ଥଳରେ

୩୬୭ । ପ୍ରଶ୍ନ—ସେଠାରେ କପରି କ୍ରମ ଲକ୍ଷିତ ହେଉଅଛି ?

(ପ୍ରଶ୍ନର ଆଶୟ—ବ୍ୟଙ୍ଗ୍ୟ ସ୍ୱଭାବରେ ତ ଉଭୟ ସମାନ, ଗୋଟିକର କ୍ରମ କପରି ଲକ୍ଷ୍ୟ କରି ହେଉ ନାହିଁ, ଆଉ ଗୋଟିକର କପରି କ୍ରମ ଲକ୍ଷ୍ୟ କରି ହେଉଛି) ?

୬୮ । ଉ : – ଅର୍ଥଶକ୍ତିମୂଳକ ଅନୁରଣନରୂପବ୍ୟଙ୍ଗ୍ୟ ଧ୍ୱନିରେ ଅଭିଧେୟ ଓ ଅଭିଧେୟାର୍ଥ ଦ୍ୱାରା ଆକ୍ଷିପ୍ତ ବ୍ୟଙ୍ଗ୍ୟ, ଏ ଉଭୟର ସାଧାରଣ ଅଭିଧେୟାର୍ଥରୁ ବିଲକ୍ଷଣଭାବେ ଯେଉଁ ପ୍ରତୀତି ହୁଏ, ସେ ଦୁଇ ପ୍ରତୀତି

ପ୍ରଥମୋଦ୍ୟୋତେ ପ୍ରତୀୟମାନାର୍ଥସିଦ୍ଧ୍ୟର୍ଥମୁଦାହୃତାସୁ ଗାଥାସୁ । ତଥାବିଧେ ଚ ବିଷୟେ ବାଚ୍ୟ ବ୍ୟଙ୍ଗ୍ୟୟୋରତ୍ୟନ୍ତବିଲକ୍ଷଣତ୍ୱାତ୍ ଯୈବ ଏକସ୍ୟ ପ୍ରତୀତିଃ, සୈବେତରସ୍ୟେତି ନ ଶକ୍ୟତେ ବକ୍ତୁମ୍ ।

୩୬୯ । ଶବ୍ଦଶକ୍ତିମୂଳାନୁରଣନରୂପବ୍ୟଙ୍ଗ୍ୟେ ତୁ ଧ୍ୱନୌ—
"ଗାବୋ ବଃ ପାବନାନାଂ ପରମପରିମିତାଂ
ପ୍ରୀତିମୁତ୍ପାଦୟନ୍ତୁ ।"

ଇତ୍ୟାଦାବର୍ଥଦ୍ୱୟପ୍ରତୀତୌ ଶାବ୍ଦ୍ୟାମର୍ଥଦ୍ୱୟସ୍ୟୋପମାନୋପମେୟଭାବପ୍ରତୀତିରୁପମାବାଚକପଦବିରହେ ସତ୍ୟର୍ଥସାମର୍ଥ୍ୟାଦାକ୍ଷିପ୍ତେତି ତତ୍ରାପି ସୁଲକ୍ଷମଭିଧେୟବ୍ୟଙ୍ଗ୍ୟାଲଂକାରପ୍ରତୀତ୍ୟୋଃ ପୌର୍ବାପର୍ଯ୍ୟମ୍ ।

---

ମଧ୍ୟରେ କାର୍ଯ୍ୟକାରଣ ଭାବକୁ କେହିହେଲେ ଫାଙ୍କିଦେଇ ପାରିବ ନାହିଁ । ଅତଏବ ଉକ୍ତ ଦୁଇ ଅର୍ଥ ମଧ୍ୟରେ ପୌର୍ବାପର୍ଯ୍ୟ (ଆଗପଛ) ଥିବା ସୁନିଶ୍ଚିତ । ଏହାର ଉଦାହରଣ ପ୍ରଥମ ଉଦ୍ୟୋତରେ ବ୍ୟଙ୍ଗ୍ୟାର୍ଥ ସିଦ୍ଧି ନିମନ୍ତେ ଉଦାହରଣରୂପେ ଦର୍ଶାଯାଇଥିବା "ଭ୍ରମଧାର୍ମିକ" ଇତ୍ୟାଦି ସ୍ଥଳରେ ଦେଖିବାକୁ ମିଳିବ । ଉକ୍ତ "ଭ୍ରମଧାର୍ମିକ" ଇତ୍ୟାଦି ସ୍ଥଳରେ (ତଥାବିଧେ) ବାଚ୍ୟ ଓ ବ୍ୟଙ୍ଗ୍ୟ ମଧ୍ୟରେ ଅତ୍ୟନ୍ତ ବୈଲକ୍ଷଣ୍ୟ ଥିବା ହେତୁ ବାଚ୍ୟର ଯେଉଁ ପ୍ରତୀତି, ତାହାହିଁ ବ୍ୟଙ୍ଗ୍ୟର ପ୍ରତୀତି ବୋଲି କୁହାଯାଇ ପାରିବ ନାହିଁ ।

୩୬୯ । ଶବ୍ଦଶକ୍ତିମୂଳକ ଅନୁରଣନରୂପ ବ୍ୟଙ୍ଗ୍ୟ ଧ୍ୱନିରେ—"ଗାବୋ ବଃ ପାବନାନାଂ" ଇତ୍ୟାଦି ସ୍ଥଳରେ ଶବ୍ଦଶକ୍ତିମୂଳକ ଦ୍ୱିବିଧ ଅର୍ଥ ପ୍ରତୀତି ମଧ୍ୟରେ ଉପମାବାଚକ ଇବ ପ୍ରଭୃତି ଶବ୍ଦ ନ ଥିଲେ ମଧ୍ୟ ଅର୍ଥ ସାମର୍ଥ୍ୟରୁ ସେହି ଦୁଇ ଅର୍ଥର ଉପମାନୋପମେୟଭାବ ପ୍ରତୀତି ଆକ୍ଷିପ୍ତ ହେଉଅଛି । ଏଣୁକରି ସେଠାରେ ମଧ୍ୟ ଅଭିଧେୟାର୍ଥ

୩୬୦ । ପଦପ୍ରକାଶଶବ୍ଦଶକ୍ତିମୂଳାନୁରଣନରୂପବ୍ୟଙ୍ଗ୍ୟେଽପି ଧ୍ୱନୌ, ବିଶେଷଣପଦସ୍ୟୋଭୟାର୍ଥସମ୍ବନ୍ଧଯୋଗସ୍ୟ ଯୋଜକଂ ପଦମନ୍ତରେଣ ଯୋଜନମଶାବ୍ଦମପ୍ୟର୍ଥାଦବସ୍ଥି-ତମିତ୍ୟତ୍ରାପି ପୂର୍ବବଦଭିଧେୟ-ତତ୍ସାମାର୍ଥ୍ୟାକ୍ଷି-ପ୍ତାଲଂକାର ପ୍ରତୀତ୍ୟୋଃ ସୁ ସ୍ଥିତମେବ ପୌର୍ବାପର୍ଯ୍ୟମ୍ ।

୩୬୧ । ଆର୍ଥ୍ୟପି ଚ ପ୍ରତିପତ୍ତିସ୍ତଥାବିଧେ ବିଷୟେ ଉଭୟାର୍ଥ-ସମ୍ବନ୍ଧଯୋଗ୍ୟ ଶବ୍ଦସାମର୍ଥ୍ୟପ୍ରସବଭୂତେତି ଶବ୍ଦ-ଶକ୍ତିମୂଳା କଲ୍ପ୍ୟତେ । (ନହିବିଷୟ ପୁନରଭ୍ୟନୁଜ୍ଞାନଂ ପ୍ରତିପ୍ରସବଃ) ।

---

ପ୍ରତୀତି ଓ ବ୍ୟଙ୍ଗ୍ୟାଲଂକାରପ୍ରତୀତି ମଧ୍ୟରେ ପୌର୍ବାପର୍ଯ୍ୟ ଲକ୍ଷ୍ୟ କରାଯାଇ ପାରିବ ।

୩୬୦ । ଶବ୍ଦଶକ୍ତିମୂଳକ ପଦଗତ ଅନୁରଣନରୂପ ବ୍ୟଙ୍ଗ୍ୟଧ୍ୱନିରେ ମଧ୍ୟ ଇବାଦି ଯୋଜକ ପଦ ବ୍ୟତିରେକେ ବାଚ୍ୟବ୍ୟଙ୍ଗ୍ୟ ଉଭୟାର୍ଥ ସମ୍ବନ୍ଧ-ଯୋଗ୍ୟ ବିଶେଷଣ ପଦର ଯଥା—("ପ୍ରାତୁଂଧନୈଃ" ଶ୍ଳୋକରେ "ଜଡ଼" ପଦ) ଯୋଜନ ଶାବ୍ଦ ହୋଇ ନ ଥିଲେ ମଧ୍ୟ ଅର୍ଥଶକ୍ତି ଦ୍ୱାରା ଉପସ୍ଥାପିତ ହୋଇଅଛି । ଏଣୁ ଏଠାରେ ମଧ୍ୟ ପୂର୍ବପରି ଅଭିଧେୟ ପ୍ରତୀତି ଓ ଅଭିଧେୟ ସାମର୍ଥ୍ୟରୁ ଆକ୍ଷିପ୍ତ ବ୍ୟଙ୍ଗ୍ୟର ପ୍ରତୀତି ମଧ୍ୟରେ ପୂର୍ବପର କ୍ରମ ନିଶ୍ଚିତ ରହିଅଛି ।

୩୬୧ । ଏତାଦୃଶ ସ୍ଥଳରେ ଉଭୟାର୍ଥ ସମ୍ବନ୍ଧନୀ ପ୍ରତୀତି ଆର୍ଥୀ ହେଲେ ମଧ୍ୟ ଅଭିଧା (ଶବ୍ଦସାମର୍ଥ୍ୟ)ର ପ୍ରତିପ୍ରସବରୂପା ଅଟେ । ଏଣୁ ଏହାକୁ ଶବ୍ଦଶକ୍ତିମୂଳ ବୋଲି କଳ୍ପନା କରାଯାଇଅଛି । (ଏତାଦୃଶ ସ୍ଥଳରେ ଅଭିଧା ଗୋଟିଏ ଅର୍ଥକୁ ବୁଝାଇ ସାରିବା ପରେ ଶବ୍ଦଶକ୍ତିବଳରୁ ଅନ୍ୟ ଅର୍ଥ ବୁଝାଯାଉଥିବାରୁ ତାହାକୁ ଶବ୍ଦଶକ୍ତିମୂଳ ବୋଲି କୁହାଯାଏ) ।

୩୭୨ । ଅବିବକ୍ଷିତବାଚ୍ୟସ୍ୟ ତୁ ଧ୍ୱନେଃ ପ୍ରସିଦ୍ଧସ୍ୱ ବିଷୟେଷ୍ୱବି- ମୁଖ୍ୟପ୍ରତୀତିପୂର୍ବକମେବାର୍ଥାନ୍ତରପ୍ରକାଶନମିତିନଯ୍ୟମ- ଭାବୀ କ୍ରମଃ ।

୩୭୩ । ତନ୍ନ ଉବିବକ୍ଷିତବାଚ୍ୟତ୍ୱାଦେବ ବାଚ୍ୟେନ ସହ ବ୍ୟଙ୍ଗ୍ୟସ୍ୟ କ୍ରମପ୍ରତୀତିବିଚାରୋ ନ କୃତଃ ।

୩୭୪ । ତସ୍ମାଦଭିଧାନାଭିଧେୟପ୍ରତୀତ୍ୟୋରିବ ବାଚ୍ୟବ୍ୟଙ୍ଗ୍ୟ- ପ୍ରତୀତ୍ୟୋଃ ନିମିତ୍ତନିମିତ୍ତିଭାବାନ୍ନିୟମଭାବୀ କ୍ରମଃ ।

୩୭୫ । ସ ତୂକ୍ତଯୁକ୍ତ୍ୟା କ୍ୱଚିଲ୍ଲକ୍ଷ୍ୟତେ, କ୍ୱଚିନ୍ନ ଲକ୍ଷ୍ୟତେ ।

---

୩୭୨ । ଅବିବକ୍ଷିତବାଚ୍ୟ ଧ୍ୱନିରେ (ଯଥା—ନିଃଶ୍ୱାସାନ୍ଧ ଇତ୍ୟାଦି ସ୍ଥଳରେ) ସୁପ୍ରସିଦ୍ଧ ମୁଖ୍ୟାର୍ଥ ପ୍ରତ୍ୟୟର ବାଧାପୂର୍ବକ ବ୍ୟଙ୍ଗ୍ୟ ଅର୍ଥର ପ୍ରକାଶ ହେଉଥିବାରୁ ସେଠାରେ ମଧ୍ୟ ପୂର୍ବାପର କ୍ରମ ସୁନିଶ୍ଚିତଭାବେ ରହିଅଛି ।

୩୭୩ । (ଅବିବକ୍ଷିତବାଚ୍ୟ ଲକ୍ଷ୍ୟକ୍ରମ କି ଅଲକ୍ଷ୍ୟକ୍ରମ ଏ ବିଚାର କାହିଁକି କରାଯାଇ ନାହିଁ, ଏ ପ୍ରଶ୍ନର ଉତ୍ତର ଯଥା)—

ଅବିବକ୍ଷିତ ବାଚ୍ୟଧ୍ୱନିରେ ବାଚ୍ୟ ଅର୍ଥ ବିବକ୍ଷିତ ହୋଇ ନ ଥିବା ହେତୁ ସେଠାରେ ବାଚ୍ୟ ଓ ବ୍ୟଙ୍ଗ୍ୟର କ୍ରମ ପ୍ରତୀତି ସମ୍ବନ୍ଧରେ ବିଚାର କରାଯାଇ ନାହିଁ । ଅର୍ଥାତ୍ ଲକ୍ଷ୍ୟକ୍ରମ ଓ ଅଲକ୍ଷ୍ୟକ୍ରମ ଭେଦ ଦର୍ଶାହୋଇ ନାହିଁ ।

୩୭୪ । ଅଭିଧାନ (ଶବ୍ଦ) ପ୍ରତୀତି ଓ ଅଭିଧେୟ (ଅର୍ଥ) ପ୍ରତୀତିର କାରଣକାର୍ଯ୍ୟଭାବ ଥିଲା ପରି ବାଚ୍ୟପ୍ରତୀତି ଓ ବ୍ୟଙ୍ଗ୍ୟପ୍ରତୀତି ମଧ୍ୟରେ କାରଣ କାର୍ଯ୍ୟଭାବ ରହିଅଛି । ତେଣୁ ବାଚ୍ୟ ଓ ବ୍ୟଙ୍ଗ୍ୟମଧ୍ୟରେ କ୍ରମ ଥିବା ସୁନିଶ୍ଚିତ ।

୩୭୫ । କିନ୍ତୁ ଏହି କ୍ରମ ଉକ୍ତ ଯୁକ୍ତି ଅନୁସାରେ କ୍ୱଚିତ୍ ଲକ୍ଷିତ ହୁଏ ଓ କ୍ୱଚିତ୍ ଲକ୍ଷିତ ହୁଏ ନାହିଁ ।

୩୭୬ । ତ ଦେବ ବ୍ୟଞ୍ଜକମୁଖେନ ଧ୍ୱନିପ୍ରକାରେଷୁ ନିରୂପିତେଷୁ କଶ୍ଚିଦ୍ ବ୍ରୂୟାତ୍— କ୍ୱମିଦଂ ବ୍ୟଞ୍ଜକତ୍ୱଂ ନାମ ? ବ୍ୟଙ୍ଗ୍ୟାର୍ଥ ପ୍ରକାଶନମ୍ ? ନହି ବ୍ୟଞ୍ଜକତ୍ୱଂ ବ୍ୟଙ୍ଗ୍ୟତ୍ୱଂ ଚାର୍ଥସ୍ୟାପି, ବ୍ୟଞ୍ଜକସିଦ୍ଧ୍ୟଧୀନଂ ବ୍ୟଙ୍ଗ୍ୟତ୍ୱମ୍, ବ୍ୟଙ୍ଗ୍ୟାପେକ୍ଷୟା ଚ ବ୍ୟଞ୍ଜକତ୍ୱ ସିଦ୍ଧିରିତ୍ୟନ୍ୟୋଽନ୍ୟ-ସଂଶ୍ରୟାଦବ୍ୟବସ୍ଥାନମ୍ ।

୩୭୭ । ନନୁ ବାଚ୍ୟବ୍ୟତିରିକ୍ତସ୍ୟ ବ୍ୟଙ୍ଗ୍ୟସ୍ୟ ସିଦ୍ଧିଃ ପ୍ରାଗେବ ପ୍ରତିପାଦିତା, ତତ୍ସିଦ୍ଧ୍ୟଧୀନା ଚ ବ୍ୟଞ୍ଜକସିଦ୍ଧିରିତି କଃ ପର୍ଯ୍ୟନୁଯୋଗାବସରଃ ।

---

୩୭୬ । ତେବେ ଏହିପରି ବ୍ୟଞ୍ଜକ ମୁଖରେ ଧ୍ୱନିଭେଦ ନିରୂପଣ କରଯାଆନ୍ତେ, କେହି ଯଦି କହେ ଯେ—ବ୍ୟଞ୍ଜକତା କାହାକୁ କହନ୍ତି ? କ'ଣ ବ୍ୟଙ୍ଗ୍ୟାର୍ଥ ପ୍ରକାଶର ନାମ ବ୍ୟଞ୍ଜକତା ? ଅର୍ଥର ବ୍ୟଞ୍ଜକତା ଓ ବ୍ୟଙ୍ଗ୍ୟତା ଉଭୟ ତ ହୋଇ ନ ପାରେ ? ବ୍ୟଞ୍ଜକ ଜ୍ଞାନର ଅଧୀନ ବ୍ୟଙ୍ଗ୍ୟତ୍ୱ ଓ ବ୍ୟଙ୍ଗ୍ୟ ପ୍ରକାଶ ସକାଶେ ବ୍ୟଞ୍ଜକ ଜ୍ଞାନର ଆବଶ୍ୟକତା, ଏଣୁ ଏଠାରେ ଅନ୍ୟୋନ୍ୟାଶ୍ରୟଦୋଷ ରହିଥିବା ହେତୁ ବ୍ୟଞ୍ଜକ ବ୍ୟଙ୍ଗ୍ୟ ଅର୍ଥର ପ୍ରକାଶକ ହୋଇ ନପାରେ । (ଏହାର ସିଦ୍ଧି ପାଇଁ ତାହାର ଆବଶ୍ୟକତା ଓ ତାହାର ସିଦ୍ଧି ପାଇଁ ଏହାର ଆବଶ୍ୟକତା ଥିଲେ ତାହାକୁ ଅନ୍ୟୋନ୍ୟାଶ୍ରୟ ଦୋଷ ବୋଲିଯାଏ) ।

୩୭୭ । ପୂର୍ବରୁ (୧ମ ଉଦ୍ୟୋତରେ) ବାଚ୍ୟ ଅର୍ଥରେ ଅତିରିକ୍ତ ଭାବେ ବ୍ୟଙ୍ଗ୍ୟ ଅର୍ଥ ରହେ ବୋଲି ତ ପ୍ରତିପାଦନ କରଯାଇଛି ? ବର୍ତ୍ତମାନ, ବ୍ୟଞ୍ଜକକୁ ସିଦ୍ଧ କରିବାକୁ ହେଲେ ବ୍ୟଙ୍ଗ୍ୟକୁ ସିଦ୍ଧ କରିବା ଆବଶ୍ୟକ, ଏମନ୍ତ ପ୍ରଶ୍ନର ଅବସର କାହିଁ ? ଅର୍ଥାତ୍ ଏଭଳି ପ୍ରଶ୍ନ ଅନାବଶ୍ୟକ ।

୩୭୮ । ସତ୍ୟମେବୈତତ୍, ପ୍ରାଗୁକ୍ତଯୁକ୍ତିଭିର୍ବାଚ୍ୟବ୍ୟତିରେକସ୍ୟ ବସ୍ତୁନଃ ସିଦ୍ଧିଃ କୃତା । ସତ୍ୱର୍ଥୋ ବ୍ୟଙ୍ଗ୍ୟତୟୈବ କସ୍ମାତ୍ ବ୍ୟପଦିଶ୍ୟତେ ? ଯତ୍ର ଚ ପ୍ରାଧାନ୍ୟେନାବ-ସ୍ଥାନଂ, ତତ୍ର ବାଚ୍ୟତୟୈବାସୌ ବ୍ୟପଦେଷ୍ଟୁଂ ଯୁକ୍ତଃ, ତତ୍ପରତ୍ୱାଦ୍‌ବାଚକତ୍ୱସ୍ୟ ।

୩୭୯ । ଅତଶ୍ଚ ତତ୍-ପ୍ରକାଶିନୋ ବାକ୍ୟସ୍ୟ ବାଚକତ୍ୱମେବ ବ୍ୟାପାରଃ । କିନ୍ତସ୍ୟ ବ୍ୟାପାରାନ୍ତରକଳ୍ପନୟା ।

୩୮୦ । ତସ୍ମାତ୍ ତାତ୍ପର୍ଯ୍ୟବିଷୟୋ ଯୋଽର୍ଥଃ, ସ ତାବନ୍ମୁଖ୍ୟ-ତୟା ବାଚ୍ୟଃ । ଯା ତ୍ୱନ୍ତରା ତଥାବିଧେ ବିଷୟେ ବାଚ୍ୟାନ୍ତରପ୍ରତୀତିଃ, ସା ତତ୍ ପ୍ରତୀତେରୁପାୟ-ମାତ୍ରମ୍, ପଦାର୍ଥ ପ୍ରତୀତିରେବ ବାକ୍ୟାର୍ଥପ୍ରତୀତେଃ ॥

---

## ମୀମାଂସକ ମତରେ ବ୍ୟଞ୍ଜନା ସ୍ଥାପନ

୩୭୮ । ପ୍ରଶ୍ନ :—("ଯତ୍‌ପରଃ ଶବ୍ଦଃ ସ ଶବ୍ଦାର୍ଥଃ" ଏହି ମୀମାଂସକ ମତର ଉପସ୍ଥାପନ) ବାଚ୍ୟରୁ ବ୍ୟତିରିକ୍ତ ବ୍ୟଙ୍ଗ୍ୟ ଅର୍ଥକୁ ବହୁ ଯୁକ୍ତି ଦ୍ୱାରା ପୂର୍ବରୁ ସିଦ୍ଧ କରାଯାଇଛି ଏହା ସତ୍ୟ ଅଟେ । କିନ୍ତୁ ସେହି ଅର୍ଥକୁ ବ୍ୟଙ୍ଗ୍ୟ ବୋଲି କାହିଁକି କୁହାଯାଉଛି ? ଯେଉଁଠି ବ୍ୟଙ୍ଗ୍ୟ ଅର୍ଥ ପ୍ରଧାନଭାବେ ରହିଅଛି, ସେଠାରେ ତାହାକୁ ବାଚ୍ୟ ବୋଲି କହିବା ଉଚିତ, ଯେଣୁ ସେଠାରେ ବାଚକତା (ଅଭିଧା) ବ୍ୟଙ୍ଗ୍ୟପର ହୋଇ ରହିଅଛି ।

୩୭୯ । ତେଣୁ ସେହି ପ୍ରଧାନୀଭୂତ ବ୍ୟଙ୍ଗ୍ୟ ଅର୍ଥକୁ ପ୍ରକାଶ କରୁଥିବା ବାକ୍ୟର ବାଚକତ୍ୱ (ଅଭିଧା) ଏକମାତ୍ର ବ୍ୟାପାର । ତାହ୍ୟ ବାକ୍ୟର ଅନ୍ୟ ଏକ ବ୍ୟଞ୍ଜନା ବ୍ୟାପାର କଳ୍ପନା କରିବାର କି ଆବଶ୍ୟକତା ଅଛି ?

୩୮୦ । ଅତଏବ ଯେଉଁ ଅର୍ଥର ପ୍ରକାଶ ଉଦ୍ଦେଶ୍ୟରେ ବାକ୍ୟ ଉଚ୍ଚରିତ ହୋଇଅଛି ସେହି ଅର୍ଥ ମୁଖ୍ୟ ଓ ତାହାହିଁ ବାଚ୍ୟ । ସେହିଭଳି ସ୍ଥଳରେ ମୁଖ୍ୟ ଅର୍ଥ ପ୍ରତୀତ ପୂର୍ବରୁ ଅନ୍ୟ ଯେଉଁ ଅର୍ଥର ପ୍ରତୀତ ହୁଏ,

୩୮୧ । ଅଥୋଚ୍ୟତେ—ଯତ୍ର ଶବ୍ଦଃ ସ୍ୱାର୍ଥମଭିଦଧାନୋଽର୍ଥା-ନ୍ତରମବଗମୟତି, ତତ୍ର ଯତ୍ ତସ୍ୟ ସ୍ୱାର୍ଥାଭିଧାୟିତ୍ୱଂ, ଯଚ୍ଚ ତଦର୍ଥାନ୍ତରାବଗମହେତୁତ୍ୱଂ, ତୟୋରବିଶେଷୋ ବିଶେଷୋ ବା ?

୩୮୨ । ନ ତାବାଦବିଶେଷଃ, ଯସ୍ମାତ୍ତୌ ଦ୍ୱୌ ବ୍ୟାପାରୌ ଭିନ୍ନବିଷୟୌ ଭିନ୍ନରୂପୌ ଚ ପ୍ରତୀୟେତେ ଏବ । ତଥାହି—ବାଚକତ୍ୱଲକ୍ଷଣୋ ବ୍ୟାପାରଃ ଶବ୍ଦସ୍ୟ ସ୍ୱାର୍ଥବିଷୟଃ, ଗମକତ୍ୱଲକ୍ଷଣସ୍ତ୍ୱର୍ଥାନ୍ତରବିଷୟଃ ।

୩୮୩ । ଯତଃ ସ୍ୱପରବ୍ୟବହାରେ ବାଚ୍ୟଗମ୍ୟୟୋରପହ୍ନୋତୁମଶକ୍ୟଃ ।

---

ତାହା ମୁଖ୍ୟାର୍ଥ ପ୍ରତୀତିର ଉପାୟ (ଅଙ୍ଗ) ସଦୃଶ । ଯେପରି ବାକ୍ୟସ୍ଥ ପଦମାନଙ୍କର ଅର୍ଥପ୍ରତୀତି, ବାକ୍ୟାର୍ଥପ୍ରତୀତିର ଉପାୟ ।

୩୮୧ । ଉକ୍ତ ମୀମାଂସକ ମତ ଖଣ୍ଡନାର୍ଥେ ଉତ୍ତର :—

ଯେଉଁଠି ଶବ୍ଦ ଅଭିଧା ବୃତ୍ତିରେ ନିଜର ଅର୍ଥକୁ ବୁଝାଇ ସାରି ଅନ୍ୟ ଅର୍ଥକୁ ବୁଝାଏ, ସେଠାରେ ସେହି ଶବ୍ଦର ଯାହା କି ସ୍ୱାର୍ଥାଭିଧାୟିତ୍ୱ ଅର୍ଥାତ୍ ଅଭିଧା ବୃତ୍ତି, ଯାହାକି ଅର୍ଥାନ୍ତରାବଗମହେତୁତ୍ୱ ଅର୍ଥାତ୍ ବ୍ୟଞ୍ଜନା ବୃତ୍ତି, ସେ ଦୁହେଁ ଅଭିନ୍ନ ? କିମ୍ବା ଭିନ୍ନ ?

୩୮୨ । ସେହି ଅଭିଧା ଓ ବ୍ୟଞ୍ଜନା, ଦୁହେଁ ଅଭିନ୍ନ ନୁହନ୍ତି, ଯେ ହେତୁ ସେ ଦୁଇ ବ୍ୟାପାରଙ୍କର ବିଷୟ ଭିନ୍ନ ଭିନ୍ନ, ଓ ସ୍ୱରୂପ ଭିନ୍ନ ଭିନ୍ନ ଭାବେ ଦେଖାଯାଏ । ଯଥା :—

ଅଭିଧା ବ୍ୟାପାରର ବିଷୟ ହେଉଛି ଶବ୍ଦର ସ୍ୱ ଅର୍ଥ । (ଯଥା—ଗତୋଽସ୍ତମର୍କଃ ସ୍ଥଳରେ ସୂର୍ଯ୍ୟ ଅସ୍ତ ହେବା) । ବ୍ୟଞ୍ଜନା ବ୍ୟାପାରର ବିଷୟ ହେଉଛି ଅଭିଧାରୁ ଭିନ୍ନ ଅର୍ଥ । (ଯଥା— ଗତୋଽସ୍ତମର୍କଃ, ସ୍ଥଳରେ ସନ୍ଧ୍ୟା ବନ୍ଦନାଦିରୂପ ଅର୍ଥ) ।

୩୮୩ । ଯେହେତୁ ବାଚ୍ୟ ଓ ବ୍ୟଙ୍ଗ୍ୟ, ଦୁଇ ଅର୍ଥର ପରସ୍ପର

୩୮୪ । ଏକସ୍ୟ ସମ୍ବନ୍ଧିତ୍ୱେନ ପ୍ରତୀତେ ରପରସ୍ୟ ସମ୍ବନ୍ଧି-
ସମ୍ବନ୍ଧିତ୍ୱେନ ।

୩୮୫ । ବାଚ୍ୟୋ ହ୍ୟର୍ଥଃ ସାକ୍ଷାତ୍ ଶବ୍ଦସ୍ୟ ସମ୍ବନ୍ଧୀ, ତଦିତର-
ସ୍ତ୍ୱଭିଧେୟସାମର୍ଥ୍ୟାକ୍ଷିପ୍ତଃ ସମ୍ବନ୍ଧିସମ୍ବନ୍ଧୀ ।

୩୮୬ । ଯଦି ଚ ସ୍ୱ ସମ୍ବନ୍ଧିତ୍ୱଂ ସାକ୍ଷାତ୍ ତସ୍ୟ ସ୍ୟାତ୍, ତଦାର୍ଥା-
ନ୍ତରବ୍ୟବହାର ଏବ ନ ସ୍ୟାତ୍ ।

୩୮୭ । ତସ୍ମାତ୍ ବିଷୟଭେଦସ୍ତାବତ୍ ତୟୋର୍ବ୍ୟାପାରୟୋଃ
ସୁପ୍ରସିଦ୍ଧଃ ।

---

ପ୍ରଭେଦ—(ସ୍ୱପର ବ୍ୟବହାର)କୁ ଫାଙ୍କିଦେଇ ହେବ ନାହିଁ, ତେଣୁ
(ଅର୍ଥଭେଦ ହେତୁରୁ ବୃତ୍ତିଭେଦ ନିଶ୍ଚିତ ରହିଅଛି) ।

୩୮୪ । ଗୋଟିଏ ଅର୍ଥ ସାକ୍ଷାତ୍ ସମ୍ବନ୍ଧରେ ଓ ଅନ୍ୟ ଗୋଟିଏ ଅର୍ଥ ପରମ୍ପରା ସମ୍ବନ୍ଧରେ ପ୍ରତୀତ ହେଉଅଛନ୍ତି । ଏଣୁ ଦୁଇ ଅର୍ଥର ପରସ୍ପର ଭେଦ ନିଶ୍ଚିତ ଅଛି ।

୩୮୫ । ବାଚ୍ୟଅର୍ଥ ଶବ୍ଦର ସାକ୍ଷାତ୍ ସମ୍ବନ୍ଧରେ ସମ୍ବନ୍ଧୀ ଏବଂ ତହିଁରୁ ଭିନ୍ନ ଅଭିଧେୟ ସାମର୍ଥ୍ୟାକ୍ଷିପ୍ତ ବ୍ୟଙ୍ଗ୍ୟ ଅର୍ଥ, ଶବ୍ଦର ପରମ୍ପରା ସମ୍ବନ୍ଧରେ ସମ୍ବନ୍ଧୀ ।

୩୮୬ । ଯଦି ବ୍ୟଙ୍ଗ୍ୟ ଅର୍ଥ ଶବ୍ଦର ସାକ୍ଷାତ୍ ସମ୍ବନ୍ଧୀ ହୋଇଥାନ୍ତା, ତେବେ ତାହାକୁ (ବାଚ୍ୟନ୍ତ ଭିନ୍ନ) ଅନ୍ୟ ଅର୍ଥ ବୋଲି କୁହାଯାଇ ପାରନ୍ତା ନାହିଁ । (ଶବ୍ଦର ସାକ୍ଷାତ୍ ସମ୍ବନ୍ଧୀ ହୋଇ ନଥିବା ହେତୁ ବ୍ୟଙ୍ଗ୍ୟ ଅର୍ଥ ବାଚ୍ୟ ଅର୍ଥରୁ ଭିନ୍ନ) ।

୩୮୭ । ଅଭିଧା ଓ ବ୍ୟଞ୍ଜନା ପୃଥକ୍ ପୃଥକ୍ ହୋଇଥିବା ହେତୁ ଦୁଇ ବ୍ୟାପାରର ବିଷୟ ମଧ୍ୟ ପୃଥକ୍ ପୃଥକ୍ ଭାବେ ରହିଥିବା ସୁପ୍ରସିଦ୍ଧ ।

୩୮ । ରୂପଭେଦୋଽପି ପ୍ରସିଦ୍ଧ ଏବ 'ନହ୍ଣ ଯୈବାଭିଧାନ ଶକ୍ତିଃ' ସୈବାବଗମନଶକ୍ତିଃ ।

୩୮୯ । ଅବାଚକସ୍ୟାପି ଗୀତଶବ୍ଦାଦେ ରସାଦିଲକ୍ଷଣାର୍ଥାବଗମଦର୍ଶନାତ୍ । ଅଶବ୍ଦସ୍ୟାପି ଚେଷ୍ଟାଦେରର୍ଥବିଶେଷପ୍ରକାଶନପ୍ରସିଦ୍ଧେଃ ॥

୩୯୦ । ତଥାହି "ବ୍ରୀଡ଼ାଯୋଗାନ୍ନତବଦନୟା" ଇତ୍ୟାଦି ଶ୍ଳୋକେ ଚେଷ୍ଟାବିଶେଷଃ ସୁକବିନା ଅର୍ଥପ୍ରକାଶନହେତୁଃ ପ୍ରଦର୍ଶିତ ଏବ ।

୩୯୧ । ତସ୍ମାତ୍ ଭିନ୍ନବିଷୟତ୍ୱାତ୍ ଭିନ୍ନରୂପତ୍ୱାଚ ସ୍ୱାର୍ଥାଭିଧାୟିତ୍ୱମର୍ଥାନ୍ତରାବଗମହେତୁତ୍ୱଂ ଚ ଶବ୍ଦସ୍ୟ ଯତ୍, ତୟୋଃ ସ୍ପଷ୍ଟ ଏବ ଭେଦଃ ।

---

୩୮ । ଯାହା ଅଭିଧାନ ଶକ୍ତି ତାହା ଅବଗମନ ଶକ୍ତି ନୁହେ । ଏଣୁ ଉକ୍ତ ଦୁଇ ବ୍ୟାପାରର ସ୍ୱରୂପ ଭେଦ ମଧ୍ୟ ପ୍ରସିଦ୍ଧ ।

୩୮୯ । ପୁନଶ୍ଚ ବାଚକ ହୋଇ ନଥିବା ଗୀତ ଶବ୍ଦ ପ୍ରଭୃତି ରସାଦି ଲକ୍ଷଣ ବ୍ୟଙ୍ଗ୍ୟ ଅର୍ଥକୁ ପ୍ରତୀତ କରାଉଥିବା ଦେଖାଯାଉଛି, ଏବଂ ଶବ୍ଦରୁ ଅତିରିକ୍ତ ଚେଷ୍ଟା (ଠାର) ପ୍ରଭୃତି ମଧ୍ୟ ବ୍ୟଙ୍ଗ୍ୟାର୍ଥକୁ ପ୍ରକାଶ କରାଇ ପାରୁଛନ୍ତି ।

୩୯୦ । ଚେଷ୍ଟାର ବ୍ୟଞ୍ଜକତା ସମ୍ବନ୍ଧେ ଉଦାହରଣ ଯଥା :—

"ବ୍ରୀଡ଼ା ଯୋଗାନ୍ନତବଦନୟା" ଶ୍ଳୋକରେ ସୁକବି ବଦନ ନମନ ଓ କୁଚକଲଶର କମ୍ପନପ୍ରଭୃତି ଚେଷ୍ଟା ଦ୍ୱାରା ଶୃଙ୍ଗାର ରସକୁ ପ୍ରକାଶ କରିଅଛନ୍ତି । ଏହା ତୃତୀୟୋଦ୍ୟୋତରେ ପ୍ରଦର୍ଶିତ ହୋଇଅଛି ।

୩୯୧ । ଅତଏବ ଅଭିଧା ଓ ବ୍ୟଞ୍ଜନା ଦୁହିଁଙ୍କର ବିଷୟ ଭିନ୍ନ ଭିନ୍ନ ହୋଇଥିବାରୁ ଓ ସ୍ୱରୂପ ଭିନ୍ନ ଭିନ୍ନ ହୋଇଥିବାରୁ ଏବଂ ଅଭିଧା ଶବ୍ଦର ସ୍ୱାର୍ଥକୁ ଏବଂ ବ୍ୟଞ୍ଜନା ଶବ୍ଦର ସ୍ୱାର୍ଥରୁ ଭିନ୍ନ ଅର୍ଥକୁ ବୁଝାଉ ଥିବାରୁ ଉକ୍ତ ଦୁଇ ବ୍ୟାପାର ପରସ୍ପରରୁ ଭିନ୍ନ ଏହା ସୁସ୍ପଷ୍ଟ ।

୩୯୨ । ବିଶେଷଶ୍ଚେତ୍, ନ ତର୍ହି ଇଦାନୀମବଗମନୀୟସ୍ୟା-
ଭିଧେୟସାମର୍ଥ୍ୟାକ୍ଷିପ୍ତସ୍ୟ ଅର୍ଥାନ୍ତରସ୍ୟ ବାଚ୍ୟତ୍ୱବ୍ୟପ-
ଦେଶ୍ୟତା ।

୩୯୩ । ଶବ୍ଦବ୍ୟାପାରଗୋଚରତ୍ୱଂ ତୁ ତସ୍ୟ ଅସ୍ମାଭିରିଷ୍ୟତ
ଏବ । ତତ୍ତୁ ବ୍ୟଙ୍ଗ୍ୟତ୍ୱେନୈବ, ନ ବାଚ୍ୟତ୍ୱେନ ।

୩୯୪ । ପ୍ରସିଦ୍ଧାଭିଧାନାନ୍ତରସମ୍ବନ୍ଧଯୋଗ୍ୟତ୍ୱେନ ଚ ତସ୍ୟାର୍ଥା-
ନ୍ତରସ୍ୟ ପ୍ରତୀତେଃ, ଶବ୍ଦାନ୍ତରେଣ ସ୍ୱାର୍ଥାଭିଧାୟିନା
ଯଦ୍ ବିଷୟୀକରଣଂ ତତ୍ର ପ୍ରକାଶନୋକ୍ତିରେବ ଯୁକ୍ତା ।

---

୩୯୨ । ଯେଣୁ ବ୍ୟଞ୍ଜନାର ଅଭିଧା ଅପେକ୍ଷା ବୈଶିଷ୍ଟ୍ୟ (ପ୍ରାର୍ଥକ୍ୟ) ଅଛି, ତେଣୁ ବର୍ତ୍ତମାନ ଅବଗମନ ଶକ୍ତ ବୋଧ ଅଭିଧେୟ ସାମର୍ଥ୍ୟାକ୍ଷିପ୍ତ ବ୍ୟଙ୍ଗ୍ୟ ଅର୍ଥକୁ ବାଚ୍ୟ ବୋଲି କହିବା ଉଚିତ ନୁହେ ।

୩୯୩ । (ଅଭିଧା ପରମ୍ପରା ସମ୍ବନ୍ଧରେ ବ୍ୟଙ୍ଗ୍ୟକୁ ବୁଝାଏ ବୋଲି କୁହାଯାଉଛି)—ଅଭିଧା ବୃତ୍ତି (ଶବ୍ଦ ବ୍ୟାପାର) ଦ୍ୱାରା ବ୍ୟଙ୍ଗ୍ୟାର୍ଥ ପ୍ରକାଶ ପାଏ ଏଥିରେ ଆମ୍ଭର ମଧ୍ୟ ବୈମତ୍ୟ ନାହିଁ । କିନ୍ତୁ ଶବ୍ଦ ବ୍ୟଙ୍ଗ୍ୟାର୍ଥକୁ ବ୍ୟଙ୍ଗ୍ୟଭାବେ ପ୍ରକାଶ କରେ କିନ୍ତୁ ବାଚ୍ୟରୂପେ ପ୍ରକାଶ କରେ ନାହିଁ । (ଯେଉଁ ଅର୍ଥ କେବଳ ଅଭିଧା ଦ୍ୱାରା ଗୃହୀତ ହୁଏ ତାହା ବାଚ୍ୟ ଅର୍ଥ, ଏବଂ ଯାହା ଅଭିଧା ଦ୍ୱାରା ଗୃହୀତ ହେବା ପରେ ବ୍ୟଞ୍ଜନା ଦ୍ୱାରା ପୁନଶ୍ଚ ବୋଧ ବିଷୟ ହୁଏ, ତାହା ବ୍ୟଙ୍ଗ୍ୟ ଅର୍ଥ) ।

୩୯୪ । (ଅଭିନବ ଗୁପ୍ତଙ୍କ ମତରେ) "ଗଙ୍ଗାୟାଂ ଘୋଷଃ ।" ଏ ସ୍ଥଳରେ ଶୀତତ୍ୱପାବନତ୍ୱାଦି ବ୍ୟଙ୍ଗ୍ୟ ଅର୍ଥ ଶୀତାଦି ପ୍ରସିଦ୍ଧ ବାଚକ ଶବ୍ଦ ଦ୍ୱାରା ତ ପ୍ରତୀତ ହୋଇ ପାରେ, ତେବେ ସେ ସ୍ଥଳରେ ଶୀତାଦି ବାଚକ ଶବ୍ଦ ଦ୍ୱାରା ଶୀତତ୍ୱାଦି କୁହା ନ ଯାଇ, ଜଳ ପ୍ରବାହରୂପ ଅର୍ଥ ବିଶିଷ୍ଟ ଗଙ୍ଗାଶବ୍ଦ ଦ୍ୱାରା ଯାହା କି କୁହା ଯାଇଛି, ତାହା ଦ୍ୱାରା ସେ ସ୍ଥଳରେ ବ୍ୟଞ୍ଜନା ବୃତ୍ତି ଦ୍ୱାରା ଅର୍ଥ ବୋଧ ହେଉଛି ବୋଲି ସ୍ପଷ୍ଟଭାବେ ଉକ୍ତ ହେଉ-ଅଛି । ଅର୍ଥାତ୍ ଆମ୍ବକୁ ଆମ୍ବ ବୋଲି ନ କହି କଖାରୁଟେ ବୋଲି କହିଲା ପରି

## ୩୯୫ । ନଚ ପଦାର୍ଥବାକ୍ୟାର୍ଥନ୍ୟାୟୋ ବାଚ୍ୟବ୍ୟଙ୍ଗ୍ୟୟୋଃ ।

ଶୀତତ୍ୱାଦ ଅର୍ଥବୋଧ ପ୍ରକାଶେ ଶୀତତ୍ୱାଦ ପଦ ବ୍ୟବହାର କର ନ ଯାଇ ଗଙ୍ଗାଦ-ଭିନ୍ନାର୍ଥକ ଶବ୍ଦ ବ୍ୟବହାର କରଯାଉ ଥିବାରୁ ସେଭଳ ସ୍ଥଳରେ ଅଭିଧାଭିନ୍ନ ବ୍ୟଞ୍ଜନାବୃତ୍ତି ନିଶ୍ଚୟ ଅଛି ବୋଲ ଜଣା ଯାଉଛି ।

(ବଦସ୍ୱନାଥଙ୍କ ମତରେ) ଅଭିଧା ପ୍ରସିଦ୍ଧ ଅର୍ଥକୁ ବୁଝାଏ ଓ ବ୍ୟଞ୍ଜନା ପ୍ରସିଦ୍ଧ ଅର୍ଥରୁ ଭିନ୍ନ ଅର୍ଥକୁ ବୁଝାଏ, ଏଣୁ ଏ ଉଭୟ ଭିନ୍ନ ଭିନ୍ନ ବୃତ୍ତି କିନ୍ତୁ ଏକମାତ୍ର ଅଭିଧା ନୁହେ ।

ଆଉ ପୁଣି ଶୀତତ୍ୱାଦ ବ୍ୟଙ୍ଗ୍ୟ ଅର୍ଥକୁ ତାହାର ବାଚକ ଶବ୍ଦ ଦ୍ୱାରା ନ କହି ଗଙ୍ଗାଦ ଭିନ୍ନାର୍ଥକ ଶବ୍ଦ ଦ୍ୱାରା କୁହାଯାଉଥିବା ହେତୁ ସେଠାରେ ବ୍ୟଞ୍ଜନା ଅଛି ବୋଲ ସ୍ପଷ୍ଟଭାବେ କୁହାଯାଉଛି ।

ବ୍ୟାଖ୍ୟା :—ଅପିଚ "ଗଙ୍ଗାୟାଂ ଘୋଷ ଇତ୍ୟାଦୌ ପ୍ରସିଦ୍ଧେନ ବାଚକତୟା ଖ୍ୟାତେନ ଅଭିଧାନାନ୍ତରେଣ ଶୈତ୍ୟପାବନତ୍ୱାଦ ବାଚକ ଶବ୍ଦେନ ତସ୍ୟ ଅର୍ଥାନ୍ତରସ୍ୟ ବ୍ୟଙ୍ଗ୍ୟସ୍ୟ ଶୈତ୍ୟପାବନତ୍ୱାଦେଃ ପ୍ରତୀତେଃ ସମ୍ଭାବନାୟାଂ ସତ୍ୟାଂ ସ୍ୱାର୍ଥାଭିଧାୟିନା—ପ୍ରବାହରୂପଂ ସ୍ୱାର୍ଥମଭିଦଧତା ଭିନ୍ନାର୍ଥକେନେତି ଯାବତ୍ ଗଙ୍ଗାଦ ଶବ୍ଦେନ ଯତ୍ ବିଷୟୀକରଣଂ ଜ୍ଞାପନଂ, ତଦ ଇତ୍ଥଂଶେ ବିଷୟେ ପ୍ରକାଶନୋକ୍ତିଃ ବ୍ୟଞ୍ଜନୋକ୍ତରେବ ଯୁକ୍ତା, ନ ପୁନ-ପୁନର୍ବାଚକତ୍ୱୋକ୍ତିଃ ।

ବଦସ୍ୱନାଥସ୍ତୁ ତସ୍ୟାର୍ଥାନ୍ତରସ୍ୟ ଚ ପ୍ରତୀତେରିତ ଏକମଧିକଂ ଚକାରଂ ପଠତି ।

### ତାତ୍ପର୍ଯ୍ୟାଠାରୁ ବ୍ୟଞ୍ଜନାର ଭେଦ ନିରୂପଣ

୩୯୫ । (ବ୍ୟଞ୍ଜନାର ଅଭିଧାଠାରୁ ସ୍ୱତନ୍ତ୍ରତା ପ୍ରତିପାଦନ କରିସାରି ବର୍ତ୍ତମାନ ତାତ୍ପର୍ଯ୍ୟାବୃତ୍ତିଠାରୁ ତାହାର ପାର୍ଥକ୍ୟ ପ୍ରତିପାଦନ କରଯାଉଛି) :—

(ପୂର୍ବରୁ ତୃତୀୟୋଦ୍ୟୋତରେ କୁହାଯାଇଥିଲା ଯେ ବାକ୍ୟାର୍ଥ ପ୍ରତୀତି ପାଇଁ ପଦାର୍ଥ ପ୍ରତୀତି ଯେଭଳ ଉପାୟ ସେହିପରି ବାଚ୍ୟ ଅର୍ଥ ବ୍ୟଙ୍ଗ୍ୟ ଅର୍ଥର ଉପାୟ । ବର୍ତ୍ତମାନ ତାହାର ଅସଙ୍ଗତି ପ୍ରଦର୍ଶନ କରଯାଉଅଛି । ଯଥା) —

ବାଚ୍ୟାର୍ଥ ବ୍ୟଙ୍ଗ୍ୟାର୍ଥ ମଧ୍ୟରେ ପଦାର୍ଥ ଓ ବାକ୍ୟାର୍ଥ ନ୍ୟାୟ ହୋଇ ନ ପାରେ ।

୩୯୬ । ଯତଃ ପଦାର୍ଥ ପ୍ରତୀତରସ୍ତ୍ୟେବେତ କୈଶ୍ଚିଦ୍‌ବୁଦ୍ଧିଗସ୍ଥିତମ୍ ।

୩୯୭ । ଯୈରସତ୍ୟତ୍ୱମସ୍ୟା ନାଭ୍ୟୁପେୟତେ, ତୈର୍ବାକ୍ୟାଟ-ପଦାର୍ଥୟୋର୍ଘଟ-ତଦୁପାଦାନକାରଣନ୍ୟାୟୋଽଭ୍ୟୁପଗନ୍ତବ୍ୟଃ ।

୩୯୮ । ଯଥା ହି ଘଟେ ନଷ୍ଟନ୍ନେ ତଦୁପାଦନକାରଣାନାଂ ନ ପୃଥଗୁପଲମ୍ଭଃ, ତଥୈବ ବାକ୍ୟେ ତଦର୍ଥେ ବା ପ୍ରତୀତେ ପଦ-ତଦର୍ଥାନାମ୍ ।

୩୯୯ । ତେଷାଂ ତଦା ବିଭକ୍ତତୟୋପଲମ୍ଭେ ବାକ୍ୟାଥବୁଦ୍ଧିରେବ ଦୂରୀଭବେତ୍ ।

---

୩୯୬ । ଯେଣୁ ପଦାର୍ଥ (ପଦମାନଙ୍କର ଅର୍ଥ) ମାନଙ୍କର ପ୍ରତୀତ ଅଛି ବୋଲି କେତେକ ପଣ୍ଡିତ (ବୈୟାକରଣମାନେ) ମାତ୍ର ସ୍ୱୀକାର କରନ୍ତି (କିନ୍ତୁ ସମସ୍ତେ ସ୍ୱୀକାର କରନ୍ତି ନାହିଁ) ।

୩୯୭ । ଯେଉଁ (ଅଭିହିତାନ୍ୱୟବାଦ-ଭଟ୍ଟପ୍ରଭୃତି ମୀମାଂସକ)ମାନେ ପଦାର୍ଥ ପ୍ରତୀତର ଅସତ୍ୟତା ସ୍ୱୀକାର କରନ୍ତି ନାହିଁ, ସେମାନେ ମଧ୍ୟ ବାକ୍ୟାର୍ଥ ଓ ପଦାର୍ଥ ମଧ୍ୟରେ ଘଟ ଓ ଘଟର ଉପାଦାନ କାରଣ (ଘଟକପାଳ) ମଧ୍ୟରେ ଯେଉଁଭଳି ସମ୍ବନ୍ଧ ଅଛି, ସେହି ସମ୍ବନ୍ଧକୁ ନିଶ୍ଚୟ ସ୍ୱୀକାର କରିବେ ।

୩୯୮ । ଯେପରି ଘଟ ନିଷ୍ପନ୍ନ ହେବା ପରେ ଘଟର ଉପାଦାନ କାରଣ କପାଳାଦିରି ଘଟରୁ ପୃଥକ୍‌ଭାବେ ଗ୍ରହଣ ହୁଏ ନାହିଁ, ସେହିପରି ବାକ୍ୟ ବା ବାକ୍ୟାର୍ଥ ପ୍ରତୀତ ହେବା ପରେ ପଦ ବା ପଦାର୍ଥମାନଙ୍କର ପୃଥକ୍‌ଭାବେ ପ୍ରତୀତ ହୁଏ ନାହିଁ ।

୩୯୯ । ଯଦିବା ବାକ୍ୟାର୍ଥ ବୋଧ ସମୟରେ (ତଦା) ଉକ୍ତ ପଦାର୍ଥମାନଙ୍କର ବାକ୍ୟାର୍ଥରୁ ପୃଥକ୍‌ଭାବେ ପ୍ରତୀତ ହେବ, ତେବେ ବାକ୍ୟାର୍ଥ ବୋଧ ହୋଇ ପାରିବ ନାହିଁ ।

(ଯଥା ଅବୟବମାନଙ୍କୁ ପୃଥକ୍ କରିଦେଲେ ଅବୟବୀର ଗ୍ରହଣ ହୋଇ ନ ପାରେ ।

୪୦୦ । ନ ଚୈଷ ବାଚ୍ୟବ୍ୟଙ୍ଗ୍ୟୟୋର୍ନ୍ୟାୟଃ । ନହି ବ୍ୟଙ୍ଗ୍ୟ ପ୍ରତୀତିମାନେ ବାଚ୍ୟବୁଦ୍ଧିର୍ଦୂରୀଭବତି, ବାଚ୍ୟାବଭାସାବିନା ଭାବେ-ନ ତସ୍ୟ ପ୍ରକାଶନାତ୍ ॥

୪୦୧ । ତସ୍ମାତ୍ ଘଟପ୍ରଦୀପନ୍ୟାୟସ୍ତୟୋଃ । ଯଥୈବ ହି ପ୍ରଦୀପଦ୍ୱାରେଣ ଘଟପ୍ରତୀତାବୁତ୍ପନ୍ନାୟାଂ ନ ପ୍ରଦୀପପ୍ରକାଶୋ ନିବର୍ତ୍ତତେ, ତଦ୍ୱତ୍ ବ୍ୟଙ୍ଗ୍ୟପ୍ରତୀତୌ ବାଚ୍ୟାବଭାସଃ ।

୪୦୨ । ଯତ୍ତୁ ପ୍ରଥମୋଦ୍ୟୋତେ—"ଯଥା ପଦାର୍ଥଦ୍ୱାରେଣ" ଇତ୍ୟାଦ୍ୟୁକ୍ତମ୍, ତଦୁପାୟତ୍ୱସାମ୍ୟମାତ୍ରସ୍ୟ ବିବକ୍ଷୟା ।

---

୪୦୦ । କିନ୍ତୁ ବାଚ୍ୟ ଓ ବ୍ୟଙ୍ଗ୍ୟ ମଧ୍ୟରେ ଏହି ଘଟ କପାଳ ନ୍ୟାୟ ନାହିଁ । ଯେହେତୁ ବ୍ୟଙ୍ଗ୍ୟାର୍ଥ ପ୍ରତୀତ ହେବା ପରେ ବାଚ୍ୟାର୍ଥ ବୋଧ ଦୂର ହୁଏ ନାହିଁ, ଏବଂ ବାଚ୍ୟାର୍ଥ ପ୍ରତୀତ ବ୍ୟତିରେକେ ବ୍ୟଙ୍ଗ୍ୟାର୍ଥପ୍ରତୀତ ହୁଏ ନାହିଁ ।

୪୦୧ । ତେଣୁ ବାଚ୍ୟ ଓ ବ୍ୟଙ୍ଗ୍ୟ ମଧ୍ୟରେ ଘଟ ପ୍ରଦୀପ ନ୍ୟାୟ ଅଛି । ଯେପରି ପ୍ରଦୀପ ଦ୍ୱାରା ଘଟ ପ୍ରତୀତ ହେଲା ପରେ ମଧ୍ୟ ପ୍ରଦୀପର ପ୍ରକାଶ ନଷ୍ଟ ନ ହୋଇ ରହିଥାଏ । ସେହିପରି ବ୍ୟଙ୍ଗ୍ୟ ପ୍ରତୀତପରେ ମଧ୍ୟ ବାଚ୍ୟାର୍ଥ ଜ୍ଞାନ ରହିଥାଏ । ଅତଏବ ବ୍ୟଙ୍ଗ୍ୟ ଓ ବାଚ୍ୟ ମଧ୍ୟରେ ଘଟ ପ୍ରଦୀପ ପରି ବ୍ୟଙ୍ଗ୍ୟ ବ୍ୟଞ୍ଜକ ସମ୍ବନ୍ଧ ରହିଅଛି ।

୪୦୨ । ପ୍ରଶ୍ନ:—୧ମ ଉଦ୍ୟୋତର "ଯଥା ପଦାର୍ଥ ଦ୍ୱାରେଣ" କାରିକାରେ ବାଚ୍ୟ ଓ ବ୍ୟଙ୍ଗ୍ୟ ମଧ୍ୟରେ ପଦାର୍ଥ ବାକ୍ୟାର୍ଥ ନ୍ୟାୟ ସ୍ୱୟଂ ସ୍ୱୀକାର କରି ଏଠାରେ କିପରି ତାହାର ଖଣ୍ଡନ କରୁଛ ?"

ଉତ୍ତର :—ଆମେ ସେଠାରେ ତାହାକୁ ସମବାୟୀ ଅସମବାୟୀ ବା ନିମିତ୍ତ କାରଣ ବୋଲି କହି ନାହୁଁ କିନ୍ତୁ ସାମାନ୍ୟତଃ କାରଣ ବୋଲି ଦର୍ଶାଇଛୁ ।

୪୦୩ । ନନ୍ୱେବଂ ଯୁଗପଦାର୍ଥଦ୍ୱୟଯୋଗିତ୍ୱଂ ବାକ୍ୟସ୍ୟ ସ୍ୟାତ୍ ।

୪୦୪ । ତଦ୍ ଭାବେ ଚ ତସ୍ୟ ବାକ୍ୟତୈବ ବିଘଟତେ, ତସ୍ୟ ଏକାର୍ଥ୍ୟଲକ୍ଷଣତ୍ୱାତ୍ ।

୪୦୫ । ନୈଷ ଦୋଷଃ । ଗୁଣପ୍ରଧାନଭାବେନତୟୋର-ବସ୍ଥାନାତ୍ ।

୪୦୬ । ବ୍ୟଙ୍ଗ୍ୟସ୍ୟ ହି କ୍ୱଚିତ୍ ପ୍ରାଧାନ୍ୟଂ ବାଚ୍ୟସ୍ୟୋପ-ସର୍ଜନୀଭାବଃ । କ୍ୱଚିଦ୍‌ବାଚ୍ୟସ୍ୟ ପ୍ରାଧାନ୍ୟମ ପରସ୍ୟ ଚ ଗୁଣୀଭାବଃ । ତତ୍ର ବ୍ୟଙ୍ଗ୍ୟପ୍ରାଧାନ୍ୟେ ଧ୍ୱନି-

---

୪୦୩ । ପ୍ରଶ୍ନ :—ଆଚ୍ଛା ଯଦି ବ୍ୟଙ୍ଗ୍ୟ ପ୍ରତୀତ ସମୟରେ ବାଚ୍ୟ ପ୍ରତୀତ ରହିବ, ତେବେ କଣ ବାକ୍ୟରୁ ବାଚ୍ୟ ଓ ବ୍ୟଙ୍ଗ୍ୟ ଦୁଇଗୋଟି ଅର୍ଥ ଯୁଗପତ୍ ପ୍ରକାଶ ପାଇବ ?

୪୦୪ । ଯଦିବା ବାକ୍ୟରୁ ଏକାବେଳକେ ବାଚ୍ୟ ଓ ବ୍ୟଙ୍ଗ୍ୟ ଦୁହେଁ ପ୍ରକାଶ ପାଆନ୍ତି ବୋଲି କହିବ, ତେବେ ବାକ୍ୟର ବାକ୍ୟତା ରହି ପାରିବ ନାହିଁ । ଯେଣୁ ବାକ୍ୟ ଗୋଟିଏ ମାତ୍ର ଅର୍ଥ ବୁଝାଇ ପାରିବ ବୋଲି ଲକ୍ଷଣ କରାଯାଇଛି ।

"ସକୃଦୁଚ୍ଚରିତଃ ଶବ୍ଦଃ ସକୃଦେବାର୍ଥଂ ଗମୟତି"

(ଶବ୍ଦ ଥରେ ଉଚ୍ଚାରିତ ହେଲେ ଗୋଟିଏ ପ୍ରକାର ସଙ୍କେତ ସ୍ମରଣ କରାଏ ଯୁଗପତ୍ ବହୁସଙ୍କେତ ସ୍ମରଣ କରାଇ ପାରେ ନାହିଁ । ତେଣୁ ଗୋଟିଏ ବାକ୍ୟ ଗୋଟିଏ ପ୍ରକାର ଅର୍ଥକୁ ମାତ୍ର ବୁଝାଏ ।

୪୦୫ । ଉତ୍ତର :—ଗୋଟିଏ ବାକ୍ୟରୁ ଯୁଗପତ୍ ଦୁଇଗୋଟି ଅର୍ଥ ପ୍ରକାଶ ପାଇବା ଦୋଷ ନୁହେଁ, ଯେ ହେତୁ ସେହି ଦୁଇଗୋଟି ଅର୍ଥ ମୁଖ୍ୟ ଓ ଗୌଣଭାବରେ ଅବସ୍ଥାନ କରି ଥାଆନ୍ତି ।

୪୦୬ । କୌଣସି ବାକ୍ୟରେ ବ୍ୟଙ୍ଗ୍ୟ ପ୍ରଧାନ ଓ ବାଚ୍ୟ ଗୌଣ ହୋଇଥାଏ, ଏବଂ କୌଣସି ବାକ୍ୟରେ ବାଚ୍ୟ ପ୍ରଧାନ ଓ ବ୍ୟଙ୍ଗ୍ୟ ଗୌଣ ହୋଇଥାଏ । ତନ୍ମଧ୍ୟରେ ଯେଉଁଠି ବ୍ୟଙ୍ଗ୍ୟ ପ୍ରଧାନଭାବେ ଥାଏ ତାହା ଧ୍ୱନି

ରଷ୍ଟ୍ୟକ୍ତମେବ । ବାଚ୍ୟପ୍ରାଧାନ୍ୟେ ତୁ ପ୍ରକାରାନ୍ତରଂ ନିର୍ଦ୍ଦେକ୍ଷ୍ୟତେ ।

୪୦୭ । ତସ୍ମାତ୍ ସ୍ଥିତମେତତ୍—ବ୍ୟଙ୍ଗ୍ୟପରତ୍ୱେଽପି କାବ୍ୟସ୍ୟ ନ ବ୍ୟଙ୍ଗ୍ୟସ୍ୟାଭିଧେୟତ୍ୱମ୍, ଅପିତୁ ବ୍ୟଙ୍ଗ୍ୟତ୍ୱମେବ ।

୪୦୮ । କିଂ ଚ ବ୍ୟଙ୍ଗ୍ୟସ୍ୟ ପ୍ରଧାନ୍ୟେନାବିବକ୍ଷାୟାଂ ବାଚ୍ୟତ୍ୱଂ ତାବତ୍, ଭବଦ୍ଭିର୍ନାଭ୍ୟୁପଗନ୍ତବ୍ୟମ୍, ଅତତ୍ପରତ୍ୱାତ୍ ଶବ୍ଦସ୍ୟ ।

---

କାବ୍ୟ ବୋଲି ପୂର୍ବରୁ କୁହାଯାଇଛି । ଯେଉଁଠି ବାଚ୍ୟ ପ୍ରଧାନ ହୋଇଥାଏ ତାହା ଗୁଣୀଭୂତ ବ୍ୟଙ୍ଗ୍ୟ ବୋଲି ଆଗକୁ ନିରୂପଣ କରାଯିବ ।

୪୦୭ । ତେଣୁ ଏହା ସିଦ୍ଧାନ୍ତ କରାଗଲା ଯେ, କାବ୍ୟ ବ୍ୟଙ୍ଗ୍ୟପର ହୋଇଥିଲେ ମଧ୍ୟ ସେଠାରେ "ଯତ୍ପରଃ ଶବ୍ଦଃ ସ ଶବ୍ଦାର୍ଥଃ" ଏହି ମତ ଅନୁସାରେ ବ୍ୟଙ୍ଗ୍ୟାର୍ଥକୁ ଅଭିଧେୟାର୍ଥ ବୋଲି କୁହାଯାଇ ନ ପାରେ, କିନ୍ତୁ ତାହାକୁ ବ୍ୟଙ୍ଗ୍ୟ ବୋଲି କୁହାଯିବ ।

୪୦୮ । (ଯଦି ବା ତୁମ୍ଭେ ଆମ୍ଭ ମତ ନ ଶୁଣି "ଯତ୍ପରଃ ଶବ୍ଦଃ ସ ଶବ୍ଦାର୍ଥଃ" ଏହି ନିଜ ମତକୁ ଦୃଢ଼ କରି ଧରି ବସିବ, ତଥାପି ତୁମ୍ଭଙ୍କୁ ବ୍ୟଞ୍ଜନା ବୋଲି ଗୋଟିଏ ବୃତ୍ତି ଅଛି ବୋଲି ଅବଶ୍ୟ ସ୍ୱୀକାର କରିବାକୁ ପଡ଼ିବ) ।

ଯଦି ବା ଆପଣମାନେ ତାତ୍ପର୍ଯ୍ୟା ବୃତ୍ତିର ପକ୍ଷପାତୀ ହୋଇ ଯେଉଁଠି ବ୍ୟଙ୍ଗ୍ୟ ପ୍ରଧାନ ହୋଇଛି ସେଠାରେ ବ୍ୟଙ୍ଗ୍ୟାଥକୁ ତାତ୍ପର୍ଯ୍ୟାର୍ଥ ବୋଲି କହିବେ ତେବେ ଯେଉଁ ବାକ୍ୟରେ ବ୍ୟଙ୍ଗ୍ୟ ପ୍ରଧାନଭାବେ ନ ଥାଇ ଗୌଣଭାବେ ରହିଥିବ ସେ ବାକ୍ୟର ଅର୍ଥକୁ ଆପଣମାନେ ବାଚ୍ୟ ବୋଲି କହି ପାରିବେ ନାହିଁ, ଯେଣୁ ସେ ସ୍ଥଳରେ ଶବ୍ଦ ବ୍ୟଙ୍ଗ୍ୟପର (ତତ୍ପର) ହୋଇ ରହି ନାହିଁ ।

ସାରାର୍ଥ :—(ଅତଏବ ଆପଣଙ୍କୁ ଏ ସ୍ଥଳରେ ବାଚ୍ୟଭିନ୍ନ ଅନ୍ୟ ଏକ ବ୍ୟଙ୍ଗ୍ୟ ଅର୍ଥ ଅଛି ବୋଲି ନିଶ୍ଚୟ ସ୍ୱୀକାର କରିବାକୁ ପଡ଼ିବ) । (ଯେଉଁଠି ବ୍ୟଙ୍ଗ୍ୟ ପ୍ରଧାନ, ତୁମେ କହୁଛ ସେ ବାଚ୍ୟ । ଯେଉଁଠି ବାଚ୍ୟ ପ୍ରଧାନ ତୁମ ମତରେ ସେ ବ୍ୟଙ୍ଗ୍ୟ । କିନ୍ତୁ ଆମ ମତରେ ଯେଉଁଠି ବ୍ୟଙ୍ଗ୍ୟ ପ୍ରଧାନ ସେ ଧ୍ୱନି ଯେଉଁଠି ବାଚ୍ୟ ପ୍ରଧାନ ସେ ଗୁଣୀଭୂତ ବ୍ୟଙ୍ଗ୍ୟ) ।

୪୦୯ । ତଦସ୍ତି ତାବଦ୍‌ବ୍ୟଙ୍ଗ୍ୟଃ ଶବ୍ଦାନାଂ କଶ୍ଚିଦ୍ଵିଷୟଃ ଇତି ଯତ୍ରାପି ତସ୍ୟ ପ୍ରାଧାନ୍ୟଂ ତତ୍ରାପି କିମିତି ତସ୍ୟ ସ୍ୱରୂପମପହ୍ନୂୟତେ ।

୪୧୦ । ଏବଂ ତାବଦ୍ଵାଚକତ୍ୱାତ୍‌ ଅନ୍ୟଦେବ ବ୍ୟଞ୍ଜକତ୍ୱମ୍‌ ।

୪୧୧ । ଇତଶ୍ଚ ବାଚକତ୍ୱାଦ୍‌ ବ୍ୟଞ୍ଜକତ୍ୱସ୍ୟାନ୍ୟତ୍ୱଂ, ଯଦ୍‌ ବାଚକତ୍ୱଂ ଶବ୍ଦୈକାଶ୍ରୟମ୍‌, ଇତରତ୍ତୁ ଶବ୍ଦାଶ୍ରୟମର୍ଥାଶ୍ରୟଂ ଚ, ଶବ୍ଦାର୍ଥୟୋଦ୍ଵୟୋରପି ବ୍ୟଞ୍ଜକତ୍ୱସ୍ୟ ପ୍ରତିପାଦନାତ୍‌ ।

୪୧୨ । ଗୁଣବୃତ୍ତିସ୍ତୂପଚାରେଣ ଲକ୍ଷଣୟା ଚୋଭୟାଶ୍ରୟାଽପି ଭବତି ।

---

୪୦୯ । ଅତଏବ ତୁମ ମତରେ ମଧ୍ୟ ଶବ୍ଦର ବ୍ୟଙ୍ଗ୍ୟାର୍ଥ ବୋଲି ଗୋଟିଏ ଅର୍ଥ ଅଛି "ଯଦି ଆମ୍ଭ ଉଭୟଙ୍କ ମତରେ ବ୍ୟଙ୍ଗ୍ୟ ଅଛି, ତେବେ ଯେଉଁଠି ବ୍ୟଙ୍ଗ୍ୟର ପ୍ରାଧାନ୍ୟ ରହିଅଛି ତୁମ୍ଭେ ତାହାକୁ ବ୍ୟଙ୍ଗ୍ୟ କାବ୍ୟ ବୋଲି ସ୍ୱୀକାର ନ କରି ଫାଙ୍କି ଦେଉଅଛ କାହିଁକି ?

୪୧୦ । ଏହିପରି ବିଷୟ ଭେଦ ଓ ସ୍ୱରୂପ ଭେଦ ହେତୁରୁ ବାଚକତାଠାରୁ ବ୍ୟଞ୍ଜକତା ଭିନ୍ନ ।

୪୧୧ ।°ବାଚକତାଠାରୁ ବ୍ୟଞ୍ଜକତା ଭିନ୍ନ ହେବା ପ୍ରତି ଉକ୍ତ କାରଣ ଛଡ଼ା ଆଉ ମଧ୍ୟ ଏକ କାରଣ ରହିଅଛି । ତାହା ଏହି ଯେ—କେବଳ ଶବ୍ଦ ମାନ ବାଚକତାର ଆଶ୍ରୟ, କିନ୍ତୁ ଶବ୍ଦ ଏବଂ ଅର୍ଥ ଉଭୟ ବ୍ୟଞ୍ଜକତାର ଆଶ୍ରୟ । ଯେଣୁ ପୂର୍ବରୁ ''ଯତ୍ରାର୍ଥଃ ଶବ୍ଦୋ ବା" କାରିକାରେ ଶବ୍ଦ ଓ ଅର୍ଥ ଉଭୟ ବ୍ୟଞ୍ଜକ ହୁଅନ୍ତି ବୋଲି ପ୍ରତିପାଦନ କରାଯାଇ ଅଛି ।

୪୧୨ । (ବିଷୟ, ସ୍ୱରୂପ, ଓ ଆଶ୍ରୟ ଭେଦରୁ ଅଭିଧାଠାରୁ ବ୍ୟଞ୍ଜନାର ଭେଦ ପ୍ରତିପାଦନ କରିସାରି ବର୍ତ୍ତମାନ ଲକ୍ଷଣାଠାରୁ ବ୍ୟଞ୍ଜନାର ଭେଦ ନିରୂପଣ କରାଯାଉଅଛି) ଯଥା—

୪୧୩ । କିନ୍ତୁ ତତୋଽପି ବ୍ୟଞ୍ଜକତ୍ୱଂ ସ୍ୱରୂପତୋ ବିଷୟତଶ୍ଚ ଭିଦ୍ୟତେ ।

୪୧୪ । ରୂପଭେଦସ୍ତାବଦୟମ୍—ଯଦମୁଖ୍ୟତୟା ବ୍ୟାପାରୋ ଗୁଣବୃତ୍ତିଃ ପ୍ରସିଦ୍ଧା । ବ୍ୟଞ୍ଜକତ୍ୱଂ ତୁ ମୁଖ୍ୟତୟୈବ ଶବ୍ଦବ୍ୟାପାରଃ । ନହ୍ୟର୍ଥାତ୍ ବ୍ୟଙ୍ଗ୍ୟତ୍ରୟପ୍ରତୀତର୍ଯା, ତସ୍ୟା ଅମୁଖ୍ୟତ୍ୱଂ ମନାଗପି ଲକ୍ଷ୍ୟତେ ।

---

ଲକ୍ଷଣା (ଗୁଣବୃତ୍ତି) ଶୁଦ୍ଧା (ଲକ୍ଷଣା) ଓ ଗୌଣୀ (ଉପଚାର) ଭେଦରେ ଦୁଇ ପ୍ରକାର ଏବଂ ସେ ଦୁଇ ପ୍ରକାରଯାକ ଶବ୍ଦ ଓ ଅର୍ଥ ଉଭୟକୁ ଆଶ୍ରୟ କରି ରହନ୍ତି ।

୪୧୩ । (ବ୍ୟଞ୍ଜନା ପରି ଲକ୍ଷଣା ଯଦି ଶବ୍ଦ ଓ ଅର୍ଥ ଉଭୟକୁ ଆଶ୍ରୟ କରି ରହିଛି ତେବେ ଲକ୍ଷଣାରେ ବ୍ୟଞ୍ଜନାକୁ କାହିଁକି ଅନ୍ତର୍ଭୁକ୍ତ କରି ନ ଯିବ ? ଏହି ପ୍ରଶ୍ନର ଉତ୍ତର ସ୍ୱରୂପ କୁହାଯାଉଛି) :—

ଲକ୍ଷଣା ବ୍ୟଞ୍ଜନା ପରି ଶବ୍ଦ ଓ ଅର୍ଥ ଉଭୟକୁ ଆଶ୍ରୟ କରି ରହୁଥିଲେ ମଧ୍ୟ ସ୍ୱରୂପଭେଦ ଓ ବିଷୟଭେଦ ରହିଥିବା ହେତୁ ଲକ୍ଷଣାଠାରୁ ବ୍ୟଞ୍ଜନା ଭିନ୍ନ ।

୪୧୪ । ଲକ୍ଷଣାଠାରୁ ବ୍ୟଞ୍ଜନାର ସ୍ୱରୂପଭେଦ ଯଥା :—ଲକ୍ଷଣାବୃତ୍ତି ଶବ୍ଦର ଅପ୍ରଧାନ ବୃତ୍ତି ବୋଲି ସ୍ପଷ୍ଟଭାବେ କୁହାଯାଇଛି । କିନ୍ତୁ ବ୍ୟଞ୍ଜକତା ଶବ୍ଦର ଅମୁଖ୍ୟ ବ୍ୟାପାର ନୁହେ, କିନ୍ତୁ ମୁଖ୍ୟ ବ୍ୟାପାର । ଶବ୍ଦର ଅର୍ଥରୁ ଯେଉଁ ବସ୍ତୁ, ଅଲଙ୍କାର ଓ ରସାଦିରୂପ ତ୍ରିବିଧ ବ୍ୟଙ୍ଗ୍ୟ ପ୍ରତୀତ ହୁଏ, ତାହା ଶବ୍ଦର ଅପ୍ରଧାନ ଅର୍ଥ ବୋଲି ଟିକିଏ ହେଲେ ବୋଧହୁଏ ନାହିଁ ।

(ଯଥା—"ଗଙ୍ଗାୟାଂ ଘୋଷଃ" ଏ ସ୍ଥଳରେ ଗଙ୍ଗା ଶବ୍ଦର ତଟ-ରୂପକ ଅର୍ଥ ସିନା ଅପ୍ରଧାନ କିନ୍ତୁ ଶୀତତ୍ୱପାବନତ୍ୱାଦି ବ୍ୟଙ୍ଗ୍ୟ ଅର୍ଥ ବୁଝାଇବାକୁ ସେ ତ ଅପ୍ରଧାନ ନୁହେ ବରଂ ପ୍ରଧାନ) ଏହିପରି ଅଲଂକାର ଓ ରସାଦି ।

୪୧୫ । ଅୟଂ ଚାନ୍ୟଃ ସ୍ୱରୂପଭେଦଃ—ଯଦ୍‌ଗୁଣବୃତ୍ତିରମୁଖ୍ୟତ୍ୱେନ ବ୍ୟବସ୍ଥିତଂ ବାଚକତ୍ୱମେବୋଚ୍ୟତେ । ବ୍ୟଞ୍ଜକତ୍ୱଂ ତୁ ବାଚକତ୍ୱାଦତ୍ୟନ୍ତଂ ବିଭିନ୍ନମେବ । ଏତଚ୍ଚ ପ୍ରତିପାଦିତମ୍ ।

୪୧୬ । ଅୟଂ ଚାପରୋ ରୂପଭେଦଃ—ଯଦ୍ ଗୁଣବୃତ୍ତୌ ଯଦାର୍ଥୋଽର୍ଥାନ୍ତରମୁପଲକ୍ଷୟତି ; ତଦୋପଲକ୍ଷଣୀୟାର୍ଥାତ୍ମନା ପରିଣତ ଏବାସୌ ସମ୍ପଦ୍ୟତେ । ଯଥା ଗଙ୍ଗାୟାଂ ଘୋଷଃ ଇତ୍ୟାଦୌ । ବ୍ୟଞ୍ଜକତ୍ୱମାର୍ଗେ ତୁ ଯଦାର୍ଥୋଽର୍ଥାନ୍ତରଂ ଦ୍ୟୋତୟତି ତଦା

---

୪୧୫ । ଲକ୍ଷଣାଠାରୁ ବ୍ୟଞ୍ଜନାର ଆଉ ଏକ ପ୍ରକାର ସ୍ୱରୂପଭେଦ ଅଛି ଯଥା—(ଅଭିଧା ହେଉଛି ମୁଖ୍ୟ ବାଚକ ଶକ୍ତି) ଅଭିଧାଠାରୁ ଗୌଣ-ଭାବେ ଥିବାରୁ ଲକ୍ଷଣା ଅମୁଖ୍ୟ ବାଚକ ଶକ୍ତି, କିନ୍ତୁ ବ୍ୟଞ୍ଜକତା ବାଚକତାଠାରୁ ଅତ୍ୟନ୍ତ ଭିନ୍ନ । ତାହା ଆଗରୁ ପ୍ରତିପାଦନ କରାଯାଇଅଛି । ଅତଏବ ବ୍ୟଞ୍ଜନା ଲକ୍ଷଣାରେ ଅନ୍ତର୍ଭୁକ୍ତ ହୋଇ ନ ପାରେ ।

୪୧୬ । ଏ ଦୁହିଙ୍କ ମଧ୍ୟରେ ଆଉ ଏକପ୍ରକାର ରୂପଭେଦ ମଧ୍ୟ ରହିଅଛି, ଯଥା—ଯେଉଁଠି "ଗଙ୍ଗାୟାଂ ଘୋଷଃ" ଭଳି ଲକ୍ଷଣଲକ୍ଷଣା ହେଉଛି, ସେ ସ୍ଥଳରେ ଶବ୍ଦର ମୁଖ୍ୟ ଅର୍ଥ ଉପଲକ୍ଷଣ ବିଧିରେ ଅନ୍ୟ ଅର୍ଥକୁ ବୁଝାଉଛି, ସେ ସ୍ଥଳରେ ମୁଖ୍ୟଅର୍ଥ ଲକ୍ଷ୍ୟ ଅର୍ଥରୂପରେ ପରିଣତ ହେଉଅଛି ଯଥା—ଗଙ୍ଗା ଶବ୍ଦର ପ୍ରବାହରୂପ ମୁଖ୍ୟ ଅର୍ଥ "ତଟ" ରୂପକ ଅର୍ଥରେ ପରିଣତ ହେଉଅଛି, କିନ୍ତୁ ବ୍ୟଞ୍ଜନା ବୃତ୍ତିରେ ଯେଉଁଠି ଅର୍ଥ ଅନ୍ୟ ଅର୍ଥକୁ ପ୍ରକାଶ କରୁଛି, ସେଠାରେ ଉକ୍ତ ମୁଖ୍ୟଅର୍ଥ ପ୍ରଦୀପପରି ସ୍ୱ ସ୍ୱ ରୂପକୁ ପ୍ରକାଶକରି ଅନ୍ୟ ବ୍ୟଙ୍ଗ୍ୟଅର୍ଥକୁ ପ୍ରକାଶ କରୁଛି । ଯଥା —"ଲୀଳାକମଳପତ୍ରାଣି" ଇତ୍ୟାଦି ସ୍ଥଳରେ ମୁଖ ନମନପ୍ରଭୃତି ବ୍ରୀଡ଼ାଦି ବ୍ୟଭିଚାରି ଭାବକୁ ପ୍ରତୀତ କରାଉ ଅଛନ୍ତି । ଏହିପରି ଅନ୍ୟ ସ୍ଥଳରେ ମଧ୍ୟ ।

ସ୍ୱରୂପଂ ପ୍ରକାଶୟନ୍ନେବାସାବନ୍ୟସ୍ୟ ପ୍ରକାଶକଃ ପ୍ରତୀୟତେ ପ୍ରଦୀପବତ୍ । ଯଥା—"ଲୀଲାକମଲପତ୍ରାଣି ଗଣୟାମାସ ପାର୍ବତୀ" ଇତ୍ୟାଦୌ ॥

୪୧୭ । ଯଦ ଚ ଯତ୍ରାତିରସ୍କୃତସ୍ୱପ୍ରତୀତିରର୍ଥୋଽର୍ଥାନ୍ତରଂ ଲକ୍ଷୟତି, ତତ୍ର ଲକ୍ଷଣାବ୍ୟବହାରଃ କ୍ରିୟତେ, ତଦେବଂ ସତି ଲକ୍ଷଣୈବ ମୁଖ୍ୟଃ ଶବ୍ଦବ୍ୟାପାର ଇତି ପ୍ରାପ୍ତମ୍ । ଯସ୍ମାତ୍ ପ୍ରାୟେଣୈବ ବାକ୍ୟାନାଂ ବାଚ୍ୟବ୍ୟତିରିକ୍ତତାତ୍ପର୍ଯ୍ୟବିଷୟାର୍ଥାବଭାସିତ୍ୱମ୍ ।

୪୧୮ । ନନୁ ତ୍ୱତ୍ପକ୍ଷେଽପି ଯଦାଽର୍ଥୋ ବ୍ୟଙ୍ଗ୍ୟତ୍ରୟଂ ପ୍ରକାଶୟତି ତଦା ଶବ୍ଦସ୍ୟ କୀଦୃଶୋ ବ୍ୟାପାରଃ ।

---

ସାରାଂଶ :—ଲକ୍ଷଣାରେ ବାଚ୍ୟାର୍ଥର ସତ୍ତା ରହୁ ନାହିଁ । କିନ୍ତୁ ବ୍ୟଞ୍ଜନାରେ ବାଚ୍ୟାର୍ଥର ସତ୍ତା ରହିଥାଏ । ଏଣୁ ଏ ଦୁହେଁ ଏକ ବସ୍ତୁ ନୁହନ୍ତି ।

୪୧୭ । ଯଦି କୁହାଯାଏ "ଲୀଳ କମଲପତ୍ରାଣି" ପ୍ରଭୃତି ବ୍ୟଙ୍ଗ୍ୟାର୍ଥ ସ୍ଥଳରେ ବାଚ୍ୟଅର୍ଥ ସ୍ୱାର୍ଥକୁ ତ୍ୟାଗ ନ କରି ବ୍ରୀଡ଼ାଦିରୂପ ଅନ୍ୟ ଅର୍ଥକୁ ଲକ୍ଷଣାବୃତ୍ତିରେ ବୁଝାଉଛି, ଏଣୁ ଏଠାରେ ଲକ୍ଷଣାବୃତ୍ତି । (ଏଣୁ ବ୍ୟଞ୍ଜନାର ଆବଶ୍ୟକତା ନାହିଁ) । ତାହାହେଲେ ଲକ୍ଷଣାବୃତ୍ତି ଶବ୍ଦର ମୁଖ୍ୟ ବୃତ୍ତି ହୋଇଯିବ । କାରଣ ଅଧିକାଂଶ ବାକ୍ୟରେ ତ ବାଚ୍ୟ ଅର୍ଥ ଭିନ୍ନ ଅନ୍ୟ ଏକ ତାତ୍ପର୍ଯ୍ୟ ପ୍ରକାଶ ପାଉଥିବାର ଦେଖାଯାଏ । [ତାତ୍ପର୍ଯ୍ୟ ଅର୍ଥ ଓ ମୁଖ୍ୟ ଅର୍ଥ ଏ ଉଭୟ ପ୍ରକାଶକ ହିସାବରେ ଲକ୍ଷଣା ମୁଖ୍ୟଅର୍ଥ ହେଉ ? ଏହା ମଧ୍ୟ କହି ପାରିବ ନାହିଁ, ଯେଣୁ ତୁମ୍ଭ ମତରେ ମଧ୍ୟ ଲକ୍ଷଣା, ଶବ୍ଦର ମୁଖ୍ୟ ବୃତ୍ତି ନୁହେ କିନ୍ତୁ ଗୁଣବୃତ୍ତି (ଅମୁଖ୍ୟ ବୃତ୍ତି) ।]

୪୧୮ । ପ୍ରତିବାଦୀର ପ୍ରଶ୍ନ—ଅଚ୍ଛା, ତୁମ୍ଭମାନଙ୍କର ଅର୍ଥ ଯେଉଁଠି ବସ୍ତୁ-ଅଲଙ୍କାର-ରସାଦି-ରୂପକ ତ୍ରିବିଧ ବ୍ୟଙ୍ଗ୍ୟକୁ ପ୍ରକାଶ କରୁଛି, ସେ ସ୍ଥଳରେ ଶବ୍ଦର କି ବ୍ୟାପାର ହେଉଅଛି ? (ଏଠାରେ ପ୍ରଶ୍ନକର୍ତ୍ତାର ଅଭିପ୍ରାୟ ଏହି ଯେ—ଶବ୍ଦର ବାଚକତା ମୁଖ୍ୟ ବ୍ୟାପାର ଓ ଗୁଣବୃତ୍ତି ଗୌଣ ବ୍ୟାପାର ଭିନ୍ନ ଅନ୍ୟ କୌଣସି ବ୍ୟାପାର ହୋଇ ନ ପାରେ) ।

୪୧୯ । ଉଚ୍ୟତେ,—ପ୍ରକରଣାଦ୍ୟବଚ୍ଛିନ୍ନଶବ୍ଦବଶେନୈବାର୍ଥସ୍ୟ ତଥାବିଧଂ ବ୍ୟଞ୍ଜକତ୍ୱମିତି ଶବ୍ଦସ୍ୟ ତତ୍ରୋପଯୋଗଃ କଥମପହ୍ନୂୟତେ ?

୪୨୦ । ବିଷୟଭେଦୋଽପି ଗୁଣବୃତ୍ତିବ୍ୟଞ୍ଜକତ୍ୱୟୋଃ ସ୍ପଷ୍ଟ ଏବ । ଯତୋ ବ୍ୟଞ୍ଜକତ୍ୱସ୍ୟ ରସାଦୟୋଽଲଂକାରବିଶେଷା ବ୍ୟଙ୍ଗ୍ୟସ୍ୱରୂପାବଚ୍ଛିନ୍ନଂବସ୍ତୁ ଚେତି ତ୍ରୟଂ ବିଷୟଃ ।

୪୨୧ । ଅସ୍ଖଲଦ୍‌ଗତିତ୍ୱଂ ସମୟାନୁପଯୋଗିତ୍ୱଂ ପୃଥଗବଭାସିତ୍ୱଂ ଚେତି ତ୍ରୟମ୍ ।

---

୪୧୯ । ଉତ୍ତର :—ଶବ୍ଦ ପ୍ରକରଣାଦି ବିଶିଷ୍ଟ ହୋଇ ରହିଥିବାରୁ ତାହାର ଅର୍ଥ ବ୍ୟଞ୍ଜକ ହୁଏ, ତେଣୁ ଅର୍ଥ ଯେଉଁଠି ବ୍ୟଞ୍ଜକ ହୁଏ, ସେ ସ୍ଥଳରେ ଶବ୍ଦ ସହକାରି-କାରଣ । ତୁମ୍ଭେ କାହିଁକି ଏହା ସ୍ୱୀକାର କରୁ ନାହିଁ ? (ଉତ୍ତରକର୍ତ୍ତାର ଆଶୟ ଏହି ଯେ, ଅର୍ଥର ବ୍ୟଞ୍ଜକତା ସ୍ଥଳରେ ଶବ୍ଦ ସହକାରି ବ୍ୟଞ୍ଜକ ହେଉଥିବା ହେତୁ ତାହାର ବ୍ୟାପାର ମୁଖ୍ୟ । ଏହି ମୁଖ୍ୟ ବ୍ୟାପାର ଅଭିଧା ନୁହେ କିନ୍ତୁ ବ୍ୟଞ୍ଜନା, କାରଣ ଅଭିଧା ସଙ୍କେତସାପେକ୍ଷ, କିନ୍ତୁ ବ୍ୟଞ୍ଜକତା ପ୍ରକରଣାଦି ସାପେକ୍ଷ) ।

୪୨୦ । ଲକ୍ଷଣା ଓ ବ୍ୟଞ୍ଜନାର ପରସ୍ପର ବିଷୟ ଭେଦ ମଧ୍ୟ ସୁସ୍ପଷ୍ଟ । ଯେଣୁ ରସାଦି, ଅଳଙ୍କାରବିଶେଷ ଓ ବ୍ୟଙ୍ଗ୍ୟ ବସ୍ତୁ ଏହି ତିନିଗୋଟି ବ୍ୟଞ୍ଜନାର ବିଷୟ ।

(କିନ୍ତୁ ଲକ୍ଷଣାର କେବଳ ବାଚ୍ୟ ବସ୍ତୁମାତ୍ର ବିଷୟ । ଏଣୁ ଉଭୟ ଭିନ୍ନ) ।

୪୨୧ । ପୁନଶ୍ଚ ବ୍ୟଙ୍ଗାର୍ଥ ବୋଧ ପାଇଁ ଶବ୍ଦ ସ୍ଖଳଦ୍‌ଗତି (ଅସମର୍ଥ) ନୁହେ, ଏବଂ ସଙ୍କେତ (ସମୟ)ର ଅନୁପଯୋଗିତା ହୁଏ ନାହିଁ ପୁନଶ୍ଚ ଅଭିଧେୟ ଅର୍ଥଠାରୁ ବ୍ୟଙ୍ଗ୍ୟ, ପୃଥକ୍‌ଭାବେ ପ୍ରତୀତ ହୋଇଥାଏ ।

୪୨୨ । ତତ୍ର ରସାଦପ୍ରତୀତର୍ଗୁଣବୃତ୍ତିରିତ ନ କେନଚିଦୁଚ୍ୟତେ, ନଚ ଶକ୍ୟତେ ବକ୍ତୁମ୍ । ବ୍ୟଙ୍ଗ୍ୟାଲଂକାର ପ୍ରତୀତେରପି ।

୪୨୩ । ତଥୈବ ବସ୍ତ୍ୱନ୍ତରୁଚିପ୍ରତୀତୟେ ସ୍ୱଶବ୍ଦାନଭିଧେୟତ୍ୱେନ ଯତ୍ ପ୍ରତିପାଦୟିତୁମିଷ୍ୟତେ, ତଦ୍ ବ୍ୟଙ୍ଗ୍ୟମ୍ ।

୪୨୪ । ତଚ୍ଚସର୍ବଂ ନ ଗୁଣବୃତ୍ତେର୍ବିଷୟଃ ।

---

(କିନ୍ତୁ ଲକ୍ଷ୍ୟାର୍ଥ ସ୍ଥଳରେ ଶବ୍ଦର ସ୍ୱାର୍ଥ ବ୍ୟାହତ, ସଂକେତ ଯଥା :—"ଗଙ୍ଗାୟାଂ ଘୋଷଃ" ବାକ୍ୟରେ ଗଙ୍ଗା ଶବ୍ଦର 'ଭଗୀରଥ ପ୍ରବର୍ତ୍ତିତ ଜଳ"—ପ୍ରବାହ ଆଦି, ତାହାର ଉପଯୋଗିତା ନାହିଁ ଏବଂ ମୁଖ୍ୟାର୍ଥ ଲକ୍ଷ୍ୟାର୍ଥ ଉଭୟର ବୋଧ ନ ହୋଇ କେବଳ ଲକ୍ଷ୍ୟାର୍ଥର ବୋଧ ହୁଏ । ଏଣୁ ଉକ୍ତ କାରଣମାନଙ୍କରୁ ଲକ୍ଷଣାଠାରୁ ବ୍ୟଞ୍ଜନା ଭିନ୍ନ) ।

୪୨୨ । ପୁନଶ୍ଚ କେହିହେଲେ ଲକ୍ଷଣା ଦ୍ୱାରା ରସାଦିର ଓ ବ୍ୟଙ୍ଗ୍ୟ ଅଳଙ୍କାରମାନଙ୍କର ପ୍ରତୀତ ହେଉଅଛି ବୋଲି କହୁ ନାହାନ୍ତି, କିମ୍ବା କହି ପାରିବେ ନାହିଁ ।

୪୨୩ । ରସାଦି ଓ ବ୍ୟଙ୍ଗ୍ୟ ଅଳଙ୍କାରମାନେ ଯେଉଁପରି ମନୋହର, ସେହିପରି ବସ୍ତୁକୁ ମନୋହର କରି ପ୍ରକାଶ କରିବା ଇଚ୍ଛାରେ ତାହାର ବାଚକ ଶବ୍ଦ ଦ୍ୱାରା ନ କହି ଯେଉଁଠି ଅନ୍ୟ (ବ୍ୟଞ୍ଜକ) ଶବ୍ଦ ଦ୍ୱାରା ପ୍ରତିପାଦନ କରାଯାଇଥାଏ, ତାହା ବ୍ୟଙ୍ଗ୍ୟ ବସ୍ତୁ ।

୪୨୪ । ଏହି କାରଣରୁ ସବୁପ୍ରକାର ବସ୍ତୁ' ଗୁଣବୃତ୍ତିର ବିଷୟ ନୁହେ । [କେବଳ "ନିଃଶ୍ୱାସାନ୍ଧ ଇବାଦର୍ଶଶ୍ଚନ୍ଦ୍ରମା ନ ପ୍ରକାଶତେ" ଇତ୍ୟାଦି ଲକ୍ଷଣାମୂଳକ ବସ୍ତୁ ଧ୍ୱନି ସ୍ଥଳର ବସ୍ତୁ ଲକ୍ଷଣାମୂଳକ, କିନ୍ତୁ ତଦ୍ଭିନ୍ନ ଅନ୍ୟ ସମସ୍ତ ବସ୍ତୁ ଧ୍ୱନି, ଯଥା "ଭ୍ରମ ଧାର୍ମିକ" ଇତ୍ୟାଦି ସ୍ଥଳରେ, ତାହା ସବୁ ଲକ୍ଷଣାର ବିଷୟ ନୁହେ । କେତେକ ସ୍ଥଳରେ ବସ୍ତୁ ଧ୍ୱନି ଲକ୍ଷଣାବୃତ୍ତିର ସାହାଯ୍ୟ ନେଉଥିବାରୁ ଗ୍ରନ୍ଥକାର ପୂର୍ବରୁ ଦର୍ଶାଇଛନ୍ତି ଯେ—"କସ୍ୟ ଚିଦ୍ ଧ୍ୱନି ଭେଦସ୍ୟ ସା ତୁ ସ୍ୟାଦୁପଲକ୍ଷଣମ୍ ଏଣୁ ଅଳଙ୍କାର ଓ ରସାଦି ପରି ବସ୍ତୁ ମଧ୍ୟ ଲକ୍ଷଣାରେ ଅନ୍ତର୍ଭୁକ୍ତ ହୋଇ ନ ପାରେ ।]

୪୨୫ । ପ୍ରସିଦ୍ଧ୍ୟନୁରୋଧାଭ୍ୟାମପି ଗୌଣାନାଂ ଶବ୍ଦାନାଂ ପ୍ରୟୋଗଦର୍ଶନାତ୍ । ତଥୋକ୍ତଂ ପ୍ରାକ୍ ।

୪୨୬ । ଯଦପି ଚ ବିଷୟଃ, ତଦପି ଚ ବ୍ୟଞ୍ଜକତ୍ୱାନୁପ୍ରବେଶେନ ।

୪୨୭ । ତସ୍ମାଦ୍ ଶବ୍ଦବୃତ୍ତେରପି ବ୍ୟଞ୍ଜକତ୍ୱସ୍ୟାତ୍ୟନ୍ତବିଲକ୍ଷଣତ୍ୱମ୍ ।

୪୨୮ । ବାଚକତ୍ୱ-ଗୁଣବୃତ୍ତିବିଲକ୍ଷଣସ୍ୟାପି ଚ ତସ୍ୟ, ତଦୁଭୟାଶ୍ରୟତ୍ୱେନ ବ୍ୟବସ୍ଥାନମ୍ ।

୪୨୯ । ବ୍ୟଞ୍ଜକତ୍ୱଂ ହି କ୍ୱଚିତ୍ ବାଚକତ୍ୱାଶ୍ରୟେଣ ବ୍ୟବତିଷ୍ଠତେ—ଯଥା ବିବକ୍ଷିତାନ୍ୟପରବାଚ୍ୟେ ଧ୍ୱନୌ । କ୍ୱଚିତ୍ତୁ ଗୁଣବୃତ୍ତ୍ୟାଶ୍ରୟେଣ, ଯଥା ଅବିବକ୍ଷିତବାଚ୍ୟେ

---

୪୨୫ । ପୁନଶ୍ଚ ଗୁଣବୃତ୍ତିର ସବୁସ୍ଥଳରେ ମଧ୍ୟ,ବ୍ୟଙ୍ଗ୍ୟ ବସ୍ତୁ ନାହିଁ । କାରଣ କେଉଁଠି ପ୍ରସିଦ୍ଧି ଅନୁସାରେ ଯଥା—"ଲାବଣ୍ୟାଦି" ଶବ୍ଦ, କେଉଁଠି ବା ପ୍ରୟୋଗାନୁରୋଧରୁ "ବଦନ୍ତି ବିସିନୀ ପତ୍ରଶୟନଂ" ପ୍ରଭୃତିର "ବଦନ୍ତି" ପ୍ରଭୃତି ଶବ୍ଦ, ଲାକ୍ଷଣିକ ଶବ୍ଦରୂପେ ବ୍ୟବହୃତ ହୋଇଥିଲେ ମଧ୍ୟ ସେଠାରେ ବ୍ୟଙ୍ଗ୍ୟବସ୍ତୁ ନାହିଁ । ଏହା ପୂର୍ବରୁ ପ୍ରଥମ ଉଦ୍ଦ୍ୟୋତରେ କୁହାଯାଇଅଛି ।

୪୨୬ । ଲାକ୍ଷଣିକ ଶବ୍ଦ ଦ୍ୱାରା ଯେଉଁ "ଆତିଶଯ୍ୟାଦି ରୂପ ବସ୍ତୁ" ପ୍ରତୀତ ହେଉଛି ତାହା ବ୍ୟଞ୍ଜନା ସାହାଯ୍ୟରେ କିନ୍ତୁ ଲକ୍ଷଣା ଦ୍ୱାରା ନୁହେ ।

୪୨୭ । ତେଣୁ ଲକ୍ଷଣାଠାରୁ ବ୍ୟଞ୍ଜନାର ଅତ୍ୟନ୍ତ ବୈଲକ୍ଷଣ୍ୟ ରହିଛି । ଅତଏବ ଲକ୍ଷଣା ପୃଥକ୍ ଏବଂ ବ୍ୟଞ୍ଜନା ପୃଥକ୍ ।

୪୨୮ । ବାଚକତା ଓ ଲକ୍ଷକତାଠାରୁ ଅତ୍ୟନ୍ତ ବିଲକ୍ଷଣ ହେଲେ ମଧ୍ୟ, ବ୍ୟଞ୍ଜକତା ସେ ଉଭୟଙ୍କୁ ଆଶ୍ରୟ କରି ରହିଅଛି ।

୪୨୯ । କ୍ୱଚିତ୍ ବ୍ୟଞ୍ଜକତା ବାଚକତାକୁ ଆଶ୍ରୟ କରି ରହିଅଛି, ଯଥା—ବିବକ୍ଷିତାନ୍ୟପରବାଚ୍ୟଧ୍ୱନି ସ୍ଥଳ, କ୍ୱଚିତ୍ ଲକ୍ଷଣାକୁ ଆଶ୍ରୟ କରି ରହିଅଛି, ଯଥା—ଅବିବକ୍ଷିତବାଚ୍ୟଧ୍ୱନି ସ୍ଥଳ । ଅଭିଧା ଓ

ଧ୍ୱନୌ । ତଦୁଭୟାଶ୍ରୟତ୍ୱ ପ୍ରତିପାଦନାୟୈବ ଚ ଧ୍ୱନେଃ ପ୍ରଥମତରଂ ଦ୍ୱୌ ପ୍ରଭେଦାବୁପନ୍ୟସ୍ତୌ ।

୪୩୦ । ତଦୁଭୟାଶ୍ରୟତ୍ୱାଚ ତଦେକରୂପତ୍ୱଂ ତସ୍ୟ ନ ଶକ୍ୟତେ ବକ୍ତୁମ୍ ।

୪୩୧ । (କ) ଯସ୍ମାନ୍ନ ତଦ୍ୱାଚକତ୍ୱରୂପମେବ, କ୍ୱଚଲ୍ଲକ୍ଷଣାଶ୍ରୟେଣ ବୃତ୍ତେଃ ।

(ଖ) ନଚ ଲକ୍ଷଣୈକରୂପମେବ, ଅନ୍ୟତ୍ର ବାଚକତ୍ୱାଶ୍ରୟେଣ ବ୍ୟବସ୍ଥାନାତ୍ ।

(ଗ) ନ ଚୋଭୟଧର୍ମତ୍ୱେନୈବ ତଦେକୈକରୂପଂ ନ ଭବତି, ଯାବତ୍ ବାଚକତ୍ୱ-ଲକ୍ଷଣାଦରୂପରହିତଶବ୍ଦଧର୍ମତ୍ୱେନାପି ।

---

ଲକ୍ଷଣା ଉଭୟଙ୍କୁ ଆଶ୍ରୟ କରି ବ୍ୟଞ୍ଜକତା ରହିଛି । ଏହିକଥା ପ୍ରତିପାଦନ କରିବା ଉଦ୍ଦେଶ୍ୟରେ ହିଁ ପ୍ରଥମରୁ ଧ୍ୱନିର ବିବକ୍ଷିତାନ୍ୟପରବାଚ୍ୟ ଓ ଅବିବକ୍ଷିତବାଚ୍ୟ ରୂପରେ ଦୁଇଗୋଟି ଭେଦ ଦର୍ଶା ହୋଇଅଛି ।

୪୩୦ । ଅଭିଧା ଓ ଲକ୍ଷଣା ଉଭୟଙ୍କୁ ଆଶ୍ରୟକରି ରହିଥିବାରୁ ବ୍ୟଞ୍ଜନା ଉକ୍ତ ଦୁଇ ବୃତ୍ତିର ଏକରୂପ ବୋଲି କୁହାଯାଇ ନପାରେ ଅର୍ଥାତ୍ ଅଭିଧାରେ କିମ୍ବା ଲକ୍ଷଣାରେ ଅନ୍ତର୍ଭୁକ୍ତ ହୋଇ ନପାରେ ।

୪୩୧ । ଏହାର କାରଣ ଯଥା—

(କ) ଏହି ବ୍ୟଞ୍ଜନା କେତେକ ସ୍ଥଳରେ ଲକ୍ଷଣାକୁ ଆଶ୍ରୟକରି ରହିଅଛି ତେଣୁ ଅଭିଧା ସ୍ୱରୂପ ହୋଇ ନ ପାରେ ।

(ଖ) ଏବଂ ସେ ଲକ୍ଷଣାସ୍ୱରୂପ ମଧ୍ୟ ନୁହେ ଯେଣୁ କେତେକ ସ୍ଥଳରେ ବାଚକତାକୁ ଆଶ୍ରୟ କରି ରହିଅଛି ।

(ଗ) ଅଭିଧାଶ୍ରୟାର ଅଭିଧାରେ ଓ ଲକ୍ଷଣାଶ୍ରୟାର ଲକ୍ଷଣାରେ ଅନ୍ତର୍ଭାବ ମଧ୍ୟ ହୋଇ ନପାରେ, ଯେଣୁ ବାଚକତା ଓ ଲକ୍ଷଣାରୁ ବ୍ୟତିରିକ୍ତ କେବଳ ଶବ୍ଦ ସ୍ଥଳରେ ମଧ୍ୟ ବ୍ୟଞ୍ଜକତା ରହିପାରୁଛି ।

୪୩୨ । ତଥାହି—ଗୀତଧ୍ୱନୀନାମପି ବ୍ୟଞ୍ଜକତ୍ୱମସ୍ତି ରସାଦି-
ବିଷୟମ୍ । ନଚ ତେଷାଂ ବାଚକତ୍ୱଂ ଲକ୍ଷଣା ବା
କଥଂଚିଲ୍ଲକ୍ଷ୍ୟତେ । ଶବ୍ଦାଦନ୍ୟତ୍ରାପି ଚ ବିଷୟେ
ବ୍ୟଞ୍ଜକତ୍ୱସ୍ୟାପି ଦର୍ଶନାତ୍ ବାଚକତ୍ୱାଦିଶବ୍ଦଧର୍ମ-
ପ୍ରକାରତ୍ୱମଯୁକ୍ତଂ ବକ୍ତୁମ୍ ।

୪୩୩ । ଯଦି ବାଚକତ୍ୱଲକ୍ଷଣାଦୀନାଂ ଶବ୍ଦପ୍ରକାରାଣାଂ ପ୍ରସିଦ୍ଧ-
ପ୍ରକାରବିଲକ୍ଷଣତ୍ୱେଽପି ବ୍ୟଞ୍ଜକତ୍ୱଂ ବିଲକ୍ଷଣତ୍ୱେନ
ପରିକଲ୍ପ୍ୟତେ, ତତ୍ ଶବ୍ଦସ୍ୟୈବ ପ୍ରକାରତ୍ୱେନ
କସ୍ମାନ୍ନ ପରିକଲ୍ପ୍ୟତେ ?

୪୩୪ । ତଦେବଂ ଶାବ୍ଦେ ବ୍ୟବହାରେ ତ୍ରୟଃ ପ୍ରକାରାଃ—
ବାଚକତ୍ୱଂ ଗୁଣବୃତ୍ତିଃ, ବ୍ୟଞ୍ଜକତ୍ୱଂ ଚ । ତତ୍ର ବ୍ୟଞ୍ଜ-
କତ୍ୱେ ଯଦା ବ୍ୟଙ୍ଗ୍ୟପ୍ରାଧାନ୍ୟଂ, ତଦା ଧ୍ୱନିଃ, ତସ୍ୟ

---

୪୩୨ । ବାଚକ ଲକ୍ଷକ ବ୍ୟତୀତ କେବଳ ଶବ୍ଦର ବ୍ୟଞ୍ଜକତାର ଉଦାହରଣ ଯଥା—ଗୀତ ଶବ୍ଦ ମଧ୍ୟ ରସାଦିର ବ୍ୟଞ୍ଜକ ହୋଇ ପାରୁଛି । ଗୀତ ଶବ୍ଦରେ ବାଚକତା ବା ଲକ୍ଷଣା କିଛି ଲକ୍ଷିତ ହୁଏ ନାହିଁ । ଶବ୍ଦଛଡ଼ା ଅନ୍ୟ (ଚେଷ୍ଟାପ୍ରଭୃତି) ମଧ୍ୟ ବ୍ୟଞ୍ଜକ ହେବା ଦେଖାଯାଉ ଥିବାରୁ ବାଚକତା ଓ ଲକ୍ଷଣାରୂପକ ଶବ୍ଦ ଧର୍ମ ବ୍ୟାପାରରେ ବ୍ୟଞ୍ଜକତାକୁ ଅନ୍ତର୍ଭୁକ୍ତ ହେଉଛି ବୋଲି କହିବା ଯୁକ୍ତିଯୁକ୍ତ ନୁହେ ।

୪୩୩ । ଯଦି ସୁପ୍ରସିଦ୍ଧ ଅଭିଧା ଲକ୍ଷଣାଦି ଶବ୍ଦ ବ୍ୟାପାରମାନଙ୍କର ବିଲକ୍ଷଣ ହୋଇଥିବା ହେତୁ ବ୍ୟଞ୍ଜକତାକୁ ଏଥିରୁ ପୃଥକପ୍ରକାର ବୋଲି ସ୍ୱୀକାର କରାଯିବ, ତେବେ ତାହାକୁ (ବ୍ୟଞ୍ଜକତାକୁ) ଶବ୍ଦର ଆଉ ଗୋଟିଏ ବ୍ୟାପାର (ପ୍ରକାର ବା ଧର୍ମ) ବୋଲି କାହିଁକି ସ୍ୱୀକାର କରା ନ ଯିବ ?

୪୩୪ । ଅତଏବ ଭାଷାରୂପରେ ଲୋକମାନଙ୍କ ଦ୍ୱାରା ବ୍ୟବହୃତ ହେଉଥିବା ଶବ୍ଦମାନଙ୍କର ତିନିଗୋଟି ବ୍ୟାପାର,୧—ଅଭିଧା,—୨—ଗୁଣ-ବୃତ୍ତି (ଲକ୍ଷଣା) ୩—ବ୍ୟଞ୍ଜନା ।

ଗୁଣବୃତ୍ତିବିଷୟିତବାଚ୍ୟେ ବିବକ୍ଷିତାନ୍ୟପରବାଚ୍ୟଶ୍ଚେତି ଦ୍ୱୌ ପ୍ରଭେଦାବନୁକ୍ରାନ୍ତୌ ପ୍ରଥମତରମ୍, ତୌ ସବିସ୍ତରଂ ନିର୍ଣ୍ଣୀତୌ ।

୪୩୫ । ଅନ୍ୟେ ବ୍ରୂୟୁଃ—ନନୁ ବିବକ୍ଷିତାନ୍ୟପରବାଚ୍ୟେ ଧ୍ୱନୌ ଗୁଣବୃତ୍ତିତା ନାସ୍ତୀତି ଯଦୁଚ୍ୟତେ, ତଦ୍ ଯୁକ୍ତମ୍, ଯସ୍ମାତ୍ ବାଚ୍ୟବାଚକପ୍ରତୀତିପୂର୍ବିକା ଯତ୍ରାର୍ଥାନ୍ତରପ୍ରତିପତ୍ତିଃ, ତତ୍ର କଥଂ ଗୁଣବୃତ୍ତି ବ୍ୟବହାରଃ ।

୪୩୬ । ନହି ଗୁଣବୃତ୍ତୌ ଯଦା ନିମିତ୍ତେନ କେନଚିତ୍ ବିଷୟାନ୍ତରେ ଶବ୍ଦ ଆରୋପ୍ୟତେ ଅତ୍ୟନ୍ତତିରସ୍କୃତ ସ୍ୱାର୍ଥ :—ଯଥା—"ଅଗ୍ନିର୍ମାଣବକଃ" ଇତ୍ୟାଦୌ,

---

ବ୍ୟଞ୍ଜନା ସ୍ଥଳରେ ଯଦି ବ୍ୟଙ୍ଗ୍ୟର ପ୍ରାଧାନ୍ୟ ଥାଏ, ତେବେ ତାହା ଧ୍ୱନି, ଏବଂ ସେ ଧ୍ୱନିର ଅବିବକ୍ଷିତବାଚ୍ୟ ଓ ବିବକ୍ଷିତାନ୍ୟପରବାଚ୍ୟ ରୂପରେ ଦୁଇଗୋଟି ପ୍ରଭେଦ ଅଛି ବୋଲି ପ୍ରଥମେ କୁହାଯାଇ ଥିଲି, ବର୍ତ୍ତମାନ ବିସ୍ତରଭାବେ ତାହାର ନିର୍ଣ୍ଣୟ କରାଗଲା ।

୪୩୫ । ଅଭିଧା ମୂଳଧ୍ୱନି ସ୍ଥଳରେ ବ୍ୟଞ୍ଜନା ରହୁ ? କିନ୍ତୁ ଲକ୍ଷଣା ମୂଳଧ୍ୱନି ସ୍ଥଳରେ ଲକ୍ଷଣା ଦ୍ୱାରା ବ୍ୟଙ୍ଗ୍ୟାର୍ଥ ବୋଧ ହେଉ ? ଏହି ଉଦ୍ଦେଶ୍ୟ ରଖି ଯାଇ କେହି ପଚ୍ଛରେ—ପ୍ରଶ୍ନ :—ବିବକ୍ଷିତାନ୍ୟପରବାଚ୍ୟ ଧ୍ୱନି ସ୍ଥଳରେ ଗୁଣବୃତ୍ତିତା ନାହିଁ ବୋଲି ଯାହା କହୁଛ ତାହା ଯୁକ୍ତିଯୁକ୍ତ । ଯେଣୁ ସେଠାରେ ପ୍ରଥମେ ବାଚ୍ୟ ବାଚକର ପ୍ରତୀତି ହୁଏ ତା'ପରେ ବ୍ୟଙ୍ଗ୍ୟର ପ୍ରତୀତି ହୁଏ ।

(ବାଚ୍ୟାର୍ଥ ବାଧିତ ହେଲେ ଗୁଣବୃତ୍ତି ହୁଅନ୍ତା, ବାଚ୍ୟାର୍ଥର'ତ ସେଠାରେ ବାଧା ନାହିଁ) ଗୁଣବୃତ୍ତି ହୁଅନ୍ତା କିପରି ? (ଏଣୁ ତୁମ୍ଭ ମତ ଠିକ୍) ।

୪୩୬ । ଗୁଣବୃତ୍ତି (ଲକ୍ଷଣା)ରେ ଯେଉଁ ସ୍ଥଳରେ କି ଶବ୍ଦ କୌଣସି ପ୍ରୟୋଜନ ବଶତଃ ମୁଖ୍ୟଅର୍ଥକୁ ବିଲ୍‌କୁଲ୍ ପରିତ୍ୟାଗ କରି ଅନ୍ୟ ଅର୍ଥରେ ବ୍ୟବହୃତ ହୁଏ, ଯଥା—

ଯଦା ବା ସ୍ୱାର୍ଥମଂଶେନାପରିତ୍ୟଜ୍ୟାଂଶୀ ସମ୍ବନ୍ଧ-ଦ୍ୱାରେଣ ବିଷୟାନ୍ତରମାକ୍ରାମତି, ଯଥା "ଗଙ୍ଗାୟାଂ ଘୋଷ" ଇତ୍ୟାଦୌ, ତଦାଽବିବକ୍ଷିତବାଚ୍ୟତ୍ୱ-ମୁପପଦ୍ୟତେ ।

୪୩୭ । ଅତଏବ ଚ ବିବକ୍ଷିତାନ୍ୟପରବାଚ୍ୟେ ଧ୍ୱନୌ ବାଚ୍ୟ-ବାଚକୟୋଃ ଦ୍ୱୟୋରପି ସ୍ୱରୂପପ୍ରତୀତିରର୍ଥାବଗମନଂ

---

"ଅଗ୍ନିର୍ମାଣବକଃ" (ପିଲାଟି ନିଆଁ) ଇତ୍ୟାଦି ଲକ୍ଷଣଲକ୍ଷଣା ସ୍ଥଳ, ସେଉଁଠାରେ ବା ଶବ୍ଦ ସର୍ବାଂଶରେ ସ୍ୱାର୍ଥତ୍ୟାଗ ନ କରି ମୁଖ୍ୟାର୍ଥ ସମ୍ବନ୍ଧ ଅନ୍ୟ ଅର୍ଥକୁ ବୁଝାଏ, ଯଥା—"ଗଙ୍ଗାୟାଂ ଘୋଷଃ" (ଗଙ୍ଗାରେ ଗୋପ ଗ୍ରାମ) ଇତ୍ୟାଦି ଉପାଦାନ ଲକ୍ଷଣାସ୍ଥଳ, ଏ ଉଭୟ ବିଧସ୍ଥଳରେ ବାଚ୍ୟାର୍ଥ ବିବକ୍ଷିତ ହେଉ ନ ଥିବାରୁ ଅବିବକ୍ଷିତ ବାଚ୍ୟତ୍ୱ ଯୁକ୍ତଯୁକ୍ତ ।

(ଅଗ୍ନିର୍ମାଣବକଃ, ପିଲାଟି ନିଆଁ) ଅଗ୍ନି ସାଦୃଶ୍ୟରୁ "ପିଲାଟି ନିଆଁ-ପରି ତେଜସ୍ୱୀ," ଅତଏବ ଏଠାରେ ଅଗ୍ନିର ଲକ୍ଷ୍ୟାର୍ଥ ତେଜସ୍ୱୀ, ତାହା ଶବ୍ଦର ମୁଖ୍ୟାର୍ଥକୁ ସଂପୂର୍ଣ୍ଣ ତ୍ୟାଗ କରୁଛି ଏଣୁ ଏହା ଲକ୍ଷଣ ଲକ୍ଷଣାର ସ୍ଥଳ ।

"ଗଙ୍ଗାୟାଂ ଘୋଷଃ" (ଗଙ୍ଗାରେ ଗୋପ ଗ୍ରାମ) ଗଙ୍ଗାର ସାମୀପ୍ୟ ସମ୍ବନ୍ଧରୁ ଗଙ୍ଗାତଟରେ ଗୋପଗ୍ରାମ । ଏଠାରେ ଗଙ୍ଗାର ଲକ୍ଷ୍ୟାର୍ଥ ଗଙ୍ଗାତଟ, ତାହା ମୁଖ୍ୟାର୍ଥକୁ ସଂପୂର୍ଣ୍ଣ ତ୍ୟାଗ ନ କରି ଆଂଶିକଭାବେ ରକ୍ଷା କରୁଥିବାରୁ ଅଜହତ୍ସ୍ୱାର୍ଥା ବା ଉପାଦାନ ଲକ୍ଷଣାର ସ୍ଥଳ । ଏହା ଗ୍ରନ୍ଥକାରଙ୍କ ମତ, କିନ୍ତୁ ସାହିତ୍ୟ ଦର୍ପଣକାରପ୍ରଭୃତି ଏହାକୁ ଲକ୍ଷଣ ଲକ୍ଷଣାର ଉଦାହରଣରୂପେ ଦର୍ଶାଇ ଅଛନ୍ତି ।

ସାର—ଲକ୍ଷଣଲକ୍ଷଣା ସ୍ଥଳରେ ବାଚ୍ୟ ଆଦୌ ବିବକ୍ଷିତ ନୁହେ ଓ ଉପାଦାନ ଲକ୍ଷଣାସ୍ଥଳରେ ବାଚ୍ୟର ପ୍ରାଧାନ୍ୟ ରହୁ ନାହିଁ । ଏଣୁ ଉଭୟ-ବିଧ ଲକ୍ଷଣା ବିବକ୍ଷିତ ବାଚ୍ୟ ନୁହେ ; ଅତଏବ ଅବିବକ୍ଷିତ ବାଚ୍ୟ ।

୪୩୭ । ଅତଏବ ବିବକ୍ଷିତାନ୍ୟପରବାଚ୍ୟ ଧ୍ୱନି ସ୍ଥଳରେ ବାଚ୍ୟ ବାଚକବୋଧ ଓ ବ୍ୟଙ୍ଗ୍ୟ ପ୍ରତୀତି ଏ ଉଭୟ ରହୁଥିବାରୁ

ର. ଦୃଶ୍ୟତ ଇତି ବ୍ୟଞ୍ଜକତ୍ୱବ୍ୟବହାରେ ଯୁକ୍ତ୍ୟନୁରୋଧୀ ।

୪୭୮ । ସ୍ୱରୂପଂ ପ୍ରକାଶୟନ୍ନେବ ପରାବଭାସକୋ ବ୍ୟଞ୍ଜକ ଇତ୍ୟୁଚ୍ୟତେ । ତଥାବିଧେ ବିଷୟେ ବାଚକତ୍ୱସ୍ୟୈବ ବ୍ୟଞ୍ଜକତ୍ୱମିତି ଗୁଣବୃତ୍ତିବ୍ୟବହାରେ ନିୟମେନୈବ ନ ଶକ୍ୟତେ ବକ୍ତୁମ୍ ।

୪୭୯ । ଅବିବକ୍ଷିତବାଚ୍ୟସ୍ତୁ ଧ୍ୱନେର୍ଗୁଣବୃତ୍ତେଃ କଥଂ ଭିଦ୍ୟତେ, ତସ୍ୟ ପ୍ରଭେଦଦ୍ୱୟେ ଗୁଣବୃତ୍ତିପ୍ରଭେଦଦ୍ୱୟରୂପତା ଲକ୍ଷ୍ୟତ ଏବ ।

---

ସେ ସ୍ଥଳମାନଙ୍କରେ ବାଚ୍ୟ ଓ ବାଚକ ଦୁହିଁଙ୍କର ବ୍ୟଞ୍ଜକତା ଯୁକ୍ତିଯୁକ୍ତ ହେଉଅଛି ।

୪୭୮ । ଅଭିଧାମୂଳ ଧ୍ୱନିସ୍ଥଳରେ ବ୍ୟଞ୍ଜନା ରହୁ; ଲକ୍ଷଣାମୂଳଧ୍ୱନି ସ୍ଥଳରେ ବ୍ୟଞ୍ଜନା କାହିଁକି ରହିବ ଏ ସମ୍ବନ୍ଧରେ ଯୁକ୍ତି ଯଥା—ଯେ ନିଜର ସ୍ୱରୂପକୁ ପ୍ରକାଶ କରି ପରର ସ୍ୱରୂପକୁ ପ୍ରକାଶ କରାଏ, ସେ ହେଉଛି ବ୍ୟଞ୍ଜକ, (ଯଥା—ଦୀପାଦି ଆଲୋକ, ସେ ନିଜକୁ ପ୍ରକାଶ କରିବା ସଙ୍ଗେ ଅନ୍ୟ ବସ୍ତୁକୁ ପ୍ରକାଶ କରିଥାଏ । ଏହି ନ୍ୟାୟରେ ଅଭିଧାମୂଳବ୍ୟଞ୍ଜନା ସ୍ଥଳରେ ବାଚକ ହିଁ ବ୍ୟଞ୍ଜକ ହୁଏ । ଏଥି ବୋଲି ଲକ୍ଷଣାମୂଳ ବ୍ୟଞ୍ଜନା ସ୍ଥଳମାନଙ୍କରେ ଗୁଣବୃତ୍ତିର ବ୍ୟଞ୍ଜକତା ଅଛି ବୋଲି କୁହାଯାଇ ନପାରେ ।

୪୭୯ । ଆଉ ପୁଣି ଅବିବକ୍ଷିତବାଚ୍ୟଧ୍ୱନି ଗୁଣବୃତ୍ତି ବୋଧ ଅର୍ଥଠାରୁ କିପରି ଭିନ୍ନ ହେଉଛି କହ ? ତାହାର ଅର୍ଥାନ୍ତରସଂକ୍ରମିତବାଚ୍ୟ ଓ ଅର୍ଥାନ୍ତରସଂକ୍ରମିତବାଚ୍ୟ ନାମକ ଦୁଇଗୋଟି ପ୍ରଭେଦରେ ଗୁଣବୃତ୍ତିର ଶୁଦ୍ଧା ଓ ଗୌଣୀ ଦୁଇ ଭେଦ ପରିଲକ୍ଷିତ ହେଉଅଛି । ଅର୍ଥାତ୍ ଲକ୍ଷ୍ୟ ଓ ବ୍ୟଙ୍ଗ୍ୟର ପୃଥକ୍ ପୃଥକ୍ ଅନୁଗତି ନାହିଁ । (ପ୍ରତିବାଦୀର ଅଭିପ୍ରାୟ ଯେ—ଲକ୍ଷଣାମୂଳବ୍ୟଞ୍ଜନା ସ୍ଥଳରେ ଲକ୍ଷ୍ୟ ଓ ବ୍ୟଙ୍ଗ୍ୟର ପୃଥକ୍ ବୋଧହେଉ ନ ଥିବାରୁ ସେ ସ୍ଥଳରେ ବ୍ୟଞ୍ଜନା ବୋଲି ଗୋଟିଏ ଅତିରିକ୍ତ ବୃତ୍ତି ସ୍ୱୀକାର କରିବାର ଆବଶ୍ୟକତା ନାହିଁ ।

୪୪୦ । ଯତୋଽସ୍ୟମପି ନ ଦୋଷଃ । ଯସ୍ମାଦବିବକ୍ଷିତବାଚ୍ୟୋ ଧ୍ୱନିର୍ଗୁଣବୃତ୍ତିମାର୍ଗାଶ୍ରୟୋଽପି ଭବତି, ନ ତୁ ଗୁଣବୃତ୍ତିରୂପ ଏବ ।

୪୪୧ । ଗୁଣବୃତ୍ତିର୍ହି ବ୍ୟଞ୍ଜକତ୍ୱଶୂନ୍ୟାଽପି ଦୃଶ୍ୟତେ ।

୪୪୨ । ବ୍ୟଞ୍ଜକତ୍ୱଂ ଚ ଯଥୋକ୍ତଚାରୁତ୍ୱହେତୁଂ ବ୍ୟଙ୍ଗ୍ୟଂ ବିନା ନ ବ୍ୟବତିଷ୍ଠତେ ।

୪୪୩ । ଗୁଣବୃତ୍ତିସ୍ତୁ ବାଚ୍ୟଧର୍ମାଶ୍ରୟେଣୈବ ବ୍ୟଙ୍ଗ୍ୟମାତ୍ରାଶ୍ରୟେଣ ଚାଭେଦୋପଚାରରୂପା ସମ୍ଭବତି । ଯଥା—

---

୪୪୦ । ଲକ୍ଷଣା ସ୍ଥଳରେ ମଧ୍ୟ ବ୍ୟଞ୍ଜନା ରହିଛି ଏହି ମର୍ମରେ ଉତ୍ତର ଯଥା—ଏହା ମଧ୍ୟ ଦୋଷ ନୁହେ; ଯାହା କି ଅବିବକ୍ଷିତବାଚ୍ୟଧ୍ୱନି ଲକ୍ଷଣା ମାର୍ଗକୁ ଆଶ୍ରୟ କରିଛି । ଏହା ବୋଲି ସେ ଲକ୍ଷଣା ସ୍ୱରୂପ ନୁହେ ।

୪୪୧ । ଯେହେତୁ କେତେକ ସ୍ଥଳରେ ଗୁଣବୃତ୍ତିର ବ୍ୟଞ୍ଜକତା ନାହିଁ । (ଧ୍ୱନି ଯଦି ଗୁଣବୃତ୍ତି (ଲକ୍ଷଣା) ସ୍ୱରୂପ ହୁଅନ୍ତା, ତେବେ ପ୍ରତ୍ୟେକ ଲକ୍ଷଣା ସ୍ଥଳରେ ବ୍ୟଙ୍ଗ୍ୟାର୍ଥ ରହନ୍ତା କିନ୍ତୁ "କଳିଙ୍ଗଃ ସାହସିକଃ" ଇତ୍ୟାଦି ରୂଢିମୂଳକ ଲକ୍ଷଣା ସ୍ଥଳମାନଙ୍କରେ ଗୁଣବୃତ୍ତିର ବ୍ୟଞ୍ଜକତା ନାହିଁ) ।

୪୪୨ । ଆଉମଧ୍ୟ ପୂର୍ବ ପ୍ରଦର୍ଶିତ ଚାରୁତ୍ୱ ହେତୁ ବ୍ୟଙ୍ଗ୍ୟ ବ୍ୟତିରେକେ ବ୍ୟଞ୍ଜକତା ରହି ନ ପାରେ ।

(ଅର୍ଥାତ୍ ବ୍ୟଙ୍ଗ୍ୟହୀନ ଲକ୍ଷଣା ସ୍ଥଳରେ ବ୍ୟଞ୍ଜକତା ଅଛି ବୋଲି କହିଲେ ମଧ୍ୟ ଚଳିବ ନାହିଁ) ।

୪୪୩ । ଗୁଣବୃତ୍ତି (ସାରୋପାଲକ୍ଷଣାସ୍ଥଳ)ରେ ସାଦୃଶ୍ୟ ସମ୍ବନ୍ଧରୁ ଯେଉଁ ଅଭେଦାରୋପ ହୁଏ ତାହା ଦୁଇ ପ୍ରକାର ଯଥା—ରୂଢ଼ିମୂଳକ ଓ ପ୍ରୟୋଜନ ମୂଳକ ।

ରୂଢ଼ିମୂଳକ ଲକ୍ଷଣା, ବାଚ୍ୟ ଧର୍ମକୁ ଆଶ୍ରୟ କରି ରହିଥାଏ ଅର୍ଥାତ୍ ଅଭିଧାର ପୋଷକ ହୋଇ ବାଚ୍ୟାର୍ଥ ସଦୃଶ ଅତି ପ୍ରସିଦ୍ଧ ଲାକ୍ଷଣିକ ଅର୍ଥକୁ ପ୍ରକାଶ କରେ । ପ୍ରୟୋଜନ ମୂଳକ ସାରୋପାଲକ୍ଷଣା କେବଳ ବ୍ୟଙ୍ଗ୍ୟକୁ

ତୀକ୍ଷ୍ଣତ୍ୱାତ୍ "ଅଗ୍ନିର୍ମାଣବକଃ" ଆହ୍ଲାଦକତ୍ୱାତ୍ "ଚନ୍ଦ୍ର-ଏବାସ୍ୟା ମୁଖମ୍" ଇତ୍ୟାଦୌ ।

୪୪୪ । ଯଥାଚ—"ପ୍ରିୟେ ଜନେ ନାସ୍ତି ପୁନରୁକ୍ତମ୍" ଇତ୍ୟାଦୌ ।

୪୪୫ । ଯାଽପି ଲକ୍ଷଣାରୂପା ଗୁଣବୃତ୍ତିଃ, ସାଽପି ଉପଲକ୍ଷଣୀୟାର୍ଥ-ସମ୍ବନ୍ଧମାତ୍ରାଶ୍ରୟେଣ ଗୁରୁରୂପବ୍ୟଙ୍ଗ୍ୟପ୍ରତୀତିଂ ବିନାଽପି ସମ୍ଭବତ୍ୟେବ । ଯଥା—"ମଞ୍ଚାଃ କ୍ରୋଶନ୍ତି" ଇତ୍ୟାଦୌ ବିଷୟେ ।

---

ଅଶ୍ରପୂ କର ଉଦ୍ଧେ । ପ୍ରୟୋଜନମୂଳ ସାରୋପା ଗୌଣୀ ଲକ୍ଷଣାର ଉଦାହରଣ ଯଥା—"ପିଲଟି ନିଆଁ (ଅଗ୍ନିର୍ମାଣବକଃ)" ଏଠାରେ ତୀକ୍ଷ୍ଣତାର ସାଧର୍ମ୍ୟରୁ ପିଲ ଉପରେ ନିଆଁର ଆରୋପ କରାଯାଇଛି ।

ସେହିପରି "ଏ ସ୍ତ୍ରୀର ମୁଖଟି ଚନ୍ଦ୍ର (ଚନ୍ଦ୍ର ଏବାସ୍ୟା ମୁଖମ୍)" ଏଠାରେ ଆହ୍ଲାଦକାରିତା ସାଧର୍ମ୍ୟରୁ ମୁଖ ଉପରେ ଚନ୍ଦ୍ର ଆରୋପିତ ହୋଇଅଛି ।

୪୪୪ । ରୂଢ଼ମୂଳସାରୋପା ଗୌଣୀଲକ୍ଷଣାର ଉଦାହରଣ ଯଥା—"ପ୍ରିୟ ଲୋକଠାରେ ପୁନରୁକ୍ତ ନାହିଁ" (ପ୍ରିୟେ ଜନେ ନାସ୍ତି ପୁନରୁକ୍ତମ୍) ଇତ୍ୟାଦିସ୍ଥଳ ।

(ଉକ୍ତ ଉଭୟବିଧ ସାରୋପାଲକ୍ଷଣାରୂପକାଲଂକାରର ବୀଜ) ।

୪୪୫ । ଗୁଣବୃତ୍ତିର ଯେଉଁ ଲକ୍ଷଣଲକ୍ଷଣା ନାମକ ପ୍ରଭେଦ, ତାହା ବିନା ପ୍ରୟୋଜନ (ବ୍ୟଙ୍ଗ୍ୟ)ରେ ମଧ୍ୟ ହୋଇପାରେ । ଯଥା—"ମଞ୍ଚା ଆକ୍ରୋଶ କରୁଛନ୍ତି (ମଞ୍ଚାଃ କ୍ରୋଶନ୍ତି)" ଏଠାରେ ମଞ୍ଚାର ଲକ୍ଷ୍ୟାର୍ଥ ମଞ୍ଚାରେ ବସିଥିବା ଲୋକେ । ଏପରି କହିବା ପାଇଁ କିଛି ପ୍ରୟୋଜନ ନ ଥିବାରୁ ଏହା ରୂଢ଼ମୂଳକ ।

୪୪୬ । ଯତ୍ର ତୁ ସା ଗୁଣବୃତ୍ତିରୂପଚାରଲକ୍ଷଣା ବ୍ୟଙ୍ଗ୍ୟପ୍ରତୀତିହେତୁଃ, ତତ୍ରାପି ବ୍ୟଞ୍ଜକତ୍ୱାନୁପ୍ରବେଶେନୈବ, ବାଚକତ୍ୱବତ୍ ।

୪୪୭ । ଅସମ୍ଭବିନା ଚାର୍ଥେନ ଯତ୍ର ବ୍ୟବହାରେ ଯଥା— "ସୁବର୍ଣ୍ଣପୁଷ୍ପାଂ ପୃଥିବୀମ୍" ଇତ୍ୟାଦୌ, ତତ୍ର ଚାରୁରୂପ-ବ୍ୟଙ୍ଗ୍ୟପ୍ରତୀତିରେବ ପ୍ରୟୋଜିକେତି ତଥାବିଧେଽପି ବିଷୟେ ଗୁଣବୃତ୍ତୌ ସତ୍ୟାମପି ଧ୍ୱନିବ୍ୟବହାର ଏବ ଯୁକ୍ତ୍ୟନୁରୋଧୀ ।

୪୪୮ । ତସ୍ମାଦବିବକ୍ଷିତବାଚ୍ୟେ ଧ୍ୱନୌ ଦ୍ୱୟୋରପି ପ୍ରଭେ-ଦୟୋର୍ବ୍ୟଞ୍ଜକତ୍ୱବିଶେଷାବିଶିଷ୍ଟା ଗୁଣବୃତ୍ତିଃ, ନ ତୁ ତଦେକରୂପା, ସହୃଦୟହୃଦୟାହ୍ଲାଦପ୍ରତୀୟମାନା-

---

୪୪୬ । ଯେଉଁ ପ୍ରୟୋଜନମୂଳା ଶୁଦ୍ଧା ଲକ୍ଷଣାସ୍ଥଳରେ ଗୁଣବୃତ୍ତି ଚମତ୍କାର ବ୍ୟଙ୍ଗ୍ୟ ପ୍ରତୀତର ହେତୁ ହୁଏ, ସେଠାରେ ସେ (ଗୁଣବୃତ୍ତି) ବ୍ୟଞ୍ଜନା ସାହାଯ୍ୟରେ ହିଁ ତାଦୃଶବ୍ୟଙ୍ଗ୍ୟ ପ୍ରତୀତର ହେତୁ ହୋଇଥାଏ । ଯଥା ଅଭିଧାମୂଳା ବ୍ୟଞ୍ଜନାସ୍ଥଳରେ ଅଭିଧା, ବ୍ୟଞ୍ଜନା ସାହାଯ୍ୟରେ ବ୍ୟଙ୍ଗ୍ୟାର୍ଥକୁ ପ୍ରକାଶ କରିଥାଏ ।

୪୪୭ । "ସୁବର୍ଣ୍ଣପୁଷ୍ପାଂ ପୃଥିବୀମ୍" ଇତ୍ୟାଦି ସ୍ଥଳରେ, ଯେଉଁ ସ୍ଥଳରେ, କି ଅସମ୍ଭବ ଅର୍ଥରେ ଶବ୍ଦକୁ ବ୍ୟବହାର କରାଯାଇ ଥାଏ, ସେଠାରେ ଚମତ୍କାର ବ୍ୟଙ୍ଗ୍ୟ ପ୍ରତୀତି ଲକ୍ଷଣାର ହେତୁ ହୁଏ ; (ଯେଣୁ ପ୍ରୟୋଜନ ପ୍ରତୀତି ଉଦ୍ଦେଶ୍ୟରେ ହିଁ ସେଠାରେ ଲକ୍ଷଣା କରା ଯାଇଥାଏ) । ଅତଏବ ତାଦୃଶ ସ୍ଥଳମାନଙ୍କରେ ଗୁଣବୃତ୍ତି ରହିଥିଲେ ମଧ୍ୟ ଧ୍ୱନିବ୍ୟବହାର ଯୁକ୍ତିଯୁକ୍ତ ।

୪୪୮ । ତେଣୁ ଅବିବକ୍ଷିତବାଚ୍ୟ ଧ୍ୱନିର ଦୁଇଟିଯାକ ପ୍ରଭେଦ— (ଅର୍ଥାନ୍ତରସଂକ୍ରମିତ ଓ ଅତ୍ୟନ୍ତତିରସ୍କୃତବାଚ୍ୟ)ରେ ଗୁଣବୃତ୍ତି ବ୍ୟଞ୍ଜନା-ବୃତ୍ତିବିଶିଷ୍ଟା କିମ୍ବା ବ୍ୟଞ୍ଜନାବୃତ୍ତିସ୍ୱରୂପା ନୁହେ । ଅର୍ଥାତ୍ ଗୁଣବୃତ୍ତିରୁ ବ୍ୟଞ୍ଜନା ପୃଥକ୍ । ଗୁଣବୃତ୍ତିରୁ ବ୍ୟଞ୍ଜନା ପୃଥକ୍ ହେବାର କାରଣ ଏହା ଯେ ପ୍ରୟୋଜନ

ପ୍ରତୀତହେତୁତ୍ୱାତ୍, ବିଷୟାନ୍ତରେ ତଦ୍ରୂପ ଶୂନ୍ୟାୟାଶ୍ଚ ଦର୍ଶନାତ୍ ।

୪୮୯ । ତଦେତତ୍ ସର୍ବଂ ପ୍ରାକ୍ ସୂଚିତମପି ସ୍ଫୁଟତରପ୍ରତୀତୟେ ପୁନରୁକ୍ତମ୍ ।

୪୯୦ । ଅପିଚ ବ୍ୟଞ୍ଜକତ୍ୱଲକ୍ଷଣୋ ଯଃ ଶବ୍ଦାର୍ଥୟୋର୍ଧର୍ମଃ, ସ ପ୍ରସିଦ୍ଧସମ୍ବନ୍ଧାନୁରୋଧୀତି ନ କସ୍ୟଚିଦ୍ ବିମତିବିଷୟତାମର୍ହତି ।

୪୯୧ । ଶବ୍ଦାର୍ଥୟୋର୍ହି ପ୍ରସିଦ୍ଧୋ ଯଃ ସମ୍ବନ୍ଧୋ ବାଚ୍ୟବାଚକଭାବାଖ୍ୟଃ ତମନୁରୁନ୍ଧାନ ଏବ ବ୍ୟଞ୍ଜକତ୍ୱଲକ୍ଷଣୋ ବ୍ୟାପାରଃ ସାମଗ୍ର୍ୟନ୍ତରସମ୍ବନ୍ଧାଦୌପାଧିକଃ ପ୍ରବର୍ତ୍ତତେ ଅତଏବ ବାଚକତ୍ୱାତ୍ତସ୍ୟ ବିଶେଷଃ ।

---

ମୂଳଲକ୍ଷଣା ସ୍ଥଳରେ ସହୃଦୟ ହୃଦୟାହ୍ଲାଦକାରି—ପ୍ରତୀୟମାନବସ୍ତୁ (ପ୍ରୟୋଜନ) ଗୁଣବୃତ୍ତି ଦ୍ୱାରା ପ୍ରତୀତ ହୁଏ ନାହିଁ ଏବଂ ରୂଢ଼ଲକ୍ଷଣା ସ୍ଥଳରେ ବ୍ୟଙ୍ଗ୍ୟର ସମ୍ଭବ ନାହିଁ ।

୪୮୯ । ଉଲ୍ଲିଖିତ ବିଷୟମାନ ପୂର୍ବରୁ କୁହା ଯାଇଥିଲେ ମଧ୍ୟ ପାଠକମାନଙ୍କୁ ସ୍ପଷ୍ଟଭାବେ ବୁଝାଯିବା ପାଇଁ ପୁନର୍ବାର କୁହାଗଲା ।

## ଅଭିଧାଠାରୁ ବ୍ୟଞ୍ଜନାର ଭେଦନିରୂପଣ

୪୯୦ । ଶବ୍ଦ ଓ ଅର୍ଥର ବ୍ୟଞ୍ଜକତାରୂପକ ଯେଉଁ ଧର୍ମ, ଅର୍ଥାତ୍ ବ୍ୟଞ୍ଜନାବ୍ୟାପାର, ସେ ଅଭିଧାବ୍ୟାପାରର ଅବାଧରେ ଅର୍ଥ ପ୍ରକାଶ କରେ, ଏଥିରେ କାହାର ବୈମତ୍ୟ ନାହିଁ ।

୪୯୧ । ଶବ୍ଦ ଓ ଅର୍ଥର ବାଚ୍ୟବାଚକ ଭାବ ନାମକ ଯେଉଁ ପ୍ରସିଦ୍ଧ ସମ୍ବନ୍ଧ, ଅର୍ଥାତ୍ ଅଭିଧା, ତାହାକୁ ଆଶ୍ରୟକରି ପ୍ରକରଣାଦି ବୈଶିଷ୍ଟ୍ୟ ସମ୍ପର୍କରୁ (କେବଳ ବ୍ୟଙ୍ଗ୍ୟ ଅର୍ଥକୁ ବୁଝାଇବା ସକାଶେ) ବ୍ୟଞ୍ଜନାବୃତ୍ତି, ଔପାଧିକଭାବେ (ଅନିୟତ ଭାବେ) ପ୍ରବର୍ତ୍ତିଥାଏ । (ଏହିସବୁ କାରଣରୁ ମଧ୍ୟ ଅଭିଧାଠାରୁ ବ୍ୟଞ୍ଜନା ପୃଥକ୍) ।

୪୫୨ । ବାଚକତ୍ୱଂ ହି ଶବ୍ଦବିଶେଷସ୍ୟ ନୟତ ଆତ୍ମା । ସମ୍ବନ୍ଧ-ବ୍ୟୁତ୍ପତ୍ତିକାଳାଦାରଭ୍ୟ ତଦବିନାଭାବେନ ତସ୍ୟ ପ୍ରସିଦ୍ଧତ୍ୱାତ୍ ।

୪୫୩। ସତ୍ୱନୟତଃ, ଔପାଧିକତ୍ୱାତ୍, ପ୍ରକରଣାଦ୍ୟବଚ୍ଛେଦେନ ତସ୍ୟ ପ୍ରତୀତେଃ, ଇତରଥା ତ୍ୱପ୍ରତୀତେଃ ।

୪୫୪ । ନନୁ ଯଦ୍ୟନୟତଃ, ତତ୍ କିଂ ତସ୍ୟ ସ୍ୱରୂପ-ପରୀକ୍ଷୟା ?

---

୪୫୨ । ବାଚକତା (ଅଭିଧା) ବାଚକ ଶବ୍ଦମାନଙ୍କରେ ପ୍ରାଣଭଳି ନିୟତଭାବେ ରହିଥାଏ । ଅମୁକ ଶବ୍ଦର ଅମୁକ ଅର୍ଥ, ଏହି ବାଚ୍ୟବାଚକ ସମ୍ବନ୍ଧ ଖ୍ୟାତ ହେଲା ଦିନରୁ ବାଚକତାର ଅବିନାଭାବରେ ଶବ୍ଦର ପ୍ରସିଦ୍ଧି ରହିଅଛି ।

(ସୁତରାଂ ବାଚକତା ବା ଅଭିଧା ନିୟତ ଅଟେ) ।

୪୫୩ । କିନ୍ତୁ ବ୍ୟଞ୍ଜନାବ୍ୟାପାର (ସ ତୁ) ଅନିୟତ, ଯେଣୁ ସେ ଔପାଧିକ । ବ୍ୟଞ୍ଜନା ଔପାଧିକ ହେବାରେ କାରଣ ଏହି ଯେ ପ୍ରକରଣାଦି-ବୈଶିଷ୍ଟ୍ୟରୁ (କାଦାଚିତ୍କଭାବେ) ତାହାର ପ୍ରତୀତି ହୁଏ, କିନ୍ତୁ ସର୍ବଦା ସର୍ବଥା ସେ ପ୍ରତୀତ ହୁଏ ନାହିଁ ।

ସାର—(ଆକାଶ ନିତ୍ୟ ଓ ବିଭୁ ହେଲେ ମଧ୍ୟ ଘଟାଦିସମ୍ପର୍କରୁ ତାହାକୁ ଘଟାକାଶାଦି ସଂଜ୍ଞା ଦିଆଯାଇଥାଏ । ତାହା ହେଉଛି ଔପାଧିକ । ସେହିପରି ଏଠାରେ ପ୍ରକାରଣାଦି ବୈଶିଷ୍ଟ୍ୟରୁ କାଦାଚିତ୍କଭାବେ ବ୍ୟଞ୍ଜନା, ବ୍ୟଙ୍ଗ୍ୟକୁ ପ୍ରକାଶ କରୁଥିବାରୁ ସେ (ବ୍ୟଞ୍ଜନା) ଔପାଧିକ) ।

୪୫୪ । ପ୍ରଶ୍ନ—ଯଦି ବ୍ୟଞ୍ଜନାବ୍ୟାପାର ଅନିୟତ, ତେବେ ତାହାର ସ୍ୱରୂପ ଚିନ୍ତା କରିବାରେ ପ୍ରୟୋଜନ କଅଣ ?

୪୬୫ । ନୈଷ ଦୋଷଃ, ଯତଃ ଶବ୍ଦାତ୍ମନା ତସ୍ୟା ନିୟତତ୍ୱମ୍, ନତୁ ସ୍ୱେ ବିଷୟେ ବ୍ୟଙ୍ଗ୍ୟଲକ୍ଷଣେ ।

୪୬୬ । ଲିଙ୍ଗତ୍ୱନ୍ୟାୟଶ୍ଚାସ୍ୟ ବ୍ୟଞ୍ଜକଭାବସ୍ୟ ଲକ୍ଷ୍ୟତେ । ତଥାହି ଲିଙ୍ଗତ୍ୱମାଶ୍ରୟେଷୁ ଅନିୟତାବଭାସମ୍, ଇଚ୍ଛାଧୀନତ୍ୱାତ୍ ସ୍ୱବିଷୟାବ୍ୟଭିଚାରି ଚ ; ତଥୈବେଦମ୍, ଯଥାଦର୍ଶିତଂ ବ୍ୟଞ୍ଜକତ୍ୱମ୍ ।

୪୬୭ । ଶବ୍ଦାତ୍ମନା ଅନିୟତତ୍ୱାଦେବ ଚ ତସ୍ୟ ବାଚକତ୍ୱପ୍ରକାରତ ନ ଶକ୍ୟା କଳ୍ପୟିତୁମ୍ ।

---

୪୬୫ । ଉତ୍ତର—ବ୍ୟଞ୍ଜନାର ସ୍ୱରୂପନିର୍ଣ୍ଣୟ ଦୋଷାବହ ନୁହେ । କାରଣ, ଶବ୍ଦରେ ସିନା ସେ ଅନିୟତ କିନ୍ତୁ ବ୍ୟଙ୍ଗ୍ୟ ଅର୍ଥରେ ତ ସେ ଅନିୟତ ନୁହେ ।

(ପ୍ରତ୍ୟେକ ଶବ୍ଦ ପ୍ରତ୍ୟେକ ସ୍ଥଳରେ ବ୍ୟଞ୍ଜକ ହୁଏ ନାହିଁ, ଏଣୁ ବ୍ୟଞ୍ଜନା ଶବ୍ଦରେ ଅନିୟତ, କିନ୍ତୁ ବ୍ୟଞ୍ଜନା ବ୍ୟତିରେକେ ବ୍ୟଙ୍ଗ୍ୟାର୍ଥ ବୁଝାଯାଉ ନ ଥିବାରୁ ବ୍ୟଙ୍ଗ୍ୟାର୍ଥବୋଧ ପାଇଁ ସେ ନିୟତ. ସୁତରାଂ ବ୍ୟଞ୍ଜନାର ସ୍ୱରୂପ ଚିନ୍ତା ଦୋଷାବହ ନୁହେ) ।

୪୬୬ । (ପୁନଶ୍ଚ ଅନ୍ୟରୀତିରେ ଅଭିଧା ଓ ବ୍ୟଞ୍ଜନା ମଧ୍ୟରେ ଭେଦ ପ୍ରତିପାଦନ କରାଯାଉ ଅଛି) ଯଥା—

ବ୍ୟଞ୍ଜକତାର ଲିଙ୍ଗତ୍ୱନ୍ୟାୟ ମଧ୍ୟ ପରିଲକ୍ଷିତ ହୁଏ । ଯଥା— ଅନୁମିତି ଇଚ୍ଛା ଉପରେ ନିର୍ଭର କରୁଥିବାରୁ ଲିଙ୍ଗତ୍ୱ ଧୂମାଦିର ଆଶ୍ରୟରେ ଅନିୟତଭାବେ ଓ ସ୍ୱବିଷୟ ସମ୍ବନ୍ଧରେ ନିୟତଭାବେ ରହିଥାଏ । ସେହିପରି ବ୍ୟଞ୍ଜକତା ଶବ୍ଦମାନରେ ଅନିୟତଭାବେ ଓ (ବ୍ୟଙ୍ଗ୍ୟଅର୍ଥ ପ୍ରକାଶ ପାଉଥିବା ସ୍ଥଳରେ) ବ୍ୟଞ୍ଜକ ଶବ୍ଦରେ ନିୟତଭାବେ ରହିଥାଏ ।

୪୬୭ । ବ୍ୟଞ୍ଜକତା ଶବ୍ଦରେ ନିୟତଭାବେ ରହୁ ନ ଥିବାରୁ ତାହା (ବ୍ୟଞ୍ଜକତା) ଏକପ୍ରକାର ବାଚକତା ବୋଲି କଳ୍ପନା କରାଯାଇ ନପାରେ ।

୪୬୮ । ଯଦି ହି ବାଚକତ୍ୱପ୍ରକାରତା ତସ୍ୟ ଭବେତ୍, ତତ୍ ଶବ୍ଦାତ୍ମନ ନିୟତତାଽପି ସ୍ୟାତ୍, ବାଚକତ୍ୱବତ୍ ।

୪୬୯ । ସ ଚ ତଥାବିଧ ଔପାଧିକୋ ଧର୍ମଃ ଶବ୍ଦାନାମୌ-ତ୍ପତ୍ତିକ-ଶବ୍ଦାର୍ଥସମ୍ବନ୍ଧବାଦିନା ବାକ୍ୟତତ୍ତ୍ୱବିଦା ପୌରୁ-ଷେୟାପୌରୁଷେୟୟୋର୍ବାକ୍ୟୟୋର୍ବିଶେଷମଭିଦଧତା ନିୟମେନାଭ୍ୟୁପଗନ୍ତବ୍ୟଃ ।

୪୭୦ । ତଦନଭ୍ୟୁପଗମେ ହି ତସ୍ୟ ଶବ୍ଦାର୍ଥସମ୍ବନ୍ଧ-ନିତ୍ୟତ୍ୱେ ସତ୍ୟପ୍ୟପୌରୁଷେୟପୌରୁଷେୟୟୋ-ର୍ବାକ୍ୟୟୋରର୍ଥପ୍ରତିପାଦନେ ନିର୍ବିଶେଷତ୍ୱଂ ସ୍ୟାତ୍ ।

---

୪୬୮ । ଯଦି ସେ (ବ୍ୟଞ୍ଜକତା), ବାଚକତା ବିଶେଷ ହୋଇଥାଆନ୍ତା ତେବେ ସେ ଶବ୍ଦମାନଙ୍କରେ ବାଚକତା ଭଳି ନିୟତଭାବେ ରହିଥାନ୍ତା ।

୪୬୯ । (ମୀମାଂସକମାନଙ୍କ ମତରେ ବ୍ୟଞ୍ଜନା ସ୍ଥାପନ)—ଶବ୍ଦ ଓ ଅର୍ଥ ମଧ୍ୟରେ ଯେଉଁ ସମ୍ବନ୍ଧ ଅଛି, ତାହା ନିତ୍ୟ । ବାକ୍ୟରେ ଅର୍ଥାତ୍ ଅନ୍ୱିତ-ପଦରେ ଶକ୍ତିଗ୍ରହ ହୁଏ, ଏବଂ ପୌରୁଷେୟ ବାକ୍ୟ କାବ୍ୟାଦି ଓ ଅପୌରୁଷେୟ ବାକ୍ୟ ବେଦ, ଏ ଉଭୟଙ୍କର ବୈଲକ୍ଷଣ୍ୟ ଅଛି । ଏହିମତ ପୋଷଣ କରୁଥିବା ମୀମାଂସକମାନେ ବ୍ୟଞ୍ଜନା ବ୍ୟାପାରକୁ ପୂର୍ବପର ଶବ୍ଦର ଔପାଧିକ ଧର୍ମ ବୋଲି ନିଶ୍ଚୟ ସ୍ୱୀକାର କରିବେ ।

୪୭୦ । ଯଦି ସେମାନେ (ମୀମାଂସକ) ଶବ୍ଦର ଔପାଧିକ ଧର୍ମ ରୂପକ ବ୍ୟଞ୍ଜନାବ୍ୟାପାରକୁ ସ୍ୱୀକାର ନ କରିବେ । ତେବେ ଶବ୍ଦ ଓ ଅର୍ଥର ପରସ୍ପର ସମ୍ବନ୍ଧ ନିତ୍ୟ ହୋଇଥିବାରୁ ଅର୍ଥ ପ୍ରତିପାଦନ ବିଷୟରେ ଲୌକିକ-ବାକ୍ୟ ଓ ବୈଦିକବାକ୍ୟ ମଧ୍ୟରେ କୌଣସି ପ୍ରଭେଦ ରହି ପାରିବ ନାହିଁ । (ତେଣୁ ମୀମାଂସକମାନଙ୍କ ମତରେ ମଧ୍ୟ ବ୍ୟଞ୍ଜନା ଅଛି) ।

ବିଶଦାର୍ଥ—(ମୀମାଂସକମାନେ ଲୌକିକ ଓ ବୈଦିକ ବାକ୍ୟ ମଧ୍ୟରେ ପ୍ରଭେଦ ସ୍ୱୀକାର କରନ୍ତି, କିନ୍ତୁ ଅଭିଧାବୃତ୍ତି ଉଭୟ ସ୍ଥଳରେ

୪୭୧ । ତଦଭ୍ୟୁପଗମେ ତୁ ପୌରୁଷେୟାଣାଂ ବାକ୍ୟାନାଂ ପୁରୁଷେଚ୍ଛାନୁବିଧାନସମାରୋପିତୌପାଧିକବ୍ୟାପାରାନ୍ତରାଣାଂ ସତ୍ୟପି ସ୍ୱାଭିଧେୟସମ୍ବନ୍ଧାପରିତ୍ୟାଗେ ମିଥ୍ୟାର୍ଥତାଽପି ଭବେତ୍ ।

୪୭୨ । ଦୃଶ୍ୟତେ ହି ଭାବାନାମପରିତ୍ୟକ୍ତ-ସ୍ୱ-ସ୍ୱ ଭାବନାମପି ସାମଗ୍ର୍ୟନ୍ତରସମ୍ପାତସମ୍ପାଦିତୌପାଧିକବ୍ୟାପାରାନ୍ତରାଣାଂ

---

ନିର୍ଦ୍ଦିଷ୍ଟ ଅର୍ଥକୁ ପ୍ରକାଶ କରେ ବୋଲି କହନ୍ତି । ଏପରି ସ୍ଥଳେ ଯଦି ସେମାନେ ବ୍ୟଞ୍ଜନା ବ୍ୟାପାରକୁ ସ୍ୱୀକାର ନ କରିବେ, ତେବେ ଲୌକିକ ବାକ୍ୟ ବୈଦିକ ବାକ୍ୟରୁ କାହିଁକି ଭିନ୍ନ ହେବ ? ଅତଏବ ସେମାନେ ବ୍ୟଞ୍ଜନା ସ୍ୱୀକାର କରିବାକୁ ବାଧ୍ୟ) ।

୪୭୧ । କିନ୍ତୁ ବ୍ୟଞ୍ଜନା ସ୍ୱୀକାର କରିବାକୁ ହେଲେ ପୌରୁଷେୟ ବାକ୍ୟମାନଙ୍କରେ ପୁରୁଷ ଇଚ୍ଛାନୁସାରି ବ୍ୟଞ୍ଜନା ନାମକ ଔପାଧିକ ବ୍ୟାପାର, ଆରୋପ କରିବା ଦ୍ୱାରା ଉକ୍ତ ପୌରୁଷେୟ ବାକ୍ୟଗୁଡ଼ିକ ବାଚ୍ୟବାଚକ ସମ୍ବନ୍ଧ (ଅଭିଧେୟ ଅର୍ଥ)କୁ ପରିତ୍ୟାଗ କରୁ ନ ଥିଲେ ହେଁ ଅସତ୍ୟ ଅର୍ଥ ପ୍ରକାଶ କରି ପାରନ୍ତି ।

ସାର—(ମୀମାଂସକ ମତରେ ଅପୌରୁଷେୟ ବାକ୍ୟରେ ଅସତ୍ୟ ଅର୍ଥର ଶଙ୍କା ସୁଦ୍ଧା ନାହିଁ କିନ୍ତୁ ପୌରୁଷେୟ ବାକ୍ୟରେ ଅସତ୍ୟ ଅର୍ଥର ନିଶ୍ଚୟ ଅବକାଶ ଅଛି । ସେମାନଙ୍କର ଏପରି ମତ କେବଳ ବ୍ୟଞ୍ଜନା ଦ୍ୱାରହିଁ ସିଦ୍ଧ ହୋଇ ପାରିବ । ଯଦି ସେମାନେ ବ୍ୟଞ୍ଜନା ସ୍ୱୀକାର ନ କରିବେ ତେବେ ଏକା ଅଭିଧାବୃତ୍ତି ଉଭୟ ସ୍ଥଳରେ କିପରି ସତ୍ୟ ଓ ଅସତ୍ୟରୂପକ ଅର୍ଥକୁ ପ୍ରକାଶ କରି ପାରିବ ? ଏଣୁ ମୀମାଂସକମାନେ ମଧ୍ୟ ବ୍ୟଞ୍ଜନା ସ୍ୱୀକାର କରିବାକୁ ବାଧ୍ୟ) ।

୪୭୨ । (ଅସତ୍ୟାର୍ଥ ପ୍ରତିପାଦନ ସ୍ଥଳ ଯଥା)--

ପଦାର୍ଥ (ଭାବ)ମାନେ ନିଜସ୍ୱଭାବକୁ ପରିତ୍ୟାଗ ନ କରି ମଧ୍ୟ ଅବସ୍ଥା ବିଶେଷରେ ଔପାଧିକବ୍ୟାପାର (ବ୍ୟଞ୍ଜନା) ବଳରୁ ବିରୁଦ୍ଧକ୍ରିୟା

କାରୁଣ୍ୟକାରିତ୍ୱମ୍ । ତଥାହି ହିମମୟୂଖପ୍ରଭୃତୀନାଂ ନିର୍ବାପିତସକଳଜୀବଲୋକଂ ଶୀତଳତ୍ୱ ମୁଦ୍‌ବହତାମେବ, ପ୍ରିୟାବିରହଦହନଦହ୍ୟମାନ ମାନସୈର୍ଜନୈରାଲୋକ୍ୟମାନାନାଂ ସତାଂ ସନ୍ତାପକାରିତ୍ୱଂ ପ୍ରସିଦ୍ଧମେବ ।

୪୭୩ । ତସ୍ମାତ୍ ପୌରୁଷେୟାଣାଂ ବାକ୍ୟାନାଂ ସତ୍ୟପି ନୈସର୍ଗିକେଽର୍ଥସମ୍ବନ୍ଧେ, ମିଥ୍ୟାର୍ଥତ୍ୱଂ ସମର୍ଥୟିତୁମିଚ୍ଛତା, ବାଚକତ୍ୱବ୍ୟତିରିକ୍ତଂ କିଂଚିଦ୍ରୂପମୌପାଧିକଂ ବ୍ୟକ୍ତମେବାଭିଧାନୀୟମ୍ ।

୪୭୪ । ତଚ୍ଚବ୍ୟଞ୍ଜକତ୍ୱାଦୃତେ ନାନ୍ୟତ୍ । ବ୍ୟଙ୍ଗ୍ୟପ୍ରକାଶନଂ ହି ବ୍ୟଞ୍ଜକତ୍ୱମ୍ । ପୌରୁଷେୟାଣି ଚ ବାକ୍ୟାନି ପ୍ରାଧାନ୍ୟେନ ପୁରୁଷାଭିପ୍ରାୟମେବ ପ୍ରକାଶୟନ୍ତି ।

---

ସାଧନ କରିଥାନ୍ତି ।—ତାହାର ଉଦାହରଣ ଯଥା- ଚନ୍ଦ୍ରପ୍ରଭୃତି ସମଗ୍ର ପ୍ରାଣି ଜଗତରେ ସୁଖଦାୟିନୀ ଶୀତଳତାକୁ ବହନ କରିଥିଲେ ମଧ୍ୟ ପ୍ରିୟାବିରହ ବହ୍ନିରେ ଦହ୍ୟମାନ ବ୍ୟକ୍ତିମାନଙ୍କ ଦ୍ୱାରା ପରିଦୃଷ୍ଟ ହେବାବେଳେ ସନ୍ତାପର କାରଣ ହୋଇଥାନ୍ତି, ଏହା ସୁପ୍ରସିଦ୍ଧ ।

୪୭୩ । ତେଣୁ ଅପୌରୁଷେୟ ବାକ୍ୟଭଳି ପୌରୁଷେୟ ବାକ୍ୟମାନଙ୍କର ଅଭିଧେୟ ଅର୍ଥ ସହିତ ନିତ୍ୟସମ୍ବନ୍ଧ ରହିଥିଲେ ମଧ୍ୟ "ପୌରୁଷେୟ ବାକ୍ୟଗୁଡ଼ିକ ମିଥ୍ୟାର୍ଥ ପ୍ରକାଶକ" ଏହି ମତ ସମର୍ଥନ କରିବାକୁ ଇଚ୍ଛା କରୁଥିବା ମୀମାଂସକମାନେ ଅଭିଧାବ୍ୟାପାରରୁ ଅତିରିକ୍ତ ଏକ ଔପାଧିକ ଶକ୍ତି ଅଛି ବୋଲି ନିଶ୍ଚୟ ସ୍ୱୀକାର କରିବେ ।

୪୭୪ । ମୀମାଂସକମାନେ ଯେଉଁ ଔପାଧିକ ଧର୍ମକୁ ସ୍ୱୀକାର କରିବେ ତାହା ବ୍ୟଞ୍ଜକତା ଛଡ଼ା ଆଉ କିଛି ନୁହେ । ବ୍ୟଙ୍ଗ୍ୟ ଅର୍ଥର ପ୍ରକାଶକୁ ବ୍ୟଞ୍ଜକତା ବୋଲଯାଏ । ପୌରୁଷେୟ ବାକ୍ୟଗୁଡ଼ିକ ପ୍ରଧାନତଃ

ସ ଚ ବ୍ୟଙ୍ଗ୍ୟ ଏବ, ନତ୍ୱଭିଧେୟଃ ତେନ ସହ ଅଭି-
ଧାନସ୍ୟ ବାଚ୍ୟବାଚକତାଲକ୍ଷଣସମ୍ବନ୍ଧାଭାବାତ୍ ।

୪୭୫ । ନନ୍ୱନେନ ନ୍ୟାୟେନ ସର୍ବେଷାମେବ ଲୌକିକାନାଂ
ବାକ୍ୟାନାଂ ଧ୍ୱନିବ୍ୟବହାରଃ ପ୍ରସକ୍ତଃ, ସର୍ବେଷା-
ମେବାନେନ ନ୍ୟାୟେନ ବ୍ୟଞ୍ଜକତ୍ୱାତ୍ ।

୪୭୬ । ସତ୍ୟମେତତ୍—କିନ୍ତୁ ବକ୍ତ୍ରଭିପ୍ରାୟପ୍ରକାଶନେନ
ଯଦ୍ୱଦଂ ବ୍ୟଞ୍ଜକତ୍ୱଂ, ତତ୍ ସର୍ବେଷାମେବ ଲୌକିକ-
ବାକ୍ୟାନାମବିଶିଷ୍ଟମ୍ । ତତ୍ତୁ ବାଚକତ୍ୱାନ୍ ଭିଦ୍ୟତେ ।
ବ୍ୟଙ୍ଗ୍ୟଂ ହି ତତ୍ର ନାନ୍ତରୀୟକତୟା ବ୍ୟବସ୍ଥିତଂ, ନ ତୁ
ବିବକ୍ଷିତତ୍ୱେନ । ଯସ୍ୟ ତୁ ବିବକ୍ଷିତତ୍ୱେନ ବ୍ୟଙ୍ଗ୍ୟସ୍ୟ

---

ବକ୍ତୃପୁରୁଷମାନଙ୍କର ଅଭିପ୍ରାୟକୁ ପ୍ରକାଶ କରିଥାଆନ୍ତି । ସେହି ଅଭିପ୍ରାୟ ବ୍ୟଙ୍ଗ୍ୟ, ବାଚ୍ୟ ନୁହେ । ଯେଣୁ ସେହି ଅଭିପ୍ରାୟ ସହିତ ଶବ୍ଦ (ଅଭିଧାନ)ମାନଙ୍କର ବାଚ୍ୟବାଚକ ସମ୍ବନ୍ଧ ନ ଥାଏ ।

୪୭୫ । ପ୍ରଶ୍ନ—ଯେଣୁ ପ୍ରତ୍ୟେକ ଲୌକିକ ବାକ୍ୟ ଅଭିପ୍ରାୟ ପ୍ରକାଶ କରନ୍ତି, ତେଣୁ (ଅଭିପ୍ରାୟ ପ୍ରକାଶକ ହିସାବରେ) ପ୍ରତ୍ୟେକ ଲୌକିକ ବାକ୍ୟରେ ଧ୍ୱନି ବ୍ୟବହାର ପ୍ରବର୍ତ୍ତିବ ।

୪୭୬ । ଉତ୍ତର—ଏହା ଠିକ୍ । ବକ୍ତାର ଅଭିପ୍ରାୟ ପ୍ରକାଶରୂପକ ଯେଉଁ ବ୍ୟଞ୍ଜକତା, ତାହା ପ୍ରତ୍ୟେକ ଲୌକିକ ବାକ୍ୟରେ ଅଛି । ପୁଣି ସେ ବ୍ୟଞ୍ଜକତା ବାଚକତାରୁ ଭିନ୍ନ ନୁହେ, ଅର୍ଥାତ୍ ଅଭିଧାଭଳି ସବୁବେଳେ ଥାଏ, ଯେଣୁ ସେଥିରେ ବ୍ୟଙ୍ଗ୍ୟ (ପାଳ ଭିତରେ ଧାନ ରହିଲପରି) ଅନ୍ତର୍ନିହିତ ଭାବେ ରହିଥାଏ । କିନ୍ତୁ ପ୍ରଧାନଭାବେ ରହି ନ ଥାଏ । ଯେଉଁଠି ବ୍ୟଙ୍ଗ୍ୟ ବିବକ୍ଷିତ (ପ୍ରଧାନ) ହୋଇଥାଏ, ସେହି ବ୍ୟଞ୍ଜକତା ଧ୍ୱନି ବ୍ୟବହାରର ପ୍ରୟୋଜକ ହୁଏ ।

ବ୍ୟବସ୍ଥିତଃ, ତଦ୍ବ୍ୟଞ୍ଜକତ୍ୱଂ ଧ୍ୱନିବ୍ୟବହାରସ୍ୟ ପ୍ରୟୋଜକମ୍ ।

୪୬୭ । ଯତ୍ତ୍ୱଭିପ୍ରାୟବିଶେଷରୂପଂ ବ୍ୟଙ୍ଗ୍ୟଂ ଶବ୍ଦାର୍ଥାଭ୍ୟାମେବ ପ୍ରକାଶତେ, ତଦ୍ ଭବତି ବିବକ୍ଷିତଂ ତାତ୍ପର୍ଯ୍ୟେଣ ପ୍ରକାଶମାନଂ ସତ୍ ।

୪୬୮ । କିନ୍ତୁ ତଦେବ କେବଲମପରିମିତବିଷୟସ୍ୟ ଧ୍ୱନି-ବ୍ୟବହାରସ୍ୟ ନ ପ୍ରୟୋଜକମ୍, ବ୍ୟାପକତ୍ୱାତ୍ ।

୪୬୯ । ତତ୍ତ୍ୱଦ୍ଦର୍ଶିତଭେଦତ୍ରୟରୂପତାତ୍ପର୍ଯ୍ୟେଣ ଦ୍ୟୋତ୍ୟମାନ-ମଭିପ୍ରାୟରୂପମନଭିପ୍ରାୟରୂପଂ ଚ ସର୍ବମେବ ଧ୍ୱନି-ବ୍ୟବହାରସ୍ୟ ପ୍ରୟୋଜକମିତି ଯଥୋକ୍ତବ୍ୟଞ୍ଜକତ୍ୱ ବିଶେଷ ଧ୍ୱନି ଲକ୍ଷଣେ ନାତିବ୍ୟାପ୍ତିର୍ନଚାବ୍ୟାପ୍ତିଃ ।

---

ମର୍ମ—(ପ୍ରତିଲୌକିକ ବାକ୍ୟରେ ଧ୍ୱନି ରହିବା ଶଙ୍କା ବୃଥା ଶଙ୍କା ମାତ୍ର ।)

୪୬୭ । ଯେଉଁ ଅଭିପ୍ରାୟବିଶେଷରୂପ ବ୍ୟଙ୍ଗ୍ୟ ବ୍ୟଞ୍ଜନା ବୃତ୍ତି ସାହାଯ୍ୟରେ (ତାତ୍ପର୍ଯ୍ୟେଣ) ଗୁଣୀଭୂତ ଶବ୍ଦ ଓ ଅର୍ଥ ଦ୍ୱାରା ପ୍ରକାଶପାଏ, ସେହି ବ୍ୟଙ୍ଗକୁ ବିବକ୍ଷିତ ବୋଲିଯାଏ ।

୪୬୮ । କିନ୍ତୁ ସେହି ଅଭିପ୍ରାୟବିଶେଷରୂପ ବ୍ୟଙ୍ଗ୍ୟଟି କେବଳ ସମୁଦାୟ ଅପରିମିତ ଧ୍ୱନି ବ୍ୟବହାରର ପ୍ରୟୋଜକ ନୁହେ । କାରଣ ଧ୍ୱନି ବ୍ୟାପକ, ମାତ୍ର ଅଭିପ୍ରାୟ ବିଶେଷ ବ୍ୟାପ୍ୟ ।

୪୬୯ । ବସ୍ତୁ କିମ୍ବା ଅଳଂକାର, କିମ୍ବା ରସାଦି ତାତ୍ପର୍ଯ୍ୟରେ ପ୍ରକାଶ ପାଉଥିବା ଅଭିପ୍ରାୟରୂପ ଓ ଅନଭିପ୍ରାୟରୂପ ସର୍ବବିଧ ବ୍ୟଙ୍ଗ୍ୟ ପ୍ରଧାନ ହୋଇଥିଲେ ଧ୍ୱନିହେବେ, ଏହିପରି ଧ୍ୱନିର ଲକ୍ଷଣ କରାଗଲେ ଅତିବ୍ୟାପ୍ତି କିମ୍ବା ଅବ୍ୟାପ୍ତି ଦୋଷ ରହିବ ନାହିଁ । ଏହା ଆମ୍ଭେ ପୂର୍ବରୁ ନିରୂପଣ କରିଅଛୁଁ ।

୪୭୦ । ତସ୍ମାତ୍ ବାକ୍ୟତତ୍ତ୍ୱବଦାଂ ମତେ ନତାବଦ୍‌ବ୍ୟଞ୍ଜକତ୍ୱ ଲକ୍ଷଣଃ ଶାବ୍ଦୋ ବ୍ୟାପାରେ ବିରୋଧୀ ତ୍ରତ୍ୟୁତାନୁଗୁଣ ଏବ ଲକ୍ଷ୍ୟତେ ।

୪୭୧ । ପରିନିଷ୍ଠିତନିରପଭ୍ରଂଶଶବ୍ଦବ୍ରହ୍ମଣାଂ ବିପଶ୍ଚିତାଂ ମତମାଶ୍ରିତ୍ୟୈବ ପ୍ରବୃତ୍ତୋଽୟଂ ଧ୍ୱନିବ୍ୟବହାର ଇତି ତୈଃସହ କିଂ ବିରୋଧାବିରୋଧୌ ଚିନ୍ତ୍ୟେତେ ।

୪୭୨ । କୃତ୍ରିମଶବ୍ଦାର୍ଥସମ୍ବନ୍ଧବାଦିନାଂ ତୁ ଯୁକ୍ତିବିଦାମନୁଭବସିଦ୍ଧ ଏବାୟଂ ବ୍ୟଞ୍ଜକଭାବଃ ଶବ୍ଦାନାମର୍ଥାନ୍ତ-

---

୪୭୦ । ଅତଏବ ବାକ୍ୟତତ୍ତ୍ୱଜ୍ଞ ମୀମାଂସକମାନଙ୍କ ମତରେ ବ୍ୟଞ୍ଜନା ନାମରେ ଶବ୍ଦର ଗୋଟିଏ ବ୍ୟାପାର ରହିବା ବିରୁଦ୍ଧ ନୁହେ ଓଲଟି ଅନୁକୂଳ ।

ମୀମାଂସକ ମତରେ ବ୍ୟଞ୍ଜନାସ୍ଥାପନ ସମାପ୍ତ

## ବୈୟାକରଣ ମତରେ ବ୍ୟଞ୍ଜନା ସ୍ଥାପନ

୪୭୧ । ବୈୟାକରଣମାନେ ନିରପଭ୍ରଂଶ ଶବ୍ଦ (ସ୍ଫୋଟ)କୁ ନିତ୍ୟ ଓ ବ୍ୟାପକ ହେତୁ ବ୍ରହ୍ମ ବୋଲି ପ୍ରମାଣ ଦ୍ୱାରା ପ୍ରତିପାଦନ କରିଅଛନ୍ତି । ସେହି ବୈୟାକରଣମାନଙ୍କ ମତ (ବ୍ୟଞ୍ଜନାବ୍ୟାପାର)କୁ ଆଶ୍ରୟ କରି ଆମ୍ଭମାନଙ୍କର ଧ୍ୱନି ପ୍ରବର୍ତ୍ତିଛି । ତେଣୁ ଆମ୍ଭର ସେମାନଙ୍କ ସଙ୍ଗେ ବିରୋଧ ଅଛି କି ନାହିଁ, ତାହା ଚିନ୍ତାକରିବାର ଅବକାଶ ନାହିଁ ।

(ବାକ୍ୟତତ୍ତ୍ୱଜ୍ଞ ମୀମାଂସକ ଓ ପଦତତ୍ତ୍ୱଜ୍ଞ ବୈୟାକରଣମାନଙ୍କ ମତରେ ବ୍ୟଞ୍ଜନା ସ୍ଥାପନ କରି ସାରି ସମ୍ପ୍ରତି ପ୍ରମାଣପଟୁ ବୌଦ୍ଧନୈୟାୟିକାଦିଙ୍କ ମତରେ ବ୍ୟଞ୍ଜନା ସ୍ଥାପନର ଉଦ୍ୟମ କରାଯାଉଛି) ।

## ତାର୍କିକମତରେ ବ୍ୟଞ୍ଜନା ସ୍ଥାପନ

୪୭୨ । ଯୁକ୍ତିପଟୁ ବୌଦ୍ଧ ଓ ନୈୟାୟିକମାନେ ଶବ୍ଦ ଓ ଅର୍ଥର ସମ୍ବନ୍ଧକୁ ଅନିତ୍ୟ ବୋଲି କହନ୍ତି ।

ଘ୍ରାଣମିବ ନର୍ବିରୋଧଶ୍ଚେତ ନ ପ୍ରତିକ୍ଷେପ୍ୟପଦବୀ-
ମବତରତି ।

୪୭୩ । ବାଚକତ୍ୱେ ହି ତାର୍କିକାଣାଂ ବିପ୍ରତିପତ୍ତୟଃ ପ୍ରବର୍ତ୍ତ-
ନ୍ତାମ୍, କମିଦଂ ସ୍ୱାଭାବିକଂ ଶବ୍ଦାନାମାହୋସ୍ୱିତ୍
ସାମୟିକମିତ୍ୟାଦ୍ୟାଃ । ବ୍ୟଞ୍ଜକତ୍ୱେ ତୁ ତତ୍ପୃଷ୍ଠ-
ଭାବିନି ଭାବାନ୍ତରସାଧାରଣେ ଲୋକପ୍ରସିଦ୍ଧ ଏବ
ଅନୁଗମ୍ୟମାନେ କୋ ବିମତୀନାମବସରଃ ?

୪୭୪ । ଅଲୌକିକେ ହ୍ୟର୍ଥେ ତାର୍କିକାଣାମଭିନିବେଶାଃ
ପ୍ରବର୍ତ୍ତନ୍ତେ ନ ତୁ ଲୌକିକେ । ନହି ନୀଳମଧୁରାଦିଷ୍ୱ

---

(ନୈୟାୟିକ ମତରେ ସଙ୍କେତ ଦ୍ୱାରା ଶବ୍ଦ ଓ ଅର୍ଥ ମଧ୍ୟରେ ସମ୍ବନ୍ଧ ସ୍ଥାପିତ ହୋଇ ଥିବାରୁ ତାହା କୃତ୍ରିମ, ତେଣୁ ଅନିତ୍ୟ । ବୌଦ୍ଧାଦି-ମାନଙ୍କ ମତରେ ପ୍ରତ୍ୟେକ ବସ୍ତୁ କ୍ଷଣିକ, ତେଣୁ ଶବ୍ଦାର୍ଥ ସମ୍ବନ୍ଧ ମଧ୍ୟ କ୍ଷଣିକ ; ସୁତରାଂ ଅନିତ୍ୟ, ଏହି ଯୁକ୍ତିପନ୍ଥୀମାନେ ମଧ୍ୟ ବ୍ୟଞ୍ଜନାକୁ ଉଡ଼ାଇଦେଇ ପାରିବେ ନାହିଁ । କାରଣ, ଦୀପାଦି ଅର୍ଥାନ୍ତରମାନଙ୍କର ପଦାର୍ଥ ପ୍ରକାଶକତା ଭଳି ଶବ୍ଦମାନଙ୍କର ବ୍ୟଞ୍ଜକତା ଅନୁଭବସିଦ୍ଧ । ଏଣୁ ଅନୁଭବସିଦ୍ଧ ବ୍ୟଞ୍ଜନା ବ୍ୟାପାରକୁ ପ୍ରମାଣପନ୍ଥୀ ତାର୍କିକମାନେ ଅସ୍ୱୀକାର କରି ପାରିବେ ନାହିଁ ।

୪୭୩ । ଶବ୍ଦମାନଙ୍କର ବାଚକତା ନିତ୍ୟ କିମ୍ବା ଅନିତ୍ୟ ଏ ବିଷୟରେ ତାର୍କିକମାନଙ୍କର ବିପ୍ରତିପତ୍ତି ହୋଇ ପାରେ । କିନ୍ତୁ ବାଚକତାର ପୃଷ୍ଠବର୍ତ୍ତୀ ଦୀପାଦିନ୍ୟାୟରେ ଅନୁଭବସିଦ୍ଧ ଲୋକପ୍ରସିଦ୍ଧ ବ୍ୟଞ୍ଜନାବ୍ୟାପାରରେ ବିରୋଧର ଅବକାଶ ନାହିଁ ।

୪୭୪ । ତାର୍କିକମାନେ ଅଲୌକିକ ବସ୍ତୁକୁ ଯୁକ୍ତି ଦ୍ୱାରା ପ୍ରତିପାଦନ କରିବାକୁ ଆଗ୍ରହ ପ୍ରକାଶ କରିଥାନ୍ତି । କିନ୍ତୁ ଲୌକିକ ବସ୍ତୁକୁ ଯୁକ୍ତି ଦ୍ୱାରା ପ୍ରତିପାଦନ କରିବାରେ ଆଗ୍ରହ ଦେଖାନ୍ତି ନାହିଁ । ଉଦାହରଣସ୍ୱରୂପ—

ଅଶେଷଲୋକେନ୍ଦ୍ରିୟଗୋଚରେ ବାଧାରହିତତ୍ୱେ ତତ୍ତ୍ୱେ ପରସ୍ପରଂ ବିପ୍ରତିପନ୍ନା ଦୃଶ୍ୟନ୍ତେ । ନ ହି ବାଧାରହିତଂ ନୀଲଂ ନୀଲମିତି ବ୍ରୁବନ୍ ଅପରେଣ ପ୍ରତିଷିଧ୍ୟତେ "ନୈତନ୍ନୀଲଂ, ପୀତମେତଦିତି ।

୪୭୫ । ତଥୈବ ବ୍ୟଞ୍ଜକତ୍ୱଂ ବାଚକାନାଂ ଶବ୍ଦାନାମବାଚକାନାଂ ଚ ଗୀତଧ୍ୱନୀନାଂ, ଅଶବ୍ଦରୂପାଣାଂ ଚ ଚେଷ୍ଟାଦୀନାଂ ଯତ୍ସର୍ବେଷାମନୁଭବସିଦ୍ଧଂ, ତତ୍ କେନାପହ୍ନୂୟତେ ।

୪୭୬ । ଅଶବ୍ଦମର୍ଥଂ ରମଣୀୟଂ ହି ସୂଚୟନ୍ତୋ ବ୍ୟାହାରାସ୍ତଥା ବ୍ୟାପାରନିବନ୍ଧାଶ୍ଚ ବିଦଗ୍ଧପରିଷତ୍ସୁ ବିବିଧା ବିଭାବ୍ୟନ୍ତେ । ତାନୁପହାସ୍ୟତାମାତ୍ମନଃ ' ପରିହରନ୍ କଥମଭିସନ୍ଦଧୀତ ସଚେତାଃ ।

---

ସର୍ବଜନଙ୍କ ଅବାଧ ଇନ୍ଦ୍ରିୟଗ୍ରାହ୍ୟ "ନୀଳବର୍ଣ୍ଣ, ମଧୁର ରସ, ଇତ୍ୟାଦି ବସ୍ତୁରେ ସେମାନେ (ତାର୍କିକ) ପରସ୍ପର ବିରୋଧମତ ପୋଷଣ କରନ୍ତି ନାହିଁ । ନିଃସଂଶୟଭାବେ ବୋଧ ହେଉଥିବା ନୀଳବର୍ଣ୍ଣକୁ "ଏ ନୀଳବର୍ଣ୍ଣ" ବୋଲି କହିଲେ, କୌଣସି ତାର୍କିକ "ଏ ନୀଳବର୍ଣ୍ଣ ନୁହେ· ହଳଦିଆ ବର୍ଣ୍ଣ" "ଏଭଳି କହେ ନାହିଁ ।"

୪୭୫ । ସେହିପରି ବାଚକଶବ୍ଦମାନଙ୍କର ଓ ଅବାଚକଶବ୍ଦ ଗୀତଧ୍ୱନିର ଏବଂ ଶବ୍ଦସ୍ୱରୂପଠୁ ବହିର୍ଭୂତ ଚେଷ୍ଟା (ଠାର) ପ୍ରଭୃତିର ବ୍ୟଞ୍ଜକତା ଅନୁଭବସିଦ୍ଧ । ଏହି ଅନୁଭବସିଦ୍ଧ ବ୍ୟଞ୍ଜକତାକୁ କେଉଁ ତାର୍କିକ ଫାଙ୍କିଦେଇ ପାରିବ !

୪୭୬ । ରସିକଗୋଷ୍ଠୀରେ ଅଭିଧାବୃତ୍ତି ଭିନ୍ନ ଅନ୍ୟ (ବ୍ୟଞ୍ଜନା) ବୃତ୍ତିରେ (ଅଶବ୍ଦଂ), ରମଣୀୟ ଅର୍ଥକୁ ପ୍ରକାଶ କରୁଥିବା ନାନା ପ୍ରକାର ଉକ୍ତି ଓ ଠାର ଦେଖାଯାଏ, କେଉଁ ସହୃଦୟ ବ୍ୟକ୍ତି ତାହା ଅସ୍ୱୀକାର କରି ନିଜେ ଉପହାସ ପଦବୀକୁ ପ୍ରାପ୍ତ ହେବ ?

୪୭୭ । (ବ୍ରୂୟାତ୍) ଅସ୍ତ୍ୟଭିସନ୍ଧାନାବସରେ ବ୍ୟଞ୍ଜକତ୍ୱଂ ଶବ୍ଦାନାଂ ଗମକତ୍ୱଂ ତଚ୍ଚ ଲିଙ୍ଗତ୍ୱମ୍, ଅତଶ୍ଚ ବ୍ୟଙ୍ଗ୍ୟ-ପ୍ରତୀତିର୍ଲିଙ୍ଗିପ୍ରତୀତିରେବେତି ଲିଙ୍ଗଲିଙ୍ଗିଭାବ ଏବ ତେଷାମ୍, ବ୍ୟଙ୍ଗ୍ୟବ୍ୟଞ୍ଜକଭାବୋ ନାପରଃ କଶ୍ଚିତ୍ ।

୪୭୮ । ଅତଶ୍ଚୈତଦବଶ୍ୟମେବ ବୋଦ୍ଧବ୍ୟମ୍, ଯସ୍ମାତ୍ ବକ୍ତ୍ରଭିପ୍ରାୟାପେକ୍ଷୟା ବ୍ୟଞ୍ଜକତ୍ୱମିଦାନୀମେବ ତ୍ୱୟା ପ୍ରତିପାଦିତମ୍ । ବକ୍ତ୍ରଭିପ୍ରାୟଶ୍ଚାନୁମେୟରୂପ ଏବ ।

୪୭୯ । ଅତ୍ରୋଚ୍ୟତେ—ନନ୍ୱେବମପି ଯଦି ନାମ ସ୍ୟାତ୍, ତତ୍ କିଂ ନଶ୍ଛିନ୍ନମ୍ । ବାଚକତ୍ୱଗୁଣବୃତ୍ତିବ୍ୟତିରିକ୍ତୋ ବ୍ୟଞ୍ଜକତ୍ୱଲକ୍ଷଣଃ ଶବ୍ଦବ୍ୟାପାରୋଽସ୍ତୀତ୍ୟସ୍ମାଭିରଭ୍ୟୁ-

---

୪୭୭ । ପ୍ରଶ୍ନ—ତାର୍କିକ ଯଦି ଅଭିସନ୍ଧି ରଖି କହିବ—ଶବ୍ଦର ବ୍ୟଞ୍ଜକତା ହେଉଛି ଗମକତା ତାହାହିଁ ଲିଙ୍ଗତ୍ୱ । ବ୍ୟଙ୍ଗ୍ୟପ୍ରତୀତି ହେଉଛି, ଲିଙ୍ଗିପ୍ରତୀତି । ଅର୍ଥାତ୍ ବ୍ୟଞ୍ଜକ ଲିଙ୍ଗ ଓ ବ୍ୟଙ୍ଗ୍ୟ ଲିଙ୍ଗୀ । ଏଣୁ ବ୍ୟଞ୍ଜକଶବ୍ଦ ଓ ବ୍ୟଙ୍ଗ୍ୟ ଅର୍ଥ ମଧ୍ୟରେ ଲିଙ୍ଗଲିଙ୍ଗି ଭାବ ରହିଅଛି, କିନ୍ତୁ ବ୍ୟଙ୍ଗ୍ୟ ବ୍ୟଞ୍ଜକ ଭାବ ବୋଲି ଆଉ କିଛି ଗୋଟାଏ ରହି ନାହିଁ ।

୪୭୮ । (ପୁନଶ୍ଚ ପ୍ରଶ୍ନ)—ଯେଣୁ ତୁମ୍ଭେ (ଆଲଙ୍କାରିକ), ବର୍ତ୍ତମାନ (ମୀମାଂସକ ମତ୍ତ ବିବରଣ ସମୟରେ) ବକ୍ତାର ଅଭିପ୍ରାୟ ଅନୁସାରେ ବ୍ୟଞ୍ଜକତା ହୁଏ ବୋଲି ପ୍ରତିପାଦନ କରିଅଛ, ତେଣୁ ତୁମ୍ଭଙ୍କୁ ଅବଶ୍ୟ ଆମ୍ଭ ମତ ସ୍ୱୀକାର କରିବାକୁ ପଡ଼ିବ । କାରଣ ବକ୍ତାର ଅଭିପ୍ରାୟ ଅନୁମିତିର ବିଷୟ ହେଉଥିବା ହେତୁ ଅନୁମେୟ ।

୪୭୯ । ଉତ୍ତର—(ପ୍ରୌଢ଼ିବାଦରେ ସ୍ୱୀକାରପୂର୍ବକ ଖଣ୍ଡନ କରା-ଯାଉଛି), ବ୍ୟଞ୍ଜକ ବ୍ୟଙ୍ଗ୍ୟ ମଧ୍ୟରେ ଯଦି ଏଭଳି ଲିଙ୍ଗଲିଙ୍ଗି ଭାବ ରହିପାରେ ତେବେ ଆମର କ'ଣ କ୍ଷତି? ବାଚକତା ଓ ଗୁଣବୃତ୍ତିରୁ ଅତିରିକ୍ତଭାବେ ବ୍ୟଞ୍ଜକତାରୂପକ ଗୋଟିଏ ଶବ୍ଦବ୍ୟାପାର ଅଛି ବୋଲି ଆମ୍ଭର ମତ ।

ପଗତମ୍, ତସ୍ୟ ନୈବମପି ନ କାଚିତ୍ କ୍ଷତିଃ ।
ତଦ୍ଧି ବ୍ୟଞ୍ଜକତ୍ୱଂ ଲିଙ୍ଗତ୍ୱମସ୍ତୁ ଅନ୍ୟଦ୍‌ବା, ସର୍ବଥା
ପ୍ରସିଦ୍ଧଶାବ୍ଦପ୍ରକାରବିଲକ୍ଷଣତ୍ୱଂ ଶବ୍ଦବ୍ୟାପାରବିଷୟତ୍ୱଂ
ଚ ତସ୍ୟାଽସ୍ତୀତି ନାସ୍ତ୍ୟେବାବୟୋର୍ବିବାଦଃ ।

୪୮୦ । ନ ପୁନରୟଂ ପରମାର୍ଥୋ ଯଦ ବ୍ୟଞ୍ଜକତ୍ୱଂ ଲିଙ୍ଗତ୍ୱ-
ମେବ ସର୍ବତ୍ର, ବ୍ୟଙ୍ଗ୍ୟପ୍ରତୀତିଶ୍ଚ ଲିଙ୍ଗିପ୍ରତୀତିରେବେତି ।

୪୮୧ । ଯଦପି ସ୍ୱପକ୍ଷସିଦ୍ଧୟେ ଅସ୍ମଦୁକ୍ତମନୂଦିତଂ ତ୍ୱୟା
ବକ୍ତ୍ରଭିପ୍ରାୟସ୍ୟ ବ୍ୟଙ୍ଗ୍ୟତ୍ୱେନାଭ୍ୟୁପଗମାତ୍ ତତ୍
ପ୍ରକାଶନେ ଶବ୍ଦାନାଂ ଲିଙ୍ଗତ୍ୱମେବ, ଇତି, ତଦେତତ୍
ଯଥାସ୍ମାଭିରଭିହିତଂ ତଦ୍ ବିଭଜ୍ୟ ପ୍ରତିପାଦ୍ୟତେ ।
ଶ୍ରୂୟତାମ—

---

ତୁମ୍ଭ ମତ ଅନୁସାରେ ଲିଙ୍ଗଲିଙ୍ଗି ଭାବରେ ଗ୍ରହଣ କଲେ ମଧ୍ୟ ଆମ୍ଭ ସେହି (ତସ୍ୟ) ମତର ତ କୌଣସି କ୍ଷତି ନାହିଁ ! ତେବେ ବ୍ୟଞ୍ଜକତ୍ୱ ଲିଙ୍ଗତ୍ୱ ହେଉ ବା ଅନ୍ୟ ପ୍ରକାର (ଲିଙ୍ଗିତ୍ୱ) ହେଉ, ସର୍ବଥା ଅଭିଧାଦିପ୍ରସିଦ୍ଧ ଶବ୍ଦ ବ୍ୟାପାରରୁ ବିଲକ୍ଷଣଭାବେ ସେ ଶବ୍ଦବ୍ୟାପାରର ବିଷୟ ହୋଇଅଛି ଏ ବିଷୟରେ ତ ତୁମ୍ଭର ଓ ଆମ୍ଭର କୌଣସି ବିବାଦ ନାହିଁ ?

୪୮୦ । ପୁନଶ୍ଚ ତୁମ୍ଭେ (ତାର୍କିକ) ବ୍ୟଞ୍ଜକତାକୁ ଲିଙ୍ଗତା ଓ ବ୍ୟଙ୍ଗ୍ୟ-ପ୍ରତୀତକୁ ଲିଙ୍ଗିପ୍ରତୀତ ବୋଲି ଯାହା କହୁଅଛ ତାହା ସିଦ୍ଧାନ୍ତ (ପରମାର୍ଥ) ନୁହେ ।

୪୮୧ । ଯାହା କି ତୁମ୍ଭେ ନିଜ ମତ ସାଧନ ସକାଶେ ଆମ୍ଭର ମତକୁ ଉଦ୍ଧାର କରି "ବକ୍ତାର ଅଭିପ୍ରାୟକୁ ବ୍ୟଙ୍ଗ୍ୟରୂପେ ସ୍ୱୀକାର କରୁଥିବା ହେତୁ ଅଭିପ୍ରାୟର ପ୍ରକାଶ ପାଇଁ ଶବ୍ଦକୁ କାରଣ ବୋଲି କହିଲ, ତାହା ଯେଉଁ ଭାବରେ ଆମ୍ଭେ କହିଅଛୁ, ତାହା ବିଭାଗପୂର୍ବକ (ସ୍ପଷ୍ଟଭାବେ) ବର୍ତ୍ତମାନ ପ୍ରତିପାଦନ କରୁଅଛୁ, ଶୁଣ—

୪୮୨ । ଦ୍ୱିବିଧୋ ହି ବିଷୟଃ ଶବ୍ଦାନାମ୍ । ଅନୁମେୟଃ ପ୍ରତି-
ପାଦ୍ୟଶ୍ଚ । ତତ୍ରାନୁମେୟୋ ବିବକ୍ଷାଲକ୍ଷଣଃ । ବିବକ୍ଷା ଚ
ଶବ୍ଦସ୍ୱରୂପ ପ୍ରକାଶନେଚ୍ଛା, ଶବ୍ଦେନାର୍ଥପ୍ରକାଶନେଚ୍ଛା
ଚେତି ଦ୍ୱିପ୍ରକାରା ।

୪୮୩ । ତତ୍ରାଦ୍ୟା ନ ଶାବ୍ଦବ୍ୟବହାରାଙ୍ଗମ୍ । ସା ହି ପ୍ରାଣିତ୍ୱମାତ୍ର
ପ୍ରତିପତ୍ତିଫଳା ।

୪୮୪ । ଦ୍ୱିତୀୟା ତୁ ଶବ୍ଦବିଶେଷାବଧାରଣାବସିତବ୍ୟବହ୍ଣ-
ତାପି ଶବ୍ଦକାରଣବ୍ୟବହାରନିବନ୍ଧନମ୍ ।

---

୪୮୨ । ଶବ୍ଦମାନଙ୍କର ବିଷୟ ଦୁଇପ୍ରକାର । ୧—ଅନୁମେୟ
୨—ପ୍ରତିପାଦ୍ୟ । ତନ୍ମଧ୍ୟରେ ବିବକ୍ଷା (କହିବା ଇଚ୍ଛା)ହେଉଛି, ଅନୁମେୟ ।
ସେ ବିବକ୍ଷା ମଧ୍ୟ ଦୁଇପ୍ରକାର । ଶବ୍ଦର ସ୍ୱରୂପ (ଆନୁପୂର୍ବୀ) ପ୍ରକାଶ କରିବା
ଇଚ୍ଛା ଓ ଶବ୍ଦ ଦ୍ୱାରା ଅର୍ଥ ପ୍ରତିପାଦନ କରିବା ଇଚ୍ଛା ।

୪୮୩ । ଏତନ୍ମଧ୍ୟରେ ପ୍ରଥମ, ଅର୍ଥାତ୍ ଶବ୍ଦର ସ୍ୱରୂପ ପ୍ରକାଶ ଇଚ୍ଛା,
ଶାବ୍ଦବୋଧର ବିଷୟ ନୁହେ । ଏହାକୁ ହେତୁରୂପେ ଗ୍ରହଣକରି ଅନୁମାନ-
କଲେ ବକ୍ତା ଗୋଟିଏ ପ୍ରାଣୀ ବୋଲି କେବଳ ବୋଧ ହେବ ।

(ଏଠାରେ ଅନୁମାନ ପ୍ରକାର ଯଥା :—ଯେଣୁ ଏହାର ଶବ୍ଦ
ପ୍ରକାଶ କରିବା ଇଚ୍ଛା ଅଛି, ତେଣୁ ଏ ନିଶ୍ଚୟ ପ୍ରାଣୀ । ଏପରି ଅନୁମାନ
ଦ୍ୱାରା ବକ୍ତା ଗୋଟିଏ ପ୍ରାଣୀ ବୋଲି ସିନା ବୋଧ ହେବ, କିନ୍ତୁ ବକ୍ତାର
ଉକ୍ତି ଶୁଣି ଶ୍ରୋତାର ଯେଉଁ ଜ୍ଞାନ ହୁଏ, ସେ ଜ୍ଞାନ କେଉଁଠୁ ହେବ ? ସୁତରାଂ
ଏଭଳି ଅନୁମାନରେ ବ୍ୟଞ୍ଜନା ଅନ୍ତର୍ଭୁକ୍ତ ହୋଇ ନ ପାରେ) ।

୪୮୪ । ଦ୍ୱିତୀୟ ଅର୍ଥାତ୍ ଶବ୍ଦ ଦ୍ୱାରା ଅର୍ଥ ପ୍ରତିପାଦନ ଇଚ୍ଛା ମଧ୍ୟ
ଶାବ୍ଦବୋଧର ବିଷୟ ନୁହେ । କାରଣ, ଯେ କୌଣସି ଶବ୍ଦ ଉଚ୍ଚରିତ
ହେବା ପରେ ତାହାକୁ ଶ୍ରୋତା ସାବଧାନ ହୋଇ ଗ୍ରହଣକରେ । ତେଣୁ
ପ୍ରଥମେ ବକ୍ତାର ଉଚ୍ଚାରଣ, ତାହାପରେ ଶ୍ରୋତାର ଅବଧାରଣ, ଏବଂ
ତାହାପରେ ଅର୍ଥଗ୍ରହଣ । ସୁତରାଂ ବିବକ୍ଷା ଓ ଶବ୍ଦଗ୍ରହଣର ଅନ୍ତରାଳରେ
ଅବଧାରଣ ରହୁଥିବାରୁ ବିବକ୍ଷା ସାନ୍ତରାଳ ହେତୁ । ଯଦି ଏହି

୪୮୪ । ତେ ତୁ ଦ୍ୱେ ଅପ୍ୟନୁମେୟୌ ବିଷୟଃ ଶବ୍ଦାନାମ୍ ।

୪୮୬ । ପ୍ରତିପାଦ୍ୟସ୍ତୁ ପ୍ରୟୋକ୍ତୁରର୍ଥପ୍ରତିପାଦନସମୀହାବିଷୟୀ କୃତୋଽର୍ଥଃ ।

୪୮୭ । ସ ଚ ଦ୍ୱିବିଧୋ ବାଚ୍ୟୋ ବ୍ୟଙ୍ଗ୍ୟଶ୍ଚ । ପ୍ରୟୋକ୍ତା ହି କଦାଚିତ୍ ସ୍ୱଶବ୍ଦେନାର୍ଥଂ ପ୍ରକାଶୟିତୁଂ ସମୀହତେ, କଦାଚିତ୍ ସ୍ୱଶବ୍ଦାନଭିଧେୟତ୍ୱେନ ପ୍ରୟୋଜନାପେକ୍ଷୟା କୟାଚିତ୍ ।

---

ସାନ୍ତବିଲ ହେତୁ ଦ୍ୱାରା ଅନୁମାନ କରାଯାଏ ତେବେ ଶବ୍ଦର ଉତ୍ପତ୍ତି ମାତ୍ର ବୋଧହେବ ।

(ଏ ସ୍ଥଳରେ ଅନୁମାନ ପ୍ରକାର ଯଥା :—ଯେଣୁ ଏ ଲୋକ ଅର୍ଥ ପ୍ରକାଶ ଇଚ୍ଛାରେ ଶବ୍ଦ ଉଚ୍ଚାରଣ କରୁଛି, ତେଣୁ ନିଶ୍ଚୟ କଣ୍ଠ ତାଲ୍ୱାଦି ଅଭିଘାତପୂର୍ବକ ଅର୍ଥପ୍ରକାଶକ ବର୍ଣ୍ଣସମୂହ ଉଚ୍ଚାରଣ କରନ୍ତି, ଏହିପରି ଅନୁମାନ ଦ୍ୱାରା, କେବଳ ଶବ୍ଦର ଉତ୍ପତ୍ତି ମାତ୍ର ବୋଧ ହେବ, କିନ୍ତୁ ଶବ୍ଦଗତ ଅର୍ଥର ବୋଧ ହେବନାହିଁ । ଏଣୁ ଏଭଳି ଅନୁମାନରେ ବ୍ୟଞ୍ଜନା ଅନ୍ତର୍ଭୁକ୍ତ ହୋଇ ନ ପାରେ) ।

୪୮୫ । ଏହି ଦୁଇ ପ୍ରକାର ଯାକ ବିବକ୍ଷା, ଅନୁମେୟ ଶବ୍ଦର ପ୍ରଥମ ପ୍ରକାର ବିଷୟ ।

୪୮୬ । ଶବ୍ଦର ଅନ୍ୟ ଗୋଟିଏ ବିଷୟ, ଯେ କି ପ୍ରତିପାଦ୍ୟ, ତାହା ଯଥା— ବକ୍ତାର ଯେଉଁ ଅର୍ଥପ୍ରତିପାଦନ ଚେଷ୍ଟା, ସେହି ଚେଷ୍ଟାର ବିଷୟ ହୋଇଥାଏ ଯେଉଁ ଅର୍ଥ, ତାହା ପ୍ରତିପାଦ୍ୟ । ଏହି ଅର୍ଥ ଦୁଇପ୍ରକାର । ଯଥା :—ବାଚ୍ୟ ଓ ବ୍ୟଙ୍ଗ୍ୟ ।

୪୮୭ । ଅର୍ଥ ଦୁଇପ୍ରକାର ହେବାର କାରଣ ଏହି ଯେ ବକ୍ତା କେବେ କେବେ ଯେଉଁ ଅର୍ଥର ଯେଉଁ ଶବ୍ଦବାଚକ ସେହି ଶବ୍ଦ ଦ୍ୱାରା ସେହି ଅର୍ଥକୁ ପ୍ରକାଶ କରିବାକୁ ଚେଷ୍ଟା କରିଥାଏ । ପୁନଶ୍ଚ କେବେ କେବେ କୌଣସି ଉଦ୍ଦେଶ୍ୟ ରଖି (ପ୍ରୟୋଜନାପେକ୍ଷୟା) ଅର୍ଥକୁ ବାଚକ ଶବ୍ଦ ଦ୍ୱାରା ପ୍ରକାଶ ନ କରି ବ୍ୟଞ୍ଜକ ଶବ୍ଦ ଦ୍ୱାରା ପ୍ରକାଶ କରିଥାଏ ।

୪୮୮ । ସ ତୁ ଦ୍ୱିବିଧୋଽପି ପ୍ରତିପାଦ୍ୟୋ ବିଷୟଃ ଶବ୍ଦାନାଂ ନ ଲିଙ୍ଗିତୟା ସ୍ୱରୂପେଣ ପ୍ରକାଶତେ, ଅପି ତୁ କୃତ୍ରିମେଣ ଅକୃତ୍ରିମେଣ ବା ସମ୍ବନ୍ଧାନ୍ତରେଣ ।

୪୮୯ । ବିବକ୍ଷା ବିଷୟତ୍ୱଂ ହି ତସ୍ୟାର୍ଥସ୍ୟ ଶବ୍ଦୈର୍ଲିଙ୍ଗତୟା ପ୍ରତୀୟତେ, ନତୁ ସ୍ୱରୂପମ୍ ।

୪୯୦ । ଯଦି ହି ଲିଙ୍ଗତୟା ତତ୍ର ଶବ୍ଦାନାଂ ବ୍ୟବହାରଃ ସ୍ୟାତ୍, ତତ୍ ଶବ୍ଦାର୍ଥେ ସମ୍ୟଙ୍ ମିଥ୍ୟାତ୍ୱାଦି-ବିବାଦା ଏବ ନ ପ୍ରବର୍ତ୍ତେରନ୍ ଧୂମାଦିଲିଙ୍ଗାନୁମିତାନୁମେୟାନ୍ତରବତ୍ ।

---

୪୮୮ । ଏହିପରି ବାଚ୍ୟ ଓ ବ୍ୟଙ୍ଗ୍ୟ ଦୁଇପ୍ରକାର ଯାକ ଅର୍ଥ ପ୍ରତିପାଦ୍ୟ ଏବଂ ତାହା ଶବ୍ଦର ବିଷୟ । ଏହି ପ୍ରତିପାଦ୍ୟ ଅର୍ଥାତ୍ ଉଭୟବିଧ ଅର୍ଥ "ଲିଙ୍ଗୀ''ରୂପେ ପ୍ରକାଶ ପାଏ ନାହିଁ । ଅର୍ଥାତ୍ ଶବ୍ଦ ଲିଙ୍ଗ ଓ ଅର୍ଥ ଲିଙ୍ଗୀ, ଏପରି ଭାବେ ଲିଙ୍ଗ ଦ୍ୱାରା ଲିଙ୍ଗୀର ଅନୁମାନ କରାଯାଇ ପାରେନାହିଁ । କିନ୍ତୁ (ତୁମ୍ଭ ନୈୟାୟିକଙ୍କ ମତରେ) କୃତ୍ରିମ, କିମ୍ବା (ମୀମାଂସକମାନଙ୍କ ମତରେ) ଅକୃତ୍ରିମ, ଯେଉଁ ସମ୍ବନ୍ଧାନ୍ତର (ଅଭିଧାଦି ଶବ୍ଦବ୍ୟାପାର) ତାହା ଦ୍ୱାରା ଶବ୍ଦରୁ ଅର୍ଥ ଗୃହୀତ ହୁଏ ।

ମର୍ମ—ବ୍ୟଙ୍ଗ୍ୟ ବ୍ୟଞ୍ଜକ ମଧ୍ୟରେ ଲିଙ୍ଗିଲିଙ୍ଗି ଭାବ ନାହିଁ ।

୪୮୯ । ଶବ୍ଦକୁ ଲିଙ୍ଗରୂପେ ଗ୍ରହଣ କଲେ ତାହା ଦ୍ୱାରା ପ୍ରତିପାଦ୍ୟ ଅର୍ଥର ବିବକ୍ଷାବିଷୟତାମାତ୍ର ଜଣାଯାଏ କିନ୍ତୁ ଅର୍ଥର ସ୍ୱରୂପ ଜଣାଯାଏ ନାହିଁ ।

୪୯୦ । ଯଦି ଶବ୍ଦକୁ ଲିଙ୍ଗରୂପେ ବ୍ୟବହାର କରାଯାଉ ଥାଆନ୍ତା, ତେବେ ଧୂମାଦିଲିଙ୍ଗ ଦ୍ୱାରା ଅନୁମିତ ବହ୍ନ୍ୟାଦିପରି ଶବ୍ଦ ଦ୍ୱାରା ଅନୁମିତ ଅର୍ଥ ନିୟମିତ ଭାବେ ଜ୍ଞାତ ହେଉଥାନ୍ତା ଓ ଶବ୍ଦର ଅର୍ଥ ସମ୍ବନ୍ଧରେ ମିଥ୍ୟା-ତ୍ୱାଦି ବିବାଦ ଉପସ୍ଥିତ ହେଉ ନ ଥାନ୍ତା । (ସୁତରାଂ ଶବ୍ଦ ଲିଙ୍ଗ ନୁହେ) ।

୪୯୧ । ବ୍ୟଙ୍ଗ୍ୟସ୍ଯାର୍ଥୋ ବାଚ୍ୟସାମର୍ଥ୍ୟାକ୍ଷିପ୍ତତୟା ବାଚ୍ୟବତ୍ ଶବ୍ଦସ୍ୟ ସମ୍ବନ୍ଧୀ ଭବତ୍ୟେବ । ସାକ୍ଷାଦସାକ୍ଷାଦ୍‌ଭାବୋ ହି ସମ୍ବନ୍ଧସ୍ୟାପ୍ରୟୋଜକଃ । ବାଚ୍ୟବାଚକଭାବାଶ୍ରୟତ୍ୱଂ ଚ ବ୍ୟଙ୍ଗ୍ୟବ୍ୟଞ୍ଜକତ୍ୱସ୍ୟ ପ୍ରାଗେବ ଦର୍ଶିତମ୍ ।

୪୯୨ । ତସ୍ମାଦ୍ ବକ୍ତ୍ରଭିପ୍ରାୟରୂପ—ବ୍ୟଙ୍ଗ୍ୟେ ଲିଙ୍ଗତୟା ଶବ୍ଦାନାଂ ବ୍ୟାପାରଃ । ତଦ୍‌ବିଷୟୀକୃତେ ତୁ ପ୍ରତିପାଦ୍ୟତୟା ।

୪୯୩ । ପ୍ରତୀୟମାନେ ତର୍ହି ବକ୍ତ୍ରଭିପ୍ରାୟରୂପେ ଚ ବାଚକତ୍ୱେ ନୈବ ବ୍ୟାପାରଃ ସମ୍ବନ୍ଧାନ୍ତରେଣ ବା ? ନ ତାବଦ୍‌ବାଚକତ୍ୱେନ ଯଥୋକ୍ତଂ ପ୍ରାକ୍, ସମ୍ବନ୍ଧାନ୍ତରେଣ ବ୍ୟଞ୍ଜକତ୍ୱମେବ ।

---

୪୯୧ । ବାଚ୍ୟ ଅର୍ଥ ଯେଉଁପରି ଶବ୍ଦର ସମ୍ବନ୍ଧୀ, ସେହିପରି ବ୍ୟଙ୍ଗ୍ୟାର୍ଥ ମଧ୍ୟ ବାଚ୍ୟାର୍ଥ ସାମର୍ଥ୍ୟରୁ ଆକ୍ଷିପ୍ତ ହୋଇ ଶବ୍ଦର ସମ୍ବନ୍ଧୀ ହୁଏ । ସାକ୍ଷାତ୍‌ସମ୍ବନ୍ଧ, ସମ୍ବନ୍ଧ; କିନ୍ତୁ ପରମ୍ପରା ସମ୍ବନ୍ଧ ସମ୍ବନ୍ଧ ନୁହେ, ଏପରି ମଧ୍ୟ କୁହାଯାଇ ନ ପାରେ । (ଏଣୁ ବ୍ୟଙ୍ଗ୍ୟାର୍ଥ ଶବ୍ଦର ସମ୍ବନ୍ଧୀ ହେବାରେ ବାଧା ନାହିଁ) । ବ୍ୟଙ୍ଗ୍ୟବ୍ୟଞ୍ଜକ ସମ୍ବନ୍ଧ ବାଚ୍ୟବାଚକ ସମ୍ବନ୍ଧକୁ ଆଶ୍ରୟକରି ରହିଥିବା କଥା ପୂର୍ବରୁ ପ୍ରଦର୍ଶିତ ହୋଇଅଛି ।

୪୯୨ । (ସିଦ୍ଧାନ୍ତ) ଅତଏବ ବକ୍ତାର ଅଭିପ୍ରାୟ ରୂପ ବ୍ୟଙ୍ଗ୍ୟର ବୋଧ ପାଇଁ ଶବ୍ଦ ଲିଙ୍ଗ ହୁଏ । ସେହି ଅଭିପ୍ରାୟର ବିଷୟ ଅର୍ଥାତ୍ ଅଭିପ୍ରେତ ଅର୍ଥ (ବାଚ୍ୟ ଓ ବ୍ୟଙ୍ଗ୍ୟ) ପ୍ରତିପାଦ୍ୟରୂପେ ପ୍ରକାଶପାଏ । (କିନ୍ତୁ ଅନୁମେୟ ରୂପେ ପ୍ରକାଶ ପାଏ ନାହିଁ) ।

୪୯୩ । ପ୍ରଶ୍ନ—ଉକ୍ତ ଅଭିପ୍ରାୟ ରୂପ ବ୍ୟଙ୍ଗ୍ୟ ପ୍ରତୀତ ସ୍ଥଳରେ ଶବ୍ଦର ବାଚକତାରୂପକ ବ୍ୟାପାର ହେଉଛି ? ନା ଅନ୍ୟପ୍ରକାର ବ୍ୟାପାର ହେଉଛି ?

ଉତ୍ତର—ସେଠାରେ ଶବ୍ଦର ବାଚକତା ନାହିଁ କିନ୍ତୁ ବ୍ୟଞ୍ଜକତା ଅଛି, ଏହା ପୂର୍ବରୁ କୁହାଯାଇ ଅଛି ।

୪୯୪ । ନ ଚ ବ୍ୟଞ୍ଜକତ୍ୱଂ ଲିଙ୍ଗତ୍ୱରୂପମେବ, ଆଲୋକା-
ଦିଷ୍ୱନ୍ୟଥାଦୃଷ୍ଟତ୍ୱାତ୍ ।

୪୯୫ । ତସ୍ମାତ୍ ପ୍ରତିପାଦ୍ୟୋ ବିଷୟଃ ଶବ୍ଦାନାଂ ନ ଲିଙ୍ଗି-
ତ୍ୱେନ ସମ୍ବନ୍ଧୀ ବାଚ୍ୟବତ୍ । ଯୋ ହି ଲିଙ୍ଗିତ୍ୱେନ
ତେଷାଂ ସମ୍ବନ୍ଧୀ ଯଥା ଦର୍ଶିତୋ ବିଷୟଃ, ସ ନ
ବାଚ୍ୟତ୍ୱେନ ପ୍ରତୀୟତେ, ଅପିତୁ ଔପାଧିକତ୍ୱେନ ।

୪୯୬ । ପ୍ରତିପାଦ୍ୟ-ସ୍ୟ ଚ ବିଷୟସ୍ୟ ଲିଙ୍ଗିତ୍ୱେ ତଦ୍ବିଷୟାଣାଂ
ବିପ୍ରତିପତ୍ତୀନାଂ ଲୌକିକୀନାଂ ଲୌକିକୈରେବ

---

୪୯୪ । ଆଉ ପୁଣି ବ୍ୟଞ୍ଜକତ୍ୱ ଲିଙ୍ଗତ୍ୱରୂପ ନୁହେ । ଯେଣୁ ଆଲୋକାଦିବ୍ୟଞ୍ଜକଠାରେ ଅନ୍ୟପ୍ରକାର ଦେଖା ଯାଉଛି । (ବସ୍ତୁତଃ କେହି ବୁଦ୍ଧିମାନ୍ ଦୀପକୁ ଦେଖି ଅନୁମାନ ଦ୍ୱାରା ଘଟାଦିପଦାର୍ଥକୁ ଜାଣିବାକୁ ଇଚ୍ଛା କରେ ନାହିଁ) ।

୪୯୫ । ତେଣୁ ଶବ୍ଦମାନଙ୍କର ପ୍ରତିପାଦ୍ୟ ବିଷୟ ଯେ ଅର୍ଥ, ସେ ଲିଙ୍ଗୀରୂପରେ ଶବ୍ଦର ସମ୍ବନ୍ଧୀ ନୁହେ (ଅର୍ଥାତ୍ ଅନୁମିତିର ବିଷୟ ନୁହେ) । ବାଚ୍ୟ ଅର୍ଥ ଯେପରି ପ୍ରତିପାଦ୍ୟ କିନ୍ତୁ ଅନୁମେୟ ନୁହେ, ସେହିପରି ବ୍ୟଙ୍ଗ୍ୟ-ଅର୍ଥ ମଧ୍ୟ ପ୍ରତିପାଦ୍ୟ ମାତ୍ର ଅନୁମେୟ ନୁହେ । କେବଳ ଅଭିପ୍ରାୟରୂପ ବିଷୟ ଲିଙ୍ଗୀରୂପରେ ଶବ୍ଦର ସମ୍ବନ୍ଧୀ ବୋଲି କୁହାଯାଇଛି । ସେହି ଅଭିପ୍ରାୟ ବାଚ୍ୟ ରୂପରେ ପ୍ରତୀତ ହୁଏନାହିଁ କିନ୍ତୁ ଔପାଧିକ ଭାବେ ପ୍ରତୀତ ହୁଏ ।

ସାର—(ବାଚ୍ୟ ଓ ବ୍ୟଙ୍ଗ୍ୟ ଉଭୟେ ପ୍ରତିପାଦ୍ୟ କିନ୍ତୁ ଅନୁମେୟ ନୁହନ୍ତି । ବକ୍ତାର ଅଭିପ୍ରାୟ ଅନୁମେୟ କିନ୍ତୁ ସେ ବାଚ୍ୟ ନୁହେ, ବାଚ୍ୟାଦିର ବିଶେଷଣ ମାତ୍ର) ।

୪୯୬ । ପ୍ରତିପାଦ୍ୟବିଷୟ (ଅର୍ଥ)କୁ ଯଦି ଲିଙ୍ଗୀରୂପେ ଗ୍ରହଣ କରାଯାଏ, ତେବେ ତାହା ସମ୍ବନ୍ଧରେ ଲୋକମାନଙ୍କର ସତ୍ୟ ମିଥ୍ୟା ରୂପ ବିପ୍ରତିପତ୍ତି ରହିପାରିବ ନାହିଁ । ଏହା ଆଗରୁ କୁହାଯାଇଅଛି ।

ସାର—(ବାଚ୍ୟ ଓ ବ୍ୟଙ୍ଗ୍ୟ ଯଦି ଅନୁମେୟ ହୁଅନ୍ତି, ତେବେ ସେମାନଙ୍କଠାରେ ଅସତ୍ୟ ଆରୋପ ରହିପାରିବ ନାହିଁ । ଓଳଟି ଧୂମାନୁମିତ

କ୍ରିୟମାଣାନାମଭାବଃ ପ୍ରସଜ୍ୟେତେତି । ଏତ-
ଚ୍ଚୋକ୍ତମେବ ।

୪୯୭ । ଯଥା ଚ ବାଚ୍ୟବିଷୟେ ପ୍ରମାଣାନ୍ତରାନୁଗମେନ ସମ୍ୟକ୍ତ୍ୱପ୍ରତୀତୌ କ୍ୱଚିତ୍ କ୍ରିୟମାଣାୟାଂ ତସ୍ୟ ପ୍ରମାଣାନ୍ତରବିଷୟତ୍ୱେ ସତ୍ୟପି, ନ ଶବ୍ଦବ୍ୟାପାର-ବିଷୟତାହାନିଃ, ତଦ୍ୱଦ୍‌ବ୍ୟଙ୍ଗ୍ୟସ୍ୟାପି ।

୪୯୮ । କାବ୍ୟବିଷୟେ ଚ ବାଚ୍ୟବ୍ୟଙ୍ଗ୍ୟପ୍ରତୀତୀନାଂ ସତ୍ୟତ୍ୱା-ସତ୍ୟତ୍ୱନିରୂପଣସ୍ୟାପ୍ରୟୋଜକତ୍ୱମେବେତି ତତ୍ର ପ୍ରମାଣାନ୍ତରବ୍ୟାପାରପରୀକ୍ଷା ଉପହାସାୟୈବ ସମ୍ପଦ୍ୟତେ ।

---

ବହ୍ନିପର ଦୃଢ଼ ବୁଦ୍ଧି ରହିବ । ବସ୍ତୁତଃ ଅର୍ଥ ସତ୍ୟ ଓ ଅସତ୍ୟରୂପ ହେଉଥିବାରୁ ତାହା ଅନୁମେୟ ନୁହେ) ।

୪୯୭ । ଯେଉଁଭଳି ବାଚ୍ୟ ଅର୍ଥକୁ ଅଭିଧା ବ୍ୟାପାର ବୋଧ୍ୟ ବୋଲି ସ୍ଥିର କରିବା ପରେ ତାହାର ସତ୍ୟତା ପ୍ରତିପାଦନ ନିମନ୍ତେ "ଆପ୍ତବାଦାଃବି-ସମ୍ବାଦସାମାନ୍ୟାଦନୁମେୟତା" ଇତ୍ୟାଦି ପ୍ରମାଣାନ୍ତରକୁ ଅନୁସରଣ କରାଯାଇ ଅନୁମିତିର ବିଷୟ କରାଯାଇ ପାରେ, ସେହିପରି ବ୍ୟଙ୍ଗ୍ୟ ଅର୍ଥ ବ୍ୟଞ୍ଜନାବୃତ୍ତିଗମ୍ୟ ବୋଲି ସ୍ଥିର ହେବାପରେ ତାହାର ସତ୍ୟତା ନିର୍ଣ୍ଣୟ ସକାଶେ ତାହାକୁ ଅନୁମିତିର ବିଷୟ ବୋଲି କହିଲେ ଆମ୍ଭର ଆପତ୍ତି ନାହିଁ । ଯେଣୁ ଏହା ଦ୍ୱାରା ବାଚ୍ୟର ବା ବ୍ୟଙ୍ଗ୍ୟର ଶବ୍ଦବ୍ୟାପାର ବିଷୟତାରେ ହାନି ଘଟୁନାହିଁ ।

୪୯୮ । (ବାଚ୍ୟ ଓ ବ୍ୟଙ୍ଗ୍ୟର ଅମେୟତାକୁ ପ୍ରକାରାନ୍ତରରେ ସ୍ୱୀକାର କରି କାବ୍ୟରେ ତାର ଅନାବଶ୍ୟକତା ପ୍ରତିପାଦନ କରୁଅଛି) ଯଥା—କାବ୍ୟରେ ବାଚ୍ୟପ୍ରତୀତି ଓ ବ୍ୟଙ୍ଗ୍ୟପ୍ରତୀତିର ସତ୍ୟତ୍ୱାସତ୍ୟତ୍ୱ ନିରୂପଣ ଅନାବଶ୍ୟକ, ତେଣୁ ଉକ୍ତ ଅର୍ଥ ପ୍ରତୀତି ପାଇଁ ଅନୁମିତିକରଣ ଉପହାସର ବିଷୟ ।

୪୯୯ । ତସ୍ମାଲ୍ଲିଙ୍ଗିପ୍ରତୀତିରେବ ସର୍ବତ୍ର ବ୍ୟଙ୍ଗ୍ୟପ୍ରତୀତିରିତି ନ ଶକ୍ୟତେ ବକ୍ତୁମ୍ ।

୫୦୦ । ଯତ୍ତ୍ୱନୁମେୟରୂପବ୍ୟଙ୍ଗ୍ୟ ବିଷୟଂ ଶବ୍ଦାନାଂ ବ୍ୟଞ୍ଜକତ୍ୱଂ ତତ୍ ଧ୍ୱନିବ୍ୟବହାରସ୍ୟାପ୍ରୟୋଜକମ୍ ।

୫୦୧ । ଅପିତୁ ବ୍ୟଞ୍ଜକତ୍ୱଲକ୍ଷଣଃ ଶବ୍ଦାନାଂ ବ୍ୟାପାର ଔତ୍ପତ୍ତିକଶବ୍ଦାର୍ଥସମ୍ବନ୍ଧବାଦିନାପ୍ୟଭ୍ୟୁପଗନ୍ତବ୍ୟ ଇତି ପ୍ରଦର୍ଶନାର୍ଥମୁପନ୍ୟସ୍ତମ୍ ।

୫୦୨ । ତଦ୍ଧି ବ୍ୟଞ୍ଜକତ୍ୱଂ କଦାଚିଲ୍ଲିଙ୍ଗତ୍ୱେନ, କଦାଚିଦ୍ରୂପାନ୍ତରେଣ ଶବ୍ଦାନାଂ ବାଚକାନାମବାଚକାନାଂ ଚ ସର୍ବବାଦିଭିରପ୍ରତିକ୍ଷେପ୍ୟମିତ୍ୟୟମସ୍ମାଭିର୍ୟତ୍ନ ଆରବ୍ଧଃ ।

---

୪୯୯ । ତେଣୁ ସର୍ବତ୍ର ବ୍ୟଙ୍ଗ୍ୟ ପ୍ରତୀତିକୁ ଲିଙ୍ଗପ୍ରତୀତି ବୋଲି କୁହାଯାଇ ନ ପାରେ ।

୫୦୦ । ଯାହା କି ଅନୁମେୟ (ଅଭିପ୍ରାୟ) ରୂପ ବ୍ୟଙ୍ଗ୍ୟର ପ୍ରତୀତି ପାଇଁ ଶବ୍ଦର ବ୍ୟଞ୍ଜକତା; ତାହା ଧ୍ୱନି ବ୍ୟବହାରର ପ୍ରୟୋଜକ ନୁହେ । (ଯେ ହେତୁ ଏଭଳି ଅଭିପ୍ରାୟ ବ୍ୟଞ୍ଜକତା ପ୍ରତ୍ୟେକ ବାକ୍ୟର ରହିଅଛି । ସୁତରାଂ ଏତଦ୍‌ଭିନ୍ନ ଅନ୍ୟପ୍ରକାର ବ୍ୟଞ୍ଜକତା ଧ୍ୱନି ବ୍ୟବହାରର ପ୍ରୟୋଜକ ଅଟେ) ।

୫୦୧ । ଆଉ ପୁଣି ଶବ୍ଦମାନଙ୍କର ବ୍ୟଞ୍ଜନାନାମରେ ଆଉ ଏକ ବ୍ୟାପାର ଅଛି, ତାହାକୁ ଶବ୍ଦ ଓ ଅର୍ଥ ମଧ୍ୟରେ ନିତ୍ୟ ସମ୍ବନ୍ଧବାଦୀ (ଔତ୍ପତ୍ତିକ ଶବ୍ଦାର୍ଥ ସମ୍ବନ୍ଧବାଦୀ) ମୀମାଂସକମାନେ ମଧ୍ୟ ସ୍ୱୀକାର କରିବେ ବୋଲି ପୂର୍ବରୁ ଯାହା କୁହାଯାଇଛି, ତାହା ପ୍ରଦର୍ଶନାର୍ଥ ମାତ୍ର, (ବସ୍ତୁତଃ ପ୍ରତ୍ୟେକ ଶାସ୍ତ୍ରଜ୍ଞ ବ୍ୟଞ୍ଜନାକୁ ସ୍ୱୀକାର କରିବେ) ।

୫୦୨ । ଅଭିପ୍ରାୟରୂପ ବ୍ୟଙ୍ଗ୍ୟବୋଧ ପାଇଁ ଶବ୍ଦମାନଙ୍କର ହେତୁ ରୂପରେ ବ୍ୟଞ୍ଜକତା, ଘଟାଦି ବୋଧ ପାଇଁ ଦୀପାଦିର ପ୍ରତ୍ୟକ୍ଷ ବ୍ୟଞ୍ଜକତା, ବାଚକଶବ୍ଦମାନଙ୍କର ଅଭିଧା ସାହାଯ୍ୟରେ ବ୍ୟଞ୍ଜକତା, ଅବାଚକ ଶବ୍ଦ ଗୀତ ଧ୍ୱନିପ୍ରଭୃତିର ରସାଦି ବିଷୟରେ ସ୍ୱରୂପପ୍ରତ୍ୟକ୍ଷ ଦ୍ୱାରା ବ୍ୟଞ୍ଜକତା,

୫୦୩ । ତଦେବଂ ଗୁଣବୃତ୍ତି-ବାଚକତ୍ୱାଦଭ୍ୟଃ ଶବ୍ଦପ୍ରକାରେଭ୍ୟୋ ନିୟମେନୈବ ତାବଦ୍ ବିଲକ୍ଷଣଂ ବ୍ୟଞ୍ଜକତ୍ୱମ୍ ।

୫୦୪ । ତଦନ୍ତଃପାତିତ୍ୱେଽପି ତସ୍ୟ ନ ଗ୍ରହାଦଭିଧୀୟମାନଂ ତଦ୍ ବିଶେଷସ୍ୟ ଧ୍ୱନେର୍ୟତ୍ ପ୍ରକାଶନଂ ବିପ୍ରତିପତ୍ତି-ନିରାସାୟ ସହୃଦୟବ୍ୟୁତ୍ପତ୍ତୟେ ବା ତତ୍ କ୍ରିୟମାଣ-ମନଭିସନ୍ଧେୟମେବ ।

୫୦୫ । ନହି ସାମାନ୍ୟମାତ୍ରଲକ୍ଷଣେ ନୋପଯୋଗିବିଶେଷ ଲକ୍ଷଣାନାଂ ପ୍ରତିକ୍ଷେପଃ ଶକ୍ୟଃ କର୍ତ୍ତୁମ୍ । ଏବଂ

---

ଏବଂ ଲକ୍ଷଣାସ୍ଥଳରେ ଗୁଣବୃତ୍ତି ଦ୍ୱାରା ବ୍ୟଞ୍ଜକତା, ରହୁଥିବାରୁ ବ୍ୟଞ୍ଜକତା ସର୍ବବାଦସମ୍ମତ । କେହି ତାକୁ ଅସ୍ୱୀକାର କରି ପାରିବେ ନାହିଁ । ଏଣୁ ଆମ୍ଭେ ବ୍ୟଞ୍ଜନା ନିରୂପଣ ସକାଶେ ଯତ୍ନ ଆରମ୍ଭ କରିଅଛୁଁ ।

୫୦୩ । ଅତଏବ ଗୁଣବୃତ୍ତି ଓ ବାଚକତାରୁ ବିଲକ୍ଷଣ ବ୍ୟଞ୍ଜନା ନାମରେ ଆଉ ଏକ ପ୍ରକାର ଶବ୍ଦବ୍ୟାପାର ନିଶ୍ଚିତରୂପେ ରହିଅଛି । "

୫୦୪ । ଅଭିଧା ଓ ଗୁଣବୃତ୍ତିରେ ଅନ୍ତର୍ଭୁକ୍ତ ହେଉଥିଲେ ମଧ ଆମ୍ଭେ ଆଗ୍ରହପୂର୍ବକ ବ୍ୟଞ୍ଜନାକୁ ତହିଁରୁ ପୃଥକ୍ ବୋଲି କହୁଅଛୁଁ, ଏପରି ନୁହେ । ଗୁଣବୃତ୍ତି ଓ ଅଭିଧାରୁ ବିଶିଷ୍ଟ (ତଦ୍‌ବିଶେଷ) ଯେଉଁ ଧ୍ୱନି (ଧ୍ୱନନଂ ଧ୍ୱନିଃ ଏହି ବ୍ୟୁତ୍ପତ୍ତି ଅନୁସାରେ) ଅର୍ଥାତ୍ ବ୍ୟଞ୍ଜନାବୃତ୍ତି, ତାହା ସମ୍ବନ୍ଧେ ବିରୋଧୀମାନଙ୍କ ମତ ନିରାକରଣ ସକାଶେ ଏବଂ ସହୃଦୟମାନଙ୍କର ଧ୍ୱନି-ପରିଚୟ ଉଦ୍ଦେଶ୍ୟରେ ମୁଁ ଯେଉଁ ବ୍ୟଞ୍ଜନାବୃତ୍ତି ସ୍ଥାପନ କରୁଛି; ତହିଁରେ ସନ୍ଦେହ ରଖିବା ଉଚିତ ନୁହେ ।

୫୦୫ । ସାମାନ୍ୟ ଲକ୍ଷଣ ଦ୍ୱାରା ଉପଯୋଗୀ (ଦରକାରି) ବିଶେଷ ଲକ୍ଷଣମାନଙ୍କର ତିରସ୍କାର କରିଯାଇ ନ ପାରେ । ଯଦି ଏହି ଭଳି ସାମାନ୍ୟ ଲକ୍ଷଣ ଦ୍ୱାରା ବିଶେଷ ଲକ୍ଷଣମାନଙ୍କର ଗତାର୍ଥତା ନିର୍ଣ୍ଣୟ କରିଯାନ୍ତା; ତେବେ କେବଳ ସତ୍ତାର ଲକ୍ଷଣ କରି ସାରିବା ପରେ ଶ୍ରୁତ ସ୍ମୃତିଶ୍ଚୋତ-

ହି ସତ ସତ୍ତାମାତ୍ରଲକ୍ଷଣେନୈବ ସକଳସଦ୍‌ବସ୍ତୁ-
ଲକ୍ଷଣାନାଂ ପୌନରୁକ୍ତ୍ୟପ୍ରସଙ୍ଗଃ ।

୫୦୬ । ତଦେବଂ—

ବିମତିବିଷୟୋ ଯ ଆସୀନ୍ମନୀଷିଣାଂ ସତତମ-
ବିଦିତସତତ୍ତ୍ୱଃ । ଧ୍ୱନିସଞ୍ଜ୍ଞିତଃ ପ୍ରକାରଃ କାବ୍ୟସ୍ୟ
ବ୍ୟଞ୍ଜିତଃ ସୋଽୟମ୍ ।

୫୦୭ । ପ୍ରକାରୋଽନ୍ୟୋ ଗୁଣୀଭୂତବ୍ୟଙ୍ଗ୍ୟଃକାବ୍ୟସ୍ୟ
ଦୃଶ୍ୟତେ ଯତ୍ର ବ୍ୟଙ୍ଗ୍ୟାନ୍ୱୟେ ବାଚ୍ୟଚାରୁତ୍ୱଂସ୍ୟାତ୍
ପ୍ରକର୍ଷବତ୍ । ୩.୪ ।

---

ବୈଦାଧୂବୈଦାଦିଗତ ସକଳସଦ୍‌ବସ୍ତୁମାନଙ୍କର ଲକ୍ଷଣ ବିଧାନରେ ପୁନରୁକ୍ତ ଦୋଷ ପ୍ରସକ୍ତ ହୁଅନ୍ତା ।

ପୁନରୁକ୍ତ ପ୍ରକାର ଯଥା—"(ଦ୍ରବ୍ୟଗୁଣକର୍ମମାତ୍ରବୃତ୍ତିର୍ଜାତି-ବିଶେଷଃ ସତ୍ତା" ଏହା ସତ୍ତାର ଲକ୍ଷଣ । ଏହା ମଧ୍ୟ ଦ୍ରବ୍ୟାଦିଙ୍କର ସାମାନ୍ୟ ଲକ୍ଷଣ୍ଣ, ସାମାନ୍ୟ ଲକ୍ଷଣ ସତ୍ତ୍ୱେ ଶାସ୍ତ୍ରମାନଙ୍କରେ ଦ୍ରବ୍ୟାଦିଙ୍କର ବିଶେଷ ଲକ୍ଷଣ କରାଯାଇ ଅଛି । ଏସବୁ ସ୍ଥଳରେ ସାମାନ୍ୟ ଲକ୍ଷଣରେ ବିଶେଷ ଲକ୍ଷଣ ଗତାର୍ଥ ହେଉଥିଲେ ପୁନରୁକ୍ତ ଦୋଷ ହୁଅନ୍ତା, ଏବଂ କୌଣସି ଶାସ୍ତ୍ରରେ ବିଶେଷ ଲକ୍ଷଣ କରାଯାଇ ନଥାନ୍ତା । ଏହିସବୁ କାରଣରୁ ଅଭିଧା ଗୁଣବୃତ୍ତିରୁ ସ୍ୱତନ୍ତ୍ରଭାବେ ବ୍ୟଞ୍ଜନାବୃତ୍ତିକୁ ଆମ୍ଭେ ଦର୍ଶାଇ ଅଛୁଁ । ତାହା ଆମ୍ଭର ଦୋଷ ନୁହେଁ) ।

୫୦୬ । ତେଣୁ ଏହିପରି—ଯାହା କି ମନୀଷୀମାନଙ୍କର ବିମତିର ବିଷୟ ହୋଇଥିଲା, ସେହି ଧ୍ୱନିନାମକ କାବ୍ୟର ଏକ ଅଦ୍ୱିତୀୟ (ଅବିଦିତ ସତତ୍ତ୍ୱଃ) ପ୍ରକାର ବ୍ୟବସ୍ଥାପିତ ହେଲା ।

## ଅଥ ଗୁଣୀଭୂତବ୍ୟଙ୍ଗ୍ୟନିରୂପଣ

୫୦୭ । ଗୁଣୀଭୂତବ୍ୟଙ୍ଗ୍ୟ ନାମରେ କାବ୍ୟର ଆଉ ଏକ ପ୍ରକାର ଭେଦ ଦେଖାଯାଏ, ଯେଉଁଥିରେ କି ବାଚ୍ୟ ଓ ବ୍ୟଙ୍ଗ୍ୟ ଉଭୟଙ୍କ ମଧ୍ୟରେ ବାଚ୍ୟର ଚାରୁତା ଅଧିକଭାବେ ପ୍ରକାଶ ପାଉଥାଏ ।

୫୦୮ । ବ୍ୟଙ୍ଗ୍ୟାର୍ଥୋ ଲଲନାଲାବଣ୍ୟପ୍ରଖ୍ୟୋ ଯଃ ପ୍ରତି-ପାଦିତଃ, ତସ୍ୟ ପ୍ରାଧାନ୍ୟେ ଧ୍ୱନିରିତ୍ୟୁକ୍ତମ୍ । ତସ୍ୟୈବ ତୁ ଗୁଣୀଭାବେନ ବାଚ୍ୟଚାରୁତ୍ୱପ୍ରକର୍ଷେ ଗୁଣୀଭୂତଂ ବ୍ୟଙ୍ଗ୍ୟୋ ନାମ କାବ୍ୟପ୍ରଭେଦଃ ପ୍ରକଲ୍ପ୍ୟତେ ।

୫୦୯ । ତତ୍ର ବସ୍ତୁମାତ୍ରସ୍ୟ ବ୍ୟଙ୍ଗ୍ୟସ୍ୟ ତିରସ୍କୃତବାଚେଭ୍ୟଃ ଶବ୍ଦେଭ୍ୟଃ ପ୍ରତୀୟମାନସ୍ୟ କଦାଚିତ୍ ବାଚ୍ୟରୂପ-ବାକ୍ୟାର୍ଥାପେକ୍ଷୟା ଗୁଣୀଭାବେ ସତି ଗୁଣୀଭୂତ-ବ୍ୟଙ୍ଗ୍ୟତା । ଯଥା—

୫୧୦ । ଲାବଣ୍ୟସିନ୍ଧୁରପରୈବ ହି କେୟମତ୍ର
ଯତ୍ରୋତ୍ପଲାନି ଶଶିନା ସହ ସଂପ୍ଲବନ୍ତେ ।

---

୫୦୮ । (ବୃତ୍ତି) ବ୍ୟଙ୍ଗ୍ୟ ଅର୍ଥ ସ୍ତ୍ରୀମାନଙ୍କ ଶରୀରରେ ଲାବଣ୍ୟପରି ରହିଥାଏ ବୋଲି ପୂର୍ବରୁ ପ୍ରତିପାଦନ କରା ଯାଇଅଛି ଓ ସେହି ବ୍ୟଙ୍ଗ୍ୟ ଅର୍ଥ ପ୍ରଧାନ ହେଲେ ଧ୍ୱନି ହେବ ବୋଲି କୁହାଯାଇଅଛି । ଉକ୍ତ ବ୍ୟଙ୍ଗ୍ୟ ଅର୍ଥ ଗୌଣ ହେଲେ ଓ ବାଚ୍ୟ ଅର୍ଥ ତା ଠାରୁ ଅଧିକ ରମଣୀୟ ହେଲେ ତାହାକୁ ଗୁଣୀଭୂତବ୍ୟଙ୍ଗ୍ୟ ନାମକ ଏକପ୍ରକାର କାବ୍ୟ ପ୍ରଭେଦ ବୋଲି କଳ୍ପନା କରାଯାଏ ।

୫୦୯ । ତିରସ୍କୃତବାଚ୍ୟ ଶବ୍ଦମାନଙ୍କରୁ ପ୍ରତୀତ ହେଉଥିବା ବସ୍ତୁ ମାତ୍ର ବ୍ୟଙ୍ଗ୍ୟ କଦାଚିତ୍ ବାଚ୍ୟାର୍ଥରୂପକ ବାକ୍ୟାର୍ଥର ଗୁଣୀଭୂତ ହୋଇ ଗୁଣୀଭୂତବ୍ୟଙ୍ଗ୍ୟ ହୁଏ । ଯଥା—

୫୧୦ । (କୌଣସି ତରୁଣ ଜଳକ୍ରୀଡ଼ାର୍ଥ ଆଗତ ତରୁଣୀକୁ ଦେଖି ସାଭିଳାଷ ତର୍କଣା କରୁଅଛି)—

"ଏଠାରେ ଇଏ ଆଉଗୋଟିଏ ଲାବଣ୍ୟସିନ୍ଧୁ (ଲାବଣ୍ୟର ପ୍ରବାହ) କିଏ ?, ଯେଉଁଥିରେ (ତରୁଣୀଠାରେ) କି ଚନ୍ଦ୍ରଙ୍କ ସହିତ ପଦ୍ମମାନେ ଭାସୁଛନ୍ତି । ପୁନଶ୍ଚ ଯେଉଁଠି ଗଜ ସମ୍ପୂର୍ଣ୍ଣରୂପେ ବୁଡ଼ି ଯାଇଛି କିନ୍ତୁ ତାର କୁମ୍ଭସ୍ଥଳ ମାତ୍ର ଉପରକୁ ଦେଖାଯାଉଛି । ଏହିପରି କଦଳୀକାଣ୍ଡ ମୃଣାଳ-ଦଣ୍ଡମାନେ ମଧ୍ୟ ରହିଅଛନ୍ତି (ଭାସୁଛନ୍ତି) । ଏ ଶ୍ଳୋକରେ ସିନ୍ଧୁଶବ୍ଦ

ଉନ୍ନକ୍କତ-ଦ୍ୱିରଦ କୁମ୍ଭତଟୀ ଚ ଯତ୍ର
ଯତ୍ରାପରେ କଦଳିକାଣ୍ଡ-ମୃଣାଳଦଣ୍ଡାଃ ।

୬୧୧ । ଅତିରସ୍କୃତବାଚ୍ୟେଭ୍ୟୋଽପି ଶବ୍ଦେଭ୍ୟଃ ପ୍ରତୀୟମାନସ୍ୟ ବ୍ୟଙ୍ଗ୍ୟସ୍ୟ କଦାଚିତ୍ ବାଚ୍ୟପ୍ରାଧାନ୍ୟେନ ଚାରୁତ୍ୱା-ପେକ୍ଷୟା ଗୁଣୀଭାବେ ସତି ଗୁଣୀଭୂତବ୍ୟଙ୍ଗ୍ୟତା ।

---

ଲଳନା' ଅର୍ଥରେ, ଉତ୍ପଳ ଶବ୍ଦ ନୟନ ଅର୍ଥରେ, ଶଶୀ (ଚନ୍ଦ୍ର) ଶବ୍ଦ ବଦନ ଅର୍ଥରେ, ଗଜକୁମ୍ଭ ସ୍ତନଯୁଗ ଅର୍ଥରେ, କଦଳୀ କାଣ୍ଡ ଊରୁଦ୍ୱୟ ଅର୍ଥରେ ଓ ମୃଣାଳଦଣ୍ଡ ବାହୁଦ୍ୱୟ ଅର୍ଥରେ ପ୍ରଯୁକ୍ତ ହୋଇଅଛନ୍ତି । ଉକ୍ତ ସିନ୍ଧୁପ୍ରଭୃତି ଶବ୍ଦର ସ୍ୱାର୍ଥ ବାଧିତ ହେବାରୁ ସେମାନେ ନିଜ ନିଜ ଅର୍ଥ (ସ୍ୱାର୍ଥ)କୁ ଛାଡ଼ି ଲଳନାଦି ବସ୍ତୁକୁ ପ୍ରକାଶ କରୁଅଛନ୍ତି । ସୁତରାଂ ଏଠାରେ ସିନ୍ଧୁପ୍ରଭୃତି ଶବ୍ଦ ଅତ୍ୟନ୍ତତିରସ୍କୃତ ବାଚ୍ୟ ଅଟନ୍ତି ।

ଅଭିନବଗୁପ୍ତଙ୍କ ମତରେ—ଏ ଶ୍ଳୋକରେ ତିରସ୍କୃତବାଚ୍ୟ ସିନ୍ଧ୍ୱାଦି ଶବ୍ଦ ଲଳନାଦି ବ୍ୟଙ୍ଗ୍ୟର ବ୍ୟଞ୍ଜକ । ଲଳନାଦି ବ୍ୟଙ୍ଗ୍ୟ "(ଅପରୈବ ହି କେୟଂ)" କିଏ ଇଏ ଆଉଗୋଟିଏ ? ଏହି ବାଚ୍ୟାଂଶର ପୋଷକ ଭାବରେ ରହିଅଛି । ଏଣୁ ଏଠାରେ ଅତ୍ୟନ୍ତ ତିରସ୍କୃତ ବ୍ୟଙ୍ଗ୍ୟବସ୍ତୁ ବାଚ୍ୟର ଅଙ୍ଗହୋଇ ଗୁଣୀଭୂତବ୍ୟଙ୍ଗ୍ୟ ହୋଇଅଛି ।

ମୋ ମତରେ—ଏ ଶ୍ଳୋକର ସିନ୍ଧୁ, ଉତ୍ପଳ, ଶଶୀ, ଗଜକୁମ୍ଭ, କଦଳୀକାଣ୍ଡ, ମୃଣାଳଦଣ୍ଡ ଶବ୍ଦଗୁଡ଼ିକ ତିରସ୍କୃତବାଚ୍ୟ ହୋଇ 'ଲଳନା, ନେତ୍ରପ୍ରଭୃତି ଲକ୍ଷ୍ୟାର୍ଥକୁ ବୁଝାଉଅଛନ୍ତି । ଲକ୍ଷଣାର ପ୍ରୟୋଜନ ଯଥାକ୍ରମେ ପରିପୂର୍ଣ୍ଣତା, ଆକର୍ଷକତା, ଆହ୍ଲାଦକାରିତା, ଉନ୍ନତତା, ଶୈତ୍ୟ ଓ ସାରଲ୍ୟର ଅତିଶୟତା ଏଠାରେ ବ୍ୟଙ୍ଗ୍ୟ । ଏହି ବ୍ୟଙ୍ଗ୍ୟବସ୍ତୁଗୁଡ଼ିକ ଅଙ୍ଗୁଳି ନିର୍ଦ୍ଦେଶ ପୂର୍ବକ ଇୟଂ (ଏହି) ଶବ୍ଦ ଦ୍ୱାରା ବାଚ୍ୟ ହେଉଥିବା ବାକ୍ୟାର୍ଥୀଭୂତ ନାୟିକାର ପୋଷକ ହେଉଥିବାରୁ ଗୁଣୀଭୂତ । ସୁତରାଂ ଏହା ଗୁଣୀଭୂତ-ବ୍ୟଙ୍ଗ୍ୟର ଉଦାହରଣ ।

୬୧୧ । ଅତିରସ୍କୃତବାଚ୍ୟ ଶବ୍ଦରୁ ପ୍ରତୀୟମାନ ବ୍ୟଙ୍ଗ୍ୟ, ଚାରୁ-ତାରେ ପ୍ରଧାନ ହେଉଥିବା ବାଚ୍ୟର ଗୁଣୀଭୂତ ହୋଇ ଗୁଣୀଭୂତ ବ୍ୟଙ୍ଗ୍ୟ ହେଉଥିବା ସ୍ଥଳ ଯଥା—

୫୧୨ । ଯଥୋଦାହୃତମ୍ "ଅନୁରାଗବତୀ ସନ୍ଧ୍ୟା" ଇତ୍ୟେବ-
ମାଦି ।

୫୧୩ । ତସ୍ୟୈବ ସ୍ୱୋକ୍ତ୍ୟା ପ୍ରକାଶୀକୃତତ୍ୱେନ ଗୁଣଭାବଃ ।
ଯଥୋଦାହୃତଂ "ସଂକେତ କାଲମନସମ୍ ।"

୫୧୪ । ରସାଦିରୂପବ୍ୟଙ୍ଗ୍ୟସ୍ୟ ଗୁଣୀଭାବେ ରସବଦଲଂ-
କାରେ ଦର୍ଶିତଃ ।

୫୧୫ । ତତ୍ର ଚ ତେଷ୍ୟାମାଧିକାରିକବାକ୍ୟାପେକ୍ଷୟା ଗୁଣୀ-
ଭାବୋ ବିବାହପ୍ରବୃତ୍ତଭୃତ୍ୟାନୁଯାୟିରାଜବତ୍ ।

---

୫୧୨ । (ପ୍ରଥମ ଉଦ୍ୟୋତରେ) ଉକ୍ତ "ଅନୁରାଗବତୀ ସନ୍ଧ୍ୟା" ଇତ୍ୟାଦି ଶ୍ଳୋକ ଏହାର ଉଦାହରଣ । ସେ ପଦ୍ୟରେ ସମାସୋକ୍ତି ଅଳଂକାର ଦ୍ୱାରା ବ୍ୟଙ୍ଗ୍ୟ ନାୟିକନାୟିକା ବ୍ୟବହାର ସନ୍ଧ୍ୟାଦିବସରୂପ ବାଚ୍ୟାର୍ଥରେ ଆରୋପିତ ହୋଇ ବାକ୍ୟାର୍ଥକୁ ସାଧନ କରୁଅଛି । ଅତଏବ ସେଠାରେ ବ୍ୟଙ୍ଗ୍ୟଅର୍ଥ, ବାଚ୍ୟର ଗୁଣୀଭୂତ ହେବାରୁ ଗୁଣୀଭୂତ ବ୍ୟଙ୍ଗ୍ୟ ।

୫୧୩ । ଏହି ବ୍ୟଙ୍ଗ୍ୟ ଅର୍ଥକୁ କବି ନିଜେ ଉକ୍ତିରେ ପ୍ରକାଶ କରି-ଦେଲେ ତାହା ଗୁଣୀଭୂତବ୍ୟଙ୍ଗ୍ୟ ହୁଏ । ଯଥା—"ସଙ୍କେତ କାଳ ମନସମିତ୍ୟାଦିସ୍ଥଳ" ।

୫୧୪ । ରସାଦିରୂପ ବ୍ୟଙ୍ଗ୍ୟ ଯଦି ଗୁଣୀଭୂତ ହୁଏ, ତେବେ ତାହା ରସବଦାଦି ଅଳଂକାରର ବିଷୟ ହୁଏ । ପୂର୍ବରୁ ଏହା ପ୍ରଦର୍ଶିତ ହୋଇଅଛି ।

୫୧୫ । ପ୍ରଶ୍ନ—ରସବଦାଦି ଅଳଂକାର ସ୍ଥଳରେ ରସାଦିମାନେ ବାକ୍ୟାର୍ଥ ଅପେକ୍ଷା କିଭଳି ଗୁଣୀଭୂତ ହୁଅନ୍ତି ?

ଉତ୍ତର—ରାଜାଙ୍କର ଜଣେ ଭୃତ୍ୟ ବିବାହ କରିବାକୁ ଗଲାବେଳେ ସ୍ୱୟଂ ରାଜା ଆଦରପୂର୍ବକ ବରଯାତ୍ରୀ ହୋଇ ବରାନୁଗମନ କଲା ଭଳି ସେସବୁ ସ୍ଥଳରେ ରସାଦିମାନେ ମଧ୍ୟ ଗୁଣୀଭୂତ ହୋଇଥାନ୍ତି ।

ମୋ ମତରେ ପ୍ରତ୍ୟେକ ଗୁଣୀଭୂତ ବ୍ୟଙ୍ଗ୍ୟ ସ୍ଥଳରେ ମଧ୍ୟ ଏହି ଦୃଷ୍ଟାନ୍ତ ଉପଯୋଗୀ । ଏଣୁ ତତ୍ର ଶବ୍ଦର ଅର୍ଥ "ଗୁଣୀଭୂତ ବ୍ୟଙ୍ଗ୍ୟ ସ୍ଥଳରେ" ବୋଲି କହିବା ବିଧେୟ । ସୁତରାଂ ବ୍ୟଙ୍ଗ୍ୟ ଯେଉଁଠି ବାଚ୍ୟାଦିର

୫୧୬ । ବ୍ୟଙ୍ଗ୍ୟାଲଂକାରସ୍ୟ ଗୁଣୀଭାବେ ଦୀପକାଦର୍ବିଷୟଃ ।

୫୧୭ । ତଥା—

ପ୍ରସନ୍ନଗମ୍ଭୀରପଦାଃ କାବ୍ୟବନ୍ଧାଃ ସୁଖାବହାଃ,
ଯେ ଚ ତେଷୁ ପ୍ରକାରୋଽୟମେବଂ ଯୋଜ୍ୟଃ
ସୁମେଧସା । ୩୫ ।

ଯେଚୈତେ ପରିମିତସ୍ୱରୂପା ଅପି ପ୍ରକାଶମାନାସ୍ତଥା ରମଣୀୟାଃ ସନ୍ତୋ ବିବେକିନାଂ ସୁଖାବହାଃ କାବ୍ୟ-ବନ୍ଧାସ୍ତେଷୁ ସର୍ବେଷ୍ୱେବାୟଂ ପ୍ରକାରୋ ଗୁଣୀଭୂତ-ବ୍ୟଙ୍ଗ୍ୟୋ ନାମ ଯୋଜନୀୟଃ ।

୫୧୮ । ଲଚ୍ଛୀ ଦୁହିଦା ଜାମାଉଓ ହରୀ ତଂସ ଘରିଣିଆ ଗଙ୍ଗା
ଅମିଅମିଅଙ୍କା ଅ ସୁଆ ଅହୋ କୁଡୁମ୍ବଂ ମହୋଅହିଣୋ

---

ଗୁଣୀଭୂତ ହେଉଛି, ସେ ସ୍ଥଳରେ ବିବାହ ପ୍ରବୃତ୍ତ ଭୃତ୍ୟାନୁଗତ ବାକ୍ୟ ଭଳି, ଏବଂ ଯେଉଁଠି ବ୍ୟଙ୍ଗ୍ୟ ଅନ୍ୟ ବ୍ୟଙ୍ଗ୍ୟର ଗୁଣୀଭୂତ ହେଉଛି ସେଠାରେ ବିବାହ ପ୍ରବୃତ୍ତ ରାଜାର ଅନୁଗତ ଅନ୍ୟ ବନ୍ଧୁ ରାଜାଭଳି ଗୁଣୀଭୂତ ହେଉଅଛି ।

୫୧୬ । ବ୍ୟଙ୍ଗ୍ୟ ଅଳଂକାର ଗୁଣୀଭୂତ ହେବାର ସ୍ଥଳ ହେଉଛି :— ଦୀପକାଦି ଅଳଂକାରବର୍ଗ । ସେଠାରେ ଉପମାଦି ଅଳଂକାର ବ୍ୟଙ୍ଗ୍ୟ ହୋଇଥିଲେ ମଧ୍ୟ ବାଚ୍ୟ ଅଳଂକାର ଅପେକ୍ଷା ଗୌଣ ହୋଇ ରହିଥାନ୍ତି ।

୫୧୭ । ପ୍ରସାଦଗୁଣବିଶିଷ୍ଟ (ପ୍ରସନ୍ନ), ବ୍ୟଙ୍ଗ୍ୟାର୍ଥ ସହିତ, (ଗମ୍ଭୀର), ପଦଗୁଡ଼ିକ ଯେଉଁଥିରେ ବ୍ୟବହୃତ ହୋଇଅଛନ୍ତି, ଏବଂ ଯେଉଁଗୁଡ଼ିକ ସହୃଦୟମାନଙ୍କର ଆନନ୍ଦଦାୟକ ହେତୁ ସୁଖାବହ (ପରିମିତ ହେଲେ ମଧ୍ୟ ରମଣୀୟ), ସେହିସବୁ କାବ୍ୟଗୁଡ଼ିକରେ ଏହି ଗୁଣୀଭୂତ ବ୍ୟଙ୍ଗ୍ୟ ପ୍ରକାରକୁ ରଚନାନିପୁଣ କବି ବକ୍ଷ୍ୟମାଣରୀତିରେ ସଂଯୋଜନ କରିବେ ।

୫୧୮ । ପ୍ରୟୋଗ ପ୍ରକାର ଯଥା—

ଲକ୍ଷ୍ମୀ ଝିଅ, ବିଷ୍ଣୁ ଜୁଆଇଁ, ଗଙ୍ଗା ଘରଣୀ, ଅମୃତ ଓ ଚନ୍ଦ୍ର ଦୁହେଁ ପୁଅ । ଓଃ ସମୁଦ୍ରର ପରିବାର (କେଡ଼େ ଉନ୍ନତ) ? !

(ଲକ୍ଷ୍ମୀବୃଁହୃତା ଜାମାତା ହରସ୍ତଥା ଗୃହିଣୀ ଗଙ୍ଗା ।
ଅମୃତମୃଗାଙ୍କୌ ସୁତାବହୋ କୁଟୁମ୍ବଂ ମହୋଦଧେଃ ॥)
ଇତଚ୍ଛାୟା ।

୫୧୯ । ବାଚ୍ୟାଲଂକାର ବର୍ଗୋଽୟଂ ବ୍ୟଙ୍ଗ୍ୟାଂଶାନୁଗମେ ସତି
ପ୍ରାୟେଣୈବ ପରାଂଚ୍ଛାୟାଂ ବିଭ୍ରଲ୍ଲକ୍ଷ୍ୟେ ନିରୀକ୍ଷ୍ୟତେ ।

୫୨୦ । ବାଚ୍ୟାଲଂକାରବର୍ଗୋଽୟଂ ବ୍ୟଙ୍ଗ୍ୟାଂଶସ୍ୟ ଅଲଂ-
କାରସ୍ୟ ବସ୍ତୁମାତ୍ରସ୍ୟ ବା ଯଥାଯୋଗମନୁଗମେ ସତି
ଚ୍ଛାୟାତିଶୟଂ ବିଭ୍ରଲ୍ଲକ୍ଷଣକାରୈ-ରେକଦେଶେନ

[ଏ ପଦ୍ୟରେ—(“ଉପାୟ ଶତଲଭ୍ୟା ଲକ୍ଷ୍ମୀ, ମୋକ୍ଷଦାତା ବିଷ୍ଣୁ, ସକଳ ପାପନାଶିନୀ ଗଙ୍ଗା, ମୃତ୍ୟୁହର ଅମୃତ ଓ ସକଳଜନାହ୍ଲାଦକାରୀ ଚନ୍ଦ୍ର, ଏ ସମସ୍ତେ ସମୁଦ୍ରର ପରିବାର । ସୁତରାଂ ସମୁଦ୍ର ତ୍ରିଭୁବନରେ ସାର । ଏହା ହେଉଛି ଏ ଶ୍ଳୋକର ବ୍ୟଙ୍ଗ୍ୟ ଅର୍ଥ “ଅହୋ କୁଟୁମ୍ବଂ ପୟୋନିଧେଃ (ଓଃ ସମୁଦ୍ରର ପରିବାର) ଏହି “ଅହୋ” ଶବ୍ଦର ଉକ୍ତ ବ୍ୟଙ୍ଗ୍ୟ ଅର୍ଥ ଅଙ୍ଗ ହେଉଥିବାରୁ ଗୁଣୀଭୂତ ଏଣୁ ଏହା ଗୁଣୀଭୂତ ବ୍ୟଙ୍ଗ୍ୟର ଉଦାହରଣ” କାବ୍ୟ ମଧ୍ୟରେ ଏହିଭଳି ଗୁଣୀଭୂତ ବ୍ୟଙ୍ଗ୍ୟର ରଚନା ନିବେଶ କରିବା ବିଧେୟ ।) (ଏ ଶ୍ଳୋକରେ ବ୍ୟଙ୍ଗ୍ୟବସ୍ତୁ ଗୁଣୀଭୂତ ହୋଇଅଛି ।)]

୫୧୯ । ଉପମାଦି ବାଚ୍ୟାଲଂକାର ସ୍ଥଳରେ ପ୍ରାୟଶଃ ବସ୍ତୁ ବା ଅଲଂକାରରୂପ ବ୍ୟଙ୍ଗ୍ୟ ବିଶେଷ ଗୁଣୀଭୂତ (ଅନୁଗମ) ହୋଇ ରହିଥିବାରୁ ଉକ୍ତ ଉପମାଦିବାଚ୍ୟାଲଂକାରବର୍ଗ ଅତିଶୟ ଶୋଭା ଧାରଣ କରିଥାଏ । ଏହା ସର୍ବତ୍ର ଲକ୍ଷ୍ୟସ୍ଥଳମାନଙ୍କରେ ଦେଖାଯାଏ ।

୫୨୦ । (ବୃତ୍ତିର ଅର୍ଥ) ବ୍ୟଙ୍ଗ୍ୟ ଅଲଂକାର ବା ବ୍ୟଙ୍ଗ୍ୟ ବସ୍ତୁର ଯଥା—ରୀତିରେ ଅନୁଗମ (ଆନୁଗତ୍ୟ), ଅର୍ଥାତ୍ ଗୁଣୀଭୂତତା ରହିଲେ, ପ୍ରଧାନୀଭୂତ ଉପମାଦି ବାଚ୍ୟ ଅଲଂକାର ବର୍ଗ କାବ୍ୟର ଅତ୍ୟନ୍ତ ଶୋଭା ଆଧାନ କରୁଥିବା କଥା ଅଲଂକାର ଗ୍ରନ୍ଥକାରମାନେ (ସ୍ଥାଲୀପୁଲାକ ନ୍ୟାୟରେ) ଉଦାହରଣ ମୁଖରେ କେତେକ ଅଲଂକାର ସ୍ଥଳରେ ଦର୍ଶାଇ-

ଦର୍ଶିତଃ । ସ ତୁ ତଥାରୂପଃ ପ୍ରାୟେଣ ସର୍ବଏବ ପରୀକ୍ଷ୍ୟମାଣୋ ଲକ୍ଷ୍ୟେ ନିରୀକ୍ଷ୍ୟତେ ।

---

ଛନ୍ତି । କିନ୍ତୁ ପ୍ରାୟଶଃ ପ୍ରତ୍ୟେକ ଅଳଂକାର ସ୍ଥଳରେ ବ୍ୟଙ୍ଗ୍ୟ ଅଳଂକାର ବା ବ୍ୟଙ୍ଗ୍ୟବସ୍ତୁ ଗୌଣଭାବେ ଥାଇ ସୌନ୍ଦର୍ଯ୍ୟ ସମ୍ପାଦନ କରୁଛି, ଏହା ପରୀକ୍ଷା କଲେ ଜଣାଯାଏ ।

ସାରାର୍ଥ—(ପ୍ରତ୍ୟେକ ଅଳଂକାର ସ୍ଥଳରେ କିଛି ନା କିଛି ବ୍ୟଙ୍ଗ୍ୟ ଗୁଣୀଭୂତ ହୋଇ ରହିଛି । ତେଣୁ ଅଳଂକାରମାନେ ଚମତ୍କାର ସମ୍ପାଦନ କରନ୍ତି) ।

ବିଶେଷ ଦ୍ରଷ୍ଟବ୍ୟ—

[ଅଭିନବଗୁପ୍ତ କାରିକାଗତ "ବ୍ୟଙ୍ଗ୍ୟାଂଶ" ଶବ୍ଦକୁ ଗୁଣୀଭୂତ-ବ୍ୟଙ୍ଗ୍ୟ ବୋଲି ଅର୍ଥ କରିଛନ୍ତି । ବଦରୀନାଥ ଓ ବାଚସ୍ପତି ତାଙ୍କ ମତକୁ ଅନୁସରଣ କରିଛନ୍ତି । କିନ୍ତୁ ମୂଳଗ୍ରନ୍ଥକାର ବ୍ୟଙ୍ଗ୍ୟକୁ ମହାବିଷୟରୂପେ ଓ ବ୍ୟଙ୍ଗ୍ୟ ବିଶେଷକୁ ସ୍ୱଳ୍ପବିଷୟରୂପେ ଦର୍ଶାଇଥିବାରୁ ଏଠାରେ "ବ୍ୟଙ୍ଗ୍ୟାଂଶ" ଶବ୍ଦର ଅର୍ଥ ବ୍ୟଙ୍ଗ୍ୟ ବିଶେଷ ବୋଲି କହିବା ଯୁକ୍ତିଯୁକ୍ତ । ଆଉ ପୁଣି ପ୍ରଥମୋଦ୍ୟୋତରେ "ବିଶେଷସ୍ୟାଽପି ପ୍ରାଧାନ୍ୟଂ" ବୋଲି ଲେଖାଥିବା ସ୍ଥଳେ "ଅଂଶ" ଶବ୍ଦର ଅର୍ଥ ଗୌଣବୋଲି କହିବା ଅନୁଚିତ । ଏହି ଉଦ୍ୟୋତର "ବ୍ୟଙ୍ଗ୍ୟାଂଶ" ଶବ୍ଦ, ଓ ଅନୁଗମ ଶବ୍ଦ ଯଥାକ୍ରମେ ବ୍ୟଙ୍ଗ୍ୟ-ବିଶେଷ ଓ ଗୁଣୀଭାବରୂପ ଅର୍ଥକୁ ସ୍ପଷ୍ଟଭାବେ ପ୍ରକାଶ କରୁଅଛନ୍ତି ।

ଆଉ ଏକ କଥା ଯେ "ଏକଦେଶେନ ଦର୍ଶିତଃ" ବାକ୍ୟର ଏକଦେଶ ଶବ୍ଦର ଅର୍ଥ ଏକଦେଶ ବିବର୍ତ୍ତିରୂପକ ବୋଲି ଅଭିନବଗୁପ୍ତ ଲେଖିଛନ୍ତି । ସେଭଳି ଅର୍ଥ ଯୁକ୍ତିଯୁକ୍ତ କି ନା ? ତାହା ପାଠକମାନେ ବିଚାର କରିବେ ।

ବାଚସ୍ପତି ଉକ୍ତ ବାକ୍ୟାଂଶର ବ୍ୟାଖ୍ୟା କରିବାକୁ ଯାଇ ଲେଖି-ଛନ୍ତି ଯେ—"ଆଲଂକାରିକମାନେ କେବଳ ବାଚ୍ୟାଳଂକାର ମାତ୍ର ଦର୍ଶାଇଛନ୍ତି, କିନ୍ତୁ ଗୁଣୀଭୂତ ବ୍ୟଙ୍ଗ୍ୟ ଦ୍ୱାରା ଅଳଂକାରମାନଙ୍କର ସେଭଳି ଚମତ୍କାରିତା ହେଉଛି ବୋଲି ଦର୍ଶାଇ ନାହାନ୍ତି ।"

ବଦରୀନାଥ "ଅନୁଗମ" ଶବ୍ଦର ଅର୍ଥ ସମ୍ପର୍କ ବୋଲି ଉଲ୍ଲେଖ କରି ଅନୁଗମ ଶବ୍ଦର ଆନୁଗତ୍ୟରୂପ ପ୍ରସିଦ୍ଧ ଅର୍ଥକୁ ଉପେକ୍ଷା କରିଛନ୍ତି ।

୫୬୧ । ତଥା ହି— ଦୀପକସମାସୋକ୍ତ୍ୟାଦିବଦନ୍ୟେଽପ୍ୟଲଂ-
କାରାଃ ପ୍ରାୟେଣ ବ୍ୟଙ୍ଗ୍ୟାଲଂକାରବସ୍ତ୍ୱନ୍ତରସଂସ୍ପର୍ଶିନୋ
ଦୃଶ୍ୟନ୍ତେ ।

୫୬୨ । ଯତଃ ପ୍ରଥମଂ ତାବଦତିଶୟୋକ୍ତିଗର୍ଭିତା ସର୍ବାଲଂ-
କାରେଷୁ ଶକ୍ୟକ୍ରିୟା । କୃତୈବ ଚ ସା ମହାକବିଭିଃ
କାମପି କାବ୍ୟଚ୍ଛବିଂ ପୁଷ୍ୟତୀତି, କଥଂ ହ୍ୟତିଶୟ-
ଯୋଗିତା ସ୍ୱବିଷୟୌଚିତ୍ୟେନ କ୍ରିୟମାଣା ସତୀ,
କାବ୍ୟେ ନୋତ୍କର୍ଷମାବହେତ୍ ।

୫୬୩ । ଭାମହେନାପ୍ୟତିଶୟୋକ୍ତି ଲକ୍ଷଣେ ଯଦୁକ୍ତମ୍—
"ସୈଷା ସର୍ବତ୍ର ବକ୍ରୋକ୍ତିରନୟାର୍ଥୋ ବିଭାବ୍ୟତେ ।
ଯତ୍ନୋଽସ୍ୟାଂ କବିନା କାର୍ଯ୍ୟଃ କୋଽଲଂକାରୋଽ
ନୟାବିନା । ଇତି ।

---

୫୬୧ । ଏହାକୁ ବିଶ୍ଳେଷଣ କରି କୁହାଯାଇଛି ଯେ—ଦୀପକ, ସମାସୋକ୍ତି ପ୍ରଭୃତି ସ୍ଥଳ ପରି ପ୍ରାୟଶଃ ଅନ୍ୟ ଅଳଂକାରମାନେ ମଧ୍ୟ ବ୍ୟଙ୍ଗ୍ୟ-ବସ୍ତୁ କିମ୍ବା ବ୍ୟଙ୍ଗ୍ୟ ଅଳଂକାର ସହିତ ସମ୍ପୃକ୍ତ ଥିବା ଦେଖାଯାଏ ।

ଦୀପକପ୍ରଭୃତି ସ୍ଥଳ ସମ୍ବନ୍ଧେ ୧ମ ଉଦ୍ୟୋତ ଦ୍ରଷ୍ଟବ୍ୟ)

୫୬୨ । ପ୍ରଥମତଃ ସବୁ ଅଳଂକାରଯାକ ଅତିଶୟୋକ୍ତି ଗର୍ଭକ ବୋଲି କୁହାଯାଇ ପାରେ । ମହାକବିମାନଙ୍କ ଦ୍ୱାରା ଯେଉଁ ଅତିଶୟୋକ୍ତି ଗର୍ଭିତା ସମ୍ପାଦିତ ହୋଇଥାଏ, ତାହା କାବ୍ୟର ଅପୂର୍ବ ଶୋଭା ପୋଷଣ କରେ । ଚମତ୍କାରାତିଶଯ୍ୟ ସମ୍ପାଦନ ନିମନ୍ତେ ବିଷୟର ଔଚିତ୍ୟ ଅନୁସାରେ ନିବେଶ କରାଯାଇଥିବା ଅତିଶୟୋକ୍ତି, କିପରି ବା କାବ୍ୟର ଉତ୍କର୍ଷ ସମ୍ପାଦନ ନ କରିବ ?

୫୬୩ । ସେଣୁ ଭାମହ ଅତିଶୟୋକ୍ତି ଅଳଂକାରର ଲକ୍ଷଣରେ କହିଛନ୍ତି :—("ବେଙ୍କ" ଶବ୍ଦରେ ଯେଉଁ ଉକ୍ତି ପ୍ରକାଶ କରାଯାଏ କିମ୍ବା "ବଙ୍କ" ଅର୍ଥର ପ୍ରକାଶକ ଯେଉଁ ଉକ୍ତି, ସେ ହେଉଛି ବକ୍ରୋକ୍ତି, ଅର୍ଥାତ୍ ଅତିଶୟୋକ୍ତି) ।

୫୬୪ । ତତ୍ରାତିଶୟୋକ୍ତ୍ୟର୍ପିତାଲଂକାରମଧ୍ୟେତସ୍ୟୈତ, ତଦ୍‌ବୃତ୍ତି-
ଭାବଶାତ୍ ତସ୍ୟ ଗୁରୁତ୍ୱାତିଶୟୋଗଃ । ଅନ୍ୟସ୍ୟ
ତ୍ୱଲଂକାରମାତ୍ରତୈବେତି—ସର୍ବାଲଂକାରଶରୀର
ସ୍ୱୀକରଣଯୋଗ୍ୟତ୍ୱେନ ଅଭେଦୋପଚାରାତ୍ ସୈବ
ସର୍ବାଲଂକାରରୂପେତ୍ୟୟମେବାର୍ଥୋଽବଗନ୍ତବ୍ୟଃ ।

୫୬୫ । ତସ୍ୟାଶ୍ଚାଲଂକାରାନ୍ତରସଙ୍କୀର୍ଣ୍ଣତ୍ୱଂ କଦାଚିତ୍ ବାଚ୍ୟ-
ତ୍ୱେନ, କଦାଚିତ୍ ବ୍ୟଙ୍ଗ୍ୟତ୍ୱେନ, ବ୍ୟଙ୍ଗ୍ୟତ୍ୱମପି

---

ଏହି ବକ୍ରୋକ୍ତି ଅର୍ଥାତ୍ ଅତିଶୟୋକ୍ତି ସମସ୍ତ ବାଚ୍ୟ ଅଲଂକାର ସ୍ଥଳରେ ରହିଅଛି । କବି ପରମ୍ପରା କର୍ତ୍ତୃକ ବର୍ଣ୍ଣିତ ହୋଇ ଅତି ପ୍ରସିଦ୍ଧି ଲାଭ କରିଥିବା ପୁରାତନ ବିଷୟବସ୍ତୁ ମଧ୍ୟ ଏହି ଅତିଶୟୋକ୍ତି ଦ୍ୱାରା ଉକ୍ତ ହେଲେ ନୂତନରୂପେ ଉପଭୋଗ୍ୟ ହୁଏ । କବି ଏହି ଅଲଂକାରର ସଂଯୋଜନ ସର୍ବାଦୌ ଯତ୍ନ କରିବା ଆବଶ୍ୟକ । ବକ୍ରୋକ୍ତି ନ ରହିଲେ କେଉଁ ଅଲଂକାର ଅଲଂକାରରୂପେ ରହି ପାରିବ ? ଅର୍ଥାତ୍ ଅତିଶୟୋକ୍ତି ଗର୍ଭ ନ ହେଲେ କୌଣସି ଅଲଂକାର ଚମତ୍କାର ସମ୍ପାଦନ କରି ପାରିବ ନାହିଁ ।

୫୬୪ । ଅତିଶୟୋକ୍ତି ସ୍ୱୟଂ ପୋଷକ ହୋଇ ଯେଉଁସବୁ ଅଲଂ-କାରରେ ରହିଥାଏ, କବି ପ୍ରତିଭାବଳରୁ ତହିଁରେ ଅତିଶୟ ଗୁରୁତା ରହିଥାଏ । ଯେଉଁସବୁ ଅଲଂକାରରେ ଅତିଶୟୋକ୍ତିର ସମ୍ବନ୍ଧ ନ ଥାଏ (ଅନ୍ୟସ୍ୟ), ତାହା ନାମକୁ ମାତ୍ର ଅଲଂକାର । ଏଣୁ ଅତିଶୟୋକ୍ତି ଅଲଂ-କାରର ସର୍ବବିଧ ଅଲଂକାର ନିଷ୍ପାଦନ ବିଷୟରେ ଯୋଗ୍ୟତା ଥିବାରୁ ଅଭେଦୋପଚାରରେ (ନିଷ୍ପାଦ୍ୟ, ନିଷ୍ପାଦକ, ଦୁହିଙ୍କର ତାଦାତ୍ମ୍ୟ କଳ୍ପନା ଅଭେଦୋପଚାର) ତାହାକୁ ସର୍ବାଲଂକାରରୂପା ବୋଲି କୁହାଯାଇଛି । ଏହା ଗ୍ରନ୍ଥକର୍ତ୍ତାଙ୍କ ଲକ୍ଷଣର ତାତ୍ପର୍ଯ୍ୟ ।

୫୬୫ । ଉକ୍ତ ଅତିଶୟୋକ୍ତି ଅଲଂକାର ଅନ୍ୟ ଅଲଂକାର ସହିତ ସଙ୍କୀର୍ଣ୍ଣ ହୋଇ କେଉଁଠି ବାଚ୍ୟ ଅବସ୍ଥାରେ, କେଉଁଠି ବା ବ୍ୟଙ୍ଗ୍ୟ ଭାବେ

କଦାଚିତ୍ ପ୍ରାଧାନ୍ୟେନ, କଦାଚିଦ୍‌ଗୁଣଭାବେନ ।
ତତ୍ର ଦ୍ୱୋପ୍ରକାରେ ବାଚ୍ୟାଲଂକାରମାର୍ଗଃ ।
ଦ୍ୱିତୀୟେ ଧ୍ୱନାବନ୍ତର୍ଭାବଃ । ତୃତୀୟେ ତୁ ଗୁଣୀଭୂତ-
ବ୍ୟଙ୍ଗ୍ୟରୂପତା ।

୫୨୭ । ଅୟଂ ଚ ପ୍ରକାରୋଽନ୍ୟେଷାମପ୍ୟଲଂକାରଣାମସ୍ତି,
ତେଷାଂ ନ ସର୍ବବିଷୟଃ । ଅତିଶୟୋକ୍ତେସ୍ତୁ ସର୍ବାଲଂ-
କାରବିଷୟୋଽପି ସମ୍ଭବତୀତ୍ୟୟଂ ବିଶେଷଃ ।

୫୨୭ । ଯେଷୁ ଚାଲଂକାରେଷୁ ସାଦୃଶ୍ୟମୁଖେନ ତତ୍ତ୍ୱପ୍ରତି-
ଲମ୍ଭୋ ଯଥା—ରୂପକୋପମାତୁଲ୍ୟଯୋଗିତାନିଦ-
ର୍ଶନାଦିଷୁ, ତେଷୁ ଗମ୍ୟମାନଧର୍ମମୁଖେନୈବ ଯତ୍

---

ରହିଥାଏ । ପୁନଶ୍ଚ ବ୍ୟଙ୍ଗ୍ୟ ହୋଇ ରହିଥିବା ସ୍ଥଳ ମଧ୍ୟରେ କେଉଁଟି ପ୍ରଧାନ ଭାବେ ଥାଏ କେଉଁଠି ବା ଗୁଣୀଭୂତ ହୋଇ ରହିଥାଏ । ଏତନ୍ମଧ୍ୟରେ ୧ମ ପ୍ରକାର ହେଲେ ତାହା ବାଚ୍ୟ ଅତିଶୟୋକ୍ତି ଅଳଂକାର । ୨ୟ ପ୍ରକାର ଅର୍ଥାତ୍ ଅତିଶୟୋକ୍ତି ବ୍ୟଙ୍ଗ୍ୟ ହୋଇ ପ୍ରଧାନଭାବେ ରହିଲେ ଧ୍ୱନି ମଧ୍ୟରେ ଅନ୍ତର୍ଭୁକ୍ତ ହେବ । (ମାତ୍ର ଧ୍ୱନି ତହିଁରେ ଅନ୍ତର୍ଭୁକ୍ତ ହେବ ନାହିଁ, ଏହା ପ୍ରଥମ ଉଦ୍ୟୋତରେ ବିଚାର କରାଯାଇଅଛି) । ୩ୟ ପକ୍ଷ, ଅର୍ଥାତ୍ ଅତି-ଶୟୋକ୍ତି ବ୍ୟଙ୍ଗ୍ୟ ହୋଇ ଗୌଣଭାବେ ରହିଲେ, ତାହା ଗୁଣୀଭୂତ-ବ୍ୟଙ୍ଗ୍ୟ ହେବ ।

୫୨୭ । ଏହିପରି ଅନ୍ୟ ଅଳଂକାରମାନେ ମଧ୍ୟ ଅନ୍ୟ ଅଳଂକାରର ପୋଷକ ହୋଇଥାନ୍ତି, କିନ୍ତୁ ଅତିଶୟୋକ୍ତି ପରି ସବୁ ଅଳଂକାରର ପୋଷକ ହୋଇପାରନ୍ତି ନାହିଁ । ଅତିଶୟୋକ୍ତି ଯେ ସମସ୍ତ ଅଳଂକାରର ପୋଷକ ହୋଇ ପାରେ ଏହା ହେଉଛି ତାହାର ବୈଶିଷ୍ଟ୍ୟ ।

୫୨୭ । ଯେଉଁ ସବୁ ଅଳଂକାରମାନଙ୍କର ସାଦୃଶ୍ୟ ସାହାଯ୍ୟରେ ଅଳଂକାରତ୍ୱ ନିର୍ଣ୍ଣୀତ ହୁଏ, ଯଥା—ରୂପକ, ଉପମା, ତୁଲ୍ୟଯୋଗିତା, ନିଦର୍ଶନା ପ୍ରଭୃତି, ସେ ସବୁ ସ୍ଥଳରେ ବାଚ୍ୟ ନ ହୋଇ ବ୍ୟଙ୍ଗ୍ୟ ଭାବରେ ଯେଉଁ ସାଦୃଶ୍ୟ ରହିଥାଏ, ତାହା ହିଁ ସେଠାରେ ଚମତ୍କାରାତିଶୟ ସମ୍ପାଦନ

ସାଦୃଶ୍ୟଂ, ତଦେବ ଶୋଭାତିଶୟଶାଳି ଭବତୀତି ତେ
ସର୍ବେଽପି ଗୁରୁତ୍ୱାତିଶୟଯୋଗିନଃ ସନ୍ତୋ ଗୁଣୀଭୂତ-
ବ୍ୟଙ୍ଗ୍ୟସ୍ୟୈବ ବିଷୟଃ ।

୫୬୮ । ସମାସୋକ୍ତ୍ୟାକ୍ଷେପ-ପର୍ଯ୍ୟାୟୋକ୍ତ୍ୟାଦିଷୁ ତୁ ଗମ୍ୟ-
ମାନାଂଶାବିନାଭାବେନୈବ ତତ୍ତ୍ୱବ୍ୟବସ୍ଥାନାତ୍
ଗୁଣୀଭୂତବ୍ୟଙ୍ଗ୍ୟତା ନିର୍ବିବାଦୈବ ।

୫୬୯ । ତତ୍ର ଚ ଗୁଣୀଭୂତବ୍ୟଙ୍ଗ୍ୟତାୟାମଲଙ୍କାରାଣାଂ
କେଷାଞ୍ଚିଦଲଙ୍କାରବିଶେଷଗର୍ଭତାୟାଂ ନିୟମଃ ।
ଯଥା—ବ୍ୟାଜସ୍ତୁତେଃ ପ୍ରେୟୋଽଲଙ୍କାରଗର୍ଭତ୍ୱେ ।

---

କରିଥାଏ । ଏଣୁ ଅତ୍ୟନ୍ତ ରମଣୀୟ ସେହି ସବୁ ଅଳଂକାରମାନେ ଗୁଣୀଭୂତ
ବ୍ୟଙ୍ଗ୍ୟର ବିଷୟ ।

୬୬୮ । ସମାସୋକ୍ତି, ଆକ୍ଷେପ, ପର୍ଯ୍ୟାୟୋକ୍ତି ପ୍ରଭୃତି ଅଳଂକାର-
ମାନେ ବ୍ୟଙ୍ଗ୍ୟ ଅଂଶ ବ୍ୟତିରେକେ ନିଷ୍ପନ୍ନ ହୋଇ ପାରନ୍ତି ନାହିଁ । ଏଣୁ
ସେ ସ୍ଥଳମାନ ନିର୍ବିବାଦରେ ଗୁଣୀଭୂତ ବ୍ୟଙ୍ଗ୍ୟ । (ପ୍ରଥମ ଉଦ୍ୟୋତ
ଦ୍ରଷ୍ଟବ୍ୟ) ।

୬୬୯ । ପୁନଶ୍ଚ ଆଉ କେତେକ ଅଳଂକାରର ନିର୍ଦ୍ଦିଷ୍ଟ କୌଣସି
କୌଣସି ଅଳଂକାର ନିୟମିତଭାବେ ପୋଷକ ହୋଇ ରହନ୍ତି; ଯଥା—
ବ୍ୟାଜସ୍ତୁତିରେ ପ୍ରେୟୋଽଳଂକାର ।

(ବ୍ୟାଜସ୍ତୁତିରେ ବାଚ୍ୟ ନିନ୍ଦା ଦ୍ୱାରା ସ୍ତୁତିଗମ୍ୟ ହୁଏ, କିମ୍ବା
ବାଚ୍ୟ ସ୍ତୁତି ଦ୍ୱାରା ନିନ୍ଦା ଗମ୍ୟ ହୋଇଥାଏ । ପ୍ରଥମ ସ୍ଥଳର ବ୍ୟଙ୍ଗ୍ୟସ୍ତୁତି
(ଦେବାଦି ବିଷୟକ ରତି) ଗୁଣୀଭୂତ ହୋଇ ବାଚ୍ୟ, ବାକ୍ୟାର୍ଥର ପୋଷକ
ହୋଇଥାଏ । (ଭାବ ଗୁଣୀଭୂତ ହେଲେ ତାହାକୁ ପ୍ରେୟୋଽଳଂକାର କୁହା-
ଯାଏ) । ସୁତରାଂ ବ୍ୟାଜସ୍ତୁତିରେ ପ୍ରେୟାଳଂକାର ରହିବା ନିଶ୍ଚିତ ।

୫୩୦ । କେଷାଂଚିଦଲଂକାରମାତ୍ରଗର୍ଭତାପ୍ୟଂ ନୟମଃ ।
ଯଥା—ସନ୍ଦେହାଦନାମୁପମାଗର୍ଭତ୍ୱେ ।

୫୩୧ । କେଷାଂଚିଦଲଂକାରଣାଂ ପରସ୍ପରଗର୍ଭତାଽପି ସମ୍ଭବତି
ଯଥା—ଦୀପକୋପମୟୋଃ, ତତ୍ର ଦୀପକମୁପମାଗର୍ଭତ୍ୱେନ
ପ୍ରସିଦ୍ଧମ୍ । ଉପମାଽପି କଦାଚିଦ୍ଦୀପକଚ୍ଛାୟାନୁଯାୟିନୀ,
ଯଥା—ମାଲୋପମା । ତଥାହି—ପ୍ରଭାମହତ୍ୟା ଶିଖୟେ-
ବ ଦୀପଃ, ଇତ୍ୟାଦୌସ୍ଫୁଟୈବ ଦୀପକଚ୍ଛାୟା ଲକ୍ଷ୍ୟତେ ।

---

୫୩୦ । କେତେକ ଅଳଂକାରରେ ଅନ୍ୟଗୋଟେ ଅଳଂକାର ପୋଷକ ଭାବେ ନିଷ୍ଟସ୍ଥ ରହିବ । ଯଥା—ସନ୍ଦେହାଦି ଅଳଂକାରରେ ଉପମା ।

(ସନ୍ଦେହାଦି ସାଦୃଶ୍ୟମୂଳକ ଅଳଂକାରମାନଙ୍କରେ ବ୍ୟଙ୍ଗ୍ୟ ଉପମା ଅଳଂକାର ପୋଷକ ଭାବେ ଗୁଣୀଭୂତ ହୋଇ ଗୁଣୀଭୂତ ବ୍ୟଙ୍ଗ୍ୟ ହୋଇଥାଏ) ।

୫୩୧ । ଆଉ ପୁଣି କେତେକ ଅଳଂକାରର ପରସ୍ପର ଗର୍ଭତା ସମ୍ଭବ ହୁଏ ।

ଯଥା—ଦୀପକ ଓ ଉପମା ମଧ୍ୟରେ ।

ଦୀପକର ଉପମାଗର୍ଭତା ସୁପ୍ରସିଦ୍ଧ । କ୍ୱଚିତ୍ ଦୀପକ ମଧ୍ୟ ଉପମାର ପୋଷକ ହୋଇଥାଏ । ଯଥା ମାଲୋପମାଳଂକାରରେ ।—କୁମାରସମ୍ଭବ ୧ମ ସର୍ଗ:—(ସମ୍ପୂର୍ଣ୍ଣ ଶ୍ଳୋକ)—

"ପ୍ରଭାମହତ୍ୟା ଶିଖୟେବ ଦୀପଃ ସ୍ୱି ମାର୍ଗୟେବ ତ୍ରିଦିବସ୍ୟ ମାର୍ଗଃ
ସଂସ୍କାରବତ୍ୟେବ ଗିରା ମନୀଷୀ ତୟା ସ ପୂତଶ୍ଚ ବିଭୂଷିତଶ୍ଚ ।

ଅର୍ଥ—ସମୁଜ୍ଜ୍ୱଳପ୍ରଭା ଶିଖା ଦ୍ୱାରା ଦୀପ ପରି, ଗଙ୍ଗା ଦ୍ୱାରା ସ୍ୱର୍ଗ-ମାର୍ଗ ପରି ସଂସ୍କୃତ ଭାଷା ଦ୍ୱାରା ମନୀଷୀ (ସଜ୍ଜନ) ପରି; ନିଜ ଦୁହିତା ପାର୍ବତୀଙ୍କ ଦ୍ୱାରା ପିତା ହିମାଳୟ ପୂତ ଓ ଭୂଷିତ ହୋଇଥିଲେ ।

ଏ ପଦ୍ୟରେ ମାଲୋପମାଳଂକାର ବାଚ୍ୟ । ଉପମାର ସାଧାରଣ ଧର୍ମ ପୂତତ୍ୱ ଓ ବିଭୂଷିତତ୍ୱ । ତାହା ପ୍ରସ୍ତୁତ ହିମାଳୟ ଓ ଅପ୍ରସ୍ତୁତ ଦୀପାଦିଙ୍କ-

**୪୩୨ । ତଦେବଂ ବ୍ୟଙ୍ଗ୍ୟାଂଶସଂସ୍ପର୍ଶେ ସତି ଚାରୁତ୍ୱାତିଶୟ-ଯୋଗିନୋ ରୂପକାଦୟୋଽଲଂକାରାଃ ସର୍ବ ଏବ ଗୁଣୀଭୂତବ୍ୟଙ୍ଗ୍ୟସ୍ୟ ମାର୍ଗଃ । ଗୁଣୀଭୂତବ୍ୟଙ୍ଗ୍ୟତ୍ୱଂ ଚ ତେଷାଂ ତଥା ଜାତୀୟାନାଂ ସର୍ବେଷାମେବୋକ୍ତାନୁକ୍ତାନାଂ ସାମାନ୍ୟମ୍ । ତଲ୍ଲକ୍ଷଣେ ସର୍ବ ଏବୈତେ ସୁଲକ୍ଷିତା ଭବନ୍ତି ।**

---

ଠାରେ ରହୁଥିବାରୁ ଦୀପକ ଅଲଂକାରର ବିଷୟ ହେଉଅଛି । ଏହି ଦୀପକ ମୁଖ୍ୟଭାବେ ନ ରହି ମାଲୋପମାର ପୋଷକ ହେଉଅଛି । ସୁତରାଂ ଏଠାରେ ଉପମାର ଦୀପକଗର୍ଭିତା । ଏହିପରି ଅନ୍ୟସ୍ଥଳରେ ମଧ୍ୟ ପରିଲକ୍ଷିତ ହୁଏ ।

୪୩୨ । ଅତଏବ ରୂପକାଦି ଅଲଙ୍କାରମାନେ ଏହିପରି ବ୍ୟଙ୍ଗ୍ୟ ବିଶେଷର ସମ୍ପର୍କ ଲାଭକରି ଅତ୍ୟନ୍ତ ଚମତ୍କାରୀ ହେଉଥାନ୍ତି । ଏହାସବୁ ଗୁଣୀଭୂତ ବ୍ୟଙ୍ଗ୍ୟର ସ୍ଥଳ । ଏବମ୍ଭୂତ ଅବସ୍ଥାପନ ଉକ୍ତ ଅନୁକ୍ତ ସମସ୍ତ ଅଲଙ୍କାରର ଗୁଣୀଭୂତ ବ୍ୟଙ୍ଗତା ସମାନ ଅଟେ, ତେଣୁ ଗୁଣୀଭୂତ ବ୍ୟଙ୍ଗ୍ୟର ଲକ୍ଷଣ ଦ୍ୱାରା ଏହି ସମସ୍ତ (ଅଲଂକାର ବର୍ଗ) ଗୁଣୀଭୂତ ବ୍ୟଙ୍ଗ୍ୟ ବୋଲି ଲକ୍ଷିତ ହେଉଅଛି ।

ସାରାର୍ଥ:—ପ୍ରତ୍ୟେକ ଅଲଂକାର ଗୁଣୀଭୂତ ବ୍ୟଙ୍ଗ୍ୟର ସ୍ଥଳ, ସୁତରାଂ ଗୁଣୀଭୂତ ବ୍ୟଙ୍ଗ୍ୟ ଅଲଂକାରର ଲକ୍ଷଣ । ଯେଉଁଠି ଗୁଣୀଭୂତ ବ୍ୟଙ୍ଗ୍ୟ ନାହିଁ ତାହା ଅଲଙ୍କାର ନୁହେ । ଅତଏବ ବ୍ୟଙ୍ଗ୍ୟ ସମ୍ପର୍କ ଅଲଙ୍କାରତାର ହେତୁ । "ତେଣୁ ଯେପରି ଗୋରୁ ସେପରି ଗବୟ ।" 'ବାହୀକଟା ଗୋରୁ" "କାଠ କି ପଥର କି" ଇତ୍ୟାଦି ବାକ୍ୟରେ ଯଥାକ୍ରମେ ଉପମା, ରୂପକ, ସନ୍ଦେହ ପ୍ରଭୃତି ଅଲଂକାର ପ୍ରାପ୍ତ ହେଉଥିଲେ ମଧ୍ୟ ବ୍ୟଙ୍ଗ୍ୟ ସମ୍ପର୍କ ନ ଥିବାରୁ ସେମାନେ ଅଲଂକାର ପଦବାଚ୍ୟ ହୋଇ ନ ପାରନ୍ତି ।

ମର୍ମ—ବ୍ୟଙ୍ଗ୍ୟ କାବ୍ୟତ୍ୱର ପ୍ରୟୋଜକ । ସେ ଯେଉଁଠି ପ୍ରଧାନ ଭାବେ କିମ୍ବା ଅପ୍ରଧାନ ଭାବେ ନାହିଁ ତାହା କାବ୍ୟ ନୁହେ । ଅତଏବ ଅଲଂକାର ମାତ୍ରେ ଗୁଣୀଭୂତ ବ୍ୟଙ୍ଗ୍ୟ ।

୬୩୩ । ଏକୈକସ୍ୟ ରୂପବିଶେଷକଥନେନ ତୁ ସାମାନ୍ୟ-
ଲକ୍ଷଣରହିତେନ ପ୍ରତିପଦପାଠେନେବ ଶବ୍ଦା ନ
ଶକ୍ୟନ୍ତେ ତତ୍ତ୍ୱତୋ ନିର୍ବକ୍ତୁମ୍, ଆନନ୍ତ୍ୟାତ୍ ।
ଅନନ୍ତା ହି ବାଗ୍ବିକଳ୍ପାଃ, ତତ୍ପ୍ରକାରା ଏବ
ଚାଲଂକାରାଃ ।

୬୩୪ । ଗୁଣୀଭୂତବ୍ୟଙ୍ଗ୍ୟସ୍ୟ ଚ ପ୍ରକାରାନ୍ତରେଣାପି ବ୍ୟଙ୍ଗ୍ୟା-
ର୍ଥାନୁଗମଲକ୍ଷଣେନ ବିଷୟତ୍ୱମସ୍ତ୍ୟେବ ।

୬୩୫ । ତଦୟଂ ଧ୍ୱନେର୍ନିଃଷ୍ୟନ୍ଦରୂପୋ ଦ୍ୱିତୀୟୋଽପି ମହାକବି
ବିଷୟୋଽତିରମଣୀୟୋ ଲକ୍ଷଣୀୟଃ ସହୃଦୟୈଃ ।

---

୬୩୩ । (ପତଞ୍ଜଳିଙ୍କ ମତରେ) ଶବ୍ଦ ଅନନ୍ତ, "ତେଣୁ ଘଟ, ଘଟ, ଇତ୍ୟାଦି କ୍ରମରେ ପ୍ରତ୍ୟେକ ଶବ୍ଦକୁ ଦର୍ଶାଇ ପାରିବା ଅସମ୍ଭବ । ସେହିପରି ଅଳଙ୍କାରମାନେ ଅନନ୍ତ । ଗୁଣୀଭୂତ ବ୍ୟଙ୍ଗ୍ୟରୂପରୁ ସେମାନଙ୍କର ସାମାନ୍ୟ ଲକ୍ଷଣ । ସେମାନେ ଅନନ୍ତ ହୋଇଥିବା ହେତୁ ସେମାନଙ୍କର ସାମାନ୍ୟ ଲକ୍ଷଣ ଭିନ୍ନ ବିଶେଷ ଲକ୍ଷଣ କରିହେବ ନ ପାରେ । ଯଦି ବିଶେଷ ଲକ୍ଷଣ କରାଯିବ ତେବେ ଆନନ୍ତ୍ୟ-ଦୋଷ ଘଟିବ । କାରଣ ବାକ୍ ବିକଳ୍ପ (ବାଗ୍ ବ୍ୟବହାର) ଅନନ୍ତ ଓ ଅଳଙ୍କାରଗୁଡ଼ିକ ତାହାର ପ୍ରକାର ମାତ୍ର । ଅତଏବ ପ୍ରତ୍ୟେକ ଅଳଂକାର ଗୁଣୀଭୂତ ବ୍ୟଙ୍ଗ୍ୟର ସ୍ଥଳ ।

୬୩୪ । ଅଳଂକାର ମାତ୍ରେ ଗୁଣୀଭୂତ ବ୍ୟଙ୍ଗ୍ୟର ସ୍ଥଳ, ଏହା ବୋଲି ଗୁଣୀଭୂତ ବ୍ୟଙ୍ଗ୍ୟ ମାତ୍ରେ ଯେ ଅଳଂକାର ହେବେ ତାହା ନୁହେ । (ଉଦାହରଣ ଯଥା)—ବସ୍ତୁ ଅଳଂକାର, ରସାଦିରୂପ ତ୍ରିବିଧ ବ୍ୟଙ୍ଗ୍ୟ ଗୁଣୀଭୂତ ହେଲେ (ଅନୁଗମ ଦ୍ୱାରା) ଗୁଣୀଭୂତ ବ୍ୟଙ୍ଗ୍ୟ ହୁଅନ୍ତି । ଏହି ଲକ୍ଷଣ ଅନୁସାରେ ଗୁଣୀଭୂତ ବ୍ୟଙ୍ଗ୍ୟର ଅଳଂକାର ଭିନ୍ନ ଅନ୍ୟ ବିଷୟ ମଧ୍ୟ ରହିଅଛି ।

୬୩୫ । ଅତଏବ ଧ୍ୱନିର ନିଃଷ୍ୟନ୍ଦ ସ୍ୱରୂପ ଗୁଣୀଭୂତ ବ୍ୟଙ୍ଗ୍ୟ ନାମକ ଅତିରମଣୀୟ ଏବଂ ମହାକବିମାନଙ୍କ ଦ୍ୱାରା କେବଳ ଗ୍ରଥିତ ହେବାକୁ ଯୋଗ୍ୟ ଏହି ଦ୍ୱିତୀୟ ପ୍ରକାରଟିକୁ ମଧ୍ୟ ସହୃଦୟମାନେ ଦୃଷ୍ଟିଦେବା ଉଚିତ ।

ସର୍ବଥା ନାସ୍ତ୍ୟେବ ସହୃଦୟହୃଦୟହାରିଣଃ କାବ୍ୟସ୍ୟ ସପ୍ରକାରେ, ଯତ୍ର ନ ପ୍ରତୀୟମାନାର୍ଥସଂସ୍ପର୍ଶେନ ସୌଭାଗ୍ୟମ୍ । ତଦିଦଂ କାବ୍ୟରହସ୍ୟଂ ପରମିତି ସୂରିଭିର୍ଭାବନୀୟମ୍ ।

୪୩୬ । ମୁଖ୍ୟା ମହାକବିଗିରାମଲଂକୃତିଭୃତାମପି ।
ପ୍ରତୀୟମାନଚ୍ଛାୟୈଷା ଭୂଷା ଲଜ୍ଜେବ ଯୋଷିତାମ୍ । ୩୭

୪୩୭ । ଅନୟା ସୁପ୍ରସିଦ୍ଧୋଽପ୍ୟର୍ଥଃ କମପି କାମନୀୟକମାନୀୟତେ ।

୪୩୮ । ତଦ୍ ଯଥା —
ବିସ୍ରମ୍ଭୋତ୍ଥା ମନ୍ମଥାଜ୍ଞାବିଧାନେ
ଯେ ମୁଗ୍ଧାକ୍ଷ୍ୟାଃ କେଽପି ଲୀଲାବିଳାସାଃ ।

---

ଯେଉଁଥିରେ ପ୍ରତୀୟମାନ ଅର୍ଥର ସମ୍ପର୍କ ନାହିଁ, ସେ ସର୍ବଥା ସହୃଦୟହୃଦୟହାରୀ କାବ୍ୟ ହୋଇ ନ ପାରେ । ଅର୍ଥାତ୍ ଯେଉଁଠି ମୁଖ୍ୟଭାବେ ବା ଗୌଣଭାବେ ବ୍ୟଙ୍ଗ୍ୟ ନାହିଁ ସେ କାବ୍ୟ ନୁହେଁ, ଏହା କାବ୍ୟର ଗୂଢ଼ ରହସ୍ୟ ବୋଲି ପଣ୍ଡିତମାନେ ଜାଣିରଖିବା ଉଚିତ ।

୪୩୬ । ଯେପରି କୌଣସି ସ୍ତ୍ରୀଲୋକ ଅଳଂକାର ଦ୍ୱାରା ଭୂଷିତା ହୋଇଥିଲେ ମଧ୍ୟ କୁଳାଙ୍ଗନାମାନଙ୍କ ମୁଖ୍ୟ ଆଭରଣ ଲଜ୍ଜା ଦ୍ୱାରା ବିଶେଷଭାବେ ଭୂଷିତା ହୋଇଥାଏ, ସେହିପରି କବି ରଚନା ନାନା ଅଳଂକାର ଯୁକ୍ତ ହୋଇଥିଲେ ମଧ୍ୟ ଏହି ପ୍ରତୀୟମାନ ଅର୍ଥ (ବ୍ୟଙ୍ଗ୍ୟ) ଦ୍ୱାରା ସମ୍ୟକ୍‌ଭାବେ ଭୂଷିତ ହୁଏ ।

ଭାବାର୍ଥ—ବ୍ୟଙ୍ଗ୍ୟ କାବ୍ୟର ପ୍ରଧାନ ଭୂଷଣ ।

୪୩୭ । ଏହି ବ୍ୟଙ୍ଗ୍ୟାର୍ଥ ଦ୍ୱାରା ଯେ କୌଣସି ବିଷୟବସ୍ତୁ କବି ପରମ୍ପରାକ୍ରମେ ବ୍ୟବହୃତ ହୋଇଥିଲେ ମଧ୍ୟ ଅପୂର୍ବ ଶୋଭା ଧାରଣ କରେ ।

୪୩୮ । ବ୍ୟଙ୍ଗ୍ୟ ସମ୍ପର୍କରୁ ପ୍ରସିଦ୍ଧ ବସ୍ତୁର ଅପୂର୍ବତା ଯଥା— ତ୍ରିଲୋକରେ ଅଲଂଘ୍ୟାଦେଶ କାମଦେବର (ଲଜ୍ଜା ଭୟ ତ୍ୟାଗପୂର୍ବକ

ଅସ୍ପୃଷ୍ଟାସ୍ତେ ଚେତସା କେବଳେନ
ସ୍ଥିତ୍ୱୈକାନ୍ତେ ସନ୍ତତଂ ଭାବନୀୟାଃ ।

୫୩୯ । ଇତ୍ୟତ୍ର କେଽପି ଇତ୍ୟନେନ ପଦେନ ବାଚ୍ୟମସ୍ପୃଷ୍ଟ-ମଭିଦଧତା ପ୍ରତୀୟମାନମକ୍ଲିଷ୍ଟମନନ୍ତମର୍ପୟତା କା ଛାୟା ନୋପପାଦିତା ?

୫୪୦ । ଅର୍ଥାନ୍ତରଗତିଃ କାକ୍ୱା ଯା ଚୈଷା ପରିଦୃଶ୍ୟତେ ।
ସା ବ୍ୟଙ୍ଗ୍ୟସ୍ୟ ଗୁଣୀଭାବେ ପ୍ରକାରମିମମାଶ୍ରିତା । ୩୮
ଯା ଚୈଷା କାକ୍ୱା କ୍ୱଚିଦର୍ଥାନ୍ତରପ୍ରତୀତିର୍ଦୃଶ୍ୟତେ, ସା ବ୍ୟଙ୍ଗ୍ୟସ୍ୟାର୍ଥସ୍ୟ ଗୁଣୀଭାବେ ସତି, ଗୁଣୀଭୂତ-ବ୍ୟଙ୍ଗ୍ୟଲକ୍ଷଣମିମଂ କାବ୍ୟପ୍ରଭେଦମାଶ୍ରୟତେ ।

---

ବିହାର କର, ଏଭଳି) ଆଦେଶ ପାଳନ କରିବାରେ ଲଜ୍ଜା ଉତ୍ପାଦ ପ୍ରତି-କୂଳକାରଣ ଅଭାବରୁ ଅତି ବଶ୍ୟସ୍ତଦ୍ଭବେ ବାମଲୋଚନା (ମୁଗ୍ଧାକ୍ଷୀ)ର କ୍ଷଣକୁକ୍ଷଣ ଉତ୍ପନ୍ନ ଯେଉଁ ସବୁ ନୂଆ ନୂଆ (ଅକ୍ଷୁଣ୍ଣ) ବିହାର ହୁଏ, ତାହା ଏକାନ୍ତରେ ବସି ମନରେ କେବଳ ଚିନ୍ତା କରିବାର କଥା ।

୫୩୯ । ଏ ଶ୍ଲୋକରେ "କେଽପି" ପଦ ପ୍ରଥମତଃ ବାଚ୍ୟ ବିଷୟ ବସ୍ତୁକୁ ଅସ୍ପଷ୍ଟଭାବେ ଦର୍ଶାଇଥିଲେ ମଧ୍ୟ ସ୍ପଷ୍ଟଭାବେ ଅନନ୍ତ ପ୍ରତୀୟମାନ ବସ୍ତୁକୁ ପ୍ରକାଶ କରିବା ଦ୍ୱାରା କେଉଁ ଅପୂର୍ବ ଶୋଭା ସମ୍ପାଦନ ନ କରୁଛି ? ।

୫୪୦ । (ଶୋକହର୍ଷାଦି ଯୋଗୁଁ କଣ୍ଠର ଯେଉଁ ଧ୍ୱନି ଭେଦ ହୁଏ, ତାହାକୁ କାକୁ ବୋଲାଯାଏ) । ଏହି କାକୁ ଦ୍ୱାରା ଯେଉଁ ବ୍ୟଙ୍ଗ୍ୟ ପ୍ରତୀତି (ଅର୍ଥାନ୍ତର ଗତି) ଦେଖାଯାଏ, ସେଠାରେ ବ୍ୟଙ୍ଗ୍ୟ (ପ୍ରତୀୟମାନାର୍ଥ) ଗୁଣୀ-ଭୂତ ହେଉଥିବା ହେତୁ ତାହା ଏହି ଗୁଣୀଭୂତବ୍ୟଙ୍ଗ୍ୟ ପ୍ରକାରର ଅନ୍ତର୍ଭୁକ୍ତ । (ଅର୍ଥାତ୍ ତାହା କାକ୍ୱାକ୍ଷିପ୍ତନାମକ ଗୁଣୀଭୂତବ୍ୟଙ୍ଗ୍ୟ ପ୍ରକାର) ।

୫୪୧ । ଯଥା—

"ସ୍ୱସ୍ଥା ଭବନ୍ତୁ ମୟି ଜୀବତି ଧାର୍ତ୍ତରାଷ୍ଟ୍ରାଃ ।"

୫୪୨ । ଯଥା ବା—

ଆମ ଅପଇଡଁଓରମ ପଇବଏ ! ଣ ଭୁଏ ମଲିଣିଅଁ ସୀଲମ୍,
କ୍ଃ ଓଣ ଜଣସ୍ୱ ଜାଅ ବ ଚନ୍ଦଳଂ ତଂ ଣ ବାମେମୋ
(ଭବାମୋଽସତ୍ୟ ଉପରମ ପତିବ୍ରତେ !

---

୫୪୧ । ତାହାର ଉଦାହରଣ ଯଥା—(ବେଣୀସଂହାର ୧ମ ଅଙ୍କ) ସମ୍ପୂର୍ଣ୍ଣ ଶ୍ଳୋକ—"ଲାକ୍ଷାଗୃହାନଳବିଷାନ୍ନ-ସଭା ପ୍ରବେଶୈଃ

ପ୍ରାଣେଷୁ ବିତ୍ତନିଚୟେଷୁ ଚ ନଃ ପ୍ରହୃତ୍ୟ ।
ଆକୃଷ୍ୟ ପାଣ୍ଡବବଧୂପରିଧାନକେଶାନ୍
ସ୍ୱସ୍ଥା ଭବନ୍ତୁ ମୟି ଜୀବତି ଧାର୍ତ୍ତରାଷ୍ଟ୍ରାଃ ।"

ଅର୍ଥ—(ସୂତ୍ରଧାରର ବଚନ ଶ୍ରବଣ ପରେ ଭୀମଙ୍କର ଉକ୍ତି)—

ଜତୁ ଗୃହରେ ଦାହ, ବିଷାନ୍ନ ଦାନ, ତଥା କପଟ ପଶାଖେଳ ଦ୍ୱାରା ଆମ୍ଭମାନଙ୍କ ଧନ ଓ ଜୀବନରେ ଆଘାତ ଜନ୍ମାଇ ପାଣ୍ଡବ ବଧୂ ଦ୍ରୌପଦୀଙ୍କର ବସ୍ତ୍ର ଓ କେଶ ଆକର୍ଷଣ କରି ମୁଁ (ଭୀମସେନ) ବଞ୍ଚି ଥାଉ ଥାଉ ଧାର୍ତ୍ତରାଷ୍ଟ୍ର-ମାନେ ସୁସ୍ଥହୋଇ ରହିବେ ?

ଏହି ବାକ୍ୟରେ "ସୁସ୍ଥହୋଇ ରହିବେ ? (ସ୍ୱସ୍ଥା ଭବନ୍ତୁ ?) ଏହି ବାକ୍ୟାଂଶର ପ୍ରଶ୍ନାତ୍ମକ ଉଚ୍ଚାରଣ ଦ୍ୱାରା ସୁସ୍ଥ ହୋଇ ରହିପାରିବେ ନାହିଁ, ବୋଲି ବ୍ୟଙ୍ଗ୍ୟ ଅର୍ଥ ପ୍ରତୀତ ହେଉଅଛି । ଏହି ବ୍ୟଙ୍ଗ୍ୟ ଅର୍ଥ ବିନା ପୂର୍ବ ଶ୍ଳୋକର ବାଚ୍ୟାର୍ଥ ଅନୁପପନ୍ନ ହେଉଥିବାରୁ ଏହି ବ୍ୟଙ୍ଗ୍ୟ କାକୁ ଦ୍ୱାରା ଆକ୍ଷିପ୍ତ ହୋଇ ବାଚ୍ୟାର୍ଥର ପୋଷକ ଭାବେ ଗୁଣୀଭୂତ ବ୍ୟଙ୍ଗ୍ୟ ହୋଇଅଛି । ଏହା ବକ୍ରୋକ୍ତି ଅଳଂକାରର ସ୍ଥଳ ।

୫୪୨ । ଅନ୍ୟ ଏକ ଉଦାହରଣ ଯଥା—(କୌଣସି ଦୁଷ୍ଟଚରିତ୍ରାର କୁକର୍ମ, ପ୍ରତିବେଶିନୀ ଦ୍ୱାରା ସମାଜରେ ସୂଚିତ ହେବାରୁ ସେ ପ୍ରତିବେଶିନୀର କୁକର୍ମକୁ ସୂଚାଉ ଅଛି) ।

ନ ଭୂଷ୍ୟା ମଲିନତଂ ଶୀଳମ୍ ।
କିଂ ପୁନର୍ଜନସ୍ୟ ଜାୟେବ
ନାପିତଂ ତଂ ନ କାମୟାମହେ) । ଇତ୍ୟତ୍ରାୟ୍ୟା ।

୫୪୩ । ଶବ୍ଦଶକ୍ତରେବ ହି ସ୍ୱାଭିଧେୟସାମର୍ଥ୍ୟାକ୍ଷିପ୍ତକାକୁ ସହାୟ୍ୟା ସତ୍ୟର୍ଥବିଶେଷ-ପ୍ରତିପତ୍ତିହେତୁର୍ନ କାକୁ-ମାତ୍ରମ୍ । ବିଷୟାନ୍ତରେ ସ୍ୱେଚ୍ଛାକୃତାତ୍ କାକୁମାତ୍ରାତ୍ ତଥାବିଧାର୍ଥପ୍ରତିପତ୍ତ୍ୟସମ୍ଭବାତ୍ ।

---

ଆଲେ ସତ ! ଆମେ ଅସତୀ ହେଲେ ହେଲୁଁ, ତୁ (ଅକାର୍ଯ୍ୟରୁ) ବନ୍ଦ ହେଉନୁ । ତୁ ତ ଚରିବ ଖରାପ କରିନାହୁଁ ? ଆମେ ଲୋକଙ୍କ (ଚୋ ସ୍ୱାମୀର) ସ୍ତ୍ରୀ ଭଳି ସେ ଭଣ୍ଡାରିଆକୁ ଇଚ୍ଛା କରୁନାହୁଁ !

ଭାବ—ତୁ ତ ନିଜେ ଅସତୀ ମୋତେ କଅଣ ଅସତୀ ବୋଲି କହୁଛୁ । ମୁଁ ହେଲେ ଜଣେ ଭଦ୍ରଲୋକକୁ ଆଦରିଛି, ତୁ ତ ଗୋଟିଏ ପାମର ଭଣ୍ଡାରିକୁ ।

ଏ ପଦ୍ୟରେ "ଭବାମୋଽସତ୍ୟଃ" "ଅସତୀ ହେଲେ ହେଲୁଁ" ବାକ୍ୟରୁ "ଚୋର କି ଗଲା, ମୋର ସେଥିରେ ଭୟ ନାହିଁ, ଇତ୍ୟାଦି ବ୍ୟଙ୍ଗ୍ୟ" ବାକ୍ୟାର୍ଥ ଉପପାଦକ ଭାବେ ରହିଅଛି । ଏବଂ (ନ ଭୂଷ୍ୟା ମଲିନତଂ ଶୀଳଂ ?) "ତୁ ତ ଚରିବ ଖରାପ କରିନାହୁଁ ? ଇତ୍ୟାଦି ସ୍ଥଳରେ ମଧ୍ୟ ଚରିବ ଖରାପ କରିଛୁ" ଇତ୍ୟାଦି ପ୍ରକାର ବ୍ୟଙ୍ଗ୍ୟାର୍ଥ କାକୁ ଦ୍ୱାରା ବାକ୍ୟାର୍ଥର ଉପପାଦକରୂପେ ସୂଚିତହୋଇ ଗୁଣୀଭୂତ ବ୍ୟଙ୍ଗ୍ୟ ହେଉଛି ।

୫୪୩ । ଏସବୁ ସ୍ଥଳରେ ଅଭିଧାବୃତ୍ତି ଅଭିଧେୟାର୍ଥର ସାମର୍ଥ୍ୟା-କ୍ଷିପ୍ତ କାକୁର ସାହାଯ୍ୟରେ ଏତାଦୃଶ ବ୍ୟଙ୍ଗ୍ୟାର୍ଥବୋଧ ପ୍ରତି ହେତୁ ହେଉଅଛି, କିନ୍ତୁ କେବଳ କାକୁ ନୁହେ । କାରଣ ଅଭିଧା ଶୂନ୍ୟ ସ୍ଥଳରେ ଅର୍ଥାତ୍ ଅବାଚକ ଶବ୍ଦରେ ଇଚ୍ଛା ଅନୁସାରେ ବ୍ୟବହୃତ କାକୁ ଏତାଦୃଶ ବ୍ୟଙ୍ଗ୍ୟ ଅର୍ଥକୁ ବୁଝାଇ ପାରେ ନାହିଁ ।

୫୪୪ । ସ ଶ୍ଚାର୍ଥଃ କାକୁବିଶେଷସହାୟଶବ୍ଦବ୍ୟାପାରୋ-
ପାରୂଢ଼ୋଽପ୍ୟର୍ଥସାମର୍ଥ୍ୟଲଭ୍ୟ ଇତି ବ୍ୟଙ୍ଗ୍ୟରୂପ ଏବ ।

୫୪୫ । ବାଚକତ୍ୱାନୁଗମେନୈବ ତୁ ଯଦା ତଦ୍‌ବିଶିଷ୍ଟା ବାଚ୍ୟ-
ପ୍ରତୀତିଃ, ତଦା ଗୁଣୀଭୂତବ୍ୟଙ୍ଗ୍ୟତୟା, ତଥା
ବିଧାର୍ଥଦ୍ୟୋତନଃ କାବ୍ୟସ୍ୟ ବ୍ୟପଦେଶଃ । ବ୍ୟଙ୍ଗ୍ୟ-
ବିଶିଷ୍ଟବାଚ୍ୟାଭିଧାୟିନୋ ହି ଗୁଣୀଭୂତବ୍ୟଙ୍ଗ୍ୟତ୍ୱମ୍ ।

୫୪୬ । ପ୍ରଭେଦସ୍ୟାସ୍ୟ ବିଷୟୋ ଯଶ୍ଚ ଯୁକ୍ତ୍ୟା ପ୍ରତୀୟତେ
ବିଧାତବ୍ୟା ସହୃଦୟୈର୍ନ ତତ୍ର ଧ୍ୱନିଯୋଜନା । ୩୯ ।

୫୪୭ । ସଂକୀର୍ଣ୍ଣୋ ହି କଶ୍ଚିତ୍ ଧ୍ୱନେର୍ଗୁଣୀଭୂତବ୍ୟଙ୍ଗ୍ୟସ୍ୟ ଚ
ଲକ୍ଷ୍ୟେ ଦୃଶ୍ୟତେ ମାର୍ଗଃ । ତତ୍-ଯତ୍ ଯସ୍ୟ ଯୁକ୍ତି

---

୫୪୪ । ଅଭିଧାବୃତ୍ତି କାକୁ ସାହାଯ୍ୟରେ ଏଭଳି ଅର୍ଥକୁ ପ୍ରତୀତ କରାଉଥିଲେ ମଧ୍ୟ ଉକ୍ତ ଅର୍ଥ-ଅର୍ଥସାମର୍ଥ୍ୟାକ୍ଷିପ୍ତ (ଆର୍ଥୀବ୍ୟଞ୍ଜନା ବିଷୟ) ହୋଇଥିବା ହେତୁ ବ୍ୟଙ୍ଗ୍ୟ ସ୍ୱରୂପ । (ଅଭିଧେୟ ନୁହେ) ।

୫୪୫ । ଯଦି ବାଚକତାର ଅନୁଗତ ହୋଇ ବ୍ୟଙ୍ଗ୍ୟ ବିଶିଷ୍ଟ ବାଚ୍ୟାର୍ଥ ପ୍ରତୀତ ହୁଏ, ତେବେ ସେଠାରେ ବ୍ୟଙ୍ଗ୍ୟ ଗୁଣୀଭୂତ ହେଉଥିବା ହେତୁ ସେଭଳି କାବ୍ୟକୁ ଗୁଣୀଭୂତ ବ୍ୟଙ୍ଗ୍ୟ କାବ୍ୟ ବୋଲି କୁହାଯାଏ, ଯେଣୁ ବ୍ୟଙ୍ଗ୍ୟ ବିଶିଷ୍ଟ ବାଚ୍ୟର ପ୍ରକାଶକ କାବ୍ୟ ଗୁଣୀଭୂତ ବ୍ୟଙ୍ଗ୍ୟ କାବ୍ୟ ।

୫୪୬ । ଯେଉଁସବୁ ସ୍ଥଳ ଯୁକ୍ତି ଦ୍ୱାରା ଏହି ଗୁଣୀଭୂତ ବ୍ୟଙ୍ଗ୍ୟର (ପ୍ରଭେଦସ୍ୟ) ସ୍ଥଳ ବୋଲି ପ୍ରମାଣିତ ହେବ- ସେହି ସବୁ ସ୍ଥଳରେ ସହୃଦୟ-ମାନେ ଧ୍ୱନି ଯୋଜନା କରିବେ ନାହିଁ, ଅର୍ଥାତ୍ ତାହାକୁ ଗୁଣୀଭୂତବ୍ୟଙ୍ଗ୍ୟ କାବ୍ୟ ବୋଲି କହିବେ, କିନ୍ତୁ ଧ୍ୱନି କାବ୍ୟ ବୋଲି କହିବେ ନାହିଁ । (ଯେଉଁଠି ଧ୍ୱନି ଦ୍ୱାରା କାବ୍ୟର ସୌନ୍ଦର୍ଯ୍ୟ ଥାଏ ତାହା ଧ୍ୱନି କାବ୍ୟ ଏବଂ ଯେଉଁଠି ଗୁଣୀଭୂତ ବ୍ୟଙ୍ଗ୍ୟ ଦ୍ୱାରା କାବ୍ୟର ଉତ୍କର୍ଷ ତାହା ଗୁଣୀଭୂତ ବ୍ୟଙ୍ଗ୍ୟ କାବ୍ୟ, ଏହା ହେଉଛି ଧ୍ୱନି ଓ ଗୁଣୀଭୂତ ବ୍ୟଙ୍ଗ୍ୟ କାବ୍ୟର ନିରୂପଣ ପାଇଁ ଯୁ· ) ।

୫୪୭ । ବୃତ୍ତିର ଅର୍ଥ—କେତେକ ସ୍ଥଳରେ ଧ୍ୱନି ଓ ଗୁଣୀଭୂତ ବ୍ୟଙ୍ଗ୍ୟ ମିଶ୍ରିତ ହୋଇ ରହିଥିବାର ଦେଖାଯାଏ । ତନ୍ମଧ୍ୟରେ ଯେଉଁଠି

ସହାୟତା ତତ୍ର ତେନ ବ୍ୟପଦେଶଃ କାର୍ଯ୍ୟଃ ।
ନ ସର୍ବତ୍ର ଧ୍ୱନିରାଗିଣା ଭବିତବ୍ୟମ୍ ।

୫୪୮ । ଯଥା—

"ପତ୍ୟୁଃ ଶିରଶ୍ଚନ୍ଦ୍ରକଳାମନେନ
ସ୍ପୃଶେତି ସଖ୍ୟା ପରିହାସପୂର୍ବମ୍ ।
ସା ରଞ୍ଜୟିତ୍ୱା ଚରଣୌ କୃତାଶୀ-
ର୍ମାଲ୍ୟେନ ତାଂ ନିର୍ବଚନଂ ଜଘାନ ।"

୫୪୯ । ଯଥା—

"ପ୍ରୟଚ୍ଛତୋଚ୍ଚୈଃକୁସୁମାନି ମାନିନୀ
ବିପକ୍ଷଗୋତ୍ରଂ ଦୟିତେନ ଲମ୍ଭିତା ।

---

ଧ୍ୱନି ସପକ୍ଷରେ ଯୁକ୍ତି ମିଳିବ, ତାହା ଧ୍ୱନି କାବ୍ୟ ଓ ଯେଉଁଠି ଗୁଣୀଭୂତ ବ୍ୟଙ୍ଗ୍ୟ ସପକ୍ଷରେ ଯୁକ୍ତି ମିଳିବ ତାହା ଗୁଣୀଭୂତ ବ୍ୟଙ୍ଗ୍ୟ କାବ୍ୟ, ବୋଲି ନିର୍ଣ୍ଣୟ କରିବ । କେବଳ ଧ୍ୱନିପ୍ରିୟ ହୋଇ ସବୁ ସ୍ଥଳକୁ ଧ୍ୱନିକାବ୍ୟ ବୋଲି କହିବ ନାହିଁ ।

୫୪୮ । ଯଥା—(କୁମାରସମ୍ଭବ ଗ୍ରନ୍ଥରେ ପାର୍ବତୀଙ୍କ ବିବାହ ବେଶ ସମୟର ବର୍ଣ୍ଣନା) ଜଣେ ସଖୀ ପାର୍ବତୀଙ୍କ ଦୁଇ ପାଦରେ ଅଳତା ଲଗାଇଦେଇ (ଅଙ୍ଗୁଳି ନିର୍ଦ୍ଦେଶ ପୂର୍ବକ) ଏହି ପାଦରେ ପତିଙ୍କ ମୁଣ୍ଡରେ ଥିବା ଚନ୍ଦ୍ରକଳାକୁ ସ୍ପର୍ଶକର ବୋଲି ପରିହାସପୂର୍ବକ ଆଶୀର୍ବାଦ କରନ୍ତେ ତାକୁ ସେ (ପାର୍ବତୀ) କିଛି ନ କହି ଫୁଲମାଳରେ ପାହାରେ ଦେଲେ ।

(ଏଠାରେ ଚନ୍ଦ୍ରକଳା ସ୍ତ୍ରୀଲିଙ୍ଗ ଥିବାରୁ ତାହାକୁ ପତିମୁଣ୍ଡରେ ବସିଥିବା ସପତ୍ନୀରୂପେ ନିର୍ଦ୍ଦେଶ କରାଯାଇଛି । ଅଥବା ସ୍ୱାମୀକୁ ନିଜର ଅଧୀନ କରି ରଖ ବୋଲି ଭୂତୀର ଆଶୀର୍ବାଦ । ପୁନଶ୍ଚ ପ୍ରହାର ପାଇଁ ବାସ୍ତବ ଦୃଷ୍ଟିରୁ ଗୋଟିଏ ପାଦର ନିର୍ଦ୍ଦେଶ ସମୀଚୀନ) ।

୫୪୯ । କରାତାର୍ଜୁନୀୟରେ ଜଣେ ନାୟିକାର ବର୍ଣ୍ଣନା—

ନାୟିକାର ହାତ ନ ପାଇବା ଭଳି ସ୍ଥାନରେ ଥିବା ଫୁଲଗୁଡ଼ିକୁ ତାର ବଲ୍ଲଭ ବଡ଼ ପାଟିକରି ସପତ୍ନୀର ନାମଧରି ଡାକି ତାକୁ ଦେବାରେ

ନ କିଂଚିଦୂଚେ ଚରଣେନ କେବଳଂ
ଲିଲେଖ ବାଷ୍ପାକୁଳଲୋଚନା ଭୁବମ୍ ।" ଇତି ।

୫୫୦ । ଅତ୍ର "ନବଚନଂ ଜଗାଦ" "ନ କିଂଚିଦୂଚେ" ଇତି ପ୍ରତିଷେଧମୁଖେନ ବ୍ୟଙ୍ଗ୍ୟସ୍ୟାର୍ଥସ୍ୟୋକ୍ତ୍ୟା କିଂଚିଦ୍ବିଷୟୀକୃତତ୍ୱାତ୍ ଗୁଣୀଭାବ ଏବ ଶୋଭତେ ।

୫୫୧ । ତସ୍ମାତ୍ ଯତ୍ରୋକ୍ତିଂ ବିନା ବ୍ୟଙ୍ଗ୍ୟୋऽର୍ଥସ୍ତାତ୍ପର୍ଯ୍ୟେଣ ପ୍ରକାଶତେ, ତତ୍ର ତସ୍ୟ ପ୍ରାଧାନ୍ୟମ୍ । ଯଥା—"ଏବଂ ବାଦିନି ଦେବର୍ଷୌ ଇତ୍ୟାଦୌ ।

---

ସେ (ନାୟିକା) ଅଭିମାନରେ କିଛି କହିଲା ନାହିଁ, ଖାଲି (କେବଳ) ଆଖିରୁ ଲୁହ ଛଳ ଛଳ କରି ପାଦରେ ଭୂଇଁ ଚିରିବାକୁ ଲାଗିଲା । (ଭୂଇଁରେ ଗାର କାଟିଲା) ।

୫୫୦ । ପ୍ରଥମ ପଦ୍ୟରେ "ନବଚନଂ ଜଗାଦ" (କିଛି ନ କହି ପାହାରେ ଦେଲେ) ଏହି ଉକ୍ତି ଦ୍ୱାରା ନିଷେଧ ମୁଖରେ କୁମାରୀ ଜନୋଚିତ ଲଜ୍ଜା, କୋପାଦି ବ୍ୟଙ୍ଗ୍ୟ ଈଷତ୍ ବାଚ୍ୟାୟମାନ ହୋଇ ଗୁଣୀଭୂତ ହୋଇଅଛି ।

ଏହାପରି ୨ୟ ପଦ୍ୟରେ "ନ କିଂଚିଦୂଚେ" (କିଛି କହିଲା ନାହିଁ), ଏହି ଉକ୍ତି ଦ୍ୱାରା ଏଭଳି ଆଦର ସମୟରେ ତାକୁ (ସପତ୍ନୀକୁ) ମନେ ପକାଉଛି ବୋଲି ନାୟିକାର ଅଭିମାନ ସମୁଚିତ । ସୁତରାଂ ଏଠାରେ ପ୍ରଣୟ କୋପ ବ୍ୟଙ୍ଗ୍ୟ । ତାହା କିଛି ନ କହିବା ଦ୍ୱାରା ବାଚ୍ୟାୟମାନ ହୋଇ ବାଚ୍ୟର ଗୁଣୀଭୂତ ହେଲା ।

ଏ ଉଭୟ ସ୍ଥଳରେ ବ୍ୟଙ୍ଗ୍ୟ ଅପେକ୍ଷା ବାଚ୍ୟ ଚମତ୍କାରୀ । ଏଣୁ ଏ ଉଭୟ ଗୁଣୀଭୂତ ବ୍ୟଙ୍ଗ୍ୟର ବିଷୟ ।

୫୫୧ । ଅତଏବ ଯେଉଁଠି ବାଚକ ଶବ୍ଦ ଦ୍ୱାରା ନିର୍ଦ୍ଦିଷ୍ଟ ନ ହୋଇ କେବଳ ବ୍ୟଞ୍ଜନା ବୃତ୍ତିରେ ବ୍ୟଙ୍ଗ୍ୟ ଅର୍ଥ ପ୍ରକାଶ ପାଏ ସେଠାରେ ସେ (ବ୍ୟଙ୍ଗ୍ୟ) ପ୍ରଧାନ ହୁଏ । ଯଥା—

"ଏବଂ ବାଦିନି ଦେବର୍ଷୌ" ଇତ୍ୟାଦି ସ୍ଥଳ । ସେଠାରେ ଲଜ୍ଜା-ପ୍ରଭୃତି ପଦର ବ୍ୟବହାର ନ ଥାଇ କେବଳ ମୁଖନମନାଦି କାର୍ଯ୍ୟ ଦ୍ୱାରା ଲଜ୍ଜା ପ୍ରତିପାଦିତ ହୋଇଅଛି । ଅତଏବ ସେଠାରେ ରସାଦି ଧ୍ୱନି ।

୪୪୨ । ଇହ ପୁନରୁକ୍ତଭଙ୍ଗ୍ୟାଽପି ବାଚ୍ୟସ୍ୟାପି ପ୍ରାଧାନ୍ୟମ୍ । ତସ୍ମାନ୍ନାତ୍ରାନୁରଣନରୂପବ୍ୟଙ୍ଗ୍ୟଧ୍ୱନେର୍ବ୍ୟପଦେଶୋ ବିଧେୟଃ ।

୪୪୩ । ପ୍ରକାରୋଽୟଂ ଗୁଣୀଭୂତ-ବ୍ୟଙ୍ଗ୍ୟୋଽପି ଧ୍ୱନିରୂପତାମ୍ । ଧତ୍ତେ ରସାଦି ତାତ୍ପର୍ଯ୍ୟ-ପର୍ଯ୍ୟାଲୋଚନୟା ପୁନଃ । ୪୦ ଗୁଣୀଭୂତବ୍ୟଙ୍ଗ୍ୟୋଽପି କାବ୍ୟପ୍ରକାରୋ ରସାଦି-ତାତ୍ପର୍ଯ୍ୟପର୍ଯ୍ୟାଲୋଚନେନ ପୁନର୍ଧ୍ୱନିରେବ ସମ୍ପଦ୍ୟତେ ।

୪୪୪ । ଯଥା—ଅତ୍ରୈବୋଦାହୃତେଽନନ୍ତରଶ୍ଳୋକଦ୍ୱୟେ ।

---

୪୪୨ । (ଇହ) କିନ୍ତୁ ଏଠାରେ (ପନ୍ଥାଃଶିରଃ, "ପ୍ରଦକ୍ଷିଣୋଽଚିଃ" ଇତ୍ୟାଦି ସ୍ଥଳରେ) ଉକ୍ତ ଭଙ୍ଗୀରେ ବ୍ୟଙ୍ଗ୍ୟ ପ୍ରଦର୍ଶିତ ହୋଇଥିବାରୁ ଉକ୍ତିର ପ୍ରାଧାନ୍ୟ ଓ ବ୍ୟଙ୍ଗ୍ୟର ସହକାରିତା ମାତ୍ର । ତେଣୁ ଏହା ଅନୁରଣନ ରୂପ ବ୍ୟଙ୍ଗ୍ୟ ଧ୍ୱନିର ବିଷୟ ନୁହେ ।

୪୪୩ । ସଂଲକ୍ଷ୍ୟକ୍ରମ ବ୍ୟଙ୍ଗ୍ୟ ଦୃଷ୍ଟିରୁ ଏହି ପ୍ରକାର ଗୁଣୀଭୂତ ବ୍ୟଙ୍ଗ୍ୟ ହୋଇଥିବା ସ୍ଥଳ ମଧ୍ୟ ଅସଂଲକ୍ଷ୍ୟକ୍ରମ ବ୍ୟଙ୍ଗ୍ୟ ରସାଦିର ପ୍ରାଧାନ୍ୟରୁ ଧ୍ୱନିରୂପ ଧାରଣ କରେ ଅର୍ଥାତ୍ ଧ୍ୱନି କାବ୍ୟ ମଧ୍ୟରେ ସ୍ଥାନ ପାଏ ।

ଭାବ :– କୌଣସି ସ୍ଥଳରେ ବ୍ୟଙ୍ଗ୍ୟ ବସ୍ତୁ ବା ଅଳଙ୍କାର ଗୁଣୀଭୂତ ହେବାରୁ ତାହା ଗୁଣୀଭୂତ ବ୍ୟଙ୍ଗ୍ୟର ବିଷୟ ହେଲା । ଯଦି ସେଠାରେ ତାଦୃଶ ବାଚ୍ୟ ବାକ୍ୟାର୍ଥ ରସାଦି-ପରା ହୋଇଥାଏ ତେବେ ରସର ପ୍ରାଧାନ୍ୟ ଦୃଷ୍ଟିରୁ ତାହା ଧ୍ୱନି କାବ୍ୟ । ସୁତରାଂ ଏତାଦୃଶ ଗୁଣୀଭୂତ ବ୍ୟଙ୍ଗ୍ୟ ମଧ୍ୟ ଧ୍ୱନି ମଧ୍ୟରେ ଗଣାଯାଏ ।

୪୪୪ । ଯଥା :—'ପନ୍ଥାଃଶିରଃ, ପ୍ରଦକ୍ଷିଣୋଽଚିଃ ।' ଇତ୍ୟାଦି ନିକଟରେ କୁହାଯାଇ ଥିବା ଶ୍ଳୋକ ଦୁଇଟି । ସେ ଉଭୟ ପଦ୍ୟ ପୂର୍ବୋକ୍ତ ନ୍ୟାୟରେ ଗୁଣୀଭୂତ ବ୍ୟଙ୍ଗ୍ୟର ଉଦାହରଣ ହେଉଥିଲେ ମଧ୍ୟ, ରସଦୀପ୍ତିରେ ପଦ୍ୟର ବିଶ୍ରାମ ହେଉଥିବାରୁ ତାହା ଧ୍ୱନି କାବ୍ୟର ଅନ୍ତର୍ଭୁକ୍ତ ।

୫୫୫ । ଯଥା —

ଦୁରାରାଧା ରାଧା ସୁଭଗ ! ଯଦନେନାପି ମୃଜତ-
ସ୍ତବୈତତ୍ପ୍ରାଣେଶାଜଘନବସନେନାଶ୍ରୁ ପତିତମ୍ ।

---

୫୫୬ । ଅନ୍ୟ ନୂତନ ଉଦାହରଣ ଯଥା :—ଶ୍ରୀକୃଷ୍ଣଙ୍କ ରାଧାନୁନୟ-ଗର୍ଭିତ ଆଶୀର୍ବାଦ ଶ୍ଳୋକ—

ଶ୍ରୀକୃଷ୍ଣ—ଆହେ ରାଧେ ! ତୁମ୍ଭେ ଅକାଳରେ କୁପିତା ହୋଇ, ଯେତେ ଅନୁନୟ କଲେ ମଧ୍ୟ ପ୍ରସନ୍ନ ହେଉ ନାହଁ, ଅତଏବ ତୁମ୍ଭେ ଦୁରାରାଧା ଅଟ । ଆଉ କାନ୍ଦ ନାହିଁ । (ଏହା କହି ନିଜେ ପିନ୍ଧିଥିବା ଲୁଗାର କାନିରେ ରାଧାଙ୍କ ଲୁହ ପୋଛିଲେ) ।

ରାଧା—ହେ ସୁଭଗ ? ମୋର ଲୁହ ଧାରକୁ ପ୍ରାଣପ୍ରିୟାର (ଅଙ୍ଗୁଳି ନିର୍ଦ୍ଦେଶପୂର୍ବକ) ଏହି କଟିବସ୍ତ୍ରରେ ପୋଛୁଛ ଯେ ତୁମ୍ଭେ, ତୁମ୍ଭପକ୍ଷେ ରାଧା (ପ୍ରକୃତରେ) ଦୁରାରାଧା ଅଟେ, ଅର୍ଥାତ୍ ତୁମ୍ଭେ ଯେତେ ଅନୁନୟ ବିନୟ ଦେଖାଇଲେ ମଧ୍ୟ ରାଧା ପ୍ରସନ୍ନ ହେବ ନାହିଁ ।

ଶ୍ରୀକୃଷ୍ଣ – ସ୍ତ୍ରୀମାନଙ୍କର ଚିତ୍ତ ବଡ଼ ନିଷ୍ଠୁର !

ରାଧା—ପ୍ରକୃତରେ ସ୍ତ୍ରୀର (ମୋର) ଚିତ୍ତ ବଡ ନିଷ୍ଠୁର (ତୁମ୍ଭର ଏଭଳି କାର୍ଯ୍ୟରେ, ଯାହା କି ତୁମ୍ଭେ ଅନ୍ୟ ନାୟିକା ସମ୍ଭୋଗ କରି ତାହାର ଶାଢ଼ୀ ପିନ୍ଧି, ସେହି ପାଲଟା ଲୁଗାର କାନିରେ ମୋ ଲୁହ ପୋଛୁଛ, ଏହା ସବୁ ଦେଖିକରି ସୁଦ୍ଧା ମୋର ହୃଦୟ ଯେଣୁ ସହସ୍ରଧା ଫାଟି ନ ଯାଉଛି, ତେଣୁ ମୋର ହୃଦୟ ନିଷ୍ଠୁର) ତେଣୁ ଏସବୁ ଅନୁନୟ, ବିନୟାଦି ଉପଚାର (ଅନୁକୂଳାଚରଣ) ନିଷ୍ପ୍ରୟୋଜନ, ତାହା ବନ୍ଦ କର ।

କବି—ରାଧିକାଙ୍କ ଅନୁନୟ ସମୟରେ ରାଧିକାଙ୍କ ଦ୍ୱାରା ଏହିପରି ଉକ୍ତ ହୋଇଥିବା ଶ୍ରୀକୃଷ୍ଣ ଆପଣମାନଙ୍କର କଲ୍ୟାଣ ସମ୍ପାଦନ କରନ୍ତୁ ।

ଏ ପଦ୍ୟରେ "ସୁଭଗ" ପଦ ଦ୍ୱାରା ନାୟକର ବହୁନାୟିକା ସମ୍ଭୋଗକ୍ଷମତ୍ୱ, "ଅନେନ" (ଏହି ବସ୍ତ୍ର) ପଦ ଦ୍ୱାରା ପ୍ରତ୍ୟକ୍ଷ ଦୃଶ୍ୟମାନ ନାୟିକା ବସ୍ତ୍ରଧାରିତ୍ୱ, ନିର୍ଲଜ୍ଜତ୍ୱ ଓ ଅନ୍ୟ ନାୟିକାଠାରେ ଆଦରାତିଶଯ୍ୟ,

କଠୋରଂ ସ୍ତ୍ରୀଚେତସ୍ତଦଲମୁପଗୂଢ଼ୈର୍ବିରମ ହେ !
କ୍ରିୟାତ୍ କଲ୍ୟାଣଂ ବୋ ହରିରନୁନୟେଷ୍ୱେବମୁଦିତଃ ।

୫୫୬ । ଏବଂ ସ୍ଥିତେ ଚ—"ନ୍ୟକ୍କାରୋ ହ୍ୟୟମେବ" ଇତ୍ୟାଦି ଶ୍ଲୋକେ ନିର୍ଦ୍ଦିଷ୍ଟାନାଂ ପଦାନାଂ ବ୍ୟଙ୍ଗ୍ୟ-ବିଶିଷ୍ଟବାଚ୍ୟପ୍ରତିପାଦନେଽପ୍ୟେତଦ୍‌ବାକ୍ୟାର୍ଥୀଭୂତ-ରସାପେକ୍ଷୟା ବ୍ୟଞ୍ଜକତ୍ୱମୁକ୍ତମ୍ ।

୫୫୭ । ନ ତେଷାଂ ପଦାନାମର୍ଥାନ୍ତରସଂକ୍ରମିତବାଚ୍ୟଧ୍ୱନି-ଭ୍ରମୋ ବିଧାତବ୍ୟଃ । ବିବକ୍ଷିତବାଚ୍ୟତ୍ୱାତ୍ତେଷାମ୍ ।

---

"ସ୍ତ୍ରୀଚେତଃ" ପଦର ସ୍ତ୍ରୀ ଶବ୍ଦ ଦ୍ୱାରା ମୁଁ ତୁମ୍ଭ ପ୍ରୀତିର ଅଯୋଗ୍ୟା, ଜଣେ ସ୍ତ୍ରୀଲୋକ ମାତ୍ର, "କଠୋର ଶବ୍ଦ ଦ୍ୱାରା, ଏଭଳି ଘଟନା ଦର୍ଶନରେ ମଧ୍ୟ ହୃଦୟ ସହସ୍ରଧା ଫାଟି ନ ଯାଇ ରହିଅଛି ଇତ୍ୟାଦି; ଅନୁନୟ ପଦର ବହୁବଚନ ଦ୍ୱାରା ବହୁପତ୍ନୀକର ଏଭଳି ବାରମ୍ବାର ପ୍ରାର୍ଥନାକରଣ ଇତ୍ୟାଦି ବହୁ ବ୍ୟଙ୍ଗବସ୍ତୁ ବାଚ୍ୟାର୍ଥର ପୋଷକଭାବେ ରହି ଗୁଣୀଭୂତ ହୋଇଅଛନ୍ତି । କିନ୍ତୁ ଏହି ବ୍ୟଙ୍ଗ୍ୟାର୍ଥ ଦ୍ୱାରା ପୁରସ୍କୃତ ବାଚ୍ୟଅର୍ଥ ଈର୍ଷ୍ୟାଦି ବିପ୍ରଲମ୍ଭ ଶୃଙ୍ଗାର ରସର ଅଙ୍ଗ ହେଉଥିବାରୁ ଏହା ଗୁଣୀଭୂତ-ବ୍ୟଙ୍ଗ୍ୟ କାବ୍ୟ ନ ହୋଇ ଧ୍ୱନିକାବ୍ୟ ହେଲା ।"

୫୫୬ । ଏହି ନ୍ୟାୟରେ "ନ୍ୟକ୍କାରୋହ୍ୟୟମେବ" ଶ୍ଲୋକରେ ମଧ୍ୟ ବ୍ୟଙ୍ଗ୍ୟାର୍ଥ ବିଶିଷ୍ଟ ବାଚ୍ୟଅର୍ଥ ବାକ୍ୟାର୍ଥୀଭୂତ-ରସର ବ୍ୟଞ୍ଜକ ହୋଇ ରହି-ଅଛି । ସୁତରାଂ ତାହା ଧ୍ୱନିକାବ୍ୟ ।

୫୫୭ । ଏହିସବୁ ଶ୍ଲୋକଗତ ବ୍ୟଞ୍ଜକ ପଦମାନଙ୍କୁ (କଦଳୀ କଦଳୀ) ଇତ୍ୟାଦି ସ୍ଥଳପରି ଅର୍ଥାନ୍ତର ସଂକ୍ରମିତବାଚ୍ୟଧ୍ୱନିର ସ୍ଥଳ ବୋଲି ଶଙ୍କା କରିବା ଉଚିତ ନୁହେ, ଯେଣୁ ଏଠାରେ ବାଚ୍ୟ ଅର୍ଥ ବିବକ୍ଷିତ ।

ଏଠାରେ ବ୍ୟଙ୍ଗ୍ୟ ବିଶିଷ୍ଟ ବାଚ୍ୟ ଅର୍ଥର ପ୍ରତୀତି ହେଉଅଛି, କିନ୍ତୁ ଅର୍ଥାନ୍ତର-ସଂକ୍ରମିତ-ବାଚ୍ୟ ଧ୍ୱନିରେ ବାଚ୍ୟ ଅର୍ଥ ଅବିବକ୍ଷିତ ହୋଇ

ତେଷୁ ହି ବ୍ୟଙ୍ଗ୍ୟବିଶିଷ୍ଟତ୍ୱଂ ବାଚ୍ୟସ୍ୟ ପ୍ରତୀୟତେ, ନତୁ ବ୍ୟଙ୍ଗ୍ୟରୂପପରିଣତତ୍ୱମ୍ । ତସ୍ମାତ୍ ବାକ୍ୟଂ ତତ୍ର ଧ୍ୱନିଃ, ପଦାନି ତୁ ଗୁଣୀଭୂତବ୍ୟଙ୍ଗ୍ୟାନି ।

୫୬୮ । ନ ଚ କେବଳଂ ଗୁଣୀଭୂତବ୍ୟଙ୍ଗ୍ୟାନ୍ୟେବ ପଦାନ୍ୟ-ଲକ୍ଷ୍ୟକ୍ରମବ୍ୟଙ୍ଗ୍ୟଧ୍ୱନେର୍ବ୍ୟଞ୍ଜକାନି, ଯାବଦର୍ଥାନ୍ତର ସଂକ୍ରମିତ ବାଚ୍ୟାନି ଧ୍ୱନିପ୍ରଭେଦରୂପାଣ୍ୟପି । ଯଥା— ଅତ୍ରୈବ ଶ୍ଳୋକେ—'ରାବଣଃ' ଇତ୍ୟସ୍ୟ ଧ୍ୱନି-ପ୍ରଭେଦାନ୍ତରରୂପସ୍ୟ ବ୍ୟଞ୍ଜକତ୍ୱମ୍ ।

୫୬୯ । ଯତ୍ର ତୁ ବାକ୍ୟେ ରସାଦିତାତ୍ପର୍ୟ୍ୟଂ ନାସ୍ତି, ଗୁଣୀଭୂତ-ବ୍ୟଙ୍ଗ୍ୟୈଃ ପଦୈରୁଦ୍ଭାସିତେଽପି ତତ୍ର ଗୁଣୀଭୂତ-ବ୍ୟଙ୍ଗ୍ୟତୈବ ସମୁଦାୟଧର୍ମଃ ।

---

ବ୍ୟଙ୍ଗ୍ୟ ରୂପରେ ପରିଣତ ହୁଏ । ଅତଏବ ଏସବୁ ସ୍ଥଳରେ ପଦଗୁଡ଼ିକ ଗୁଣୀଭୂତବ୍ୟଙ୍ଗ୍ୟ ଓ ବାକ୍ୟଟି ଧ୍ୱନି ।

୫୬୮ । ଏସବୁ ଶ୍ଳୋକରେ କେବଳ ଗୁଣୀଭୂତ-ବ୍ୟଙ୍ଗ୍ୟ ପଦଗୁଡ଼ିକ ଯେ ବ୍ୟଞ୍ଜକ ହେଉଛନ୍ତି ତାହା ନୁହେ, ଅର୍ଥାନ୍ତର ସଂକ୍ରମିତ ବାଚ୍ୟ ପଦଗୁଡ଼ିକ ମଧ୍ୟ ବ୍ୟଞ୍ଜକ ହେଉଛନ୍ତି । ଯଥା—"ନ୍ୟକ୍କାରୋହ୍ୟୟମେବ" ଶ୍ଳୋକରେ "ରାବଣଃ" ପଦଟି ଅର୍ଥାନ୍ତର ସଂକ୍ରମିତ ବାଚ୍ୟ ହୋଇ ମଧ୍ୟ ରସର ବ୍ୟଞ୍ଜକ ହେଉଅଛି ।

୫୬୯ । ଯେଉଁ ବାକ୍ୟରେ ରସାଦି ତାତ୍ପର୍ଯ୍ୟ ନାହିଁ, ସେଭଳି ବାକ୍ୟ ଗୁଣୀଭୂତ ବ୍ୟଙ୍ଗ୍ୟପଦମାନଙ୍କ ଦ୍ୱାରା ଶୋଭିତ ହେଉଥିଲେ ମଧ୍ୟ ତାହା ଗୁଣୀଭୂତ-ବ୍ୟଙ୍ଗ୍ୟ କାବ୍ୟ । ଧ୍ୱନିକାବ୍ୟ ନୁହେ ।

୫୬୦ । ଯଥା—ଗ୍ରାଜାନମପି ସେବନ୍ତେ ବିଷମପ୍ୟପଭୁଞ୍ଜତେ ।
ରମନ୍ତେ ଚ ସହ ସ୍ତ୍ରୀଭିଃ କୁଶଳାଃ ଖଳୁ ମାନବାଃ ।
ଇତ୍ୟାଦୌ ।

୫୬୧ । ବାଚ୍ୟ ବ୍ୟଙ୍ଗ୍ୟୟୋଶ୍ଚ ପ୍ରାଧାନ୍ୟାପ୍ରାଧାନ୍ୟାବିବେକେ ପରଃ ପ୍ରଯତ୍ନୋ ବିଧାତବ୍ୟଃ । ଯେନ ଧ୍ୱନିଗୁଣୀଭୂତ-ବ୍ୟଙ୍ଗ୍ୟୟୋରଲଂକାରଣାଂ ଚ୍ୟସଙ୍କୀର୍ଣ୍ଣୋ ବିଷୟଃ ସୁଜ୍ଞାତୋ ଭବତି । ଅନ୍ୟଥା ପ୍ରସିଦ୍ଧାଲଂକାରବିଷୟ ଏବ ବ୍ୟାମୋହଃ ପ୍ରବର୍ତ୍ତତେ ।

୫୬୨ । ତଥାହି— ଲାବଣ୍ୟଦ୍ରବିଣବ୍ୟୟୋ ନ ଗଣିତଃ କ୍ଳେଶୋ ମହାନ୍ ସ୍ୱୀକୃତଃ,

---

୫୬୦ । ଏହାର ଉଦାହରଣ ଯଥା—

ଅହୋ ! ଚତୁର (କୁଶଳାଃ) ଲୋକମାନେ ରାଜାଙ୍କୁ ମଧ୍ୟ ଆଶ୍ରୟ କରନ୍ତି (ସେବନ୍ତେ) 'ବିଷକୁ' ମଧ୍ୟ ପିଇଦିଅନ୍ତି, ପୁନଶ୍ଚ ବହୁସ୍ତ୍ରୀଙ୍କ ସହିତ ମଧ୍ୟ ରମଣ କରନ୍ତି ।

ଏ ପଦ୍ୟରେ 'ଅପି' 'ଚ' 'ଖଳୁ' ଶବ୍ଦ ଦ୍ୱାରା ଅସମ୍ଭବକାରିତ୍ୱ, ସନ୍ଧାନତ୍ୱ, ବିପଦ୍ବାରକାରିତ୍ୱାଦି ବ୍ୟଙ୍ଗ୍ୟ ପ୍ରତୀତ ହୋଇ ବାଚ୍ୟାର୍ଥର ଗୁଣୀଭୂତ ହେଉଅଛି, ପୁନଶ୍ଚ ଏଥିରେ ଶାନ୍ତରସାଙ୍ଗ ନିର୍ବେଦ ରହିଥିଲେ ମଧ୍ୟ ସେ ବିବକ୍ଷିତ ହୋଇ ନ ଥିବାରୁ ଧ୍ୱନି ନୁହେ । ସୁତରାଂ ଏ ସମ୍ପୂର୍ଣ୍ଣ-ଭାବେ ଗୁଣୀଭୂତ ବ୍ୟଙ୍ଗ୍ୟ କାବ୍ୟ ।

୫୬୧ । ବାଚ୍ୟ ଓ ବ୍ୟଙ୍ଗ୍ୟ ମଧ୍ୟରେ କିଏ ପ୍ରଧାନ ଓ କିଏ ଅପ୍ରଧାନ, ଏହି ବିଷୟର ବିଚାର ପାଇଁ ବିଶେଷ ଯତ୍ନ କରିବ । ତାହାହେଲେ ବିଶୁଦ୍ଧ-ଭାବେ କିଏ ଧ୍ୱନି, କିଏ ଗୁଣୀଭୂତ ବ୍ୟଙ୍ଗ୍ୟ, ଓ କିଏ ଅଲଂକାର, ତାହା ଭଲରୂପେ ଜଣାଯିବ । ବିବେଚନାର ଅଭାବ ହେଲେ (ଅନ୍ୟଥା), ସୁପ୍ରସିଦ୍ଧ ଅଲଂକାର ସ୍ଥଳରେ ମଧ୍ୟ ଭ୍ରମ ଉପସ୍ଥିତ ହେବ । (ଧ୍ୱନି ନିରୂପଣପ୍ରଭୃତି କଠିନ ସ୍ଥଳ କଥା ବା କଅଣ କହିବା) ।

୫୬୨ । ଅଲଂକାର ବ୍ୟାମୋହସ୍ଥଳ ଯଥା—

(କୌଣସି ବ୍ୟକ୍ତି ଗୁଣୋଚିତ ସତ୍କାର ପାଇ ନ ପାରି ଅସମୀକ୍ଷ୍ୟ-କାରୀ ବିଧାତାକୁ ନିନ୍ଦା କରୁଛି) ଲବଣ୍ୟ ପାଣ୍ଠି ଖର୍ଚ୍ଚ ହୋଇ ଯିବାକୁ

ସ୍ୱଚ୍ଛନ୍ଦଂ ଚରତୋ ଜନସ୍ୟ ହୃଦୟେ
ଚିନ୍ତାଙ୍କୁରୋ .ନିର୍ମିତଃ ।
ଏଷାଽପି ସ୍ୱୟମେବ ତୁଲ୍ୟରମଣା-
ଭାବାଦ୍ ବରାକୀହୃତା,
କୋଽର୍ଥଶ୍ଚେତସି ବେଧସା ବିନିହିତ-
ସ୍ତନ୍ୱ୍ୟାସ୍ତନୁଂ ତନ୍ୱତା । ଇତି ।

୫୬୩ । ଅତ୍ର ବ୍ୟାଜସ୍ତୁତିରଲଂକାର ଇତି ବ୍ୟାଖ୍ୟାନ୍ତି କେଚିତ୍

୫୬୪ । ତନ୍ନ ଚତୁରସ୍ରମ୍, ଯତୋଽସ୍ୟାଭିଧେୟସ୍ୟୈତଦଲଂ-କାରସ୍ୱରୂପମାତ୍ରପର୍ଯ୍ୟବସାୟିତ୍ୱେ ନ ସୁଶ୍ଲିଷ୍ଟତା ।

---

ଖାତିର୍ କଲି ନାହିଁ । ବହୁ ପରିଶ୍ରମକୁ ବରଣ କଲି । ସୁଖସ୍ୱାଚ୍ଛନ୍ଦ୍ୟରେ ବୁଲୁଥିବା ଲୋକର (ଦ୍ରଷ୍ଟାର) ମନରେ ଚିନ୍ତାଙ୍କୁର ଉତ୍ପାଦନ କଲି । ବହୁ ଲାବଣ୍ୟ ଧନ ପରିଶ୍ରମ ବ୍ୟୟରେ ତିଆରି ହୋଇଥିବା ଏହି ବିଚାରୀ ରମଣୀଟି ମଧ୍ୟ ନିଜ ସମାନ ସୁନ୍ଦର ପତିର ଅଭାବରୁ ସ୍ୱତଃବିନଷ୍ଟା ହେଲେ । ତେବେ ବିଧାତା ଏହି କୃଶାଙ୍ଗୀର ଶରୀରକୁ ନିର୍ମାଣ କଲାବେଳେ ମନରେ କି ଭାବ (ଅର୍ଥ) ସ୍ଥାପନ କରିଥିଲା ।

୫୬୩ । ଏହି ଶ୍ଲୋକରେ ବ୍ୟାଜସ୍ତୁତି ଅଳଂକାର ବୋଲି କେହି ନିରୂପଣ କରିଛନ୍ତି । ତାଙ୍କ ମତରେ (ନିରର୍ଥକ କାର୍ଯ୍ୟକାରିତା ହିସାବେ ବିଧାତାର ନିନ୍ଦାବାଚ୍ୟ ଏବଂ ଅନନ୍ୟ ସାଧାରଣ ସୌନ୍ଦର୍ଯ୍ୟଶାଳିନୀ ରମଣୀ ନିର୍ମାଣ କ୍ଷମତା ହେତୁକ ସ୍ତୁତିଗମ୍ୟ । ବାଚ୍ୟ ନିନ୍ଦାଟି ଗମ୍ୟ ସ୍ତୁତିରେ ପରିଣତ ହେବାରୁ ଏହା ବ୍ୟାଜସ୍ତୁତି ଅଳଂକାରର ସ୍ଥଳ) ।

୫୬୪ । ତାହା ଯୁକ୍ତିଯୁକ୍ତ ନୁହେ—ଅର୍ଥାତ୍ ଏ ଶ୍ଲୋକରେ ବ୍ୟାଜସ୍ତୁତି ଅଳଂକାର ନାହିଁ । ଯେଣୁ ଏହି ଶ୍ଲୋକଗତ ଅଭିଧେୟ ଅର୍ଥ ବ୍ୟାଜସ୍ତୁତିପର ହୋଇ ନାହିଁ ।

୫୬୫ । ଯତୋ ନ ତାବଦୟଂ ରାଗିଣଃ କସ୍ୟଚିଦ୍‌ବିକଳ୍ପଃ, ତସ୍ୟ
(କ) "ଏଷାପିସ୍ୱୟମେବ ତୁଲ୍ୟରମଣାଭାବାଦ୍
ବରାକୀହତା" ଇତ୍ୟେବଂବଧୋକ୍ତ୍ୟନୁପପତ୍ତେଃ ।
(ଖ) ନାଽପି ନୀରାଗସ୍ୟ, ତସ୍ୟୈବଂବିଧବିକଳ୍ପ
ପରିହାରୈକବ୍ୟାପାରତ୍ୱାତ୍ ।
(ଗ) ନ ଚାୟଂ ଶ୍ଲୋକଃ କ୍ୱଚିତ୍‌ପ୍ରବନ୍ଧ ଇତି ଶ୍ରୂୟତେ,
ଯେନ ତତ୍ ପ୍ରକରଣାନୁଗତାର୍ଥତାଽସ୍ୟ ପରି-
କଳ୍ପ୍ୟତେ ।

୫୬୬ । ତସ୍ମାଦପ୍ରସ୍ତୁତପ୍ରଶଂସେୟମ୍, ଯସ୍ମାଦନେନ ବାଚ୍ୟେନ
ଗୁଣୀଭୂତାତ୍ମନା, ନିଃସାମାନ୍ୟଗୁଣାବଲେପାଧ୍ମାତସ୍ୟ,

---

୫୬୫ (କ) ଅଭିଧେୟର ବ୍ୟାକ୍ତିସୂଚ ପରିଚାରେ ଅସଙ୍ଗତ ଦର୍ଶାଉଛନ୍ତି—ଏ ଶ୍ଳୋକଟି କୌଣସି ରମଣୀ ଅନୁରାଗୀ ନାୟକର ଚିନ୍ତା (ବିକଳ୍ପ) ନୁହେଁ । କାରଣ ଅନୁରାଗୀ ନାୟକ ପକ୍ଷେ "ଏଷାଽପି...ହତା" ଏଭଳି କଳ୍ପନା ଅନୁପଯୁକ୍ତ ।

୫୬୫ (ଖ) ଅନୁରାଗହୀନ ବିରକ୍ତ ଲୋକର ମଧ୍ଯ ଏଭଳି କଳ୍ପନା ସମ୍ଭବ ନୁହେଁ । କାରଣ ବିରକ୍ତ ଲୋକ ଏଭଳି କଳ୍ପନାକୁ ନିୟତଭାବେ ପରିହାର କରିଥାଏ ।

୫୬୫ (ଗ) ଆଉ ପୁଣି ଏ ଶ୍ଳୋକ କୌଣସି ଗ୍ରନ୍ଥରେ ଅଛି ବୋଲି ଶୁଣାନାହିଁ, ଯାହା ଦ୍ୱାରା କି ପ୍ରକରଣବଶତଃ କୌଣସି ବିରକ୍ତ ଏଭଳି କଳ୍ପନା କରିଛି, ବୋଲି କଳ୍ପନା କରିବାକୁ ହେବ ।

୫୬୬ । ତେଣୁ (ଆମ୍ଭ ମତରେ) ଏଠାରେ ଅପ୍ରସ୍ତୁତ ପ୍ରଶଂସା । ଯେଣୁ ଏଠାରେ ବାଚ୍ୟ 'ଅର୍ଥ' ଗୁଣୀଭୂତ ଅର୍ଥାତ୍ ଅପ୍ରସ୍ତୁତ , ତାହା ଦ୍ୱାରା ଅସାଧାରଣ-ଗୁଣ-ଗର୍ବରେ ଫୁଲେଇ ହେଉଥିବା ଓ ଏହାର ଉତ୍କର୍ଷରେ ଅସହିଷ୍ଣୁ ଅନ୍ୟ ବ୍ୟକ୍ତିର ସନ୍ତାପକୁ ସ୍ୱୟଂ ଅନୁଭବ କରି ପାରୁଥିବା ଏବଂ

ନିଜମହିମୋତ୍କର୍ଷଜନିତସମସ୍ତରଜନ ରସ୍ୟ, ବିଶେ-
ଷଜ୍ଞମାତ୍ମନୋ ନ କ୍ୱାଂଚଦେବାପରଂ ପଶ୍ୟତଃ
ପରିଦେବିତମେତଦିତି ପ୍ରକାଶ୍ୟତେ ।

୫୬୭ । ତଥାଗ୍ରୃଯ୍ୟଂ ଧର୍ମକୀର୍ତ୍ତେଃ ଶ୍ଳୋକ ଇତି ପ୍ରସିଦ୍ଧିଃ ।
ସମ୍ଭାବ୍ୟତେ ଚ ତସ୍ୟୈବ । ଯସ୍ମାତ୍ ।

୫୬୮ । ଅନଧ୍ୟବସିତାବଗାହନମନଲ୍ପଧୀଶକ୍ତିନାଃ
ପ୍ୟଦୃଷ୍ଟପରମାର୍ଥତତ୍ତ୍ୱମଧିକାଭିଯୋଗୈରପି ।

---

ଅନ୍ୟ କାହାରିକୁ ନିଜଠାରୁ ଅଧିକ ବିଶେଷଜ୍ଞ ମନେ କରୁ ନ ଥିବା ବ୍ୟକ୍ତି ବିଶେଷର ଦୁଃଖ ପ୍ରକାଶ (ନିର୍ବେଦ ବଚନ) ରୂପ ପ୍ରସ୍ତୁତ ଅର୍ଥଗମ୍ୟ ହେଉଅଛି ।

(ଅପ୍ରସ୍ତୁତ ବାଚ୍ୟରୁ ପ୍ରସ୍ତୁତ ଅର୍ଥ ଗମ୍ୟ ହେବାରୁ ଏଠାରେ ଅପ୍ରସ୍ତୁତ ପ୍ରଶଂସା ଅଳଂକାର) ।

୬୭ । ଆଉ ଏକ କଥା ଯେ ବୌଦ୍ଧାଗ୍ରଣୀ ଧର୍ମକୀର୍ତ୍ତିଙ୍କର ଏ ଶ୍ଳୋକ ବୋଲି ପ୍ରସିଦ୍ଧି ଅଛି । ଏହା ତାହାଙ୍କ ରଚନା ହୋଇଥିବା ମଧ୍ୟ ସମ୍ଭବ । କାରଣ—

୫୬୮ । ଲୋକମାନେ ଯହିଁରେ ଅବଗାହନ ନିମନ୍ତେ ଉଦ୍ୟମ ପର୍ଯ୍ୟନ୍ତ ମଧ୍ୟ କରି ନାହାନ୍ତି, ପୁନଶ୍ଚ କୌଣସି ଅତି ବୁଦ୍ଧିମାନ୍ ଲୋକ ମଧ୍ୟ ବହୁ ପ୍ରଯତ୍ନରେ ଯାହାର ନିଗୂଢ଼ ମଣିମାଣିକ୍ୟାଦି (ପରମାର୍ଥ ତତ୍ତ୍ୱ) ବିଭବକୁ ଦେଖିପାରି ନାହାଁନ୍ତି ଏବଂ ଯହିଁରେ ଥିବା ଗ୍ରାହାଦି ନାନା ଜଳଚର (ଶ୍ରୀ ଅବିଦିତାଦି ମଧ୍ୟ) ଜଗତରେ କୌଣସି ଜଳାଶୟଠାରେ ଯତ୍ନପୂର୍ବକ ଅନୁସନ୍ଧାନ କଲେ ମଧ୍ୟ ଦେଖାଯାନ୍ତି ନାହିଁ, ସେହି ସମୁଦ୍ରର ଜଳ ପରି, ଯାହାର ଅବବୋଧ ସକାଶେ ଚେଷ୍ଟା ପର୍ଯ୍ୟନ୍ତ ମଧ୍ୟ କରାଯାଇ ନାହିଁ, ଏବଂ ଯେତେ ଯତ୍ନ କଲେ ମଧ୍ୟ ଜଣେ ହେଲେ ମହାବୁଦ୍ଧିମାନ୍ ଲୋକ ଯେଉଁ ମତବାଦର ପରମାର୍ଥ ତତ୍ତ୍ୱକୁ ବୁଝି ନାହିଁ, ପୁନଶ୍ଚ ଯାହାର ସମୁଚିତ ଗ୍ରାହକ ଲବ୍ଧ ହୋଇ ନାହାନ୍ତି, ମୋର ସେହି ମତ (ବୌଦ୍ଧଦର୍ଶନତତ୍ତ୍ୱ) ନିଜ ଦେହେ ଦେହେ ଜରାଗ୍ରସ୍ତ ହେବ ।

ମତଂ ମମ ଜଗତ୍ୟଲବ୍ଧସଦୃଶ ପ୍ରତିଗ୍ରାହକଂ,
ପ୍ରଯାସ୍ୟତି ପୟୋନଧେଃ ପୟ୍ ଇବ ସ୍ୱଦେହେ ଜରାମ୍ ।
ଇତି ।

୫୬୯ । ଅନେନାପି ଶ୍ଳୋକେନୈବଂବିଧୋଽଭିପ୍ରାୟଃ ପ୍ରକାଶିତ ଏବ ।

୫୭୦ । ଅପ୍ରସ୍ତୁତପ୍ରଶଂସାୟାଂ ଚ ଯଦ୍‌ବାଚ୍ୟଂ ତସ୍ୟ କଦାଚିତ୍ ବିବକ୍ଷିତତ୍ୱମ୍, କଦାଚଦବିବକ୍ଷିତତ୍ୱମ୍, କଦାଚିତ୍ ବିବକ୍ଷିତାବିବକ୍ଷିତତ୍ୱମିତି ତ୍ରୟୀ ବନ୍ଧଚ୍ଛାୟା ।

୫୭୧ । ତତ୍ର ବିବକ୍ଷିତତ୍ୱଂ ଯଥା—
ପରାର୍ଥେ ଯଃ ପୀଡ଼ାମନୁଭବତି ଭଙ୍ଗେଽପି ମଧୁରୋ,
ଯଦୀୟଃ ସର୍ବେଷାମିହ ଖଲୁ ବିକାରୋଽପ୍ୟଭିମତଃ ।

---

ସାର—(ସମୁଦ୍ରର ଜଳ ଇତର ଉପଭୋଗରେ ନ ଆସିଲା ପରି ମୋ ଦ୍ୱାରା ଆବିଷ୍କୃତ ମତବାଦଟି ଅନ୍ୟର ଗୋଚର ନ ହୋଇ ମୋଠାରେ କେବଳ ରହିଯିବ ଅର୍ଥାତ୍ ଲୁପ୍ତ ହୋଇଯିବ) ।

୫୬୯ । ଏହି ଶ୍ଳୋକରୁ ମଧ୍ୟ ଅପ୍ରସ୍ତୁତ ପ୍ରଶଂସାପରକ "ଲାବଣ୍ୟ-ଦ୍ରବିଣ" ଇତ୍ୟାଦି ଶ୍ଳୋକର ଅଭିପ୍ରାୟ ପ୍ରକାଶ ପାଉଛି । (ତେଣୁ ବୀତରାଗ ନିର୍ବେଦପ୍ରାପ୍ତ ବୌଦ୍ଧଭିକ୍ଷୁ ଧର୍ମକୀର୍ତ୍ତିଙ୍କର ଏ ଶ୍ଳୋକ ହୋଇଥିବା ସମ୍ଭବ) ।

୫୭୦ । ଅପ୍ରସ୍ତୁତ ପ୍ରଶଂସା ସ୍ଥଳରେ କେଉଁଠି ବାଚ୍ୟଅର୍ଥ ବିବକ୍ଷିତ ହୋଇଥାଏ, କେଉଁଠି ବା ବିବକ୍ଷିତ ହୋଇ ନ ଥାଏ, ପୁନଶ୍ଚ କେଉଁଠି ବିବକ୍ଷିତାବିବକ୍ଷିତ ଭାବରେ ଥାଏ, ସୁତରାଂ ତାହାର ନିର୍ମାଣ ପଦ୍ଧତି ୩ ପ୍ରକାର ।

୫୭୧ । ତନ୍ମଧ୍ୟରେ ଯେଉଁଠି ବାଚ୍ୟ ବିବକ୍ଷିତ ଭାବେ ରହେ, ତାହାର ଉଦାହରଣ ଯଥା—"ପରାର୍ଥେ ଯଃ ପୀଡ଼ାମ୍" (ଏ ଶ୍ଳୋକରେ ଇକ୍ଷୁରୂପ ଅପ୍ରସ୍ତୁତ ବାଚ୍ୟଅର୍ଥରୁ ପ୍ରସ୍ତୁତ ପୁରୁଷଶ୍ରେଷ୍ଠ ରୂପଗମ୍ୟ ଅର୍ଥ ପ୍ରକାଶ ପାଉ-

ନ ସଂପ୍ରାପ୍ତୋ ବଳିଂ ଯଦ ସ ଭୃଶମଧୋତ୍ର-ପତତଃ,
କମିଷ୍ୟୋଦୋଷୋଽଯ୍ଂ ନ ପୁନରଗୁଣାୟା ମଲ୍ଲଭୁବଃ ।

୫୭୨ । ଯଥା ବା ମମୈବ—

ଅମୀ ଯେ ଦୃଶ୍ୟନ୍ତେ ଅମୀ ସୁଭଗରୂପାଃ ସଫଲତା
ଭବତ୍ୟେଷାଂ ଯସ୍ୟ କ୍ଷଣମୁପଗତାନାଂ ବିଷୟତାମ୍ ।
ନିରାଲୋକେ ଲୋକେ କଥମିଦମହୋ ଚକ୍ଷୁରଧୁନା,
ସମଂ ଜାତଂ ସର୍ବୈ ନ ସମମଥବାଽନ୍ୟୈରବୟବୈଃ ।

୫୭୩ । ଅନୟୋର୍ହି ଦ୍ବୟୋଃ ଶ୍ଳୋକୟୋରକ୍ଷୁଚକ୍ଷୁଷୀ ବିବକ୍ଷିତସ୍ବରୂପେ ଏବ, ନ ତୁ ପ୍ରସ୍ତୁତେ । ମହାଗୁଣସ୍ୟ ଅବିଷୟ ପତିତତ୍ଵାଦପ୍ରାପ୍ତପରଭାଗସ୍ୟ କସ୍ୟଚିତ୍

---

ଥିବାରୁ ଅପ୍ରସ୍ତୁତ ପ୍ରଶଂସା ଅଳଂକାର "ଏହାର ଅପ୍ରସ୍ତୁତ ଲକ୍ଷୁରୂପ ବାଚ୍ୟ ଅର୍ଥ ବିବକ୍ଷିତ ନୁହେ) ।"

୫୭୨ । ଅଥବା ମୋ ନିଜ ରଚିତ ଶ୍ଳୋକ—

"ସେହି ସେଉଁ ରମଣୀୟାକୃତି ପଦାର୍ଥସମୂହ ଅଥବା କର-ଚରଣାଦି ଅବୟବଗୁଡ଼ିକ ଦେଖା ଯାଉଅଛନ୍ତି, ସେମାନେ କ୍ଷଣେମାତ୍ର ଯାହାର ବିଷୟତାକୁ ପ୍ରାପ୍ତହେଲେ ସଫଳତା ଲାଭ କରନ୍ତି, ବର୍ତ୍ତମାନ ଜଗତ ଅନ୍ଧକାରାଚ୍ଛନ୍ନ ହୁଅନ୍ତେ (ପକ୍ଷାନ୍ତରେ ବିବେକହୀନ ଜଗତରେ) ସେହି ଏହି ଚକ୍ଷୁ କିପରି କରଚରଣାଦି ଅନ୍ୟ ଅବୟବମାନଙ୍କ ସହିତ ସମାନ ହୋଇଛି ? ଅଥବା ଅନ୍ୟ ଅବୟବମାନଙ୍କ ସହିତ ସମାନ ମଧ୍ୟ ହୋଇ ନାହିଁ ।

(ଅନ୍ଧକାରରେ ସ୍ପର୍ଶାଦି ଦ୍ବାରା ପଦାର୍ଥ, ଜ୍ଞାତ ହୋଇଥିବାରୁ ଚକ୍ଷୁର ଅବୟବାନ୍ତରଠାରୁ ନ୍ୟୂନତା ପ୍ରତିପାଦନ କରାଯାଇଛି) ।

୫୭୩ । ଉଲ୍ଲିଖିତ ଦୁଇଟି ଯାକ ଶ୍ଳୋକରେ ଇକ୍ଷୁ ଓ ଚକ୍ଷୁ ବିବକ୍ଷିତ, କିନ୍ତୁ ପ୍ରସ୍ତୁତ ନୁହନ୍ତି । ଅସ୍ଥାନପତନ ହେତୁ ଯଥୋଚିତ ସମ୍ମାନ ପାଇ ନ ଥିବା କୌଣସି ମହାଗୁଣଶାଳୀ ବ୍ୟକ୍ତିର ଅବସ୍ଥାବର୍ଣ୍ଣନରେ ଏ ଉଭୟ ଶ୍ଳୋକର ତାତ୍ପର୍ଯ୍ୟ, ତାହା ଅପ୍ରସ୍ତୁତ ।

ସ୍ୱରୂପମନୁପବର୍ଣ୍ଣୟିତୁଂ ଦ୍ୱୟୋରପି ଶ୍ଳୋକୟୋସ୍ତାତ୍ପ-
ର୍ଯ୍ୟେଣ ପ୍ରସ୍ତୁତତ୍ୱାତ୍ ।

୫୭୪ । ଅବିବକ୍ଷିତତ୍ୱଂ ଯଥା—

କସ୍ତ୍ୱଂ ଭୋ ! କଥୟାମି, ଦୈବହତକଂ
ମାଂ ବିଦ୍ଧି ଶାଖୋଟକଂ,
ବୈରାଗ୍ୟାଦିବ ବକ୍ଷି, ସାଧୁ ବିଦିତଂ,
କସ୍ମାଦିଦଂ କଥ୍ୟତେ ? ।
ବାମେନାତ୍ର ବଟସ୍ତମଧ୍ୱଗଜନଃ
ସର୍ବାତ୍ମନା ସେବତେ,
ନ ଚ୍ଛାୟାପି ପରୋପକାରକରଣେ
ମାର୍ଗସ୍ଥିତସ୍ୟାପି ମେ ।

(ଅପ୍ରସ୍ତୁତରୁ ପ୍ରସ୍ତୁତ ଗମ୍ୟ ହେଉଥିବାରୁ ଏ ଦୁଇଟିଯାକ ଶ୍ଳୋକରେ ଅପ୍ରସ୍ତୁତପ୍ରଶଂସା ଅଳଂକାର) ।

୫୭୪ । ବାଚ୍ୟ ଅବିବକ୍ଷିତଭାବେ ହେବାର ଉଦାହରଣ ଯଥା—

(ବାଟୋଇ ଓ ଶାହାଡ଼ାଗଛର କଥୋପକଥନେ)

ପଥିକ—ଆହେ ! ତୁମ୍ଭେ କଏ ?

ଶାହାଡ଼ା—କହୁଛି, ମୁଁ ଅଭଗା (ଦୈବହତକ) ଶାହାଡ଼ା ବୋଲି ଜାଣ ।

ପଥିକ—ମନ ଖଟପରେ କହିଲଭଳି ତ କହୁଛ ?

ଶାହାଡ଼ା—ଠିକ୍ ବୁଝିଲ ।

ପଥିକ—କାହିଁକି ଏପରି କହୁଛ ?

ଶାହାଡ଼ା—ଏଠି ବାଁ ପଟେ (ଅନ୍ୟପକ୍ଷରେ ପ୍ରତିକୂଳ ମାର୍ଗରେ) ବରଗଛଟେ ସେ ବାଟୋଇମାନେ ହବୁମନ୍ତେ ତାର ଆଶ୍ରୟ ନେଉଛନ୍ତି ; କିନ୍ତୁ ମୁଁ ବାଟପାଖେ ଥିଲେ ମଧ୍ୟ (ପକ୍ଷାନ୍ତରରେ ବିଧି ଅନୁସାରେ ଚାଲୁଥିଲେ ମଧ୍ୟ) ମୋର ଛାଇ ସୁଦ୍ଧା ପର ଉପକାରରେ ଲାଗିଲା ନାହିଁ ।

୫୭୫ । ନ ହ୍ୟ ବୃକ୍ଷବିଶେଷଣସହୋକ୍ତିପ୍ରତ୍ୟୁକ୍ତି ସମ୍ଭବତ ଇତ୍ୟବିବକ୍ଷିତାଭିଧେୟେନୈବାନେନ ଶ୍ଲୋକେନ ସମୃଦ୍ଧା ସତ୍ପୁରୁଷସମୀପବର୍ତ୍ତିନୋ ନିର୍ଦ୍ଧନସ୍ୟ କସ୍ୟ-ଚିନ୍ମନସ୍ୱିନଃ ପରିଦେବିତଂ ତାତ୍ପର୍ଯ୍ୟେଣ ବାକ୍ୟାର୍ଥୀ-କୃତମିତି ପ୍ରତୀୟତେ ।

୫୭୬ । ବିବକ୍ଷିତତ୍ୱାବିବକ୍ଷିତତ୍ୱଂ ଯଥା—

ଉପ୍ପହଜାଆଏଁ ଅସୋହିଣୀଏଁ ଫଲକୁସୁମ-
ପତ୍ତରହିଆଏ,
ବେରୀଏ ବଈଁ ଦେନ୍ତୋ ପାମର ! ହୋଓହସି ହସେ ।
(ଉତ୍ପଥଜାତାୟା ଅଶୋଭନାୟା ଫଲ କୁସୁମପତ୍ର-
ରହିତାୟାଃ ।
ବଦର୍ଯ୍ୟାବୃତିଂ ଦଦତ୍ ପାମର ଭୋ !
ଅବହସିଷ୍ୟସେ) । ଇତି ଛାୟା ।

---

୫୭୫ । ବୃକ୍ଷ ସହିତ କୌଣସି ମନୁଷ୍ୟର ଉକ୍ତି ପ୍ରତ୍ୟୁକ୍ତି ସମ୍ଭବ ନୁହେ । ଏଣୁ ଏଠାରେ ବାଚ୍ୟ ଅର୍ଥ ଅବିବକ୍ଷିତ । ଏହି ଅବିବକ୍ଷିତ ଅପ୍ରସ୍ତୁତବାଚ୍ୟରୁ ଧନଶାଳୀ ଦୁର୍ଜନର ନିକଟବର୍ତ୍ତୀ କୌଣସି ନିର୍ଦ୍ଧନ ମନସ୍ୱୀବ୍ୟକ୍ତିର ଦୈନ୍ୟ ତାତ୍ପର୍ଯ୍ୟାର୍ଥରୂପେ ପ୍ରତୀତ ହେଉଅଛି । ସୁତରାଂ ଏ ଶ୍ଲୋକରେ ଅପ୍ରସ୍ତୁତରୁ ପ୍ରସ୍ତୁତଗମ୍ୟ ହେଉଥିବାରୁ ଅପ୍ରସ୍ତୁତପ୍ରଶଂସା ।

୫୭୬ । ବାଚ୍ୟ ଅର୍ଥ ବିବକ୍ଷିତ ଓ ଅବିବକ୍ଷିତ ହେଉଥିବା ସ୍ଥଳ ଯଥା - ଅକୁଳୀନା, କୁରୂପା, ନିରପତ୍ୟା, ସ୍ତ୍ରୀର ଆଚ୍ଛାଦନ ପାଇଁ ଚେଷ୍ଟା କରୁଥିବା ପାମର ବ୍ୟକ୍ତିବିଶେଷକୁ କେହି ଜଣେ କହୁଛି :—(ଶ୍ଲୋକର ବାଚ୍ୟଅର୍ଥ)—

ଆରେ ମୂର୍ଖ ! ଅବାଟରେ ଉଠିଥିବା, କଣ୍ଟକପ୍ରଭୃତିରେ ବ୍ୟାପ୍ତ ହୋଇଥିବାରୁ ଅସୁନ୍ଦର, ପତ୍ରପୁଷ୍ପ-ଫଳହୀନ ବରକୋଳି (ଲତା) ଦ୍ୱାରା (ଗୃହପଟେ) ବାଡ଼ କରିବାକୁ ଯାଉଥିବା ତୁ ଉପହାସର ପାତ୍ର ହେବୁ । (ବ୍ୟଙ୍ଗ୍ୟ ଅର୍ଥ) ଆରେ ପାମର ! କୁମାର୍ଗଗାମିନୀ ଅସୁନ୍ଦରୀ ଅପତ୍ୟରହିତା ସ୍ତ୍ରୀର ବସ୍ତ୍ରାଦିଆଚ୍ଛାଦନ ଯୋଗାଉଥିବା ତୁ (ପାମର) ଲୋକହସା ହେବୁ ।

୫୭୭ । ଅତ୍ର ତୁ ବାଚ୍ୟାର୍ଥେନାତ୍ୟନ୍ତଂ ସମ୍ଭବୀ ।

୫୭୮ । ତସ୍ମାଦ୍ ବାଚ୍ୟବ୍ୟଙ୍ଗ୍ୟୟୋଃ ପ୍ରାଧାନ୍ୟାପ୍ରାଧାନ୍ୟେ
ଯତ୍ନତୋ ନିରୂପଣୀୟେ ।

୫୭୯ । ପ୍ରଧାନଗୁଣଭାବାଭ୍ୟାଂ ବ୍ୟଙ୍ଗ୍ୟସ୍ୟୈବଂ ବ୍ୟବସ୍ଥିତେ,
କାବ୍ୟେ ଉଭେ, ତତୋଽନ୍ୟଦ୍ୟତ୍
ତଚ୍ଚିତ୍ରମଭିଧୀୟତେ । ୫୧ ।

୫୮୦ । ଚିତ୍ରଂ ଶବ୍ଦାର୍ଥଭେଦେନ ଦ୍ୱିବିଧଂ ଚ ବ୍ୟବସ୍ଥିତମ୍,
ତତ୍ର କିଂଚିତ୍ ଶବ୍ଦଚିତ୍ରଂ ବାଚ୍ୟଚିତ୍ରମତଃପରମ୍ । ୫୨ ।

୫୮୧ । ବ୍ୟଙ୍ଗ୍ୟସ୍ୟାର୍ଥସ୍ୟ ପ୍ରାଧାନ୍ୟେ ଧ୍ୱନିସଂଜ୍ଞିତଃ କାବ୍ୟ
ପ୍ରକାରଃ, ଗୁଣଭାବେ ତୁ ଗୁଣୀଭୂତବ୍ୟଙ୍ଗ୍ୟତା ।
ତତୋଽନ୍ୟଦ୍ ରସଭାବାଦିତାତ୍ପର୍ଯ୍ୟରହିତଂ ବ୍ୟଙ୍ଗ୍ୟାର୍ଥ-

---

୫୭୭ । ଏ ଶ୍ଳୋକରେ ବରବୋଳର ଗୃହପତେ ବାଡ଼ଦେବା-ରୂପକ ବାଚ୍ୟଅର୍ଥ ଅତ୍ୟନ୍ତ ସମ୍ଭବ ନୁହେ ।

୫୭୮ । ସେଣୁ ଧ୍ୱନି, ଗୁଣୀଭୂତ ବ୍ୟଙ୍ଗ୍ୟ ଓ ଅଳଂକାର ନିର୍ଣ୍ଣୟ କରିବାରେ ଭ୍ରମ ଦେଖା ଯାଉଅଛି, ତେଣୁ (ପ୍ରତିସ୍ଥଳରେ) ବାଚ୍ୟ ଓ ବ୍ୟଙ୍ଗ୍ୟ ମଧ୍ୟରେ କିଏ ପ୍ରଧାନ ଓ କିଏ ଅପ୍ରଧାନ, ତାହା ଯତ୍ନପୂର୍ବକ ନିରୂପଣକରିବା ଆବଶ୍ୟକ ।

୫୭୯ । ଏହିପରି ବ୍ୟଙ୍ଗ୍ୟର ପ୍ରାଧାନ୍ୟ ଓ ଅପ୍ରାଧାନ୍ୟ ଯୋଗୁଁ ଧ୍ୱନି ଓ ଗୁଣୀଭୂତବ୍ୟଙ୍ଗ୍ୟ ଭେଦରେ କାବ୍ୟ ଦୁଇପ୍ରକାର ବୋଲି ନିରୂପିତ ହେଲ ପରେ, ତହିଁରୁ ଅନ୍ୟପ୍ରକାର ଅର୍ଥାତ୍ ଯେକୌଣସି ପ୍ରକାର ବ୍ୟଙ୍ଗ୍ୟାର୍ଥ-ଶୂନ୍ୟ କାବ୍ୟକୁ ଚିତ୍ର ବୋଲି ବୋଲଯାଏ ।

ସାର—ବ୍ୟଙ୍ଗ୍ୟ ପ୍ରଧାନ ହେଲେ ଧ୍ୱନି, ଅପ୍ରଧାନ ହେଲେ ଗୁଣୀଭୂତ ବ୍ୟଙ୍ଗ୍ୟ, ବ୍ୟଙ୍ଗ୍ୟ ଏକାବେଳକେ ନ ଥିଲେ ଚିତ୍ର ।

୫୮୦ । ଚିତ୍ର ଦୁଇପ୍ରକାର । ଯଥା—୧ ଶବ୍ଦଚିତ୍ର, ୨ ବାଚ୍ୟଚିତ୍ର ।

୫୮୧ । (ବୁଦ୍ଧିର ଅର୍ଥ) ବ୍ୟଙ୍ଗ୍ୟ ଅର୍ଥ ପ୍ରଧାନଭାବେ ରହିଲେ ତାହାର ନାମ ଧ୍ୱନି । ବ୍ୟଙ୍ଗ୍ୟ, ଅପ୍ରଧାନ ଭାବେ ରହିଲେ ତାହାର ନାମ

ବିଶେଷ ପ୍ରକାଶନଶକ୍ତିଶୂନ୍ୟଂ ଚ କାବ୍ୟଂ କେବଳ ବାଚ୍ୟ-ବାଚକ-ବୈଚିତ୍ର୍ୟ-ମାତ୍ରାଶ୍ରୟେଣୋପନିବଦ୍ଧ-ମାଲେଖ୍ୟପ୍ରଖ୍ୟଂ ଯଦାଭାସତେ, ତଚ୍ଚିତ୍ରମ୍ ।

୪୮୨ । ନ ତନ୍ମୁଖ୍ୟଂ କାବ୍ୟମ୍, କାବ୍ୟାନୁକାରୋ ହ୍ୟସୌ । ତତ୍ର କିଂଚିଚ୍ଛବ୍ଦଚିତ୍ରଂ ଯଥା—ଦୁଷ୍କରଯମକାଦି । ବାଚ୍ୟଚିତ୍ରଂ, ତତଃ ଶବ୍ଦଚିତ୍ରାଦନ୍ୟଦ୍ ବ୍ୟଙ୍ଗ୍ୟାର୍ଥ-ସଂସ୍ପର୍ଶରହିତଂ ପ୍ରାଧାନ୍ୟେନ ବାକ୍ୟାର୍ଥତୟା ସ୍ଥିତଂ ରସାଦିତାତ୍ପର୍ଯ୍ୟରହିତମୁତ୍ପ୍ରେକ୍ଷାଦି ।

୪୮୩ । ଅଥ କିମିଦଂ ଚିତ୍ରଂ ନାମ ? ଯତ୍ର ନ ପ୍ରତୀୟମାନାର୍ଥସଂସ୍ପର୍ଶଃ ।

---

ଗୁଣୀଭୂତ ବ୍ୟଙ୍ଗ୍ୟ, ଭିନ୍ନରୁ ଅନ୍ୟ ରସାଦିତାତ୍ପର୍ଯ୍ୟଶୂନ୍ୟ ଅର୍ଥାତ୍ ଯେକୌଣସି ବ୍ୟଙ୍ଗ୍ୟ ଅର୍ଥ ପ୍ରକାଶରେ ଅସମର୍ଥ କେବଳ ଶବ୍ଦ କିମ୍ବା ଅର୍ଥର ବୈଚିତ୍ର୍ୟ ମାତ୍ରକୁ ଆଶ୍ରୟ କରି ରଚିତ ହୋଇ, କେବଳ ଚିତ୍ର ପରି (ପ୍ରାଣହୀନ ଆକୃତି ପରି) ଯେଉଁ କାବ୍ୟ ଆଭାସମାନ ହେଉଥାଏ, ତାହାର ନାମ ଚିତ୍ର ବା ଚିତ୍ରକାବ୍ୟ ।

୪୮୨ । ଏହି ଚିତ୍ରକାବ୍ୟ ମୁଖ୍ୟତଃ କାବ୍ୟ ନୁହେ ! ସେ କାବ୍ୟର ଅନୁକରଣ ମାତ୍ର, ସେଥିରେ କେତେକ ଶବ୍ଦର ଚିତ୍ର ଯଥା—ଦୁଷ୍କର (ଅତି କଷ୍ଟରେ ରଚନା କରାଯାଉଥିବା) ଯମକ ପ୍ରଭୃତି । ଏହି ଶବ୍ଦ-ଚିତ୍ରରୁ ଅନ୍ୟପ୍ରକାର ଚିତ୍ରର ନାମ ବାଚ୍ୟଚିତ୍ର । ତାହା (ବାଚ୍ୟଚିତ୍ର) ଯଥା—ବ୍ୟଙ୍ଗ୍ୟାର୍ଥ ସମ୍ପର୍କଶୂନ୍ୟ ରସାଦି ତାତ୍ପର୍ଯ୍ୟରହିତ ବାକ୍ୟାର୍ଥୀଭୂତ ଉତ୍ପ୍ରେକ୍ଷାଦି ଅଳଂକାର ମାତ୍ର ।

୪୮୩ । ପ୍ରଶ୍ନ—ଚିତ୍ର କାହାକୁ କହନ୍ତି ?

ଉତ୍ତର—ଯେଉଁଥିରେ ବ୍ୟଙ୍ଗ୍ୟ ଅର୍ଥର ଲେଶମାତ୍ର ସମ୍ପର୍କ ନ ଥାଏ ।

୫୮୪ । ପ୍ରଗାଯ୍ୟମାନୋହ୍ୟର୍ଥସ୍ତ୍ରିଭେଦଃ ପ୍ରାକ୍ ପ୍ରଦର୍ଶିତଃ । ତତ୍ର ଯତ୍ର ବସ୍ତ୍ୱଳଂକାରାନ୍ତରଂ ବା ବ୍ୟଙ୍ଗ୍ୟଂ ନାସ୍ତି, ସ ନାମ ଚିତ୍ରସ୍ୟ କଲ୍ପ୍ୟତାଂ ବିଷୟଃ । ଯତ୍ର ତୁ ରସାଦୀନାମାବିଷୟତ୍ୱଂ, ସ କାବ୍ୟପ୍ରକାରୋ ନ ସମ୍ଭବତ୍ୟେବ ।

୫୮୫ । ଯସ୍ମାଦବସ୍ତୁସଂସ୍ପର୍ଶିତା କାବ୍ୟସ୍ୟ ନୋପପଦ୍ୟତେ । ବସ୍ତୁ ଚ ସର୍ବମେବ ଜଗଦ୍‌ଗତମବଶ୍ୟଂ କସ୍ୟଚିଦ୍ ରସସ୍ୟ ଗୃଙ୍ଗତ୍ୱଂ ପ୍ରତିପଦ୍ୟତେ । ଅନ୍ତତୋ ବିଭାବ-ତ୍ୱେନ ।

---

୫୮୪ । (ଉକ୍ତ ମତର ଖଣ୍ଡନ ପାଇଁ ଯୁକ୍ତିପୂର୍ବକ ପ୍ରଶ୍ନ କରାଯାଉଛି :—

ପ୍ରଶ୍ନ—ବ୍ୟଙ୍ଗ୍ୟ ଅର୍ଥ ବସ୍ତୁ, ଅଳଂକାର, ରସାଦି ଭେଦରେ ତିନିପ୍ରକାର ବୋଲି ପୂର୍ବରୁ କୁହାଯାଇଅଛି । ତନ୍ମଧ୍ୟରୁ ବ୍ୟଙ୍ଗ୍ୟ ବସ୍ତୁ ବା ବ୍ୟଙ୍ଗ୍ୟ ଅଳଂକାର ଯେଉଁଠି ନ ଥିବ ସେ ଚିତ୍ରର ବିଷୟ । କିନ୍ତୁ ଯେଉଁଠି ରସାଦି ବ୍ୟଙ୍ଗ୍ୟ ନାହିଁ ସେଭଳି କାବ୍ୟ ଆଦୌ ସମ୍ଭବ ହୋଇ ପାରିବ ନାହିଁ ।

ଉତ୍ତର—ଚିତ୍ରସ୍ଥଳରେ ବସ୍ତୁ ଅଳଂକାର ବ୍ୟଙ୍ଗ୍ୟ ନ ଥିଲେ ହେଁ ରସାଦି ବ୍ୟଙ୍ଗ୍ୟ ଅବଶ୍ୟ ରହିବ । ଏଣୁ ଚିତ୍ର, ବ୍ୟଙ୍ଗ୍ୟ ସମ୍ପର୍କ ଶୂନ୍ୟ ବୋଲି କୁହାଯାଇ ନ ପାରେ ।

୫୮୫ । ଆଉ ଏକ ବିଚାରିବାର କଥା ଯେ କାବ୍ୟ ମାନେ ଯେ କୌଣସି ବିଷୟ ବସ୍ତୁକୁ ଗ୍ରହଣ କରିଥାନ୍ତି । ତେଣୁ କୌଣସି କାବ୍ୟକୁ ବିଷୟ ବସ୍ତୁର ସମ୍ପର୍କହୀନ ବୋଲି କୁହାଯାଇ ନ ପାରେ । ସଂସାରିକ ଯାବତୀୟ ବିଷୟବସ୍ତୁ ଅବଶ୍ୟ ଯେ କୌଣସି ରସର ଅଙ୍ଗ ହୋଇଥିବ । ଯଦି ସାକ୍ଷାତରେ କୌଣସି ରସର ଅଙ୍ଗ ହୋଇ ନ ଥିବ ତେବେ ଅନ୍ତତଃ ରସର ବିଭାବ ହିସାବରେ ମଧ୍ୟ ରସାଙ୍ଗ ହୋଇ ପାରେ । (ସୁତରାଂ ନୀରସ କାବ୍ୟ ନାହିଁ) ।

୫୮୬ । ଚିତ୍ତବୃତ୍ତିବିଶେଷା ହି ରସାଦୟଃ ।

୫୮୭ । ନ ଚ ତଦସ୍ତି ବସ୍ତୁ କିଂଚିଦ୍ ଯନ୍ନ ଚିତ୍ତବୃତ୍ତିବିଶେଷ-
ମୁପଜନୟତି । ତଦନୁତ୍ପାଦନେ ବା କବିବିଷୟତୈବ

---

୫୮୬ । ଜାଗତିକ ପ୍ରତ୍ୟେକ ବସ୍ତୁ ରସାଙ୍ଗ ହେବା ପାଇଁ ଯୁକ୍ତି ଦର୍ଶାଯାଉଛି :—

(ଚିତ୍ତ ହେଉଛି ଅନ୍ତଃକରଣ ବା ଅନ୍ତରିନ୍ଦ୍ରିୟ । ସେ ବାହ୍ୟ-ଇନ୍ଦ୍ରିୟମାନଙ୍କ ସାହାଯ୍ୟରେ ବସ୍ତୁ ଗ୍ରହଣ କରେ । ବୃତ୍ତି ହେଉଛି ଚିତ୍ତର ପରିଣାମ, ଅର୍ଥାତ୍ ବସ୍ତୁଗ୍ରହଣକାଳୀନାବସ୍ଥା ବିଶେଷ । ଯେ କୌଣସି ଇନ୍ଦ୍ରିୟ ସାହାଯ୍ୟରେ ଯେ କୌଣସି ବସ୍ତୁକୁ ଚିତ୍ତ ଯଦି ଗ୍ରହଣ କରେ, ତେବେ ଗ୍ରହଣ ସମୟରେ ଚିତ୍ତ ସେହି ବସ୍ତୁର ଆକାର ଧାରଣ କରିଥାଏ । ଉଦାହରଣ ସ୍ୱରୂପ ଚିତ୍ତ ଯଦି ଗୋଟିଏ ପୁସ୍ତକକୁ ଗ୍ରହଣ କଲା, ତେବେ ସେଠାରେ ଉକ୍ତ ଚିତ୍ତ ପୁସ୍ତକାକାରାକାରିତ ବୋଲି ବୁଝିବାକୁ ହେବ, ଏହା ବେଦାନ୍ତୀମାନଙ୍କ ମତ । ପ୍ରକୃତ ସ୍ଥଳରେ କବି ଗୃହୀତ ବସ୍ତୁଗୁଡ଼ିକ ନିଶ୍ଚୟ ଚିତ୍ତବୃତ୍ତିକୁ ଉତ୍ପାଦନ କରୁଛନ୍ତି । ରସାଦିମାନେ ଉକ୍ତ ଚିତ୍ତବୃତ୍ତି ସ୍ୱରୂପ କାବ୍ୟ ନାଟକ ଶ୍ରବଣ ଦର୍ଶନରେ ସହୃଦୟର ତଦାକାରକାରିତ ଚିତ୍ତବୃତ୍ତି ହୋଇଥାଏ । ସେହି ଚିତ୍ତବୃତ୍ତିହିଁ ରସାଦିସଂଜ୍ଞା ପାଏ, ତେବେ ଉକ୍ତ ଚିତ୍ତ-ବୃତ୍ତିର ଉତ୍ପାଦକ ବସ୍ତୁମାନ କିଭଳି ରସାଙ୍ଗ ନ ହେବ ? ଏଣୁ କୁହାଯାଉଛି ଯେ)—ରସାଦିମାନେ ଚିତ୍ତବୃତ୍ତି ବିଶେଷ ଅର୍ଥାତ୍ ରସାଦିମାନେ ଚିତ୍ତବୃତ୍ତି ସ୍ୱରୂପ ।

୫୮୭ । ସଂସାରରେ ଏଭଳି କିଛି ବସ୍ତୁ ନାହିଁ, ଯାହା କି ଚିତ୍ତ-ବୃତ୍ତି ବିଶେଷକୁ ଜାତ କରିଏ ନାହିଁ । ଯଦିବା କୌଣସି ବସ୍ତୁ ଚିତ୍ତବୃତ୍ତି ବିଶେଷକୁ ଜାତ କରାଇ ନ ପାରନ୍ତି, ତେବେ ସେଭଳି ବସ୍ତୁକୁ ଗ୍ରହଣ କରି କବି ରଚନା ଲେଖିବା ଉଚିତ ନୁହେ । ଏ ସ୍ଥଳରେ ପ୍ରତିପାଦ୍ୟ ଶବ୍ଦ ମଧ୍ୟ କବିର ରଚନାବିଶେଷ । ଏଣୁ ଅବଶ୍ୟ ତହିଁରେ ବ୍ୟଙ୍ଗ୍ୟ ସମ୍ପର୍କ ଅଛି ।

ତସ୍ୟ ନ ସ୍ୟାତ୍ । କବି ବିଷୟଶ୍ଚ ଚିତ୍ରସ୍ୟୋ କଶ୍ଚିନ୍ନି-
ରୂପ୍ୟତେ ।

୫୮୮ । ଅତ୍ରୋଚ୍ୟତେ-ସତ୍ୟଂ, ନ ତାଦୃକ୍ କାବ୍ୟପ୍ରକା-
ରୋଽସ୍ତି, ଯତ୍ର ରସାଦୀନାମପ୍ରତିପତ୍ତିଃ ।

୫୮୯ । କିନ୍ତୁ-ଯଦା ରସଭାବାଦିବିବକ୍ଷାଶୂନ୍ୟଃ କବିଃ ଶବ୍ଦାଳଂ-
କାରମର୍ଥାଳଂକାରଂ ବୋପନିବଧ୍ନାତି, ତଦା
ତଦ୍ବିବକ୍ଷାଽପେକ୍ଷୟା ରସାଦିଶୂନ୍ୟତାଽର୍ଥସ୍ୟ
ପରିକଳ୍ପ୍ୟତେ ।

୫୯୦ । ବିବକ୍ଷୋପାରୂଢ଼ ଏବ ହି କାବ୍ୟେ ଶବ୍ଦାନାମର୍ଥଃ ।
ବାଚ୍ୟସାମର୍ଥ୍ୟବଶେନ ଚ କବି ବିବକ୍ଷାବିରହେଽପି
ତଥାବିଧେ ବିଷୟେ ରସାଦିପ୍ରତୀତିର୍ଭବନ୍ତୀ ପରି-

---

ସାରାର୍ଥ—ପ୍ରଥମେ ବସ୍ତୁ ପ୍ରତି କବିର ଚିତ୍ତବୃତ୍ତି ଆକୃଷ୍ଟ ହେଲେ ସେ ତାହା ସମ୍ବନ୍ଧେ କିଛି ଲେଖିବାକୁ ଯତ୍ନ କରେ । ଏଣୁ ପ୍ରତ୍ୟେକ୍ ବସ୍ତୁ ଚିତ୍ତବୃତ୍ତିର ଜନକ ଓ ଚିତ୍ତବୃତ୍ତି ମାତ୍ରେ ରସ । ସୁତରାଂ ନୀରସ କାବ୍ୟ ନାହିଁ, ନୀରସ କାବ୍ୟ ନ ଥିବାରୁ ଚିତ୍ରକାବ୍ୟ ମଧ୍ୟ ବ୍ୟଙ୍ଗ୍ୟ ସମ୍ପର୍କହୀନ ନୁହେ ।

୫୮୮ । ଉକ୍ତ ଯୁକ୍ତିମୂଳକ ପ୍ରଶ୍ନର ଉତ୍ତର ଯଥା—ସତ, ଏଭଳି କାବ୍ୟ ନାହିଁ, ଯେଉଁଥିରେ କି ରସାଦିର ପ୍ରତିପାଦକତା ନାହିଁ ।

୫୮୯ । କିନ୍ତୁ ଯେତେବେଳେ କବି ରସଭାବାଦି ବିବକ୍ଷାଶୂନ୍ୟ ହୋଇ ଶବ୍ଦାଳଂକାର କିମ୍ବା ଅର୍ଥାଳଂକାର ବାନ୍ଧିବାରେ ଲାଗେ, ସେତେବେଳେ କବିର ଅଳଂକାର ରଚନା ବିବକ୍ଷା ଦୃଷ୍ଟିରୁ କାବ୍ୟାର୍ଥର ରସାଦିଶୂନ୍ୟତା ପରିକଳ୍ପିତ ହୁଏ ।

୫୯୦ । ଏହାର କାରଣ ଏହା ଯେ, କାବ୍ୟରେ ଶବ୍ଦମାନଙ୍କର ଅର୍ଥ ବିବକ୍ଷାକୁ ଅପେକ୍ଷା କରି ରହିଥାଏ । ଏତାଦୃଶ ବିଷୟସ୍ଥଳରେ କବିର ବିବକ୍ଷା ରସାଦିପର ହୋଇ ନ ଥିଲେ ମଧ୍ୟ କେବଳ ବାଚ୍ୟ ସାମର୍ଥ୍ୟବଶରୁ

ଦୁର୍ବଳା ଭବତୀତ୍ୟନେନାପି ପ୍ରକାରେଣ ନୀରସତ୍ୱଂ
ପରିକଳ୍ପ୍ୟ ଚିତ୍ରବିଷୟୋ ବ୍ୟବସ୍ଥାପ୍ୟତେ ।

୫୯୧ । ତଦିଦମୁକ୍ତମ୍—

ରସଭାବାଦିବିଷୟ-ବିବକ୍ଷାବିରହେ ସତି,
ଅଲଂକାରନିବନ୍ଧୋ ଯଃ ସ ଚିତ୍ରବିଷୟୋ ମତଃ ।

୫୯୨ । ରସାଦିଷୁ ବିବକ୍ଷାତୁ ସ୍ୟାତ୍ତାତ୍ପର୍ଯ୍ୟବତୀ ଯଦା,
ତଦା ନାସ୍ତ୍ୟେବ ତତ୍କାବ୍ୟଂ ଧ୍ୱନେର୍ୟତ୍ର ନ
ଗୋଚରଃ ।

୫୯୩ । ଏତଚ୍ଚ ଚିତ୍ରଂ କବୀନାଂ ବିଶୃଙ୍ଖଳଗିରାଂ ରସାଦି-
ତାତ୍ପର୍ଯ୍ୟମନବେକ୍ଷ୍ୟୈବ କାବ୍ୟପ୍ରବୃତ୍ତିଦର୍ଶନାତ୍
ଅସ୍ମାଭିଃ ପରିକଳ୍ପିତମ୍ ।

---

ରସାଦି ପ୍ରତୀତ ହୁଏ । ମାତ୍ର ତାହା (ରସାଦି) କବିର ବିବକ୍ଷିତ ହୋଇ ନ ଥିବାରୁ ଅଲଂକାର ଦୃଷ୍ଟିରେ ଦୁର୍ବଳ ହୋଇ ରହିଥାଏ । ତେଣୁ ତାଦୃଶ ରଚନାକୁ ନୀରସ ବୋଲି ପ୍ରତିପାଦନ କରିଯାଇ ଚିତ୍ର ବୋଲି ସଂଜ୍ଞା ଦିଆ-ଯାଇ ଅଛି ।

୫୯୧ । ତେଣୁ ଏହା କହିଲି—(ଏଥିରେ ବକ୍ତା ବୃତ୍ତିକାର) ଯେଉଁଠି କବିର ରସଭାବାଦି ବିବକ୍ଷା ନ ଥାଇ କେବଳ ଅଲଂକାର ଯୋଜନାରେ ପ୍ରୟାସ ରହିଥାଏ, ତାହା ସବୁ ଚିତ୍ରର ବିଷୟ ।

୫୯୨ । ଯେଉଁଠାରେ ପ୍ରଧାନତଃ (ତାତ୍ପର୍ଯ୍ୟବତୀ) ରସାଦି ପ୍ରତିପାଦନ ପାଇଁ କବିର ବିବକ୍ଷା ଥିବ, ସେଭଳି ଗୋଟିଏ ହେଲେ କାବ୍ୟ ନାହିଁ, ଯେ କି ଧ୍ୱନିକାବ୍ୟର ଅନ୍ତର୍ଗତ ନ ହେବ ।

୫୯୩ । (ଏଭଳି ଏକ ଅଧମ ପ୍ରକାର କାବ୍ୟର ଲକ୍ଷଣ କରିବାରେ ପ୍ରୟୋଜନ କଅଣ ? ଏହି ପ୍ରଶ୍ନର ଉତ୍ତର ସ୍ୱରୂପ କୁହାଯାଉଛି)— କବିମାନେ ବିଶୃଙ୍ଖଳଭାବେ ରସାଦି ତାତ୍ପର୍ଯ୍ୟରେ ଦୃଷ୍ଟି ନ ଦେଇ କାବ୍ୟ ରଚନା କରିଥିବା ଦେଖି, ଆମ୍ଭେ ଏଭଳି ଏକପ୍ରକାର ଚିତ୍ରକାବ୍ୟର ଲକ୍ଷଣ ପରିକଳ୍ପନା କଲୁଁ ।

୫୯୪ । ଇଦାନୀନ୍ତନାନାଂ ତୁ ନ୍ୟାଯ୍ୟେ କାବ୍ୟନୟବ୍ୟବସ୍ଥାପନେ କ୍ରିୟମାଣେ ନାସ୍ତ୍ୟେବ ଧ୍ୱନିବ୍ୟତିରିକ୍ତଃ କାବ୍ୟପ୍ରକାରଃ ।

୫୯୫ । ଯତଃ ପରିପାକବତାଂ କବୀନାଂ ରସାଦିତାତ୍ପର୍ଯ୍ୟବିରହେ ବ୍ୟାପାର ଏବ ନ ଶୋଭତେ, ରସାଦିତାତ୍ପର୍ଯ୍ୟେ ଚ ସତି, ନାସ୍ତ୍ୟେବ ତଦ୍‌ବସ୍ତୁ ଯଦଭିମତ ରସାଙ୍ଗତାଂ ନୀୟମାନଂ ନ ପ୍ରଗୁଣୀଭବତି । ଅଚେତନା ଅପି ହି ଭାବା ଯଥାଯଥମୁଚିତରସବିଭାବତୟା ଚେତନବୃତ୍ତାନ୍ତଯୋଜନୟା ବା ନ ସନ୍ତ୍ୟେବ ତେ ଯେ ଯାନ୍ତି ନ ରସାଙ୍ଗତାମ୍ ।

---

୫୯୪ । ଆଧୁନିକ କବିମାନେ ସମୁଚିତଭାବେ କାବ୍ୟ ନିର୍ମାଣ କଲେ କେବଳ ଧ୍ୱନି ଭିନ୍ନ ଅନ୍ୟପ୍ରକାର କାବ୍ୟର ସ୍ଥାନ ନାହିଁ ।

ମର୍ମ—(ପ୍ରାଚୀନ ରସାଦି ତାତ୍ପର୍ଯ୍ୟଶୂନ୍ୟ କବିତାର ସମାଧାନ ପାଇଁ ତାହାକୁ ଚିତ୍ରକାବ୍ୟରୂପେ ସ୍ଥାନ ଦିଅଗଲେ । କିନ୍ତୁ ସେଭଳି କାବ୍ୟ ନିର୍ମାଣ ପାଇଁ ନିର୍ଦ୍ଦେଶ ଦିଆଯାଉ ନାହିଁ । ଏଣୁ ଆଧୁନିକ କବିମାନେ ସେଭଳି ରସାଦି ତାତ୍ପର୍ଯ୍ୟହୀନ କବିତା ସୃଷ୍ଟି କରିବା ବିଧେୟ ନୁହେ) ।

୫୯୫ । ଚେରପକ୍ (ଚୋଖଡା) କବିମାନଙ୍କର ରସାଦି ତାତ୍ପର୍ଯ୍ୟହୀନ ରଚନା ଶୋଭପାଏ ନାହିଁ । ଯଦି ରଚନାରେ ରସାଦି ତାତ୍ପର୍ଯ୍ୟ ଥାଏ ତେବେ ସେଭଳି କିଛି ବସ୍ତୁ ନାହିଁ, ଯେଉଁବସ୍ତୁ କି ଅଭିଲଷିତ ରସର ଅଙ୍ଗରୂପେ ବ୍ୟବହୃତ ହେଲେ ଶୋଭାବର୍ଦ୍ଧନ ନ କରିବ । କାରଣ ପ୍ରତ୍ୟେକ ଅଚେତନ ପଦାର୍ଥ ମଧ୍ୟ ଯଥାଯିତରେ ବିବକ୍ଷିତ ରସବିଭାବର ବ୍ୟଞ୍ଜକ ଭାବେ ବର୍ଣ୍ଣିତ ହେଲେ କିମ୍ବା ତାହା ଉପରେ ଚେତନ ବସ୍ତୁ ବୃତ୍ତାନ୍ତ ଆରୋପିତ ହେଲେ ଅଭିମତ ରସର ଅଙ୍ଗ ହୁଅନ୍ତି ।

ମର୍ମ—(ସତ୍ କବି ରଚିତ ପ୍ରତ୍ୟେକ କାବ୍ୟ ଧ୍ୱନି କାବ୍ୟ ହୋଇ ପାରେ ।

୫୯୭ । ତଥାଚେଦଧ୍ୱନ୍ୟାଲୋକେ—

ଅପାରେ କାବ୍ୟସଂସାରେ କବିରେବ ପ୍ରଜାପତିଃ,
ଯଥାଽସ୍ମୈ ରୋଚତେ ବିଶ୍ୱଂ ତଥେଦଂ ପରିବର୍ତ୍ତତେ ।

୫୯୭ । ଶୃଙ୍ଗାରୀଚେତ୍ କବିଃ କାବ୍ୟେ ଜାତଂ ରସମୟଂ ଜଗତ୍,
ସ ଏବ ବୀତରାଗଶ୍ଚେନ୍ନୀରସଂ ସର୍ବମେବ ତତ୍ ।

---

୫୯୭ । ଏଣୁ କବିମାନଙ୍କ ସମ୍ବନ୍ଧେ କୁହାଯାଉଛି ଯେ—କାବ୍ୟ ହେଉଛି ଗୋଟିଏ ଅନାଦି ଅନନ୍ତ ସଂସାର ଓ କେବଳ କବି ସେ ସଂସାରର ସ୍ରଷ୍ଟା (ପ୍ରଜାପତି) । ସୁତରାଂ କବି (ପ୍ରଜାପତି) ମନକୁ ଏ ବିଶ୍ୱ ଯେଉଁଭଳି ରୁଚିବ, ଏହାର ସେଭଳି ପରିବର୍ତ୍ତନ ହୋଇ ପାରିବ । (ଅର୍ଥାତ୍ ବିଶ୍ୱସ୍ରଷ୍ଟା କେବଳ ଗଗନରେ ଚନ୍ଦ୍ରର ଅବସ୍ଥାନ ସୃଷ୍ଟି କରନ୍ତି, କିନ୍ତୁ କବି ପ୍ରଜାପତି ଗଗନରେ ପୃଥିବୀରେ ଜଳରେ ଓ ଅନ୍ୟତ୍ର ମଧ୍ୟ ଚନ୍ଦ୍ରଙ୍କୁ ସ୍ଥାପନ କରିଦେଇ ପାରନ୍ତି । ଏହିପରି ସମସ୍ତ ବସ୍ତୁକୁ କବି ତାଙ୍କ ଇଚ୍ଛା ଅନୁସାରେ ବର୍ଣ୍ଣନା କରି ପାରନ୍ତି । ପ୍ରକୃତିର ଅଧୀନ ହେବାକୁ ସେ ବାଧ୍ୟ ନୁହନ୍ତି) ।

୫୯୭ । କବି ପ୍ରଜାପତିର ଅଦ୍ଭୁତ ଶକ୍ତି ଯଥା—

କବି ଯଦି କାବ୍ୟ ରଚନା କରିବା ସମୟରେ ଶୃଙ୍ଗାର ରସକୁ ବିବକ୍ଷା କରେ ତେବେ ସମସ୍ତ ଜଗତ ରସମୟ ହୁଏ । (ଅର୍ଥାତ୍ ଜଗତର ଯେ କୌଣସି ନୀରସ ବସ୍ତୁକୁ ମଧ୍ୟ କବି ରସାଙ୍ଗରୂପେ ବ୍ୟବହାର କରି ରସମୟ କରି ପାରେ) । ସେହି କବି ଯଦି ଅନୁରାଗହୀନ ହୁଏ, ଅର୍ଥାତ୍ ଶାନ୍ତ ରସାଦି ପ୍ରତିପାଦନ ପାଇଁ ଇଚ୍ଛା କରେ ତେବେ ସମସ୍ତ ଜଗତ ଅର୍ଥାତ୍ ସଂସାରର ରମଣୀୟ ବସ୍ତୁସମୂହ ମଧ୍ୟ ନୀରସ ହୋଇଯାନ୍ତି ।

(କବି ପ୍ରତ୍ୟେକ ବସ୍ତୁକୁ ପ୍ରତ୍ୟେକ ରସର ରସାଙ୍ଗ କରି ବର୍ଣ୍ଣନା କରି ପାରେ । ଜାଗତିକ ବସ୍ତୁଗୁଡ଼ିକ ସ୍ୱତଃ ସରସ ବା ନୀରସ ନୁହନ୍ତି । ସେମାନଙ୍କର ସରସତା କବି ପ୍ରଜାପତିର ଅଧୀନ । କବି ଯେଉଁ ବସ୍ତୁକୁ ଶୃଙ୍ଗାରର ଅଙ୍ଗରୂପେ ବିବକ୍ଷା କରି ସରସ କରି ପାରେ, ତାହାକୁ ମଧ୍ୟ ଶାନ୍ତର ଅଙ୍ଗରୂପେ ବିବକ୍ଷାକରି ବୈରାଗ୍ୟ ଉତ୍ପାଦକ କରି ପାରେ,

୫୯୮ । ଭାବାନଚେତନାନପି ଚେତନବଚ୍ଚେତନା
ନ ଚେତନବତ୍,
ବ୍ୟବହାରୟତି ଯଥେଷ୍ଟଂ ସୁକବିଃ କାବ୍ୟେ
ସ୍ୱତନ୍ତ୍ରତୟା ।

୫୯୯ । ତନ୍ମାନ୍ନାସ୍ତ୍ୟେବ ତଦ୍‌ବସ୍ତୁ ଯତ୍ ସର୍ବାତ୍ମନା ରସତାତ୍ପର୍ଯ୍ୟ-
ବତଃ କବେସ୍ତଦିଚ୍ଛୟା ତଦଭିମତରସାଙ୍ଗତାଂ ନ

---

ସେହିଭଳି କୁସ୍ଥିତ ବ୍ୟକ୍ତିକୁ ମଧ୍ୟ ରସଭଙ୍ଗ କରି ପାରେ । ଏହାହିଁ କବି ପ୍ରଜାପତିର ବୈଶିଷ୍ଟ୍ୟ) ।

ଲୋଚନକାରଙ୍କ ମତରେ ଶ୍ଳୋକର ଅର୍ଥ—କବି ଯଦି ଶୃଙ୍ଗାରୀ ଅର୍ଥାତ୍ ଶୃଙ୍ଗାରାଦି ରସ ବିବକ୍ଷୁ ହୁଏ, ତେବେ ଜଗତର ସମସ୍ତ ବସ୍ତୁ ରସମୟ ହୁଅନ୍ତି ସେ ଯଦି ବୀତରାଗ ହୁଏ ଅର୍ଥାତ୍ କାବ୍ୟ ନିର୍ମାଣରେ ପ୍ରୟାସ ନ କରେ ତେବେ ଜାଗତିକ ସମସ୍ତ ବସ୍ତୁ ନୀରସ ହୁଅନ୍ତି ଅର୍ଥାତ୍ କୌଣସି ରସର ଅଙ୍ଗ ହୋଇ ପାରନ୍ତି ନାହିଁ ।

୫୯୮ । ସୁକବି ତାହାର ଇଚ୍ଛା ଅନୁସାରେ ଅଚେତନ ବସ୍ତୁମାନଙ୍କୁ ଅଚେତନ ବସ୍ତୁପରି ଓ ଚେତନବସ୍ତୁମାନଙ୍କୁ ଅଚେତନ ବସ୍ତୁପରି ମଧ୍ୟ ବର୍ଣ୍ଣନା କରି ପାରେ । ଅତଏବ କାବ୍ୟ ନିର୍ମାଣ ବିଷୟରେ କବିର ସ୍ୱାତନ୍ତ୍ର୍ୟ ରହିଅଛି ।

ସାର—କାବ୍ୟ ଜଗତର ସୃଷ୍ଟି ପାଇଁ କବି ହେଉଛି ପ୍ରଜାପତି । ସେ ନିଜ ଇଚ୍ଛା ଅନୁସାରେ ତା ସଂସାରର ସମସ୍ତ ସୃଷ୍ଟି କରି ପାରିବ । ବାହ୍ୟ ଜଗତର ନିୟମାବଳୀ ତାକୁ ବାଧାଦେଇ ପାରିବ ନାହିଁ । ସେ ନଦୀରେ ପଦ୍ମଫୁଟାଇ ପାରିବ । ଏକା ଦିନକେ ଷଡ଼୍‌ଋତୁ ଭୋଗହେବା ବର୍ଣ୍ଣନା କରିପାରିବ । ଏହିଭଳି ସବୁପ୍ରକାର ଅସମ୍ଭବକୁ ସମ୍ଭବ ଓ ସମ୍ଭବକୁ ଅସମ୍ଭବରୂପେ ସ୍ଥାପନ କରି ପାରିବ । ଏହାହିଁ ତାହାର ପ୍ରଜାପତିତ୍ୱ ।

୫୯୯ । ଅତଏବ ସଂସାରରେ ସେଭଳି ଗୋଟିଏ ହେଲେ ବସ୍ତୁ ନାହିଁ, ଯେଉଁ ବସ୍ତୁକୁ କବି ରସାଦିତାତ୍ପର୍ଯ୍ୟରେ ବ୍ୟବହାର କଲେ, ତାହା

ଧ୍ୱନେଃ । ତଥୋପନିବଧ୍ୟମାନଂ ବା ଗୁଣୀଭୂତବ୍ୟଙ୍ଗ୍ୟଂ
ନ ପୁଷ୍ଣାତି ।

୬୦୦ । ସର୍ବମେତଚ୍ଚ ମହାକବୀନାଂ କାବ୍ୟେଷୁ ଦୃଶ୍ୟତେ ।
ଅସ୍ମାଭିରପି ସ୍ୱେଷୁ କାବ୍ୟପ୍ରବନ୍ଧେଷୁ ଯଥାଯଥଂ
ଦର୍ଶିତମେବ ।

୬୦୧ । ସ୍ଥିତେ ଚୈବଂ ସର୍ବଏବ କାବ୍ୟପ୍ରକାରୋ ନ ଧ୍ୱନି-
ଧର୍ମତାମତିପତତି ।

୬୦୨ । ରସାଦ୍ୟପେକ୍ଷୟା କବେର୍ଗୁଣୀଭୂତବ୍ୟଙ୍ଗ୍ୟଲକ୍ଷ-
ଣୋଽପି ପ୍ରକାରସ୍ତଦଙ୍ଗତାମବଲମ୍ବତେ ପ୍ରାକ୍ ।

---

(ବସ୍ତୁ) ଅଭିମତ ରସର ଅଙ୍ଗ ହୋଇ ନ ପାରିବ । କିମ୍ବା ଅତ୍ୟନ୍ତ ରମଣୀୟ
ନ ହେବ ।

୬୦୦ । (ଆମ୍ଭର ଏହି ମତ ଅସମ୍ଭବ ନୁହେ) । ମହାକବିମାନଙ୍କ
କାବ୍ୟମାନଙ୍କରେ ଏହା ସବୁ ଭଲରକମ ଦେଖାଯାଏ । ଆମ୍ଭେ ମଧ୍ୟ
ଆମ୍ଭ ରଚିତ ଦେବୀଶତକ, ଅର୍ଜୁନ ଚରିତ, ବିଷମ ବାଣଲୀଳା ପ୍ରଭୃତି କାବ୍ୟ-
ମାନଙ୍କରେ ତାହା ଯଥାଯଥ ଭାବେ ଦର୍ଶାଇ ଅଛୁଁ ।

୬୦୧ । ଏହିପରି କାବ୍ୟ ନିର୍ମାଣ ଶୈଳୀ ନିରୂପିତ ହୁଅନ୍ତେ,
ଯେଉଁସବୁ କାବ୍ୟଗୁଡ଼ିକ ଏହି ଶୈଳୀରେ ରଚିତ ହେବେ, ତାହା ଧ୍ୱନି
କାବ୍ୟରୁ ବହିର୍ଭୂତ ହେବେ ନାହିଁ । ଅର୍ଥାତ୍ ଧ୍ୱନିକାବ୍ୟ ହେବେ ।

(ଅତଏବ ଆଧୁନିକ ସବୁ କାବ୍ୟ ଧ୍ୱନିକାବ୍ୟ ହୋଇପାରିବେ
ବୋଲି କୁହାଯାଇ ଅଛି) ।

୬୦୨ । (ସବୁକାବ୍ୟ ଯଦି ଧ୍ୱନିକାବ୍ୟ ହେବେ, ତେବେ ଗୁଣୀଭୂତ
ବ୍ୟଙ୍ଗର ସ୍ଥାନ କେଉଁଠି ? ଏହି ପ୍ରଶ୍ନର ଉତ୍ତର ସ୍ୱରୂପ କୁହାଯାଉଛି) —

କବି ରସାଦି ତାତ୍ପର୍ଯ୍ୟରେ ଯେଉଁ ଗୁଣୀଭୂତ ବ୍ୟଙ୍ଗ୍ୟ କାବ୍ୟକୁ
ରଚନା କରିଥାଏ, ତାହା ମଧ୍ୟ ରସାଦି ତାତ୍ପର୍ଯ୍ୟରେ ବ୍ୟବହୃତ ହୋଇ-
ଥିବାରୁ ଧ୍ୱନିର ଅଙ୍ଗ ହୁଏ, ଅର୍ଥାତ୍ ଧ୍ୱନିକାବ୍ୟର ଅନ୍ତର୍ଭୁକ୍ତ ହୁଏ ।

(ଏହା ୩ ପରିଚ୍ଛେଦରେ ପ୍ରତିପାଦନ କରାଯାଇଛି) ।

୬୦୩ । ଯଦା ତୁ ଚାଟୁଷୁ ଦେବତାସ୍ତୁତିଷୁ ବା ରସାଦୀନାମଙ୍ଗ-ତୟା ବ୍ୟବସ୍ଥାନଂ, ହୃଦୟବତୀଷୁ ଚ ଷଟ୍ପ୍ରଜ୍ଞାଦି-ଗାଥାସୁ କାସୁଚିଦ୍ ବ୍ୟଙ୍ଗ୍ୟ ବିଶିଷ୍ଟବାଚ୍ୟାତ୍ ପ୍ରାଧାନ୍ୟଂ, ତଦପି ଗୁଣୀଭୂତବ୍ୟଙ୍ଗ୍ୟସ୍ୟ ଧ୍ୱନିନିଷ୍ୟନ୍ଦଭୂତତ୍ୱ-ମେବେତ୍ୟୁକ୍ତଂ ପ୍ରାକ୍ ।

୬୦୪ । ତଦେବମିଦାନୀନ୍ତନକବିକାବ୍ୟନୟୋପଦେଶେ କ୍ରିୟମାଣେ ପ୍ରାଥମିକାନାମଭ୍ୟାସାର୍ଥିନାଂ ଯଦି ପରଂ ଚିତ୍ରେଣ ବ୍ୟବହାରଃ, ପ୍ରାପ୍ତପରିଣତୀନାଂ ତୁ ଧ୍ୱନିରେବ ପ୍ରାଧାନ୍ୟେନ କାବ୍ୟମିତି ସ୍ଥିତମେତତ୍ ।

---

୬୦୩ । ଯେଉଁସବୁ ସ୍ଥଳରେ ଚାଟୁ (ନାୟିକା କିମ୍ବା ରାଜାପ୍ରଭୃତିଙ୍କ ମନୋରଞ୍ଜନ ପାଇଁ ମିଥ୍ୟାସ୍ତୁତି) କିମ୍ବା ଦେବତା ବିଷୟକ ସ୍ତୁତି ପ୍ରଧାନ ହୋଇଥାଏ, ଏବଂ ଶୃଙ୍ଗାରାଦି ରସମାନେ ତାହାର ଅଙ୍ଗଭାବେ ରହିଥାନ୍ତି ସେସବୁ ସ୍ଥଳ, ପୁନଶ୍ଚ ପ୍ରାକୃତ କବିବର୍ଗରେ ପ୍ରସିଦ୍ଧ ହୃଦୟବତୀ ଷଟ୍ପ୍ରଜ୍ଞାଦି ଗାଥାମାନଙ୍କରେ ଯେଉଁଠିକି ବ୍ୟଙ୍ଗ୍ୟ ଅପ୍ରଧାନଭାବେ ରହିଥାଏ, ତାହାସବୁ ଧ୍ୱନିର ନିଷ୍ୟନ୍ଦ (କ୍ଷୁଦ୍ରଝର) ସ୍ୱରୂପ ଗୁଣୀଭୂତ ବ୍ୟଙ୍ଗର ବିଷୟ ବୋଲି ପୂର୍ବରୁ କୁହାଯାଇ ଅଛି ।

(ଯେପରି ବଡ଼ ଝର ଓ ଛୋଟ ଝର ମଧ୍ୟରେ ପ୍ରଭେଦ ସେହିପରି ଧ୍ୱନି ଓ ଗୁଣୀଭୂତ ବ୍ୟଙ୍ଗ୍ୟ ମଧ୍ୟରେ ପ୍ରଭେଦ । ଧ୍ୱନି ବଡ଼ଝର ହେଲେ ଗୁଣୀଭୂତ ବ୍ୟଙ୍ଗ୍ୟ ହେଉଛି ଟୋପା ଟୋପା ହୋଇ ଝରୁଥିବା ଝର) ।

୬୦୪ । ଏଣିକି ଏହିଭଳି କାବ୍ୟନିର୍ମାଣ ନୀତି ନିର୍ଦ୍ଧାରିତ ହୁଅନ୍ତେ, ପ୍ରାଥମିକ ଭାବେ କବିତା ଅଭ୍ୟାସ କରୁଥିବା କବିମାନେ ଚିତ୍ର (ଚିତ୍ରକାବ୍ୟ) ରଚନା କଲେ କରି ପାରନ୍ତି, କିନ୍ତୁ ପରିପକ୍ୱ କବିମାନେ ମୁଖ୍ୟତଃ ଧ୍ୱନିକାବ୍ୟ ରଚନା କରିବେ, ଏହା ନିରୂପିତ ହେଲା ।

୭୦୫ । ତଦସ୍ୟ ମତ୍ର ସଂଗ୍ରହଃ—

ଯସ୍ମିନ୍ ରସୋ ବା ଭାବୋ ବା ତାତ୍ପର୍ଯ୍ୟେଣ ପ୍ରକାଶତେ
ସଂବୃତ୍ୟାଭିହିତଂ ବସ୍ତୁ ଯତ୍ରାଲଂକାର ଏବ ବା ।
କାବ୍ୟାଧ୍ୱନି ଧ୍ୱନିର୍ବ୍ୟଙ୍ଗ୍ୟ ପ୍ରାଧାନ୍ୟୈକନିବନ୍ଧନଃ ।
ସର୍ବତ୍ର ତତ୍ର ବିଷୟୀଜ୍ଞେୟଃ ସହୃଦୟୈର୍ଜନୈଃ ।
ବ୍ୟଙ୍ଗ୍ୟସ୍ୟ ପ୍ରାଧାନ୍ୟମେବମେବ ନିବନ୍ଧନଂ କାରଣଂ
ଯସ୍ୟ ସଃ, ଧ୍ୱନିରିତି ଯାବତ୍ ।

ଧ୍ୱନିର ବ୍ୟାପକତା

୭୦୬ । ସଗୁଣୀ ଭୂତବ୍ୟଙ୍ଗ୍ୟୈଃ ସାଲଂକାରୈ
ସହ ପ୍ରଭେଦୈଃସ୍ୱୈଃ ।
ସଂକରସଂସୃଷ୍ଟିଭ୍ୟାଂ ପୁନରପ୍ୟୁଦ୍ୟୋତତେ ବହୁଧା ।
ତସ୍ୟ ଚ ଧ୍ୱନେଃ ସ୍ୱପ୍ରଭେଦୈର୍ଗୁଣୀଭୂତବ୍ୟଙ୍ଗ୍ୟେନ
ବାଚ୍ୟାଲଂକାରୈଶ୍ଚ ସଂକରସଂସୃଷ୍ଟିବ୍ୟବସ୍ଥାୟାଂ
କ୍ରିୟମାଣାୟାଂ ବହୁପ୍ରଭେଦତା ଲକ୍ଷ୍ୟେ ଦୃଶ୍ୟତେ ।

---

୭୦୫ । ଉକ୍ତ ଧ୍ୱନିର ବିଷୟବସ୍ତୁ ଉକ୍ତ ଶ୍ଳୋକାକାରରେ ସଂଗୃହୀତ ହୋଇଅଛି । ଯଥା – ଯେଉଁ ସ୍ଥଳରେ କୌଣସି ଗୋଟିଏ ରସ କିମ୍ବା ଭାବ ପ୍ରଧାନଭାବେ ବିବକ୍ଷିତ ହୋଇଥାଏ, ଅଥବା ଯେଉଁସ୍ଥଳରେ ବସ୍ତୁ କିମ୍ବା ଅଲଂକାର ବ୍ୟଙ୍ଗଭାବେ ନିର୍ଦ୍ଦିଷ୍ଟ ହୋଇ ପ୍ରାଧାନ୍ୟ ଲାଭ କରିଥାଏ, ସେହି-ସବୁ ପ୍ରକାର କାବ୍ୟମାର୍ଗରେ ବ୍ୟଙ୍ଗ୍ୟ ପ୍ରଧାନଭାବେ ରହିଥିବା ହେତୁ ତାହା-ସବୁ ଧ୍ୱନିର ବିଷୟ ବୋଲି ସହୃଦୟମାନେ ଜାଣିବା ଆବଶ୍ୟକ ।

ଧ୍ୱନିର ବ୍ୟାପକତା

୭୦୬ । ପୁନଶ୍ଚ ଉକ୍ତ ଧ୍ୱନି, ଗୁଣୀଭୂତ ବ୍ୟଙ୍ଗ୍ୟ ଓ ବାଚ୍ୟ ଅଲଂକାର ଓ ଧ୍ୱନିର ସ୍ୱଗତ ପ୍ରଭେଦ (ବସ୍ତୁ ଅଲଂକାରରସାଦିରୂପ ଓ ଅବିବକ୍ଷିତବାଚ୍ୟ ବିବକ୍ଷିତାନ୍ୟ ପରବାଚ୍ୟ ପ୍ରଭୃତି) ସହିତ ସଂକରଭାବେ କିମ୍ବା ସଂସୃଷ୍ଟିଭାବେ ରହିବା ହେତୁ ବହୁପ୍ରକାର ହୋଇ ପ୍ରକାଶପାଏ ।

୬୦୭ । ତଥାହ୍ୟ—ସ୍ୱପ୍ରଭେଦସଂକୀର୍ଣ୍ଣଃ ସ୍ୱପ୍ରଭେଦସଂସୃଷ୍ଟଃ, ଗୁଣୀଭୂତବ୍ୟଙ୍ଗ୍ୟସଂକୀର୍ଣ୍ଣଃ, ଗୁଣୀଭୂତବ୍ୟଙ୍ଗ୍ୟସଂସୃଷ୍ଟଃ, ବାଚ୍ୟାଲଂକାରାନ୍ତରସଂକୀର୍ଣ୍ଣଃ, ବାଚ୍ୟାଲଂକାରସଂସୃଷ୍ଟଃ, ସଂସୃଷ୍ଟାଲଂକାରସଂକୀର୍ଣ୍ଣଃ, ସଂସୃଷ୍ଟାଲଂକାରସଂସୃଷ୍ଟ, ଶ୍ଚେତି ବହୁଧା ଧ୍ୱନିଃ ପ୍ରକାଶତେ ।

୬୦୮ । ତତ୍ର ସ୍ୱପ୍ରଭେଦସଂକୀର୍ଣ୍ଣତ୍ୱଂ କଦାଚିଦନୁଗ୍ରାହ୍ୟାନୁଗ୍ରାହକ ଭାବେନ, ଯଥା—ଏବଂ ବାଦିନି ଦେବର୍ଷୌ' ଇତ୍ୟାଦୌ । ଅତ୍ରହ୍ୟର୍ଥଶକ୍ତ୍ୟୁଦ୍ଭବାନୁରଣନରୂପବ୍ୟଙ୍ଗ୍ୟ ଧ୍ୱନି ପ୍ରଭେଦେନାଲକ୍ଷ୍ୟକ୍ରମବ୍ୟଙ୍ଗ୍ୟଧ୍ୱନିପ୍ରଭେଦୋଽନୁଗୃହ୍ୟମାଣଃ ପ୍ରତୀୟତେ ।

---

୬୦୭ । ଯଥା—ଧ୍ୱନି ପ୍ରଭେଦର ଧ୍ୱନି ପ୍ରଭେଦ ସହିତ ସଂକରଭାବେ ଓ ଧ୍ୱନି ପ୍ରଭେଦର ଧ୍ୱନି ପ୍ରଭେଦ ସହିତ ସଂସୃଷ୍ଟିଭାବେ ଅବସ୍ଥିତ । ପୁନଶ୍ଚ ଧ୍ୱନିର ଗୁଣୀଭୂତ ବ୍ୟଙ୍ଗ୍ୟ ସହିତ ସଂକରଭାବେ ତଥା ସଂସୃଷ୍ଟିଭାବେ ଅବସ୍ଥିତ । ଆଉ ପୁଣି ଧ୍ୱନିର ବାଚ୍ୟଅଲଂକାରମାନଙ୍କ ସହିତ ସଂକରଭାବେ ଓ ସଂସୃଷ୍ଟିଭାବେ ଅବସ୍ଥାନ । ସେହିପରି ସଂକର ଓ ସଂସୃଷ୍ଟ ଅଲଂକାରମାନଙ୍କ ସହିତ ମଧ୍ୟ ସଂକର ବା ସଂସୃଷ୍ଟଭାବେ ଅବସ୍ଥିତ । ଉକ୍ତ ପ୍ରକାର ଭେଦରୁ ଧ୍ୱନି ବହୁପ୍ରକାର ହୁଏ ।

(କ୍ଷୀରନୀର ଭଳି ଏକାଠି ମିଶି ରହିବାକୁ ସଂକର ବୋଲାଯାଏ ଓ ତିଳତଣ୍ଡୁଳ ଭଳି ମିଶି ରହିବାକୁ ସଂସୃଷ୍ଟି ବୋଲାଯାଏ । ଉକ୍ତ ସଂକର ତିନି ପ୍ରକାର :—ଯଥା—୧—ଅଙ୍ଗାଙ୍ଗିଭାବ ସଂକର, ୨—ସନ୍ଦେହ ସଂକର ଓ ୩—ଏକାଶ୍ରୟାନୁ ପ୍ରବେଶ ସଂକର) ।

୬୦୮ । ଧ୍ୱନିର ଉକ୍ତ ପ୍ରଭେଦମାନଙ୍କ ମଧ୍ୟରୁ ଧ୍ୱନିର ଧ୍ୱନିସହିତ ଅଙ୍ଗାଙ୍ଗଭାବ ସଂକରର ଉଦାହରଣ ଯଥା—"ଏବଂ ବାଦିନି ଦେବର୍ଷୌ" ଇତ୍ୟାଦି ସ୍ଥଳ । ଏ ଶ୍ଳୋକରେ ଅର୍ଥଶକ୍ତ୍ୟୁଦ୍ଭବ ଅସଂଲକ୍ଷ୍ୟକ୍ରମ ବ୍ୟଙ୍ଗ୍ୟ ଧ୍ୱନି ବିଶେଷ ଲଜ୍ଜା ଅଙ୍ଗ ଓ ବିପ୍ରଲମ୍ଭ ଶୃଙ୍ଗାରରୂପକ ଅସଂଲକ୍ଷ୍ୟ କ୍ରମବ୍ୟଙ୍ଗ୍ୟ ଧ୍ୱନିବିଶେଷ ଅଙ୍ଗୀ । ଏ ଉଭୟ ସଂକୀର୍ଣ୍ଣ ହୋଇ ରହିଅଛନ୍ତି ।

୬୦୯ । ଏବଂ ବଦାଶତ୍ ପ୍ରଭେଦଦ୍ଧ୍ୱୟସଂପାତସନ୍ଦେହେନ
ଯଥା—"ଖଣପାହୁଣିଆ ଦେଅର !
ଏସା ଜାଆଏ କଂପିଦେ ଭଣିଆ ।
ରୁଅଇ ପଡ଼ୋହରବଲହୀ
ଘରମ୍ମି ଅଣୁଣିଜ୍ଜଉ ବସଈ ।
(କ୍ଷଣ ପ୍ରାଘୁଣିକା ଦେବର ! ଏଷା ଜାୟୟା କମପି ତେ
ଭଣିତା ! । ରୋଦିତି ଶୂନ୍ୟବଲଭୀଗୃହେଽନୁନୀୟତାଂ
ବରାକୀ) । ଇତଚ୍ଛାୟା ।

୬୧୦ । ଅତ୍ର "ହ୍ୟନୁନୀୟତା"ମିତ୍ୟେତତ୍ ପଦମର୍ଥାନ୍ତର-
ସଂକ୍ରମିତବାଚ୍ୟତ୍ୱେନ ବିବକ୍ଷିତାନ୍ୟପରବାଚ୍ୟତ୍ୱେନ

---

୬୦୯ । କୌଣସି ସ୍ଥଳରେ ଦୁଇଗୋଟି ପ୍ରକାରର ଧ୍ୱନି, ସନ୍ଦେହ-
ସଂକର ଭାବେ ରହିଥାଏ ଯଥା—

ଆହେ ଦିଅର ! ଉତ୍ସବ ସମୟରେ ହାବୁଡେ ପଡ଼ିଯାଇ
ଅଥବା ଦେଖାହେଲା ମାନେ) ତୁମ୍ଭ ଭଉଜା କଣ କହିଦେଲା ଯେ, ଏ
(ତୁମ୍ଭ ପ୍ରିୟତମା) ଘର ଉପର ଶୂନ୍ୟ କୋଠରୀରେ ବସି କାନ୍ଦୁଛି । ବିଚରାକୁ
ବୋଧକର । (ଅନୁନୟକର)

(ଏ ପଦ୍ୟରେ ଦିଅର (ଦେବର) ପଦରୁ ସ୍ନେହାସ୍ପଦତା, ତୁମ୍ଭ
(ତେ) ପଦରୁ ତୁମ୍ଭ ଅନୁନୟର ଉଚିତତା, କଅଣ (କମପି) ପଦରୁ
ଗାଳିର ଅକଥନୀୟତା, କ୍ରନ୍ଦନରୁ ପ୍ରତିକାରରେ ଅସାମର୍ଥ୍ୟ, ପଲ୍ଲୀନାୟକର
ଅଭାବ ହେତୁ ତୁମ୍ଭଠାରେ ଅନୁରାଗାଧିକ୍ୟ; ଏବଂ ବିଚରା (ବରାକୀ) ପଦରୁ
ଦୟାସ୍ପଦତା ଓ ଅନୁନୟଯୋଗ୍ୟତା ପ୍ରଭୃତି ସୂଚିତ ହେଉଅଛି) ।

୬୧୦ । ଏ ଶ୍ଳୋକରେ ଉପଭୋଗ ପ୍ରତୀତି ପାଇଁ "ବୋଧକର
(ଅନୁନୀୟତାଂ)" କ୍ରିୟାପଦକୁ ଲକ୍ଷଣା ବୃତ୍ତିରେ ବ୍ୟବହାର କରାଯାଇଛି
ବୋଲି କୁହାଗଲେ ଅବିବକ୍ଷିତ ବାଚ୍ୟଧ୍ୱନି ।

ଅଥବା ଅଭିଧାବ୍ୟାପାରରେ ଅନୁନେୟ (ବୋଧ) ପଦ, ରୋଦନ
ନିବର୍ତ୍ତନକୁ ବୁଝାଇବା ପରେ ଅର୍ଥ ସାମର୍ଥ୍ୟାକ୍ଷିପ୍ତ ଭାବେ "ଉପଭୋଗ"

ଚ ସମ୍ଭାବ୍ୟତେ । ନଗୃହ୍ୟତରପକ୍ଷନଶ୍ଚସ୍ଯେ ପ୍ରମାଣମସ୍ତି ।

୭୧୧ । ଏକବ୍ୟଞ୍ଜକାନୁପ୍ରବେଶେନ ତୁ ବ୍ୟଙ୍ଗ୍ୟତ୍ୱମଲକ୍ଷ୍ୟକ୍ରମ-ବ୍ୟଙ୍ଗ୍ୟସ୍ୟ ସ୍ୱପ୍ରଭେଦାନ୍ତରାପେକ୍ଷୟା ବାହୁଲ୍ୟେ ସମ୍ଭବତି । ଯଥା—"ସ୍ନିଗ୍ଧଶ୍ୟାମଳ" ଇତ୍ୟାଦୌ ।

୭୧୨ । ସ୍ୱପ୍ରଭେଦସଂସୃଷ୍ଟତ୍ୱଂ ଯଥା—ପୂର୍ବୋଦାହରଣ ଏବ । ଅତ୍ର ହ୍ୟର୍ଥାନ୍ତରସଂକ୍ରମିତବାଚ୍ୟସ୍ୟାତ୍ୟନ୍ତ-ତିରସ୍କୃତବାଚ୍ୟସ୍ୟ ଚ ସଂସର୍ଗଃ ।

---

ବୋଧର ବିଷୟ ହେଲା । ତେଣୁ ଏଠାରେ ଅର୍ଥଶକ୍ତ୍ୟୁଦ୍ଭବ ବିବକ୍ଷିତାନ୍ୟପର ବାଚ୍ୟଧ୍ୱନି ।

ଅତଏବ ଏଠାରେ "ଉପଦ୍ରେଗ" ରୂପବସ୍ତୁ ଉଭୟଥା ବୁଝିଯାଉ-ଥିବାରୁ ଏଠି ଏ ଉଭୟବିଧ ଧ୍ୱନି ସଂକର ହୋଇ ରହିଅଛନ୍ତି । ଏ ପ୍ରକାର ଧ୍ୱନି କିମ୍ବା ସେ ପ୍ରକାର ଧ୍ୱନି ବୋଲି ଦୃଢ଼ଭାବେ ନିର୍ଣ୍ଣୟ କରା-ଯାଇ ପାରୁ ନ ଥିବାରୁ ଏହା ସନ୍ଦେହ ସଂକର ଧ୍ୱନି ।

୭୧୧ । ଅଲକ୍ଷ୍ୟକ୍ରମବ୍ୟଙ୍ଗ୍ୟ ଧ୍ୱନିର ସ୍ୱଗତ ପ୍ରଭେଦ ସହିତ ଏକ ବ୍ୟଞ୍ଜକାନୁପ୍ରବେଶ ସଂକର ବହୁଳଭାବେ ଦେଖାଯାଏ ଯଥା—

"ସ୍ନିଗ୍ଧ ଶ୍ୟାମଳ" ଇତ୍ୟାଦିସ୍ଥଳ । ସେ ଶ୍ଳୋକରେ ରାମପଦକୁ ଅର୍ଥାନ୍ତରସଂକ୍ରମିତ ବାଚ୍ୟଧ୍ୱନି ଓ ବିପ୍ରଲମ୍ଭ ଶୃଙ୍ଗାରାତ୍ମକ ଅସଂଲକ୍ଷ୍ୟକ୍ରମ ବ୍ୟଙ୍ଗ୍ୟଧ୍ୱନି ଆଶ୍ରୟ କରି ରହିଅଛନ୍ତି ।

୭୧୨ । ଧ୍ୱନି ସହିତ ଧ୍ୱନିର ସଂସୃଷ୍ଟି ଯଥା— ପୂର୍ବୋକ୍ତ ସ୍ନିଗ୍ଧଶ୍ୟାମଳ ଶ୍ଳୋକରେ ।

ସେଥିରେ "ରାମ" ପଦ ଦ୍ୱାରା ଅର୍ଥାନ୍ତରସଂକ୍ରମିତବାଚ୍ୟଧ୍ୱନି ଓ ଲିପ୍ତ, ସୁହୃତ୍, ପଦ ଦୁଇଟି ଦ୍ୱାରା ଅତ୍ୟନ୍ତ ତିରସ୍କୃତ ବାଚ୍ୟଧ୍ୱନି ପ୍ରକାଶ ପାଉଛି । ଏ ଉଭୟ ପ୍ରକାର ଧ୍ୱନି ପରସ୍ପର ସାପେକ୍ଷ ଭାବେ ନ ଥିବାରୁ ଏଠାରେ ସଂସୃଷ୍ଟି ।

୭୧୩ । ଗୁଣୀଭୂତବ୍ୟଙ୍ଗ୍ୟସଙ୍କୀର୍ଣ୍ଣତ୍ୱଂ ଯଥା—"ନ୍ୟକ୍କାରୋ ହ୍ୟୟମେବ ମେ ଯଦରୟଃ" ଇତ୍ୟାଦୌ ।

୭୧୪ । ଯଥା—

କର୍ତ୍ତା ଦ୍ୟୂତଚ୍ଛଲାନାଂ ଜତୁମୟଶରଣୋ-
ଦ୍ଦୀପନଃସୋଽଭିମାନୀ
କୃଷ୍ଣା କେଶୋତ୍ତରୀୟ-ବ୍ୟପନୟନପଟୁଃ
ପାଣ୍ଡବା ଯସ୍ୟ ଦାସାଃ ।
ରାଜା ଦୁଃଶାସନାଦେର୍ଗୁରୁରନୁଜଶତ-
ସ୍ୟାଙ୍ଗରାଜସ୍ୟ ମିତ୍ରଂ
କ୍ୱାସ୍ତେ ଦୁର୍ଯ୍ୟୋଧନୋଽସୌ, କଥୟତ ନରୁଷା,
ଦ୍ରଷ୍ଟୁମଭ୍ୟାଗତୌ ସ୍ୱଃ ।

---

୭୧୩ । ଧ୍ୱନିର ଗୁଣୀଭୂତ ବ୍ୟଙ୍ଗ୍ୟ ସହିତ ସଂକୀର୍ଣ୍ଣତା ଯଥା—"ନ୍ୟକ୍କାରୋ ହ୍ୟୟମେବ" ଇତ୍ୟାଦିସ୍ଥଳ ଏ ପଦ୍ୟରେ ବାକ୍ୟ ବ୍ୟଙ୍ଗ୍ୟ ବୀର-ରସଧ୍ୱନି ମୁଖ୍ୟ । ପଦମାନଙ୍କ ଦ୍ୱାରା ବ୍ୟଙ୍ଗ୍ୟ ବସ୍ତୁଗୁଡ଼ିକ ଗୁଣୀଭୂତ ହେଉ-ଥିବାରୁ ତାହା ଗୁଣୀଭୂତ ବ୍ୟଙ୍ଗ୍ୟ । ଉକ୍ତ ଗୁଣୀଭୂତ ବ୍ୟଙ୍ଗ୍ୟ ବସ୍ତୁଗୁଡ଼ିକ ମୁଖ୍ୟ ରସଧ୍ୱନିର ଅଙ୍ଗଭାବେ (ପୋଷକଭାବେ) ରହୁଥିବାରୁ ଏଠାରେ ଗୁଣୀଭୂତ ବ୍ୟଙ୍ଗ୍ୟ ସହିତ ଧ୍ୱନିର ଅଙ୍ଗାଙ୍ଗିଭାବ ସଂକର ହୋଇଅଛି ।

୭୧୪ । ଧ୍ୱନି ଗୁଣୀଭୂତ ବ୍ୟଙ୍ଗ୍ୟ ସଂକର ସ୍ଥଳର ଅନ୍ୟ ଉଦାହରଣ ଯଥା—(ବେଣୀସଂହାର ନାଟକ ୫ମ ଅଙ୍କରେ ଦୁର୍ଯ୍ୟୋଧନ ପ୍ରତି ଭୀମ ଓ ଅର୍ଜ୍ଜୁନଙ୍କ ଉକ୍ତି) ।

ଦ୍ୟୂତାଦି ନାନା କପଟ ବ୍ୟବହାର କର୍ତ୍ତା, ଜତୁଗୃହର ଦାହକ, ଦ୍ରୌପଦୀଙ୍କ କେଶ ଓ ବସନର ଆକର୍ଷଣ କର୍ମରେ ନିପୁଣ, ଅତ୍ୟନ୍ତ ଅଭିମାନଶାଳୀ, ଦୁଃଶାସନାଦି ଶହେ ଭାଇଙ୍କ ଜ୍ୟେଷ୍ଠ ଓ ଗୁରୁଜନ, ଅଙ୍ଗରାଜ କର୍ଣ୍ଣର ମିତ୍ର, ଯାହାର କି ପାଣ୍ଡବମାନେ ଦାସ, ସେହି ରାଜା ଦୁର୍ଯ୍ୟୋଧନ କେଉଁଠାରେ ଅଛନ୍ତି କହ । ଆମ୍ଭେ ଦୁହେଁ ରାଗରେ ଆସି ନାହୁଁ ସେ ଦର୍ଶନ କରିବାକୁ ଆସିଅଛୁଁ ।

୬୧୫ । ଅତ୍ର ହ୍ୟଲକ୍ଷ୍ୟକ୍ରମବ୍ୟଙ୍ଗ୍ୟସ୍ୟ ବାକ୍ୟାର୍ଥୀଭୂତସ୍ୟ ବ୍ୟଙ୍ଗ୍ୟବିଶିଷ୍ଟବାଚ୍ୟା ଭିଧାୟିଭିଃ ପଦୈଃ ସନ୍ନିଶ୍ରତା ।

୬୧୬ । ଅତଏବ ଚ ପଦାର୍ଥାଶ୍ରୟତ୍ୱେ ଗୁଣୀଭୂତବ୍ୟଙ୍ଗ୍ୟସ୍ୟ, ବାକ୍ୟାର୍ଥାଶ୍ରୟତ୍ୱେ ଚ ଧ୍ୱନେଃ ସଙ୍କୀର୍ଣ୍ଣତାୟାମବିରୋଧଃ ସ୍ୱପ୍ରଭେଦାନ୍ତରବତ୍ ।

୬୧୭ । ତଥାହି—ଧ୍ୱନିପ୍ରଭେଦାନ୍ତରାଣି ପରସ୍ପରଂ ସଙ୍କୀର୍ଯ୍ୟନ୍ତେ ପଦାର୍ଥବାକ୍ୟାର୍ଥାଶ୍ରୟତ୍ୱେନ ଚ ନ ବିରୁଦ୍ଧାନି ।

---

୬୧୫ । ଏ ପଦ୍ୟରେ ସାଭିପ୍ରାୟ ପଦ ବିନ୍ୟାସ ହେତୁ ପରିକର ଅଳଂକାର । ସାଭିପ୍ରାୟ ପଦମାନଙ୍କ ଦ୍ୱାରା ଉପସ୍ଥାପିତ ବ୍ୟଙ୍ଗ୍ୟ ବସ୍ତୁ-ଗୁଡ଼ିକ ପରିକର ଅଳଂକାର ଦ୍ୱାରା ଗୁଣୀଭୂତ ହେଉଅଛନ୍ତି । ଉକ୍ତ ଗୁଣୀଭୂତ ବ୍ୟଙ୍ଗ୍ୟଗୁଡ଼ିକ ଆପେ ଆପେ ବାକ୍ୟବ୍ୟଙ୍ଗ୍ୟ ରୌଦ୍ର ରସର ପୋଷକ ହୋଇ ରହୁଥିବାରୁ ଏଠାରେ ଗୁଣୀଭୂତ ବ୍ୟଙ୍ଗ୍ୟ ସହିତ ବାକ୍ୟାର୍ଥୀଭୂତ ଅସଂଲକ୍ଷ୍ୟକ୍ରମ ବ୍ୟଙ୍ଗ୍ୟଧ୍ୱନିର ଅଙ୍ଗାଙ୍ଗିଭାବ ସଂକର ହେଉଅଛି ।

୬୧୬ । ଗୁଣୀଭୂତବ୍ୟଙ୍ଗ୍ୟ ପଦମାନଙ୍କ ଅର୍ଥକୁ ଆଶ୍ରୟକରି ରହୁ-ଅଛି କିନ୍ତୁ ଧ୍ୱନି ବାକ୍ୟାର୍ଥକୁ ଆଶ୍ରୟକରି ରହୁଅଛି । ଏଣୁ ଏ ଉଭୟ ସଂକର ହୋଇ ରହିବାରେ ବିରୋଧ ନାହିଁ । ଯଥା ଧ୍ୱନିସହ ଧ୍ୱନିର ସଂକର ହୋଇ ରହିବାର ବିରୋଧ ନାହିଁ ।

୬୧୭ । ସେହିପରି ଧ୍ୱନିର ବିଭିନ୍ନ ପ୍ରଭେଦ ମଧ୍ୟ ପଦାର୍ଥ ଓ ବାକ୍ୟାର୍ଥକୁ ଆଶ୍ରୟ କରି ପରସ୍ପର ସଂକୀର୍ଣ୍ଣ ହୁଅନ୍ତି ଏବଂ ପୂର୍ବପରି ପଦାର୍ଥ ଓ ବାକ୍ୟାର୍ଥକୁ ଆଶ୍ରୟ କରି ଭିନ୍ନ ଭିନ୍ନ ଧ୍ୱନି ରହିବାରେ ମଧ୍ୟ ବିରୋଧ ନାହିଁ ।

୭୧୮ । କ୍ୱଚିଚ୍ଚ ଏକବ୍ୟଙ୍ଗ୍ୟାଶ୍ରୟତ୍ୱେ ତୁ ପ୍ରଧାନଗୁଣ-ଭାବୋ ବିରୁଧ୍ୟତେ, ନ ତୁ ବ୍ୟଙ୍ଗ୍ୟଭେଦାପେକ୍ଷୟା, ତତୋଽପ୍ୟସ୍ୟ ନ ବିରୋଧଃ ।

୭୧୯ । ଅୟଂ ଚ ସଂକର ସଂସୃଷ୍ଟି ବ୍ୟବହାରୋ ବହୂନାମେକତ୍ର ବାଚ୍ୟବାଚକଭାବ ଇବ ବ୍ୟଙ୍ଗ୍ୟ ବ୍ୟଞ୍ଜକଭାବେଽପି ନିର୍ବିରୋଧ ଏବ ମନ୍ତବ୍ୟଃ ।

୭୨୦ । ଯତ୍ର ତୁ ପଦାନି କାନିଚିଦବିବକ୍ଷିତବାଚ୍ୟାନ୍ୟନୁ-ରଣନରୂପବ୍ୟଙ୍ଗ୍ୟବାଚ୍ୟାନି ବା, ତତ୍ର ଧ୍ୱନିଗୁଣୀଭୂତ-ବ୍ୟଙ୍ଗ୍ୟୟୋଃ ସଂସୃଷ୍ଟତ୍ୱମ୍ । ଯଥା—

"ତେଷାଂ ଗୋପବଧୂବିଳାସସୁହୃଦାମ୍" ଇତ୍ୟାଦୌ ।

ଅତ୍ର ହି "ବିଳାସସୁହୃଦାଂ" "ରାଧାରହଃ ସାକ୍ଷିଣାମ୍ ।"

---

୭୧୮ । ଯେ କୌଣସି ଗୋଟିଏ ପ୍ରକାର ବ୍ୟଙ୍ଗ୍ୟ ଅର୍ଥକୁ, ଆଶ୍ରୟ କରି ପ୍ରଧାନ ଓ ଗୁଣଭାବ ରହି ନ ପାରେ, ଅର୍ଥାତ୍ ଯେଉଁ ବ୍ୟଙ୍ଗ୍ୟ ପ୍ରଧାନ ସେ ଗୁଣୀଭୂତ ହୋଇ ନ ପାରେ ଏବଂ ଯେ ଗୁଣୀଭୂତ ସେ ପୁଣି ପ୍ରଧାନ ହୋଇ ନ ପାରେ । କିନ୍ତୁ ଗୋଟିଏ ପ୍ରକାର ବ୍ୟଙ୍ଗ୍ୟ ଅର୍ଥ ପ୍ରଧାନ ଓ ଆଉ ଏକ ପ୍ରକାର ବ୍ୟଙ୍ଗ୍ୟ ଅର୍ଥ ଅପ୍ରଧାନ, ଏପରି ରହିବାରେ କୌଣସି ବିରୋଧ ନାହିଁ ।

୭୧୯ । ବାଚ୍ୟ ବାଚକ ଭାବକୁ ଆଶ୍ରୟ କରିଥିବା ବାଚ୍ୟଅଳଂକାର-ମାନେ ଏକସ୍ଥଳରେ ଅନେକ ଦେଖାଗଲେ ସେମାନଙ୍କୁ ଯେପରି ସଂକର ସଂସୃଷ୍ଟି ପ୍ରଭୃତି ଆଖ୍ୟା ଦିଆଯାଉଛି, ସେହିପରି ଏକତ୍ରାବସ୍ଥିତ ଏକାଧିକ ବ୍ୟଙ୍ଗ୍ୟାର୍ଥମାନଙ୍କୁ ସଂକର ବା ସଂସୃଷ୍ଟି ବୋଲି କହିବାରେ ଦୋଷ ନାହିଁ ।

୭୨୦ । ଯେଉଁ ସ୍ଥଳମାନଙ୍କରେ କେତେକ ପଦ ଅବିବକ୍ଷିତବାଚ୍ୟ କିମ୍ବା ଅନୁରଣନ ରୂପ ବ୍ୟଙ୍ଗର ପ୍ରକାଶକ, ସେସବୁ ସ୍ଥଳରେ ଧ୍ୱନି ଓ ଗୁଣୀଭୂତ ବ୍ୟଙ୍ଗ୍ୟର ସଂସୃଷ୍ଟି । ଯଥା—

ଇତ୍ୟେଷ୍ଵତ ପଦେ ଧ୍ୱନିପ୍ରଭେଦରୂପେ, 'ତେ' 'କାନେ' ଇତ୍ୟେତେ ଚ ପଦେ ଗୁଣୀଭୂତବ୍ୟଙ୍ଗ୍ୟରୂପେ ।

୬୨୧ । ବାଚ୍ୟାଲଂକାରସଂକୀର୍ଣ୍ଣତ୍ୱମଲକ୍ଷ୍ୟକ୍ରମବ୍ୟଙ୍ଗ୍ୟାପେକ୍ଷୟା. ରସବତ୍ତ ରସାଲଂକାରେ ଚ କାବ୍ୟେ ସର୍ବତ୍ରୈବ ସୁବ୍ୟବସ୍ଥିତମ୍ । ପ୍ରଭେଦାନ୍ତରାଣାମପି କଦାଚିତ୍ ସଂକୀର୍ଣ୍ଣତ୍ୱଂ ଭବତ୍ୟେବ ।

୬୨୨ । ଯଥା ମମୈବ—

ଯା ବ୍ୟାପାରବତୀ ରସାନ୍ ରସୟିତୁଂ
କାଚିତ୍ କବୀନାଂ ନବା
ଦୃଷ୍ଟିର୍ଯା ପରିନିଷ୍ଠିତାର୍ଥବିଷୟୋ
ନ୍ମେଷା ଚ ବୈପଶ୍ଚିତୀ ।.
ତେ ଦ୍ୱେ ଅପ୍ୟବଲମ୍ବ୍ୟ ବିଶ୍ୱମନିଶଂ
ନିର୍ବର୍ଣ୍ଣୟନ୍ତୋ ବୟଂ

---

"ତେଷାଂ ଗୋପବଧୂ" ଇତ୍ୟାଦି ସ୍ଥଳ "ସେ ଶ୍ଳୋକରେ "ବିଳାସସୁହୃଦାଂ" "ରାଧା ରହଃ ସାକ୍ଷିଣାଂ" ଏହି ଦୁଇ ପଦରେ ଧ୍ୱନି, ଏବଂ "ତେ, କାନେ" ଏହି ଦୁଇ ପଦରେ ଗୁଣୀଭୂତ ବ୍ୟଙ୍ଗ୍ୟ ରହିଅଛି ।

୬୨୧ । ରସବନ୍ତ କାବ୍ୟ ଓ ରସବଦାଦ୍ୟଲଂକାର କାବ୍ୟମାନଙ୍କରେ, ସର୍ବଦା ଅସଂଲକ୍ଷ୍ୟକ୍ରମ ବ୍ୟଙ୍ଗ୍ୟଧ୍ୱନି ବାଚ୍ୟାଲଂକାର ସହିତ ସଂକୀର୍ଣ୍ଣ ହୋଇ ରହିବା ଦେଖାଯାଏ । ପୁନଶ୍ଚ ଧ୍ୱନିର ଅନ୍ୟ ପ୍ରଭେଦ, ବସ୍ତୁ, ଅଲଂକାର ମଧ୍ୟ ବାଚ୍ୟଅଲଂକାର ସହିତ ସଂକୀର୍ଣ୍ଣ ହୋଇ ରହି ପାରେ ।

୬୨୨ । ଏହାର ଉଦାହରଣ—ଯଥା—ମୋ ନିଜ ଶ୍ଳୋକ—ଆହେ ସମୁଦ୍ରରେ ଶୋଇଥିବା ନାରାୟଣ ! ସହୃଦୟମାନଙ୍କୁ ଶୃଙ୍ଗାରାଦି ରସ ଆସ୍ୱାଦନ କରାଇବା ପାଇଁ କବିମାନଙ୍କର ଯାହା କି ଅଭିନବ ଦୃଷ୍ଟିଭଙ୍ଗୀ (ପ୍ରତିଭା), ପୁନଶ୍ଚ ଯାହା ପଣ୍ଡିତମାନଙ୍କର ପ୍ରାମାଣିକ ପଦାର୍ଥ ଗ୍ରହଣଦୃଷ୍ଟି,

ଶ୍ରାନ୍ତା, ନୈବ ଚ ଲବ୍ଧମବ୍ଧିଶସ୍ତ୍ୱନ !
ତ୍ୱଦ୍‌ଭକ୍ତିତୁଲ୍ୟଂ ସୁଖମ୍ ।

୬୨୩ । ଅତ୍ର ବିରୋଧାଲଂକାରେଣାର୍ଥାନ୍ତରସଂକ୍ରମିତବାଚ୍ୟସ୍ୟ ଧ୍ୱନିପ୍ରଭେଦସ୍ୟ ସଙ୍କୀର୍ଣ୍ଣତ୍ୱମ୍ ।

୬୨୪ । ବାଚ୍ୟାଲଂକାରସଂସୃଷ୍ଟତ୍ୱଂ ଚ ପଦାପେକ୍ଷୟୈବ, ଯତ୍ର ହି କାନିଚିତ୍ ପଦାନି ବାଚ୍ୟାଲଂକାରଭାଞ୍ଜି କାନିଚିଚ୍ଚ ଧ୍ୱନିପ୍ରଭେଦଯୁକ୍ତାନି ।

---

ସେ ଉଭୟ—(କବିଶକ୍ତି ଓ ପଣ୍ଡିତଶକ୍ତି)କୁ ଅବଲମ୍ବନ କରି ସମଗ୍ର ବିଶ୍ୱକୁ ପ୍ରତିମୁହୂର୍ତ୍ତରେ ବର୍ଣ୍ଣନା କରୁଥିବା ଆମ୍ଭେ (କବି)ମାନେ ବୃଥାରେ ପରିଶ୍ରାନ୍ତ ହେଉଅଛୁ, କିନ୍ତୁ ଆପଣଙ୍କଠାରେ ଭକ୍ତି ରଖିବା ଦ୍ୱାରା ଯେଉଁ ସୁଖ, ସେପରି ସୁଖ ପାଇ ପାରିଲୁ ନାହିଁ ।

୬୨୩ । ବର୍ଣ୍ଣନ ହେଉଛି ଦୃଷ୍ଟିରୂପ ଜ୍ଞାନ । ପ୍ରାକୃତିକ ଚକ୍ଷୁ ଦ୍ୱାରା ହିଁ ଦୃଷ୍ଟିରୂପ ଜ୍ଞାନ ହୁଏ । ତେଣୁ ପ୍ରତିଭା ଓ ପାଣ୍ଡିତ୍ୟରୂପ ଚକ୍ଷୁ ଦ୍ୱାରା ବର୍ଣ୍ଣନା କରିବା ଅସମ୍ଭବ । କିନ୍ତୁ ଏ ଶ୍ଳୋକରେ "ନିବର୍ଣ୍ଣନ" ଶବ୍ଦ ଜ୍ଞାନ ଅର୍ଥରେ ପର୍ଯ୍ୟବସିତ ହେଉଥିବାରୁ ବିରୋଧ ଖଣ୍ଡିତ ହେଲା । ସୁତରାଂ ଏଠାରେ ବାଚ୍ୟ ବିରୋଧାଭାସ ଅଲଂକାର ।

ପୁନଶ୍ଚ ଏ ଶ୍ଳୋକରେ "ଦୃଷ୍ଟି" ପଦରେ ଅର୍ଥାନ୍ତର ସଂକ୍ରମିତବାଚ୍ୟ ଧ୍ୱନି । ଉକ୍ତ ଧ୍ୱନି ଓ ବାଚ୍ୟ ବିରୋଧାଭାସ ଅଲଂକାର ପରସ୍ପର ସଂକୀର୍ଣ୍ଣ ହୋଇ ରହିଅଛନ୍ତି । ସୁତରାଂ ଏଠାରେ ବିରୋଧ ଅଲଂକାର ସହିତ ଧ୍ୱନି ସଂକୀର୍ଣ୍ଣଭାବେ ଅଛି ।

୬୨୪ । ଯେଉଁସ୍ଥଳରେ କେତେକ ପଦ ବାଚ୍ୟ ଅଲଂକାରର ବାଚକ ଭାବେ, ପୁଣି ଆଉ କେତେକ ପଦ ଧ୍ୱନି ବ୍ୟଞ୍ଜକ ଭାବେ ରହିଥାନ୍ତି ସେସବୁ ସ୍ଥଳରେ ପଦମାନଙ୍କୁ ଆଶ୍ରୟ କରି ବାଚ୍ୟାଲଂକାର ସହିତ ସଂସୃଷ୍ଟ ହୋଇ ଧ୍ୱନି ରହିଥାଏ ।

୬୨୫ । ଯଥା—

ଖାଘୀକୁର୍ବନ୍ ପଟୁ ମଦକଲଂ କୂଜତଂ ସାରସାନାଂ,
ପ୍ରତ୍ୟୂଷେଷୁ ସ୍ଫୁଟିତକମଲାମୋଦମୈତ୍ରୀକଷାୟଃ ।
ଯତ୍ର ସ୍ତ୍ରୀଣାଂ ହରତି ସୁରତଗ୍ଲାନମଙ୍ଗାନୁକୂଳଃ,
ଶିପ୍ରାବାତଃ ପ୍ରିୟତମ ଇବ ପ୍ରାର୍ଥନାଚାଟୁକାରଃ ।

୬୨୬ । ଅତ୍ର ହି "ମୈତ୍ରୀ" ପଦମବିବକ୍ଷିତବାଚ୍ୟୋ ଧ୍ୱନିଃ ।
ପଦାନ୍ତରେଷ୍ୱଲଂକାରାନ୍ତରାଣି ।

୬୨୭ । ସଂସୃଷ୍ଟାଲଂକାରସଂକୀର୍ଣ୍ଣୋ ଧ୍ୱନିର୍ଯଥା—
ଦନ୍ତକ୍ଷତାନି କରଜୈଶ୍ଚ ବିପାଟିତାନି,
ପ୍ରୋଦ୍ଭିନ୍ନସାନ୍ଦ୍ରପୁଲକେ ଭବତଃ ଶରୀରେ ।

---

୬୨୫ । ଏହାର ଉଦାହରଣ ଯଥା—(ମେଘଦୂତରେ ଉଜ୍ଜୟିନୀ ବର୍ଣ୍ଣନା) ଯେଉଁ ଉଜ୍ଜୟିନୀ ନଗରୀରେ ପ୍ରତିଦିନ ପ୍ରତ୍ୟୁଷରେ ଶିପ୍ରାନଦୀ ସଂପୃକ୍ତ ପବନ, ହଂସମାନଙ୍କର ରମଣୀୟ ଅବ୍ୟକ୍ତ ମଧୁର କୂଜନକୁ ବର୍ଦ୍ଧନ କରି ପ୍ରସ୍ଫୁଟିତ ପଦ୍ମପୁଷ୍ପର ଆମୋଦ ଗ୍ରହଣ କରି ପ୍ରାର୍ଥନା ଚାଟୁକାର ପ୍ରିୟତମଭଳି ସ୍ତ୍ରୀମାନଙ୍କର ସୁରତ ବ୍ୟଥାକୁ ହରଣ କରେ ।

୬୨୬ । ଏ ଶ୍ଳୋକରେ "ମୈତ୍ରୀ" ପଦରେ ଅବିବକ୍ଷିତ ବାଚ୍ୟଧ୍ୱନି ଏବଂ ଅନ୍ୟପଦଗୁଡ଼ିକରେ ଭିନ୍ନ ଭିନ୍ନ ଧ୍ୱନି ରହିଅଛି ।

୬୨୭ । ସଂସୃଷ୍ଟାଲଂକାର ସହିତ ସଂକୀର୍ଣ୍ଣ ହୋଇ ରହିଥିବା ଧ୍ୱନି ଯଥା :—(ସିଂହ ପତ୍ନୀ ଭୋକରେ ନିଜ ଛୁଆକୁ ଖାଇବା ପାଇଁ ଉଦ୍ୟତ ହେବା ଦେଖି ଭଗବାନ୍ ଜିନ, ଛୁଆଟିର ପ୍ରାଣରକ୍ଷା ସକାଶେ ନିଜେ ସିଂହ ପତ୍ନୀର ଆହାରାର୍ଥେ ନିଜ ଶରୀରକୁ ଅର୍ପଣ କରିବା ଦେଖି କୌଣସି ଦ୍ରଷ୍ଟା କହୁଛନ୍ତି) ।

ହେ ଜିନ ! (ପର ପରିତ୍ରାଣ ପ୍ରମୋଦ ବଶତଃ) ସାନ୍ଦ୍ରଭାବେ ପୁଲକିତ ହୋଇଥିବା ଆପଣଙ୍କ ଶରୀରରେ ରକ୍ତ ପିପାସୁ ସିଂହ ପତ୍ନୀର

ଦନ୍ତାଘାତ (ଦନ୍ତକ୍ଷତ) ଓ ନଖବଦାରଣଙ୍କୁ ନିସ୍ପୃହ ମୁନିମାନେ ମଧ୍ୟ ସସ୍ପୃହ
ଜାତସ୍ପୃହୈର୍ମୁନିଭିରପ୍ୟବଲୋକିତାନ ।

୭୨୮ । ଅତ୍ର ହି ସମାସୋକ୍ତି-ସଂସୃଷ୍ଟେନ ବିରୋଧାଲଂକାରେଣ ସଂକୀର୍ଣ୍ଣସ୍ୟ ଅଲକ୍ଷ୍ୟକ୍ରମବ୍ୟଙ୍ଗ୍ୟସ୍ୟ ଧ୍ୱନେଃ ପ୍ରକାଶନମ୍, ଦୟାବୀରସ୍ୟ ପରମାର୍ଥତୋ ବାକ୍ୟାର୍ଥୀଭୂତତ୍ୱାତ୍ ।

୭୨୯ । ସଂସୃଷ୍ଟାଲଂକାର ସଂସୃଷ୍ଟତ୍ୱଂ ଧ୍ୱନେର୍ଯଥା—

---

ଦନ୍ତାଘାତ (ଦନ୍ତକ୍ଷତ) ଓ ନଖବଦାରଣଙ୍କୁ ନିସ୍ପୃହ ମୁନିମାନେ ମଧ୍ୟ ସସ୍ପୃହ ହୋଇ ଦେଖିଥିଲେ ।

(ଏ ଶ୍ଳୋକରେ ଆରୋପିତ ଅର୍ଥ)

ହେ ଜନ (ସାତ୍ତ୍ୱିକ ଭାବୋଦୟ ହେତୁ) ପୁଲକାନ୍ୱିତ ଆପଣଙ୍କ ଶରୀରରେ ଅନୁରାଗବତୀ ରାଜପତ୍ନୀ (ମୃଗରାଜ ପତ୍ନୀ)ର ନଖଦନ୍ତକ୍ଷତକୁ ନିସ୍ପୃହ ମୁନିମାନେ ମଧ୍ୟ ସ୍ପୃହାସହିତ ଦେଖିଥିଲେ ।

୭୨୮ । ଉକ୍ତ ଶ୍ଳୋକରେ ସିଂହପତ୍ନୀ କାର୍ଯ୍ୟରେ ଅପ୍ରସ୍ତୁତ ରାଜପତ୍ନୀ ବ୍ୟବହାର ସମାରୋପିତ ହୋଇ ଥିବାରୁ ସମାସୋକ୍ତି ଅଳଂକାର । ପୁନଶ୍ଚ ନିସ୍ପୃହ ମୁନିମାନେ ସସ୍ପୃହ ହେବାରେ ବିରୋଧ ଉପସ୍ଥାପିତ ହେଲେ ମଧ୍ୟ, ଅମାନୁଷିକ କର୍ମ ଦର୍ଶନାର୍ଥେ ତାହା ହୋଇଥିବାରୁ ସେ (ବିରୋଧ) ଛେଦିତ ହେଉଅଛି, ତେଣୁ ଏଥିରେ ବିରୋଧ ଅଳଂକାର ।

ଏ ଉଭୟ ପରସ୍ପର ନିରପେକ୍ଷଭାବେ ରହିଥିବାରୁ ଏଠାରେ ଏ ଉଭୟ ସଂସୃଷ୍ଟ । ପର୍ଯ୍ୟନ୍ତରେ ଶ୍ଳୋକାର୍ଥରୁ ଦୟାବୀର ରସ ଧ୍ୱନି ହେଉଅଛି । ପୂର୍ବୋକ୍ତ ବାଚ୍ୟ ସଂସୃଷ୍ଟି ଅଳଂକାର ଧ୍ୱନ୍ୟମାନ ଦୟାବୀର-ରସର ପୋଷକ ଭାବେ ଅଙ୍ଗ ହେଉଥିବାରୁ ଏ ପଦ୍ୟରେ ଧ୍ୱନିସହିତ ବାଚ୍ୟସଂସୃଷ୍ଟି ଅଳଂକାରର ଅଙ୍ଗାଙ୍ଗିଭାବ ସଂକର ରହିଅଛି ।

୭୨୯ । ସଂସୃଷ୍ଟ ଅଳଂକାର ସହିତ ସଂସୃଷ୍ଟହୋଇ ରହିଥିବା ଧ୍ୱନିର ସ୍ଥଳ ଯଥା—

ଅହ୍ଣଅପଓଅରସିଏସୁ ପହ୍ନଅସାମାଇଏସୁ ଦଅହେସୁ।
ସୋହଇ ପସାରଅଗୀଆଣ ଣଚ୍ଚିଅଂ ମୋରବନ୍ଦୀଣମ୍।
(ଅଭିନବ ପୟୋଦରସିତେଷୁ ପଥିକଶ୍ୟାମାୟି-
ତେଷୁ ଦିବସେଷୁ। ଶୋଭତେ ପ୍ରସାରିତଗ୍ରୀବାଣାଂ
ନୃତ୍ତଂ ମୟୂରବୃନ୍ଦାନାମ୍)। ଇତି ଛାୟା

୬୩୦। ଅତ୍ର ହି ଉପମାରୂପକାଭ୍ୟାଂ ଶବ୍ଦଶକ୍ତ୍ୟୁଦ୍‌ଭବାନୁ-
ରଣନ ରୂପବ୍ୟଙ୍ଗ୍ୟସ୍ୟ ଧ୍ୱନେଃ ସଂସୃଷ୍ଟତ୍ୱମ୍।

୬୩୧। ଏବଂ ଧ୍ୱନେଃ ପ୍ରଭେଦାଃ ପ୍ରଭେଦଭେଦାଶ୍ଚ କେନ
ଶକ୍ୟନ୍ତେ ସଂଖ୍ୟାତୁଂ, ଦିଙ୍‌ମାତ୍ରଂ ତେଷାମିଦମୁକ୍ତ-
ମସ୍ମାଭିଃ। ୪୪।

ଅନନ୍ତା ହି ଧ୍ୱନେଃ ପ୍ରକାରାଃ, ସହୃଦୟାନାଂ
ବ୍ୟୁତ୍ପତ୍ତୟେ ତେଷାଂ ଦିଙ୍‌ମାତ୍ରଂ କଥିତମ୍।

---

ଯେଉଁ ସମୟରେ ନୂଆକରି ମେଘର ଗର୍ଜନ ଶୁଣାଯାଏ, ଏବଂ ଯେଉଁ ସମୟଟା ପଥିକମାନଙ୍କ ପ୍ରତି (ଦୁଃଖହେତୁ) ରାତିପରି, ସେହି ବର୍ଷାକାଳରେ କେକାଗୀତ ମୁଖର ମୟୂରବୃନ୍ଦର ନୃତ୍ୟ ଶୋଭାପାଏ।

୬୩୦। ଏ ଶ୍ଳୋକରେ "ଶ୍ୟାମାୟିତ" ପଦ ଦ୍ୱାରା ଦିବସଗୁଡ଼ିକ ଶ୍ୟାମା (ରାତି) ପରି ବୋଲି କୁହାଯାଇ ଥିବାରୁ ଉପମା ଅଳଂକାର କେକାଧ୍ୱନି ଉପରେ ଗୀତର ଆରୋପ କରାଯାଇ ଥିବାରୁ ରୂପକ। ଏ ଉଭୟଂ ସଂସୃଷ୍ଟ। ପୁନଶ୍ଚ ପରିବୃତ୍ତି ଅସହ "ଶ୍ୟାମାୟିତ" ପଦକୁ ଅଶ୍ରୟକରି "କାମାତୁରଙ୍କ ଦୁଃଖାତିଶୟ" ରୂପ ବସ୍ତୁଧ୍ୱନି ଅଛି। ତାହା ପୂର୍ବୋକ୍ତ ସଂସୃଷ୍ଟ ଅଳଂକାରସହ ସଂସୃଷ୍ଟଭାବେ ରହିଅଛି।

(ଏ ସମସ୍ତଙ୍କସହ ରସଧ୍ୱନି ମଧ୍ୟ ସଂକରଭାବେ ରହିଅଛି)

୬୩୧। ଏହିପରି ଧ୍ୱନିର ସ୍ୱଗତଭେଦ ଓ ଅବାନ୍ତରଭେଦ ଏତେ ଅଧିକ ଯେ, କେହି ତାହା ଗଣିବାକୁ ସମର୍ଥ ହୋଇପାରିବେ ନାହିଁ। ଆମ୍ଭେ କେବଳ ସହୃଦୟମାନଙ୍କ ଜ୍ଞାନ ନିମିତ୍ତ ଧ୍ୱନିର ଭେଦ ପ୍ରଭେଦମାନଙ୍କର ଦିଗ୍‌ଦର୍ଶନ ମାତ୍ର କରାଇଲୁଁ।

୭୩୨ । ଇତ୍ୟୁକ୍ତଲକ୍ଷଣୋ ଯୋ ଧ୍ୱନିର୍ବିବେଚ୍ୟଃ ପ୍ରଯତ୍ନତଃ ସଦ୍ଭିଃ
ସତ୍କାବ୍ୟଂ କର୍ତ୍ତୁଂ ବା ଜ୍ଞାତୁଂ ବା ସମ୍ୟଗଭିଯୁକ୍ତୈଃ ॥

୭୩୩ । ଉକ୍ତସ୍ୱରୂପଧ୍ୱନିନିରୂପଣନିପୁଣା ହି ସତ୍କବୟଃ ସହୃଦୟାଶ୍ଚ ନିୟତମେବ କାବ୍ୟବିଷୟେ ପରାଂ ପ୍ରକର୍ଷପଦବୀମାସାଦୟନ୍ତି ।

୭୩୪ । ଅସ୍ଫୁଟ ସ୍ଫୁରିତଂ କାବ୍ୟତତ୍ତ୍ୱମେତଦ୍ୟଥୋଦିତମ୍ ।
ଅଶକ୍ନୁବଦ୍ଭିର୍ବ୍ୟାକର୍ତ୍ତୁଂ ରୀତୟଃ ସଂପ୍ରବର୍ତ୍ତିତାଃ । ୪୭ ।
ଏତଦ୍ଧ୍ୱନିପ୍ରବର୍ତ୍ତନେନ ନିର୍ଣ୍ଣୀତଂ କାବ୍ୟତତ୍ତ୍ୱମସ୍ଫୁଟ ସ୍ଫୁରିତଂ ସଦଶକ୍ନୁବଦ୍ଭିଃ ପ୍ରତିପାଦୟିତୁଂ ବୈଦର୍ଭୀ ଗୌଡ଼ୀପାଞ୍ଚାଲୀ ଚେତିରୀତୟଃ ପ୍ରବର୍ତ୍ତିତାଃ ।

---

୭୩୨ । ସତ୍‌କାବ୍ୟ ନିର୍ମାଣ କରିବାକୁ ହେଲେ, କିମ୍ବା କିଏ ସତ୍‌କାବ୍ୟ ବା କିଏ ସତ୍‌କାବ୍ୟ ନୁହେ, ତାହା ଜାଣିବାକୁ ହେଲେ ସତ୍‌କବି ହେବାକୁ ଇଚ୍ଛା କରୁଥିବା (ସଦ୍ଭିଃ) ଲୋକେ, ଏବଂ ନିର୍ଣ୍ଣୟାର୍ଥୀ ପଣ୍ଡିତମାନେ (ଅଭିଯୁକ୍ତୈଃ) ଯତ୍ନପୂର୍ବକ, ଆମ୍ଭଦ୍ୱାରା ପ୍ରଦର୍ଶିତ ଧ୍ୱନିମାର୍ଗକୁ ବିବେଚନ କରିବେ । (ଏହା ଅନୁରୋଧ) ।

୭୩୩ । (ବୃତ୍ତିର ଅର୍ଥ) ସତ୍‌କବି ଓ ସହୃଦୟମାନେ ଏହିପ୍ରକାରେ ପ୍ରଦର୍ଶିତ ଧ୍ୱନିର ନିରୂପଣ କଲେ, କାବ୍ୟ ବିଷୟରେ ଉଚ୍ଚସ୍ଥାନ ଲାଭକରିବା ସୁନିଶ୍ଚିତ ।

## ରୀତି ଓ ବୃତ୍ତିର ଧ୍ୱନିରେ ଅନ୍ତର୍ଭାବ

୭୩୪ । ଏହି ଧ୍ୱନି (କାବ୍ୟତତ୍ତ୍ୱ) ଅସ୍ଫୁଟ ସ୍ଫୁରିତ ଅର୍ଥାତ୍ ସ୍ଥୂଳବୁଦ୍ଧି ବେଦ୍ୟ ନ ହୋଇ ସୂକ୍ଷ୍ମବୁଦ୍ଧିବେଦ୍ୟ ଅଟେ । ତାହାକୁ ପ୍ରତିପାଦନ କରିବାକୁ ସମର୍ଥ ହୋଇ ନ ପାରିବାରୁ ପଣ୍ଡିତମାନେ (ବୈଦର୍ଭୀ, ଗୌଡ଼ୀ, ପାଞ୍ଚାଲୀ, ନାମରେ-ତିନିଗୋଟି) ରୀତିର ପ୍ରବର୍ତ୍ତନ କରିଅଛନ୍ତି ।

୬୩୫ । ରୀତିଲକ୍ଷଣବିଧାୟିନାଂ ହି କାବ୍ୟତତ୍ତ୍ୱମେତଦ-
ସ୍ଫୁଟତୟା ମନାକ୍ ସ୍ଫୁରିତମାସୀଦିତି ତଦତ୍ର ସ୍ଫୁଟତୟା
ସଂପ୍ରଦର୍ଶିତମିତ୍ୟନେନ ରୀତିଲକ୍ଷଣେନ ନ କିଂଚିତ୍ ।

୬୩୬ । ଶବ୍ଦତତ୍ତ୍ୱାଶ୍ରୟା ଯାଃ କାଶ୍ଚିଦର୍ଥତତ୍ତ୍ୱଯୁଜୋଽପରାଃ ।
ବୃତ୍ତୟୋଽପି ପ୍ରକାଶନ୍ତେ ଜ୍ଞାତେଽସ୍ମିନ୍ କାବ୍ୟଲକ୍ଷଣେ ॥
ଅସ୍ମିନ୍ ବ୍ୟଙ୍ଗ୍ୟବ୍ୟଞ୍ଜକଭାବବିବେଚନମୟେ
କାବ୍ୟଲକ୍ଷଣେ ଜ୍ଞାତେ ସତି ଯାଃ କାଶ୍ଚିତ୍ ପ୍ରସିଦ୍ଧା
ଉପନାଗରିକାଦ୍ୟାଃ ଶବ୍ଦତତ୍ତ୍ୱାଶ୍ରୟା ବୃତ୍ତୟଃ, ଯାଶ୍ଚାର୍ଥ-
ତତ୍ତ୍ୱସମ୍ବଦ୍ଧାଃ କୈଶିକ୍ୟାଦୟସ୍ତାଃ ସମ୍ୟଗ୍ ରୀତିପଦବୀ-
ମବତରନ୍ତି ।

୬୩୭ । ଅନ୍ୟଥା ତୁ ତାସାମଦୃଷ୍ଟାର୍ଥାନାମିବ ବୃତ୍ତୀନାମ-
ଶ୍ରଦ୍ଧେୟତ୍ୱମେବ ସ୍ୟାତ୍ ନାନୁଭବସିଦ୍ଧତ୍ୱମ୍ ।

---

୬୩୫ । (ରୀତିଲକ୍ଷଣ) (ବିଶିଷ୍ଟ ପଦରଚନାକୁ ରୀତି ବୋଲାଯାଏ), ଏହିପରି) ରୀତିର ଲକ୍ଷଣ କରିଥିବା ପଣ୍ଡିତମାନଙ୍କ ଲକ୍ଷଣରେ ଉକ୍ତ କାବ୍ୟତତ୍ତ୍ୱ (ଧ୍ୱନି)ର ସ୍ୱରୂପ ଉତ୍ତମରୂପେ ପ୍ରତିପାଦିତ ନ ହୋଇ ଈଷଦ୍‌ଭାବେ ପ୍ରକାଶ ପାଉଥିବାରୁ ଆମ୍ଭେ ଏହି ଗ୍ରନ୍ଥରେ ସ୍ପଷ୍ଟଭାବେ ଧ୍ୱନିର ସ୍ୱରୂପ ନିରୂପଣ କଲୁଁ । ଅତଏବ ରୀତିର ପୃଥକ୍ ଲକ୍ଷଣ କରିବା ଅନାବଶ୍ୟକ ।

୬୩୬ । ଆମ୍ଭ ପ୍ରଦର୍ଶିତ ବ୍ୟଙ୍ଗ୍ୟ ବ୍ୟଞ୍ଜକଭାବ ବିବେଚନାର ନିୟମ (ସମୟ) ରୂପକ ଏହି କାବ୍ୟ ଲକ୍ଷଣକୁ ଜାଣିବା ପରେ ଯେଉଁ କେତେକ ଶବ୍ଦାଶ୍ରିତ (ଉପନାଗରିକାଦି ପ୍ରସିଦ୍ଧବୃତ୍ତି) କିମ୍ବା ଅର୍ଥାଶ୍ରିତ (କୈଶିକୀପ୍ରଭୃତି ବୃତ୍ତି), ତାହା ପର୍ଯ୍ୟନ୍ତରେ ରସର ଅନ୍ତଃପାତୀ ହେଉଥିବାରୁ ସ୍ୱତଃ ଧ୍ୱନି ନିରୂପଣରେ ଗତାର୍ଥ ହେଉଅଛି ଏଣୁ ବୃତ୍ତିର ପୃଥକ୍ ଲକ୍ଷଣ ଅନାବଶ୍ୟକ) ।

୬୩୭ । ବୃତ୍ତି ଯଦି ଧ୍ୱନ୍ୟଙ୍ଗ ନ ହୁଏ, ତେବେ ତାହା ଜିଷ୍ଟ ପ୍ରୟୋଜନ (ଅଦୃଷ୍ଟ ପ୍ରୟୋଜନ) ବସ୍ତୁଭଳି ଅଶ୍ରଦ୍ଧେୟ ହେବ ଓ ଅନୁଭବ ସିଦ୍ଧ-ହେବ ନାହିଁ ।

୬୩୮ । ଏବଂ ସ୍ଫୁଟତୟୈବ ଲକ୍ଷଣୀୟଂ ସ୍ୱରୂପମସ୍ୟ ଧ୍ୱନେଃ ।

୬୩୯ । ଯତ୍ର ଶବ୍ଦାନାମର୍ଥାନାଂ ଚ କେଷାଂଚିତ୍ ପ୍ରତିପତ୍ତୃ-ବିଶେଷସମ୍ବେଦ୍ୟଂ ଜାତ୍ୟତ୍ୱମିବ ରତ୍ନବିଶେଷାଣାଂ ଚାରୁତ୍ୱମନାଖ୍ୟେୟମବଭାସତେ, କାବ୍ୟେ ତତ୍ର ଧ୍ୱନି ବ୍ୟବହାର ଇତି ଯଲ୍ଲକ୍ଷଣଂ ଧ୍ୱନେରୁଚ୍ୟତେ କେନଚିତ୍, ତଦଯୁକ୍ତମିତି ନାଭିଧେୟତାମର୍ହତି ।

୬୪୦ । ଯତଃ ଶବ୍ଦାନାଂ ସ୍ୱରୂପାଶ୍ରୟସ୍ତାବଦକ୍ଲିଷ୍ଟତ୍ୱେ ସତ୍ୟ-ପ୍ରଯୁକ୍ତପ୍ରୟୋଗଃ । ବାଚକତ୍ୱାଶ୍ରୟସ୍ତୁ ପ୍ରସାଦୋ ବ୍ୟଞ୍ଜକତ୍ୱଂ ଚେତି ବିଶେଷଃ । ଅର୍ଥାନାଂ ଚ ସ୍ଫୁଟ-

---

୬୩୮ । ଏହିସବୁ କାରଣରୁ ସ୍ପଷ୍ଟଭାବେ ଧ୍ୱନିର ସ୍ୱରୂପ ନିରୂପଣ କରିବା ବିଧେୟ ।

## ଧ୍ୱନିର ନିର୍ବଚନୀୟତା ପ୍ରତିପାଦନ

୬୩୯ । ଯେପରି ବିଶିଷ୍ଟ ରତ୍ନମାନଙ୍କର ଜାତ୍ୟତ୍ୱ (ଶ୍ରେଷ୍ଠତ୍ୱ) ଅଛି ଓ ତାହା ଜହ୍ଲାଲୀମାନଙ୍କ ଦ୍ୱାରା ବେଦ୍ୟ, ସେହିପରି କେତେକ ଶବ୍ଦ ଓ ଅର୍ଥମାନଙ୍କର ଅନିର୍ବଚନୀୟ ଚାରୁତ୍ୱ ଅଛି, ଏବଂ ତାହା କେତେକ ବିଶିଷ୍ଟ ଗ୍ରାହକଙ୍କ ଦ୍ୱାରା ଗ୍ରହଣୀୟ । ଯେଉଁ କାବ୍ୟରେ ସେହିଭଳି ଚାରୁତ୍ୱ ଥାଏ ତାହାକୁ ଧ୍ୱନି ବୋଲି କୁହାଯାଏ, ଧ୍ୱନି ବିଷୟରେ କେତେକ ପଣ୍ଡିତ ଏହିପରି ମତ ପୋଷଣ କରିଥାନ୍ତି, ତାହା ଠିକ୍ ନୁହେ । ତେଣୁ ସେ ମତ ଅଗ୍ରାହ୍ୟ ।

୬୪୦ । (ଉକ୍ତ ମତକୁ ଗ୍ରହଣ ନ କରିବାର କାରଣ ଯଥା)—ଶବ୍ଦମାନଙ୍କର ସ୍ୱରୂପଗତ ବୈଶିଷ୍ଟ୍ୟ ଏହା ଯେ ଶ୍ରୁତିକଟୁତ୍ୱାଦି ଦୋଷ ନ ରଖି ଅପୁନରୁକ୍ତଭାବେ ଶବ୍ଦକୁ ପ୍ରୟୋଗ କରିବା ଓ ପ୍ରସାଦଗୁଣ ବିଶିଷ୍ଟ ପଦ-ଗୁଡ଼ିକୁ ବ୍ୟଙ୍ଗ୍ୟାର୍ଥ ସମର୍ପକ (ବ୍ୟଞ୍ଜକ) ଭାବେ ବ୍ୟବହାର କରିବା ।

ତ୍ୱେନାବଭାସନଂ ବ୍ୟଙ୍ଗ୍ୟପରତ୍ୱଂ ବ୍ୟଙ୍ଗ୍ୟବିଶିଷ୍ଟତ୍ୱଂ
ଚେତି ବିଶେଷଃ ।

୬୪୧ । ତୌ ଚ ବିଶେଷୌ ବ୍ୟାଖ୍ୟାତୁମଶକ୍ୟୌ ବ୍ୟାଖ୍ୟାତୌ
ବହୁପ୍ରକାରମ୍ । ତଦ୍ବ୍ୟତିରିକ୍ତାନାଖ୍ୟେୟବିଶେଷ-
ସମ୍ଭାବନା ତୁ (ବିବେକଧ୍ୱଂସହେତୁକା) ବିବେକାବସାଦ
ଗଭିରଭସମ୍ଭୂତୈବ । ଯସ୍ମାଦନାଖ୍ୟେୟତ୍ୱଂ ଶବ୍ଦାର୍ଥ
ଗୋଚରତ୍ୱେନ ନ କସ୍ୟଚିତ୍ସମ୍ଭବତି, ଅନ୍ତତୋଽ-
ନାଖ୍ୟେୟଶବ୍ଦେନ ତଦଭିଧାନାତ୍ ।

୬୪୨ । ସାମାନ୍ୟସ୍ପର୍ଶିବିକଳ୍ପଶବ୍ଦଗୋଚରତ୍ୱେ ସତି ପ୍ରକାଶ-
ମାନତ୍ୱଂ ତୁ ଯଦନାଖ୍ୟେୟତ୍ୱମୁଚ୍ୟତେ କ୍ୱଚିତ୍,

---

ଶବ୍ଦମାନଙ୍କର ଅର୍ଥଗତ ବୈଶିଷ୍ଟ୍ୟ ଏହା ଯେ—ଅର୍ଥଗୁଡ଼ିକ ସ୍ଫୁଟଭାବେ ପ୍ରକାଶ ପାଇବା ଓ ବ୍ୟଙ୍ଗ୍ୟପର (ଧ୍ୱନିସ୍ଥଳ) ବା ବ୍ୟଙ୍ଗ୍ୟବିଶିଷ୍ଟ (ଗୁଣୀଭୂତ ବ୍ୟଙ୍ଗ୍ୟସ୍ଥଳ) ହେବା ।

୬୪୧ । ଶବ୍ଦ ଓ ଅର୍ଥର ଉକ୍ତ ଦୁଇପ୍ରକାର ବୈଶିଷ୍ଟ୍ୟ (ଗୁରୁତ୍ୱ), ଯାହା କି ତୁମ୍ଭମତରେ ବ୍ୟାଖ୍ୟାନ ଯୋଗ୍ୟ ନୁହେ, ତାହାକୁ ଆମ୍ଭେ ବହୁ-ପ୍ରକାରେ ବ୍ୟାଖ୍ୟାନ କରିଅଛୁଁ । ତାହା ଛଡ଼ା 'ଅନିର୍ବଚନୀୟ ବିଶେଷ (ଗୁରୁତ୍ୱ)ର ସମ୍ଭାବନା କରିବା ଅବିବେକିତା, ଯେହେତୁ କୌଣସି ଗୋଟିଏ ବସ୍ତୁ ଶବ୍ଦ ଓ ଅର୍ଥ ଦ୍ୱାରା ପ୍ରତିପାଦ୍ୟ ନ ହୋଇ ଅନିର୍ବଚନୀୟ ହୋଇ ନ ପାରେ । ଅର୍ଥାତ୍ ପ୍ରତ୍ୟେକ ବସ୍ତୁ ଶବ୍ଦ ଓ ଅର୍ଥ ଦ୍ୱାରା ବଚନୀୟ ହୋଇ ପାରିବେ । ଯଦି ବା କୌଣସି ବସ୍ତୁ ଶବ୍ଦ ଓ ଅର୍ଥ ଦ୍ୱାରା କୁହାଯାଇ ନ ପାରିବ, ତେବେ ତାହା ଅନିର୍ବଚନୀୟ (ଅନାଖ୍ୟେୟ) ଶବ୍ଦ ଦ୍ୱାରା ମଧ୍ୟ ପ୍ରକାଶ କରାଯାଇ ପାରିବ ।

(ଅତଏବ ଶବ୍ଦ ଓ ଅର୍ଥର ବୈଶିଷ୍ଟ୍ୟ ଅନିର୍ବଚନୀୟ ନୁହେ)

୬୪୨ । ସାମାନ୍ୟ ସ୍ପର୍ଶି ଚିତ୍ତବୃତ୍ତି ବିଶେଷର ପ୍ରେରଣାରେ (ସହାୟତାରେ) ଉଚ୍ଚାରିତ ହେଉଥିବା ଶବ୍ଦ ଦ୍ୱାରା ପ୍ରକାଶିତ ହେବାଟା ଯଦି ଅନାଖ୍ୟେୟ ହୁଏ, ତେବେ ତାହା ରତ୍ନ ବିଶେଷ ପରି କାବ୍ୟ ବିଶେଷର

ତଦପି କାବ୍ୟବିଶେଷାଣାଂ ରତ୍ନବିଶେଷାଣାମିବ ନ ସମ୍ଭବତି, ତେଷାଂ ଲକ୍ଷଣକାରୈର୍ବ୍ୟାକୃତରୂପ-ତ୍ୱାତ୍, ରତ୍ନବିଶେଷଣାଂ ଚ ସାମାନ୍ୟ ସମ୍ଭାବନୟୈବ ମୂଲ୍ୟସ୍ଥିତିପରିକଳ୍ପନାଦର୍ଶନାଚ୍ଚ ।

୬୪୩ । ଉଭୟେଷାମପି ତେଷାଂ ପ୍ରତିପତୃବିଶେଷସମ୍ବେଦ୍ୟତ୍ୱ-ମସ୍ତ୍ୟେବ । ବୈକଟିକା ଏବ ହି ରତ୍ନତତ୍ତ୍ୱବିଦଃ, ସହୃଦୟା ଏବ ଚ କାବ୍ୟାନାଂ ରସଜ୍ଞା ଇତି କସ୍ୟାତ୍ର ବିପ୍ରତିପତ୍ତିଃ ।

୬୪୪ । ଯତ୍ୱନିର୍ଦ୍ଦେଶ୍ୟତ୍ୱଂ ସର୍ବଲକ୍ଷଣବିଷୟେ ବୌଦ୍ଧାନାଂ ପ୍ରସିଦ୍ଧଂ ତତ୍ ତନ୍ମତପରୀକ୍ଷାୟାଂ ଗ୍ରନ୍ଥାନ୍ତରେ ନିରୂପୟିଷ୍ୟାମଃ ।

---

ସମ୍ଭବ ହେବ ନାହିଁ । ଯେଣୁ ରତ୍ନବିଶେଷର (କୌଣସି ଶାସ୍ତ୍ରୀୟ ଲକ୍ଷଣ ନ ଥିବାରୁ ସାମାନ୍ୟ ସମ୍ଭାବନାରେ ମୂଲ୍ୟନିରୂପଣ କରା ଯାଇଥାଏ, କିନ୍ତୁ କାବ୍ୟ ବିଶେଷ (ଧ୍ୱନିକାବ୍ୟ)ର ସ୍ୱରୂପ ଅଳଂକାର ଶାସ୍ତ୍ରକାର (ଲକ୍ଷଣକାର)ମାନଙ୍କ ଦ୍ୱାରା ନିରୂପିତ ହୋଇ ରହିଅଛି ।

୬୪୩ । ରତ୍ନ ଓ ଧ୍ୱନିକାବ୍ୟ ଏ ଉଭୟର ଜ୍ଞାତୃ ବିଶେଷ ବେଦ୍ୟତ୍ୱ ରହିଅଛି । କେବଳ ବୈକଟିକମାନେ ଯେପରି ରତ୍ନର ତତ୍ତ୍ୱ ଜାଣନ୍ତି, ସେହିପରି କେବଳ ସହୃଦୟମାନେ କାବ୍ୟରସ ଜାଣି ପାରନ୍ତି, ଏଥିରେ ତ କାହାର ଆପତ୍ତି ନାହିଁ ।

(ରତ୍ନ ଚଣ୍ଡାଳୀଙ୍କ ପରି ଧ୍ୱନିର ଗ୍ରାହକ ନିରୂପିତ, ତେଣୁ ତୁମ୍ଭ ମତରେ ଜ୍ଞାତୃବିଶେଷ-ବେଦ୍ୟତ୍ୱ ହିସାବରେ ଧ୍ୱନିକାବ୍ୟ ଓ ରତ୍ନ ସମାନ ? ଆମ୍ଭର ମଧ୍ୟ ମତ ସେଇଆ, କିନ୍ତୁ ତୁମ୍ଭେ ଧ୍ୱନିର ସ୍ୱରୂପ ଅନାଖ୍ୟେୟ ବୋଲି ଯାହା କି କହୁଛ ସେଥିରେ ଆମ୍ଭେ ଏକମତ ନୋହୁଁ) ।

୬୪୪ । ବୌଦ୍ଧମାନେ କହନ୍ତି ପ୍ରତ୍ୟେକ ବସ୍ତୁ କ୍ଷଣକରେ ବିନାଶ-ଶୀଳ । ତେଣୁ ସେମାନେ ଯେ କୌଣସି ବସ୍ତୁର ଲକ୍ଷଣ କରିବାକୁ ଗଲେ ଅନିର୍ଦ୍ଦେଶ୍ୟ ବୋଲି କହିବା ସ୍ୱାଭାବିକ । ସୁତରାଂ ସେମାନେ ଯଦି ଧ୍ୱନି-

୬୪୫ । ଇହ ତୁ ଗ୍ରନ୍ଥାନ୍ତରଶ୍ରବଣଲବପ୍ରକାଶନଂ ସହୃଦୟ-
ବୈମନସ୍ୟଦାୟୀତି ନ ପ୍ରକ୍ରୀୟତେ ।

୬୪୬ । ବୌଦ୍ଧମତେନ ବା ଯଥା ପ୍ରତ୍ୟକ୍ଷାଦିଲକ୍ଷଣଂ ତଥା-
ସ୍ମାକଂ ଧ୍ୱନିଲକ୍ଷଣଂ ଭବିଷ୍ୟତି ।

୬୪୭ । ତସ୍ମାଲ୍ଲକ୍ଷଣାନ୍ତରସ୍ୟାଘଟନାଦଶବ୍ଦାର୍ଥତ୍ୱାଚ ତସ୍ୟୋ-
କ୍ତମେବ ଧ୍ୱନିଲକ୍ଷଣଂ ସାଧୀୟଃ ।

---

ଲକ୍ଷଣକୁ ଅନିର୍ବଚନୀୟ ବୋଲି କହନ୍ତି ତେବେ ତାହା ଆଶ୍ଚର୍ଯ୍ୟକର ନୁହେଁ । (ଯେଉଁମାନେ ପ୍ରତ୍ୟେକ ବସ୍ତୁକୁ ଅନିର୍ବଚନୀୟ ବୋଲି କହୁଛନ୍ତି ତାଙ୍କ ମତ ଦ୍ୱାରା ଆମ୍ଭ ମତ କଟିଯିବା ଅସମ୍ଭବ ।

(ବୌଦ୍ଧମାନଙ୍କର ଏହି ଅନିର୍ଦ୍ଦେଶତ୍ୱବାଦ ସମ୍ବନ୍ଧେ ଆମ୍ଭେ ଆମ୍ଭର ଅନ୍ୟଗ୍ରନ୍ଥ (ଧର୍ମୋତ୍ତମା)ରେ ଆଲୋଚନା କରିବୁଁ) ।

୬୪୫ । ଏହି ଧ୍ୱନ୍ୟାଲୋକ ଗ୍ରନ୍ଥରେ ଅନ୍ୟଗୋଟିଏ ଗ୍ରନ୍ଥର ବିଷୟକୁ ସ୍ୱଳ୍ପମାତ୍ରାରେ ଦର୍ଶାଇବାଦ୍ୱାରା ସହୃଦୟମାନଙ୍କର ମନ ଭାଙ୍ଗୁଣିଆ (ବୈମନସ୍ୟ ଦାୟି) ହେବ ବୋଲି ଉକ୍ତ ଅନିର୍ଦ୍ଦେଶବାଦ ଏଠାରେ ଆଲୋଚନା କରୁ ନାହୁଁ ।

୬୪୬ । (ବୌଦ୍ଧ ମତରେ ମଧ୍ୟ ଆମ୍ଭର ଧ୍ୱନିଲକ୍ଷଣ ସିଦ୍ଧ ହୋଇ ପାରେ । ଏଥିପାଇଁ ଯୁକ୍ତି ଦର୍ଶାଯାଉଛି । ଯଥା—

ବୌଦ୍ଧମାନଙ୍କ ମତରେ କ୍ଷଣିକ ହେଲେ ମଧ୍ୟ ପ୍ରତ୍ୟକ୍ଷାଦିର ଲକ୍ଷଣ ଯେପରି ସିଦ୍ଧ, ଆମ୍ଭ ଧ୍ୱନିର ଲକ୍ଷଣ ମଧ୍ୟ ସେହିପରି ସିଦ୍ଧ ହୋଇ ପାରେ । ଏଣୁ ବୌଦ୍ଧ ମତରେ ମଧ୍ୟ ଆମ୍ଭ ଧ୍ୱନିର ଲକ୍ଷଣ ଅସିଦ୍ଧ ନୁହେଁ ।

୬୪୭ । ଉପର୍ଯ୍ୟୁକ୍ତ କାରଣମାନଙ୍କରୁ ଓ ଧ୍ୱନିର ଅନ୍ୟପ୍ରକାର ଲକ୍ଷଣ ନିରୂପିତ ହୋଇ ନ ଥିବାରୁ, ପୁନଶ୍ଚ ତାହା (ଧ୍ୱନି), ଶବ୍ଦ ଦ୍ୱାରା ବାଚ୍ୟ ହେଉ ନ ଥିବାରୁ, ଆମ୍ଭ ଦ୍ୱାରା ନିରୂପିତ ଏହି ଧ୍ୱନି ଲକ୍ଷଣକୁ ଠିକ୍ ବୋଲି ଗ୍ରହଣ କରିବାକୁ ହେବ ।

୬୪୮ । ଅନାଖେୟସ୍ୱାଂଶଭାସିତ୍ୱଂ ନବାଚ୍ୟୋଽର୍ଥତାୟା ଧ୍ୱନେଃ ।
ନ ଲକ୍ଷଣଂ ଲକ୍ଷଣଂ ତୁ ସାଧୀୟୋଽସ୍ୟ ଯଥୋଦିତମ୍ ୪୮

ଇତି ଶ୍ରୀରାଜାନକାନନ୍ଦବର୍ଦ୍ଧନାଚାର୍ଯ୍ୟବିରଚିତେ ଧ୍ୱନ୍ୟାଲୋକେ
ତୃତୀୟ ଉଦ୍ୟୋତଃ ।

---

୬୪୮ । ଧ୍ୱନିର ଅର୍ଥ ନିର୍ବଚନୀୟ ହୋଇ ପାରୁଥିବାରୁ "ଧ୍ୱନି" ଅନିର୍ବଚନୀୟ ବୋଲି ଧ୍ୱନିର ଲକ୍ଷଣ କରିବା ସଙ୍ଗତ ନୁହେଁ, କିନ୍ତୁ ଆମ୍ଭ ଦ୍ୱାରା ପ୍ରଦର୍ଶିତ ଏହି ଧ୍ୱନିଲକ୍ଷଣ ସୁସଙ୍ଗତ ।

ଇତି ଧ୍ୱନ୍ୟାଲୋକେ ତୃତୀୟ ଉଦ୍ୟୋତଃ

---

## ଚତୁର୍ଥ ଉଦ୍ଦ୍ୟୋତଃ

୧ । ଏବଂ ଧ୍ୱନିଂ ସପ୍ରପଞ୍ଚଂ ବିପ୍ରତିପତ୍ତିନିରାସାର୍ଥଂ ବ୍ୟୁତ୍ପାଦ୍ୟ,
ତଦ୍‌ବ୍ୟୁତ୍ପାଦନେ ପ୍ରୟୋଜନାନ୍ତରମୁଚ୍ୟତେ ।

୨ । ଧ୍ୱନେର୍ଯଃ ସଗୁଣୀଭୂତବ୍ୟଙ୍ଗ୍ୟସ୍ୟାଧ୍ୱା ପ୍ରଦର୍ଶିତଃ ।
ଅନେନାନନ୍ତ୍ୟମାୟାତି କବୀନାଂ ପ୍ରତିଭାଗୁଣଃ । ୧ ।
ଯ ଏଷ ଧ୍ୱନେର୍ଗୁଣୀଭୂତବ୍ୟଙ୍ଗ୍ୟସ୍ୟ ଚ ମାର୍ଗଃ
ପ୍ରକାଶିତଃ, ତସ୍ୟ ଫଲାନ୍ତରଂ କବିପ୍ରତିଭାନନ୍ତ୍ୟମ୍ ।

୩ । କଥମିତି ଚେତ୍—

୪ । ଅତୋ ହ୍ୟନ୍ୟତମେନାପି ପ୍ରକାରେଣ ବିଭୂଷିତା ।
ବାଣୀ ନବତ୍ୱମାୟାତି ପୂର୍ବାର୍ଥାନ୍ୱୟବତ୍ୟପି । ୨ ।

---

୧ । ପ୍ରତିବାଦୀମାନଙ୍କର ବିରୋଧ ପରିହାର ପାଇଁ ଧ୍ୱନିକୁ ଭେଦ ପ୍ରଭେଦ ସହିତ ନିରୂପଣ କରି ସାରିବା ପରେ ଧ୍ୱନି ନିରୂପଣର ଅନ୍ୟ ଏକ ପ୍ରୟୋଜନ କୁହାଯାଉଛି :—

(ଅନ୍ୟ ଏକ କହିବା ଦ୍ୱାରା ସହୃଦୟମାନଙ୍କୁ ଆନନ୍ଦ ଦାନ ଓ ସତ୍‌କାବ୍ୟ ନିର୍ମାଣ ବା ଜ୍ଞାନରୂପକ ଦୁଇଗୋଟି ପ୍ରୟୋଜନ ପୂର୍ବରୁ କୁହାଯାଇଥିଲା, ବର୍ତ୍ତମାନ କବି ପ୍ରତିଭା ନାମକ ତୃତୀୟ ପ୍ରୟୋଜନ କୁହାଯାଉଛି) । ଯଥା—

୨ । ଧ୍ୱନି ଓ ଗୁଣୀଭୂତ ବ୍ୟଙ୍ଗ୍ୟର ଯେଉଁ ମାର୍ଗ ପ୍ରଦର୍ଶିତ ହେଲା, ଏହା ଦ୍ୱାରା କବିମାନଙ୍କର ପ୍ରତିଭା ଅନନ୍ତ ବୋଲି ପ୍ରମାଣିତ ହେଲା । ସୁତରାଂ କବିମାନଙ୍କ ପ୍ରତିଭାନନ୍ତ୍ୟ ଉକ୍ତ ମାର୍ଗ ପ୍ରଦର୍ଶନର ଅନ୍ୟ ଏକ ଫଳ ।

୩ । ପ୍ରତିଭାନନ୍ତ୍ୟ କିପରି ଧ୍ୱନିର ଫଳ ହେବ ?

(ପ୍ରତିଭା କବିବୃତ୍ତି, ଧ୍ୱନି କାବ୍ୟବୃତ୍ତି, ସୁତରାଂ ଏ ଦୁହିଁଙ୍କର କାର୍ଯ୍ୟକାରଣ ଭାବ ଅସମ୍ଭବ) ।

୪ । ଏହି ଧ୍ୱନି ଓ ଗୁଣୀଭୂତବ୍ୟଙ୍ଗ୍ୟ ମଧ୍ୟରୁ ଯେ କୌଣସି ଗୋଟିଏ ପ୍ରକାରରେ ଭୂଷିତ ହୋଇଥିଲେ ବାଣୀ (କବିତା) ପୂର୍ବ କବିଙ୍କ ବର୍ଣ୍ଣନାର ଅନୁସରଣ କରୁଥିଲେ ମଧ୍ୟ ନୂତନ ରୂପ ଧାରଣ କରେ ।

ଅତୋ ହି ଧ୍ୱନେ ରୁକ୍ତପ୍ରଭେଦମଧ୍ୟାଦନ୍ୟତମେନାପି
ପ୍ରକାରେଣ ବିଭୂଷିତା ସତୀ ବାଣୀ ପୁରାତନକବି-
ନିବନ୍ଧାର୍ଥସଂସ୍ପର୍ଶବତ୍ୟପି ନବତ୍ୱମାୟାତି ।

୫ । ତଥାହି—ଅବିବକ୍ଷିତବାଚ୍ୟସ୍ୟ ଧ୍ୱନେଃ ପ୍ରକାରଦ୍ୱୟ-
ସମାଶ୍ରୟଣେନ ନବତ୍ୱଂ ପୂର୍ବାର୍ଥାନୁଗମେଽପି । ଯଥା—

୬ । ସ୍ମିତଂ କିଂଚିନ୍ମୁଗ୍ଧଂ ତରଳମଧୁରୋ ଦୃଷ୍ଟିବିଭବଃ
ପରିସ୍ପନ୍ଦୋ ବାଚାମଭିନବବିଳାସୋକ୍ତିସରସଃ ।
ଗତାନାମାରମ୍ଭଃ କିସଲୟିତ ଲୀଳାପରିକରଃ
ସ୍ପୃଶନ୍ତ୍ୟାସ୍ତାରୁଣ୍ୟଂ କମିବ ହି ନ ରମ୍ୟଂ ମୃଗଦୃଶଃ ।
ଇତ୍ୟସ୍ୟ ।

୭ । ସବିଭ୍ରମସ୍ମିତୋଦ୍ଭେଦା ଲୋଳାକ୍ଷ୍ୟଃ ପ୍ରସ୍ଖଳଦ୍‌ଗିରଃ ।
ନିତମ୍ବାଳସଗାମିନ୍ୟଃ କାମିନ୍ୟଃ କସ୍ୟ ନ ପ୍ରିୟାଃ ॥

---

(ଅର୍ଥାତ୍ ପୁରୁଣା ଜିନିଷ ମଧ୍ୟ ଧ୍ୱନିଯୋଗୁଁ ନୂଆପରି ଆହ୍ଲାଦ-ଦାୟକ ହୁଏ) ।

୫ । ଅବିବକ୍ଷିତ ବାଚ୍ୟ ଧ୍ୱନିର ଦୁଇଟିଯାକ ଭେଦରେ ବିଷୟ ପୂର୍ବ ବର୍ଣ୍ଣନାନୁଯାୟୀ ହେଲେ, ମଧ୍ୟ ଧ୍ୱନିଯୋଗୁଁ ନୂତନ ପ୍ରାପ୍ତ ହୋଇ ଥିବାର ଉଦାହରଣ ଯଥା—

୬ । (ନବ ତରୁଣୀ ବର୍ଣ୍ଣନା)—

ଯେହେତୁ ଏହାର ଅଷ୍ଫୁଟ ମନ୍ଦହାସ ମନୋମୁଗ୍ଧକର, ଦୃଷ୍ଟିହାଣୀ, ଚଞ୍ଚଳ ଓ ଆନନ୍ଦଦାୟକ, କହିବା ଠାଣି ନାନାଭଙ୍ଗୀ ବାକ୍ୟରେ ରସମୟ, ଚାଲିଚଳଣି କଅଁଳଆ ପତ୍ର ଦୋହଲିଲା ପରି ମନୋହର, ଅତଏବ ତାରୁଣ୍ୟକୁ ସ୍ପର୍ଶ କରୁଥିବା (ଏହି) ମୃଗନୟନାର (ଅଙ୍ଗ ଓ ଚେଷ୍ଟା) କଅଣ ବା ରମ୍ୟ ନୁହେ ? ଅର୍ଥାତ୍ ସମସ୍ତ ରମ୍ୟ ।

୭ । (ଏହି ବିଷୟର ପ୍ରାଚୀନ ପଦ୍ୟ ଯଥା)—

ବିଭ୍ରମନାମକ ଶୃଙ୍ଗାର ଚେଷ୍ଟାରୁ ମନ୍ଦହାସ କରୁଥିବା, ଚଞ୍ଚଳ-ନୟନା ମଧୁରଭାଷିଣୀ (ସଭଙ୍ଗୀଭାଷିଣୀ) ଓ ନିତମ୍ବ ଭରରେ ମନ୍ଦଗାମିନୀ କାମିନୀମାନେ କେଉଁ ପୁରୁଷର ବା ପ୍ରିୟପାତ୍ର ନୁହନ୍ତି ?

୮ । ଇତ୍ୟେବମାଦିଷୁ ଶ୍ଳୋକେଷୁ ସର୍ବ୍ବେଷ୍ୱପି ତିରସ୍କୃତବାଚ୍ୟ-
ଧ୍ୱନି ସମାଶ୍ରୟେଣାପୂର୍ବତ୍ୱମେବ ପ୍ରତିଭାସତେ ।

୯ । ଯଃ ପ୍ରଥମଃ ପ୍ରଥମଃ ସ ତୁ, ତଥାହି ହତ
ହସ୍ତିବହୁଳପଲଲାଶୀ,
ଶ୍ୱାପଦଗଣେଷୁ ସିଂହଃ,
ସିଂହଃ କେନାଧରୀକ୍ରିୟତେ । ଇତ୍ୟସ୍ୟ ।

୧୦ । ସ୍ୱତେଜ-କ୍ରୀତ ମହିମା କେନାନ୍ୟେନାତିଶଯ୍ୟତେ,
ମହଦ୍ଭିରପି ମାତଙ୍ଗୈଃ ସିଂହଃ କେନାଭିଭୂୟତେ ।

---

୮ । ଏହିପରି ଏକ ବିଷୟକ "ସର୍ବଭୂମ" ଇତ୍ୟାଦି ଶ୍ଳୋକ ଥିଲେ ମଧ୍ୟ ଅତ୍ୟନ୍ତ ତିରସ୍କୃତ ଧ୍ୱନି ସମାବେଶ ହେତୁ "ସ୍ମିତଂ କିଂଚନ୍ମୁଗ୍ଧଂ" ଇତ୍ୟାଦି ଶ୍ଳୋକରେ ନବୀନତା ପ୍ରସ୍ଫୁଟିତ ହେଉଅଛି ।

("ସ୍ମିତଂ କିଂଚତ୍" ପଦ୍ୟରେ ମୁଗ୍ଧ, ମଧୁର, ବିଭବ, ପରିସ୍ପନ୍ଦ ଓ ସରସପ୍ରଭୃତି ଶବ୍ଦଗୁଡ଼ିକ ସ୍ୱାର୍ଥରେ ବାଧିତ ହୋଇ ଯଥାକ୍ରମେ ସୌନ୍ଦର୍ଯ୍ୟା-ତିଶୟ, ସକଳ ହୃଦୟହାରିତ୍ୱ, ଅକ୍ଷୀଣ ପ୍ରସରତ୍ୱ, କଲକ୍ଲୋଳାଶତତ୍ୱ ଓ ସଦ୍ୟଃ ପ୍ରବୃତ୍ତିପ୍ରାଦନକାରିତ୍ୱପ୍ରଭୃତି ଅର୍ଥକୁ ଧ୍ୱନିତ କରୁଅଛନ୍ତି । ଅତଏବ ତାହାର ବିଷୟବସ୍ତୁ ପୁରାତନ ହେଲେ ମଧ୍ୟ ତହିଁରେ ନୂତନତା ରହିଅଛି) ।

୯ । (ଅର୍ଥାନ୍ତର ସଂକ୍ରମିତ ବାଚ୍ୟ ଧ୍ୱନି ଯୋଗୁଁ ନବୀନତା, ଯଥା)— ଯେ ପ୍ରଧାନ, ସେ ପ୍ରଧାନ । ହାତୀପଲ ମାରି, ପ୍ରଚୁରମାଂସ ଖାଉଥିବା ସିଂହ ଶ୍ୱାପଦ (ହିଂସ୍ର ଜନ୍ତୁ) ମଧ୍ୟରେ ସିଂହ (ଶ୍ରେଷ୍ଠ) ଅଟେ । ତାକୁ କିଏ ବଳେଇବ, (ତା ଠାରୁ କିଏ ଅଧିକ ହେବ) ।

୧୦ । (ଏହା ଅର୍ଥରେ ପ୍ରାଚୀନ ପଦ୍ୟ ଯଥା) —
ନିଜ ସାମର୍ଥ୍ୟରେ ଯେ ମହତ୍ତ୍ୱ ଅର୍ଜନ କରିଛି, ତାକୁ କିଏ ଚପିଯିବ, କାହିଁକି ନା, ବଡ଼ ବଡ଼ ହାତୀମାନେ ସିଂହକୁ ଜିଣି ପାରନ୍ତି କି ?

୧୧ । ଇତ୍ୟେବମାଦଷୁ ଶ୍ଳୋକେଷ୍ୱପି, ଅର୍ଥାନ୍ତରସଂକ୍ରମିତ-
ଧ୍ୱନି ସମାଶ୍ରୟେଣ ନବତ୍ୱମ୍ ।

୧୨ । ବିବକ୍ଷିତାନ୍ୟପରବାଚ୍ୟସ୍ୟାପ୍ୟୁକ୍ତ ପ୍ରକାରସମାଶ୍ରୟେଣ
ନବତ୍ୱମ୍ । ତତ୍ରାସଂଲକ୍ଷ୍ୟକ୍ରମପ୍ରକାରସମାଶ୍ରୟେଣା-
ନ୍ୟଥାତ୍ୱଂ ଯଥା—

୧୩ । ନିଦ୍ରାକୈତବିନଃ ପ୍ରିୟସ୍ୟବଦନେ ବିନ୍ୟସ୍ୟ ବକ୍ତ୍ରବଧୂ-
ର୍ବୋଧତ୍ରାସ ନିରୁଦ୍ଧଚୁମ୍ବନରସାଽପ୍ୟାଭୋଗଲୋଲଂସ୍ଥିତା
ବୈଲକ୍ଷ୍ୟାଦ୍ ବିମୁଖୀଭବେଦିତି ପୁନସ୍ତସ୍ୟାପ୍ୟନାରମ୍ଭିଣଃ

---

୧୧ । ଏହିପରି ସମାନାର୍ଥକ "ସ୍ୱଚ୍ଛେଚ୍ଛଃ, ପ୍ରଭୃତି ଶ୍ଳୋକ ଥିଲେ ମଧ୍ୟ "ସଃ ପ୍ରଥମ, ଇତ୍ୟାଦି ପଦ୍ୟରେ ଅର୍ଥାନ୍ତର ସଂକ୍ରମିତ ଧ୍ୱନିର ସମାବେଶ ହେତୁ ନବୀନତା ହେଉଅଛି ।

("ସଃ ପ୍ରଥମଃ, ଶ୍ଳୋକରେ ଦ୍ୱିତୀୟବାର ଉକ୍ତ ପ୍ରଥମ ଓ ସିଂହ ଶବ୍ଦରେ ଅସାଧାରଣଗୁଣଶାଳିତ୍ୱ ଓ ଅଦ୍ଭୁତ ପରାକ୍ରମଶାଳିତ୍ୱରୂପ ଅର୍ଥ ଧ୍ୱନିତ ହେଉଅଛି । ତାହା ଦ୍ୱାରା କାବ୍ୟର ନବୀନତା ପ୍ରତିପାଦିତ ହେଉଅଛି) ।

୧୨ । ବିବକ୍ଷିତାନ୍ୟପରବାଚ୍ୟ ଧ୍ୱନିଯୋଗରେ ମଧ୍ୟ ଏହିପରି ନବୀନତା, ହୁଏ । ତନ୍ମଧ୍ୟରେ ଅସଂଲକ୍ଷ୍ୟକ୍ରମଧ୍ୱନି ଯୋଗରୁ ନବୀନତା, ଯଥା—

୧୩ । ନୂଆ ବୋହୂଟି କପଟରେ ନିଦ୍ରିତ ହୋଇଥିବା ପ୍ରିୟର ମୁହଁ ପାଖରେ ମୁହଁ ଲଗାଇ, କାଳେ ପ୍ରିୟ ଉଠିପଡ଼ିବ, ଏହି ଭୟରେ ଚୁମ୍ବନ ଅଭିଳାଷକୁ ନିରୋଧ କଲେ ମଧ୍ୟ ଭୋଗଲିପ୍ସାରେ ବ୍ୟତିବ୍ୟସ୍ତ ହୋଇ-ପଡ଼ୁଥିଲା ।

ତେଣେ ନିଦ୍ରା ହୋଇ ନାହିଁ ବୋଲି ଜାଣିଲେ ଲାଜ (ବୈଲକ୍ଷ୍ୟ)ରେ ଚୁମ୍ବନାଦିରୁ ପ୍ରିୟା ବିରତ ହୋଇଯିବ ବୋଲି କାମ ବ୍ୟାପାର ଆରମ୍ଭ

ସାକାଂକ୍ଷପ୍ରଭପତ୍ତି ନାମ ହୃଦସ୍ୟଂ
ଯାତଂ ତ୍ତୁ ପାରଂ ରତେଃ ।

ଇତ୍ୟସ୍ୟ ଶ୍ଳୋକସ୍ୟ ।

୧୪ । ଶୂନ୍ୟଂ ବାସଗୃହଂ ବିଲୋକ୍ୟ ଶୟନାଦୁତ୍ଥାୟ କିଂଚିଚ୍ଛନୈ-
ର୍ନିଦ୍ରାବ୍ୟାଜମୁପାଗତସ୍ୟ ସୁଚିରଂ ନିର୍ବର୍ଣ୍ୟ ପତ୍ୟୁର୍ମୁଖମ୍ ।
ବିଶ୍ରବ୍ଧଂ ପରିଚୁମ୍ବ୍ୟ ଜାତପୁଲକାମାଲୋକ୍ୟ ଗଣ୍ଡସ୍ଥଲୀଂ
ଲଜ୍ଜାନମ୍ରମୁଖୀ ପ୍ରିୟେଣ ହସତା ବାଲା ଚିରଂ ଚୁମ୍ବିତା ॥
ଇତ୍ୟାଦିଷ୍ୱପି ନବତ୍ୱମ୍

---

କରୁ ନ ଥିବା ପ୍ରିୟର ସମ୍ଭୋଗକାଙ୍କ୍ଷୀ ହୃଦୟ ମଧ୍ୟ (ସମ୍ଭୋଗ ନ କଲେ ବି) ରତିର ପରପାରକୁ ପ୍ରାପ୍ତ ହୋଇଥିଲା ।

୧୪ । (ଅମରୁ ଶତକରେ ଏତଦ୍ବିଷୟକ ପ୍ରାଚୀନ ପଦ୍ୟ ଯଥା)— କେଳି ଗୃହକୁ ନିର୍ଜନ ଦେଖି ଶେଯରୁ ଟିକିଏ ଆସ୍ତେ ଆସ୍ତେ ଉଠି କପଟରେ ନିଦ୍ରିତ ହୋଇଥିବା ପତିର ମୁଖକୁ ବହୁସମୟ ପର୍ଯ୍ୟନ୍ତ ଟିକିନିଖି କରି ଦେଖି ଶୋଇ ପଡ଼ିଥିବା ବିଶ୍ୱାସରେ ପତିକୁ ଚୁମ୍ବନ କରନ୍ତେ, ତାହାର ଗଣ୍ଡସ୍ଥଳରେ ରୋମାଞ୍ଚ ଦେଖି ଲଜ୍ଜାରେ ତଳକୁ ମୁହଁ ପୋତିଥିବା ନୂଆ ବୋହୂଟିକୁ ତାର ପତି ହସି ହସି ବହୁସମୟ ଯାଏଁ ଚୁମ୍ବନ ଦେଇଥିଲା ।

(ନିଦ୍ରା କୈତବିନଃ, ଇତ୍ୟାଦି ନୂତନ କବିତାର "ଶୂନ୍ୟଂ ବାସଗୃହଂ" ଏହି ପୁରାତନ କବିତା ଅପେକ୍ଷା ନବୀନତା ରହିଅଛି ଯଥା—ପ୍ରାଚୀନ କବିତାରେ ସମ୍ଭୋଗ ଶୃଙ୍ଗାର ଆସ୍ୱାଦ୍ୟ ହୋଇଥିଲେ ମଧ୍ୟ ତହିଁରେ ବୈଲକ୍ଷ୍ୟ, ପଦରେ ସ୍ୱଶବ୍ଦ ବାଚ୍ୟତା ଦୋଷ ଓ ନିର୍ବର୍ଣ୍ୟ ପଦରେ ଶ୍ରୁତିକଟୁ ଦୋଷ ରହିଅଛି; କିନ୍ତୁ ନବୀନ ଶ୍ଳୋକରେ ଉକ୍ତ ଦୋଷ ନ ଥାଇ "ନିଦ୍ରା କୈତବିନଃ" ପଦ ଦ୍ୱାରା ଉଭୟଙ୍କର ଚୁମ୍ବନାଦି ଅଭିଳାଷ ସୂଚିତ ହେଉଥିବାରୁ କବିତାରେ ନୂତନତା ପ୍ରକାଶ ପାଉଛି) ।

୧୫ । ଯଥା ବା—"ତରଙ୍ଗ ଭ୍ରୂଭଙ୍ଗା" ଇତ୍ୟାଦ ଶ୍ଳୋକସ୍ୟ, "ନାନାଭଙ୍ଗିଭ୍ରମଦ୍‌ଭ୍ରୂଃ" ଇତ୍ୟାଦ ଶ୍ଳୋକାପେକ୍ଷୟାଽନ୍ୟତ୍ୱମ୍ ।

୧୬ । ଦଶାଽନ୍ୟ୍ୟାଽନୁସର୍ତ୍ତବ୍ୟୋ ରସାଦବହୁବସ୍ତରଃ ।
ମିତୋଽପ୍ୟନନ୍ତତା ପ୍ରାପ୍ତଃ କାବ୍ୟମାର୍ଗୋ ଯଦାଶ୍ରୟାତ୍ ॥

୧୭ । ବହୁ ବସ୍ତରୋଽସ୍ୟ ରସଭାବତଦାଭାସ-ତତ୍ ପ୍ରଶମନଲକ୍ଷଣୋ ମାର୍ଗୋ ଯଥାସ୍ୱଂ ବଭାବାନୁଭାବ ପ୍ରଭେଦ କଳନୟା, ଯଥୋକ୍ତଂ ପ୍ରାକ୍, ସ ସର୍ବ ଏବାନ୍ୟ୍ୟା ଦଶାଽନୁସର୍ତ୍ତବ୍ୟଃ ।

---

୧୫ । ଅଥବା "ତରଙ୍ଗ ଭ୍ରୂଭଙ୍ଗା (ଯାହାର ଭ୍ରୂଭଙ୍ଗୀ ତରଙ୍ଗପର ଚଞ୍ଚଳ) ଏହି ନବୀନ ପଦ୍ୟର "ନାନାଭଙ୍ଗି ଭ୍ରମଦ୍‌ଭ୍ରୂଃ" (ଯାହାର ଭ୍ରୂ ନାନା ଭଙ୍ଗୀରେ ଘୂରୁଛି) ଏହି ପ୍ରାଚୀନ ପଦ୍ୟ ଅପେକ୍ଷା ନୂତନତା ରହିଅଛି ।

୧୬ । ଉକ୍ତ ରୀତିରେ ବହୁବସ୍ତର ରସାଦ ଅସଂଲକ୍ଷ୍ୟକ୍ରମ ଧ୍ୱନିକୁ ମଧ୍ୟ କଳ୍ପନା କରିବାକୁ ହେବ । ଯେଉଁ ରସାଦ ଦ୍ୱାରା କାବ୍ୟମାର୍ଗ ପରିମିତ ହୋଇଥିଲେ ମଧ୍ୟ ଅପରିମିତ ହୋଇଅଛି । (ଯେଣୁ ଏକ ବିଷୟବସ୍ତୁ ରସାଦର ବର୍ଣ୍ଣନା ଭେଦରେ ବିଭିନ୍ନ ହୁଏ) ।

୧୭ । (ବୃତ୍ତିର ଅର୍ଥ) ରସାଦ ଧ୍ୱନି ରସ, ଭାବ, ରସାଭାସ, ଭାବାଭାସ, ଭାବ ପ୍ରଶମନ, ଭେଦରେ ଓ ନିଜ ନିଜ ବିଭାବ, ଅନୁଭାବ ବ୍ୟଭିଚାରି ଭାବ ଭେଦରେ ବହୁବସ୍ତର ହୁଏ । ଏହା ପୂର୍ବରୁ କୁହାଯାଇଅଛି । ସେ ସମସ୍ତ ଧ୍ୱନିକାବ୍ୟ ମଧ୍ୟ ଉକ୍ତ ରୀତିରେ ବର୍ଣ୍ଣନା ଭେଦରେ ଭିନ୍ନ ଭିନ୍ନ ପ୍ରକାର ହୋଇଥାଏ ।

୧୮ । ଯସ୍ୟ ରସାଦେରାଶ୍ରୟାଦସ୍ୟଂ କାବ୍ୟମାର୍ଗଃ ପୁରାତନୈଃ
କବିଭିଃ ସହସ୍ରସଂଖ୍ୟୈ ରସଂଖ୍ୟୈର୍ବା ବହୁପ୍ରକାରଂ
କ୍ଷୁଣ୍ଣତ୍ୱାତ୍ ମିତୋଽପ୍ୟନନ୍ତତାମେତି ।

୧୯ । ରସଭାବାଦୀନାଂ ହି ପ୍ରତ୍ୟେକଂ ବିଭାବାନୁଭାବବ୍ୟଭି-
ଚାରିସମାଶ୍ରୟାଦପରିମିତତ୍ୱମ୍ । ତେଷାଂ ଚୈକୈକ-
ପ୍ରଭେଦାପେକ୍ଷୟାପି ତାବତ୍ ଜଗଦ୍‌ବୃତ୍ତମୁପନିବଧ୍ୟ-
ମାନଂ ସୁକବିଭିସ୍ତଦିଚ୍ଛାବଶାତ୍ ଅନ୍ୟଥାସ୍ଥିତମପ୍ୟନ୍ୟ-
ଥୈବ ବିବର୍ତ୍ତତେ ।

ପ୍ରତିପାଦିତଂ ଚୈତଚ୍ଚିତ୍ରବିଚାରାବସରେ ।

୨୦ । ଗାଥାଚାତ୍ର କୃତୈବ ମହାକବିନା—
ଅତ ହଟ୍ଟିଏ ବି ଓହିସଂଠିଏ ବି ହିଅଅମ୍ମି ଜାଣିବେସେଇ
ଅତ୍ଥବିସେସେ ସା ଜଅଇ ବିକଡ଼କଇ ଗୋଅରବାଣୀ ।

---

୧୮ । ଏହି ରସାଦି ସଂଯୋଗରୁ ପୁରାତନ ଅସଂଖ୍ୟ କବିଙ୍କ ଦ୍ୱାରା କାବ୍ୟମାର୍ଗ ବହୁପ୍ରକାର ଖୋଦିତ ହୋଇ ପରିମିତ ହେଲେ ମଧ୍ୟ ଅପରିମିତ ହୋଇଅଛି ।

୧୯ । ରସଭାବାଦିମାନେ ପ୍ରତ୍ୟେକ ନିଜ ନିଜର ବିଭାବ ଅନୁଭାବ ବ୍ୟଭିଚାରିଭାବ ଭେଦରେ ଅପରିମିତ । ଉକ୍ତ ପ୍ରତ୍ୟେକ ଭେଦ ପାଇଁ (କୌଣସି ରସର ବିଭାବ କିମ୍ବା ଅନୁଭାବ କିମ୍ବା ବ୍ୟଭିଚାରି ଭାବରୂପେ) ଉତ୍ତମ କବି ଜାଗତିକ ବିଷୟବସ୍ତୁକୁ ବ୍ୟବହାର କଲେ ସେମାନଙ୍କ ଇଚ୍ଛା ଅନୁସାରେ ଉକ୍ତ ବସ୍ତୁ ଭିନ୍ନ ଭିନ୍ନ ପ୍ରକାର ହୋଇଥାଏ ଅର୍ଥାତ୍ ଏକ ରସର ଉପଯୋଗୀ ବସ୍ତୁ ମଧ୍ୟ ଅନ୍ୟରସର ଅଙ୍ଗ ହୋଇପାରେ । ତୃତୀୟ ଉଦ୍ୟୋତରେ ଚିତ୍ରବିଚାର ପ୍ରସଙ୍ଗରେ ଏହା ପ୍ରତିପାଦିତ ହୋଇଅଛି ।

୨୦ । ଏ ବିଷୟରେ ମହାକବି (ଶାଳବାହନ)ଙ୍କର ଗୋଟିଏ ଗାଥା (ପଦ୍ୟ) ଅଛି । ଯଥା—

(ଅତଥା ସ୍ଥିତାନପି ତଥାସ୍ଥିତାନିବ ହୃଦୟେ ଯା ନିବେଶୟତି ।
ଅର୍ଥ ବିଶେଷାନ୍ ସା ଜୟତି ବିକଟ କବିଗୋଚରା ବାଣୀ) ।
ଇତିଛାୟା

୬୧ । ତଦିତ୍ଥଂ ରସଭାବାଦ୍ୟାଶ୍ରୟେଣ କାବ୍ୟାର୍ଥାନାମାନନ୍ତ୍ୟଂ ସୁପ୍ରତିପାଦିତମ୍ । ଏତଦେବୋପପାଦୟିତୁ ମିଦ-ମୁଚ୍ୟତେ—

୬୨ । ଦୃଷ୍ଟପୂର୍ବା ଅପି ହ୍ୟର୍ଥାଃ କାବ୍ୟେ ରସପରିଗ୍ରହାତ୍ ।
ସର୍ବେ ନବା ଇବା-ଭାନ୍ତି ମଧୁମାସ ଇବ ଦ୍ରୁମାଃ । ୪ ।

୬୩ । ତଥା ବିବକ୍ଷିତାନ୍ୟପରବାଚ୍ୟସ୍ୟୈବ ଶବ୍ଦଶକ୍ତ୍ୟୁଦ୍ଭବାନୁ-ରଣନରୂପବ୍ୟଙ୍ଗ୍ୟପ୍ରକାରସମାଶ୍ରୟେଣ ନବତ୍ୱମ୍ ।

---

ପଦ୍ମ, ଚନ୍ଦ୍ର ପ୍ରଭୃତିର ସଦୃଶ ହୋଇ ନ ଥିଲେ ମଧ୍ୟ କାମିନୀ ମୁଖ-ପ୍ରଭୃତି ପଦାର୍ଥମାନଙ୍କୁ ଯେଉଁ କବିଭାରତୀ ସହୃଦୟମାନଙ୍କ ହୃଦୟରେ ପଦ୍ମ, ଚନ୍ଦ୍ର ପ୍ରଭୃତିର ସଦୃଶ ବୋଲି ପ୍ରତୀତ କରାଇ ଦିଏ ସେହି ବିଲକ୍ଷଣ କବିତା (କବିମାନଙ୍କ ଦ୍ୱାରା କେବଳ ପ୍ରକାଶ ଯୋଗ୍ୟା) ବାଗ୍‌ଦେବୀ (ବାଣୀ)ଙ୍କର ବିଜୟ ହେଉ ।

୬୧ । ଏହିପରି ରସଭାବାଦିସମ୍ପର୍କ ଦ୍ୱାରା କାବ୍ୟାର୍ଥମାନଙ୍କର ଅନନ୍ତତା ପ୍ରତିପାଦିତ ହେଲା । ଏହାର ଉପପାଦନ ପାଇଁ କୁହାଯାଉଛି :— ଯଥା—

୬୨ । ବିଷୟବସ୍ତୁଗୁଡ଼ିକ ପୂର୍ବରୁ ସ୍ୱଚକ୍ଷୁରେ ଦୃଷ୍ଟ ହୋଇଥିଲେ ମଧ୍ୟ କିମ୍ବା ପ୍ରାଚୀନ କାବ୍ୟାଦିରୁ ଶୁଣା ଯାଇଥିଲେ ମଧ୍ୟ ରସ ସଂଯୋଗ ଦ୍ୱାରା ବସନ୍ତ ଋତୁରେ ପୁରୁଣା ଗଛ (ପଲ୍ଲବିତ ହୋଇ) ନୂତନରୂପେ ଦେଖା-ଗଲା ପରି ନୂତନ ରୂପ ଧାରଣ କରି ଶୋଭା ପାଆନ୍ତି ।

୬୩ । ସେହିପରି ଅଭିଧାମୂଳଧ୍ୱନିର ଶବ୍ଦଶକ୍ତ୍ୟୁଦ୍ଭବ ଅନୁରଣନ ରୂପକ ବ୍ୟଙ୍ଗ୍ୟ ସମାବେଶ ହେତୁ ନୂତନତା ଦେଖାଯାଏ ଯଥା—"ବର୍ତ୍ତମାନ

ଯଥା—"ଧରଣୀଧାରଣାୟାଧୁନା ତ୍ୱଂ ଶେଷଃ"
ଇତ୍ୟାଦୌ ।

୨୪ । ଶେଷୋ ହିମଗିରିସ୍ତ୍ୱଂ ଚ ମହାନ୍ତୋ ଗୁରବଃ ସ୍ଥିରାଃ ।
ଯଦଲଙ୍ଘିତମର୍ଯ୍ୟାଦାଶ୍ଚଲନ୍ତୀଂ ବିଭୃଥ କ୍ଷିତିମ୍ ।
ଇତ୍ୟାଦଦ୍ଭୁସତ୍ସ୍ୱପି ।

୨୫ । ତସ୍ୟୈବାର୍ଥଶକ୍ତ୍ୟୁଦ୍ଭବାନୁରଣନରୂପବ୍ୟଙ୍ଗ୍ୟସମାଶ୍ରୟେଣ ନବତ୍ୱମ୍—

ଯଥା—"ଏବଂ ବାଦିନି ଦେବର୍ଷୌ" ଇତ୍ୟାଦି ଶ୍ଳୋକସ୍ୟ

---

ଧରଣୀ ଧାରଣ ପାଇଁ ତୁମ୍ଭେ ଏକା ଶେଷ (ଅବଶିଷ୍ଟ ଓ ଶେଷ ଦେବ) ଇତ୍ୟାଦି ସ୍ଥଳ ।

୨୪ । ହେ ରାଜନ୍ ! ଶେଷଦେବ (ବାସୁକୀ), ହିମାଳୟ ଓ ତୁମ୍ଭେ ଏହି ତିନୀଜଣ ଯାକ, ମହାନ୍ (ରାଜା ସ୍ୱ ମର୍ଯ୍ୟାଦାରେ ଓ ଅନ୍ୟ ଦୁହେଁ ଆକାରରେ), ଗୁରୁ (ହିମାଳୟ ଓଜନରେ ଓ ଅନ୍ୟ ଦୁହେଁ ଗୌରବ ପାଇ ହିସାବେ), ସ୍ଥିର (ରାଜା ଅଚଳ ସ୍ୱଭାବ ଓ ଅନ୍ୟଦୁହେଁ ଗତିହୀନ), ଅଟ, ଯେଣୁ ସୀମାଲଙ୍ଘନ ନ କରି (ହଲ୍‌ଚଲ୍ ନ ହୋଇ) ଗତିଶୀଳ ପୃଥିବୀକୁ ଧାରଣ କରିଅଛ । "ଶେଷୋ ହିମଗିରିଃ" ଏହି ପ୍ରାଚୀନ ପଦ୍ୟ ସତ୍ତ୍ୱେ ଧରଣୀ ଧାରଣାୟ ଏହି ନବୀନ ପଦ୍ୟର ନୂତନତା ରହିଅଛି ।

୨୫ । ଅଭିଧାମୂଳ ଅର୍ଥଶକ୍ତ୍ୟୁଦ୍ଭବ ଅନୁରଣନ ରୂପବ୍ୟଙ୍ଗ୍ୟ ସଂଯୋଗରୁ ନୂତନତାର ଉଦାହରଣ, ଯଥା—

"ଏବଂ ବାଦିନି ଦେବର୍ଷୌ" (ଏହା ନବୀନ ଶ୍ଳୋକ) ଅର୍ଥ— ଦେବର୍ଷି ନାରଦ ଏହିପରି (ବରଘର କଥା) କହନ୍ତେ, ପିତାଙ୍କ ନିକଟରେ ବସିଥିବା ପାର୍ବତୀ ମୁହଁପୋତି ଖେଳପଦ୍ମ ଫୁଲ ପାଖୁଡ଼ାଗୁଡ଼ିକୁ ଗଣିବାରେ ଲଗିଥିଲେ ।

୨୬ । କ୍ବଚିତ ବରକଥାଳାପେ କୁମାର୍ଯ୍ୟଃ ପୁଲକୋଦ୍‌ଗମୈଃ ।
ସୂଚୟନ୍ତି ସ୍ପୃହାମନ୍ତର୍ଲଜ୍ଜୟାଽବନତାନନାଃ ।

ଇତ୍ୟାଦଖୁସଷ୍ଟପି ।

୨୭ । ଅର୍ଥଶକ୍ତ୍ୟୁଦ୍ଭବାନୁରଣନରୂପବ୍ୟଙ୍ଗ୍ୟସ୍ୟ କବିପ୍ରୌଢ଼ୋକ୍ତି
ନିର୍ମିତଶରୀରତ୍ୱେନ ନବତ୍ୱମ୍ । ଯଥା—"ସଜ୍ଜେହି
ସୁରହିମାସୋ" ଇତ୍ୟାଦେଃ ।

---

୨୬ । (ଏହି ବିଷୟରେ ପ୍ରାଚୀନ ଶ୍ଳୋକ)—

ଅନ୍ୟମାନେ (କୁମାରୀମାନଙ୍କ) ବରପ୍ରସଙ୍ଗରେ ଆଳାପ କରନ୍ତେ କୁମାରୀମାନେ ‹ ଲଜ୍ଜାରେ ମୁହଁକୁ ତଳକୁ ପୋତନ୍ତି, ମାତ୍ର ନିଜ ପୁଲକୋ-ଦ୍‌ଗମ ଦ୍ୱାରା ଅନ୍ତରରେ ତାଦୃଶ ଆଳାପ ପ୍ରତି ସ୍ପୃହା ଥିବା କଥା ସୂଚାଇ ଥାଆନ୍ତି । "(କ୍ବଚିତ୍ ବର କଥାଳାପେ" ଏହି ପ୍ରାଚୀନ ପଦ୍ୟ ସତ୍ତ୍ୱେ କାଳିଦାସଙ୍କ "ଏବଂ ବାଦିନି" ଶ୍ଳୋକର ନବୀନତା ରହିଅଛି । ପ୍ରାଚୀନ ପଦ୍ୟରେ ସ୍ପୃହା ଓ ଲଜ୍ଜା ଶବ୍ଦ ଦ୍ୱାରା ପ୍ରକାଶ ପାଇଥିବାରୁ ତହିଁରେ ଚମତ୍କାରିତା ନାହିଁ, କିନ୍ତୁ ଏବଂବାଦିନି ପଦ୍ୟରେ ପତ୍ରଗଣନା, ମୁଖନମନପ୍ରଭୃତି କାର୍ଯ୍ୟର ବର୍ଣ୍ଣନା ଦ୍ୱାରା ଲଜ୍ଜାପ୍ରଭୃତି ପ୍ରକାଶ କରାଯାଇଥିବାରୁ ତହିଁରେ ଚମତ୍କାରିତା ରହିଅଛି) ।

୨୭ । ଅର୍ଥ ଶକ୍ତ୍ୟୁଦ୍ଭବ ଅନୁରଣନାତ୍ମକ ବ୍ୟଙ୍ଗ୍ୟର କବିପ୍ରୌଢ଼ୋକ୍ତି ସିଦ୍ଧଧ୍ୱନି ସମ୍ପର୍କରୁ ନବୀନତା ଯଥା—

"ସଜ୍ଜୟତି ସୁରଭିମାସ (ନବୀନ ଶ୍ଳୋକ)"

ବସନ୍ତକାଳ ନବପଲ୍ଲବରୂପ (ଶରରେ ଲଗିଥିବା) ପତ୍ରଯୁକ୍ତ, ଯୁବତୀଜନରୂପକ ଲକ୍ଷ୍ୟଭେଦକାରୀ ଅଭିନବ ସହକାରପୁଷ୍ପପ୍ରଭୃତି କାମ-ଦେବର ଶରମାନଙ୍କୁ ସଜ୍ଜୀଭୂତ କରୁଛି, ମାତ୍ର ପ୍ରୟୋଗ କରୁ ନାହିଁ ।

୬୮ । ସୁରଭିସମୟେ ପ୍ରବୃତ୍ତେ ସହସା ପ୍ରାଦୁର୍ଭବନ୍ତି ରମଣୀୟାଃ ।
ରାଗବତାମୁତ୍କଳିକାଃ ସହୈବ ସହକାରକଳିକାଭିଃ ।
ଇତ୍ୟାଦସ୍ୟ ସଂସ୍କୃତି ଅପୂର୍ବତ୍ୱମେବ ।

୬୯ । ଅର୍ଥଶକ୍ତ୍ୟୁଦ୍ଭବାନୁରଣନରୂପବ୍ୟଙ୍ଗ୍ୟସ୍ୟ କବିନିବଦ୍ଧ-
ବକ୍ତୃପ୍ରୌଢ଼ୋକ୍ତିନିଷ୍ପନ୍ନଶରୀରତ୍ୱେ ସତି ନବତ୍ୱମ୍ ।

ଯଥା—

ସାଅର ବିଇଣ୍ଣ ଜୋବ୍ବଣ ହତ୍ଥାଲମ୍ବଂ ସମୁଣ୍ଣମନ୍ତେହି ହିଂ
ଅବ୍ଭୁଟ୍ଠାଣମ୍ପିବ ମମ୍ମହସ୍ସ ଦିଣ୍ଣଂ ତୁ ହ ଥଣେହିଂ ।

---

୬୮ । (ଏହି ବିଷୟରେ ପ୍ରାଚୀନ ଶ୍ଳୋକ ଯଥା)—

ବସନ୍ତ ସମୟ ପ୍ରବୃତ୍ତ ହୁଅନ୍ତେ ସହକାର କଳିକା ସହିତ ଅନୁରାଗୀମାନଙ୍କର ରମଣୀୟ (ରମଣୀ ସମ୍ବନ୍ଧୀୟ) ଉତ୍କଣ୍ଠା ସହସା ପ୍ରାଦୁର୍ଭୂତ ହେଲା ।

ପ୍ରାଚୀନ ରଚନାରେ ସହକାର ମୁକୁଳ ଓ ଉତ୍କଣ୍ଠାର ସମକାଳୀନତା ବର୍ଣ୍ଣିତ ହୋଇଥିବାରୁ ସହୋକ୍ତି ଅଳଂକାର ମାତ୍ର, କିନ୍ତୁ ନବୀନ ରଚନାରେ କାମଦେବର ଅଭୂତପୂର୍ବ କାଟ୍ଟତ୍ୱବିଷୟ ରୂପବସ୍ତୁ ଧ୍ୱନିତ ହେଉଥିବାରୁ ତହିଁରେ ବିଶେଷ ଚମତ୍କାରିତା ଅଛି । ଏଣୁ ପ୍ରାଚୀନ ପଦ୍ୟ ସତ୍ତ୍ୱେ "ସଜ୍ଜୟତି" ଶ୍ଳୋକର ନବୀନତା ରହିଅଛି ।

୬୯ । ଅର୍ଥଶକ୍ତ୍ୟୁଦ୍ଭବ କବିନିବଦ୍ଧ ବକ୍ତୃପ୍ରୌଢ଼ୋକ୍ତିନିଷ୍ପନ୍ନ ଅନୁ-ରଣନରୂପ ବ୍ୟଙ୍ଗ୍ୟ ସମ୍ବନ୍ଧରୁ ନୂତନତା ଯଥା—

(ନବୀନ ଶ୍ଳୋକ) ନବୋଢ଼ା ପ୍ରତି କାମୁକର ଉକ୍ତି

(ହେ ମୁଗ୍ଧେ) ! ଯୌବନ ଆଦରପୂର୍ବକ ହାତ ବଢ଼ାଇ ସାହାଯ୍ୟ କଲାରୁ କ୍ରମଶଃ ଉପରକୁ ଉଠୁଥିବା ତୁମ୍ଭର ସ୍ତନ ଦୁଇଟି ସମାଗତ କାମଦେବଙ୍କର ସତ୍କାର ସକାଶେ ଉଠି ପଡ଼ିବା ଭଳି ଜଣା ଯାଉଛନ୍ତି ।

(ସାଦର ବର୍ତ୍ତିଣ୍ଟ ଯୌବନହସ୍ତାଲମ୍ବଂ ସମୁନ୍ନମଦ୍‌ଭ୍ୟାମ୍ ।
ଅଭ୍ୟୁତ୍ଥାନମିବ ମନ୍ମଥସ୍ୟ ଦତ୍ତଂ ତବସ୍ତନାଭ୍ୟାମ୍) ।
ଅସ୍ୟ ହି ଗାଥାର୍ଥସ୍ୟ

୩୦ । ଉଦଓରକ ଆଭୋଆ ଜହ ଜହ ଥଣଆ ବଣନ୍ତି ବାଳାଣମ୍ ।
ତହ ତହ ଲଦ୍ଧାବାସୋ ବ ମମ୍ମହୋ ହିଅଅ ମାବସଇ ।

(ଉଦରଭୃର କଣ୍ଠଭୋଗା ଯଥା ଯଥା ସ୍ତନକା
ବର୍ଦ୍ଧନ୍ତେ ବାଲାନାମ୍ ।
ତଥା ତଥା ଲବ୍ଧାବାସଇବ ମନ୍ମଥୋ ହୃଦୟମାବିଶତି ।
ଇତିଚ୍ଛାୟା)

ଏତଦ୍ ଗାଥାର୍ଥେ ନ ପୌନରୁକ୍ତ୍ୟମ୍ ।

---

ସରଳାର୍ଥ :—କୌଣସି ବିଶିଷ୍ଟ ଅତିଥି ଉପସ୍ଥିତ ହେଲେ ଉଠି-ପଡ଼ି ତାଙ୍କର ସତ୍କାର କରାଯାଏ । ଯେପରି ସ୍ଥଳେ ଉଠିବାକୁ ଅସମର୍ଥ ବ୍ୟକ୍ତି ଅନ୍ୟର ସାହାଯ୍ୟ ନେଇ ମଧ୍ୟ ଉଠିଥାଏ । ଏଠାରେ କାମିନୀ ସ୍ତନ ଦ୍ୱୟ ନବାଗତ କାମଦେବଙ୍କର ସତ୍କାର ପାଇଁ ସ୍ୱୟଂ ଉଠିବାକୁ ଅସମର୍ଥ ହେବାରୁ ଯୌବନର ସାହାଯ୍ୟରେ ଉଠିଛନ୍ତି, ଅର୍ଥାତ୍ ଯୌବନ ହେତୁ ସ୍ତନର ଉତ୍ଥାନ ହୋଇଛି ଏବଂ ଉନ୍ନତ ସ୍ତନ ଦର୍ଶନରେ ଦର୍ଶକ ଯୁବକର ଓ କାମିନୀର ମନରେ କାମଭାବ ଜାତ ହୋଇଅଛି ।

୩୦ । (ଏତଦ୍ ବିଷୟକ ପ୍ରାଚୀନ ପଦ୍ୟ, ଯଥା)—

ବାଳାମାନଙ୍କର ଉଦୟଶାଳୀ (ସମୃଦ୍ଧ) କେଶପାଶ ଓ ବ୍ୟାପ୍ତ ସ୍ତନଯୁଗଳ ଯେତକ ଯେତକ ବଢୁଛି, କାମଦେବ ଘର ମିଳିଗଲା ବୋଲି ମନେକରି ହୃଦୟ ଭିତରକୁ ସେତକ ସେତକ ପଶୁଛି ।

ପ୍ରାଚୀନ ପଦ୍ୟରେ ନାରୀର ଯୌବନାରମ୍ଭରେ କାମୋଦ୍ରେକ ବାଚ୍ୟ ହୋଇ ବର୍ଣ୍ଣିତ ହୋଇଅଛି, କିନ୍ତୁ ନବୀନ ପଦ୍ୟରେ କବିନିବଦ୍ଧ ବକ୍ତାର ପ୍ରୌଢ଼ୋକ୍ତି ଦ୍ୱାରା ତାହା ବ୍ୟଙ୍ଗ୍ୟ ମୁଦ୍ରାରେ ବର୍ଣ୍ଣିତ ହୋଇଥିବାରୁ ତହିଁରେ ନୂତନତା ଅଛି ।

୩୧ । ଯଥା ବା—ବାଣିଅଅ ! ହତ୍ଥିଦନ୍ତା, ଇତ୍ୟାଦ ଗାଥାଥସ୍ୟ।

୩୨ । କରେଣୀବେହବ୍ବଅରୋ ମହପୁତ୍ତୋ ଏକ୍କକାଣ୍ଡବିଣିବାଇ
ହୁଅସୋହ୍ନାଏ ତହକହୋ ଜହ କଣ୍ଡ କରଣ୍ଡଅଂ ବହଇ ।
(କରେଣୀବୈଧବ୍ୟକରୋ ମମପୁତ୍ର ଏକକାଣ୍ଡ ବନପାତୀ ।
ହତସ୍ନୁଷୟା ତଥାକୃତୋ ଯଥା କାଣ୍ଡ କରଣ୍ଡକଂ ବହତି)
ଇତିଚ୍ଛାୟା ।

୩୩ । ଏବ ମାଦୃଶ୍ସୁ ସତ୍ସ୍ୱପ୍ୟନାଲୀଢ଼ତୈବ ।

୩୪ । ଯଥା ବ୍ୟଙ୍ଗ୍ୟଭେଦସମାଶ୍ରୟେଣ ଧ୍ୱନେଃ କାବ୍ୟାର୍ଥାନାଂ ନବତ୍ୱମୁପପଦ୍ୟତେ, ତଥା ବ୍ୟଞ୍ଜକଭେଦ

---

୩୧ । ଅଥବା ଅନ୍ୟନ ଯଥା—ହେ ବେପାର ! ହାତୀଦାନ୍ତ ଓ ବାଘ ଚମଡ଼ା ଆମକୁ ଆଉ କୁଆଡୁ ମିଳିବ ? ଯେ ପର୍ଯ୍ୟନ୍ତ ଭୁତୁରମୁଣ୍ଡୀ ବୋହୂ ଘରେ ଝୁଲୁଛି ।

୩୨ । (ପୁରାତନ ରଚନା ଯଥା)—

ହେ ବେପାର ! ମୋ ପୁଅ ଏକା କାଣ୍ଡରେ ଜନ୍ତୁ ମାରେ ଓ ହାତୁଣୀମାନଙ୍କୁ ରାଣ୍ଡ କରେ, ଏବେ ପୋଡ଼ଚାଡ଼ ବୋହୂଟା (ହତସ୍ନୁଷା) ଏପରି କଲା ଯେ ସେ କାଣ୍ଡଭରା ତୂଣୀରକୁ ଖାଲି ବୋହିବାରେ ଲାଗିଛି ।

(ପ୍ରାଚୀନ ପଦ୍ୟରେ 'ହତସ୍ନୁଷା' (ପୋଡ଼ପାଡ଼ ବୋହୂ) ବୋଲି କହିବା ଦ୍ୱାରା ପୁତ୍ରର ରତିଖିନ୍ନତା ବାଚ୍ୟ, କିନ୍ତୁ ନବୀନ ପଦ୍ୟରେ ତାହା ବ୍ୟଙ୍ଗ୍ୟରୂପେ ରହିଅଛି) ।

୩୩ । ଅତଏବ ଉକ୍ତ ପ୍ରାଚୀନ ରଚନାମାନଙ୍କ ଦ୍ୱାରା ନବୀନ ରଚନାମାନଙ୍କର ଗତାର୍ଥତା (ଆଲୀଢ଼ତା) ବା ଚର୍ବିତ ଚର୍ବଣତା ହେଉ ନାହିଁ ।

୩୪ । ଯେପରି ବ୍ୟଙ୍ଗ୍ୟଭେଦ ଅନୁସାରେ ଧ୍ୱନି ସମ୍ବନ୍ଧୀୟ କାବ୍ୟାର୍ଥର ନୂତନତା ସମ୍ପାଦିତ ହେଉଅଛି, ସେହିପରି ବ୍ୟଞ୍ଜକଭେଦ ଅନୁସାରେ ମଧ୍ୟ

ସମାଶ୍ରୟେଣାପି, ତତ୍ତୁ ଗ୍ରନ୍ଥବିସ୍ତରଭୟାନ୍ନ ଲକ୍ଷ୍ୟତେ ;
ସ୍ୱୟମେବ ସହୃଦୟୈରୂହ୍ୟମ୍ !

୩୫ । ଅତ୍ର ଚ ପୁନଃପୁନରୁକ୍ତମପି ସାରତୟେଦମୁଚ୍ୟତେ—

୩୬ । ବ୍ୟଙ୍ଗ୍ୟ ବ୍ୟଞ୍ଜକଭାବେଽସ୍ମିନ୍ ବିବିଧେ ସମ୍ଭବତ୍ୟପି ।
ରସାଦିମୟ୍ ଏକସ୍ମିନ୍ କବିଃ ସ୍ୟାଦବଧାନବାନ୍ । ୫ ।

୩୭ । ଅସ୍ମିନ୍ ଅର୍ଥାନନ୍ତ୍ୟହେତୌ ବ୍ୟଙ୍ଗ୍ୟବ୍ୟଞ୍ଜକଭାବେ ବିଚିତ୍ରେ ସମ୍ଭବତ୍ୟପି କବିରପୂର୍ବଲାଭାର୍ଥୀ ରସାଦିମୟ୍ ଏକସ୍ମିନ୍ ବ୍ୟଙ୍ଗ୍ୟବ୍ୟଞ୍ଜକଭାବେ ଯତ୍ନାଦବଧୀତ ।

୩୮ । ରସ-ଭାବ-ତଦାଭାସରୂପେ ହି ବ୍ୟଙ୍ଗ୍ୟେ ତଦ୍‌ବ୍ୟଞ୍ଜକେଷୁ ଚ ଯଥାମତନିର୍ଦ୍ଦିଷ୍ଟେଷୁ ବର୍ଣ୍ଣପଦବାକ୍ୟରଚନା-

---

କାବ୍ୟାର୍ଥର ନୂତନତା ସମ୍ପାଦିତ ହୁଏ । ମାତ୍ର ତାହା ଗ୍ରନ୍ଥ ବିସ୍ତର ଭୟରୁ ଲେଖାଯାଉ ନାହିଁ, ସହୃଦୟମାନେ ନିଜେ ନିଜେ ତର୍କଣାକରି ତାହା ଜାଣିପାରିବେ ।

୩୫ । ବାରମ୍ବାର କୁହାଯାଇଥିଲେ ମଧ୍ୟ ସାର (ନିର୍ଯାସ) ରୂପରେ ଏଠାରେ ଏହା କୁହାଯାଉଛି ଯେ—

୩୬ । ଏହି ବ୍ୟଙ୍ଗ୍ୟ ବ୍ୟଞ୍ଜକଭାବ ବହୁପ୍ରକାର (ଅନନ୍ତ ପ୍ରକାର) ସମ୍ଭବ ହେଲେ ମଧ୍ୟ କବି କେବଳ ରସାଦି ରୂପ ଧ୍ୱନିରେ ଦୃଷ୍ଟିଦେବା ଉଚିତ ।

୩୭ । (ବୃତ୍ତିର ଅର୍ଥ) ଅନନ୍ତ ଅର୍ଥର ହେତୁ ଚମତ୍କାରକାରୀ (ବିଚିତ୍ର) ଏହି ବ୍ୟଙ୍ଗ୍ୟବ୍ୟଞ୍ଜକଭାବ ସମ୍ଭବ ହେଲେ ମଧ୍ୟ କବି, କବିତ୍ୱ ଖ୍ୟାତିଲାଭ ପାଇଁ (ଅପୂର୍ବ ଲାଭାର୍ଥେ) ଏକମାତ୍ର ରସାଦି ରୂପ ବ୍ୟଙ୍ଗ୍ୟ ବ୍ୟଞ୍ଜକଭାବରେ ଯତ୍ନପୂର୍ବକ ଅବହିତ ହେବେ ।

(ଅର୍ଥାତ୍ କବି ବସ୍ତୁ ଅଲଂକାର ବ୍ୟଙ୍ଗ୍ୟ ଅପେକ୍ଷା ରସବ୍ୟଙ୍ଗ୍ୟ ପ୍ରତି ବିଶେଷ ଧ୍ୟାନ ଦେବା ଆବଶ୍ୟକ) ।

୩୮ । ରସଭାବ ତଦାଭାସ ରୂପବ୍ୟଙ୍ଗ୍ୟ ଓ ସେମାନଙ୍କ ବ୍ୟଞ୍ଜକ. ଯାହା ସବୁ ଯଥାମତ ଦର୍ଶାଇଅଛୁଁ, ତାହାର ବର୍ଣ୍ଣଗତ, ପଦଗତ, ବାକ୍ୟଗତ,

ପ୍ରବନ୍ଧେଷ୍ୱବହୃତମନସଃ କବେଃ ସର୍ବମପୂର୍ବଂ କାବ୍ୟଂ ସମ୍ପଦ୍ୟତେ ।

୩୯ । ତଥା ଚ ରାମାୟଣମହାଭାରତାଦଷୁ ସଂଗ୍ରାମାଦୟଃ ପୁନଃ ପୁନରଭିହିତା ଅପି ନବନବାଃ ପ୍ରକାଶନ୍ତେ ।

୪୦ । ପ୍ରବନ୍ଧେ ଚାଙ୍ଗୀ ରସ ଏକ ଏବୋପନିବଧ୍ୟମାନୋଽର୍ଥ-ବିଶେଷଲାଭଂ ଛାୟାତିଶୟଂ ଚ ପୁଷ୍ଣାତି । କସ୍ମିନ୍ନି-ବେତି ଚେତ୍ ଯଥା – ରାମାୟଣେ, ଯଥା ବା — ମହା-ଭାରତେ ।

୪୧ । ରାମାୟଣେ ହି କରୁଣୋ ରସଃ ସ୍ୱୟମାଦିକବିନାଽଽ-ସୂତ୍ରିତଃ "ଶୋକଃ ଶ୍ଳୋକତ୍ୱମାଗତଃ" ଇତ୍ୟେବଂ-ବାଦିନା । ନିର୍ବ୍ୟୂଢ଼ଶ୍ଚ ସ ଏବ ସୀତାତ୍ୟନ୍ତବିୟୋଗ ପର୍ଯ୍ୟନ୍ତମେବ ସ୍ୱପ୍ରବନ୍ଧମୁପରଚୟତା ।

---

ରଚନାଗତ ଓ ପ୍ରବନ୍ଧଗତ ଭେଦମାନଙ୍କରେ ଯତ୍ନ ପୂର୍ବକ ଦୃଷ୍ଟି ଦେଉଥିବା କବିର ରଚନା ନିଶ୍ଚୟ ନିତ୍ୟ ନୂତନ ହୋଇ ଶୋଭାପାଏ ।

୩୯ । ଉଦାହରଣ ସ୍ୱରୂପ ରାମାୟଣ ମହାଭାରତ ପ୍ରଭୃତିରେ ଯୁଦ୍ଧ-ପ୍ରଭୃତି ବାରଂବାର ବର୍ଣ୍ଣିତ ହୋଇଥିଲେ ମଧ୍ୟ ତାହା ନୂଆ ନୂଆ ହୋଇ ପ୍ରତୀତ ହୁଅନ୍ତି ।

୪୦ । ପ୍ରବନ୍ଧରେ ଗୋଟିଏ ମାତ୍ର ଅଙ୍ଗୀରସ ନିବେଶ କରାଯାଇ ଥିଲେ, ତାହା ଅର୍ଥ ପୁଷ୍ଟି କରେ ଓ ଶୋଭାତିଶୟ ସମ୍ପାଦନ କରେ । ତାହାର ଉଦାହରଣ—ଯଥା—ରାମାୟଣ ବା ମହାଭାରତରେ ।

୪୧ । ରାମାୟଣରେ "ଶୋକଟି ଶ୍ଳୋକରେ ପରିଣତ ହେଲା" ବୋଲି କହୁଥିବା ସ୍ୱୟଂ ଆଦିକବି ବାଲ୍ମୀକି କରୁଣ ରସକୁ ମାଳ ମଧ୍ୟରେ ସୂତ୍ରପରି ଗୁନ୍ଥି ଛନ୍ତି । ସୀତାଙ୍କର ଆତ୍ୟନ୍ତିକ ବିଚ୍ଛେଦ ପର୍ଯ୍ୟନ୍ତ ଗ୍ରନ୍ଥଟିକୁ ରଚନା କରିବା ଦ୍ୱାରା ଉକ୍ତ କରୁଣରସ ତାଙ୍କ ରଚନାରେ ପୂର୍ଣ୍ଣତା ଲାଭ କରିଅଛି ।

୪୨ । ମହାଭାରତେଽପି ଶାସ୍ତ୍ର-କାବ୍ୟରୂପ-ଚ୍ଛାୟାନ୍ୱୟିନି, ବୃଷ୍ଣି-
ପାଣ୍ଡବବିରସାବସାନ-ବୈମନସ୍ୟଦାୟିନୀଂ ସମାପ୍ତି-
ମୁପନିବଧ୍ନତା ମହାମୁନିନା ବୈରାଗ୍ୟଜନନତାତ୍ପର୍ଯ୍ୟଂ
ପ୍ରାଧାନ୍ୟେନ ସ୍ୱପ୍ରବନ୍ଧସ୍ୟ ଦର୍ଶୟତା ମୋକ୍ଷଲକ୍ଷଣଃ
ପୁରୁଷାର୍ଥଃ, ଶାନ୍ତୋରସଶ୍ଚ ମୁଖ୍ୟତୟା ବିବକ୍ଷାବିଷୟ-
ତ୍ୱେନ ସୂଚିତଃ ।

୪୩ । ଏତଚ୍ଚାଂଶେନ ବିବୃତମେବାନ୍ୟୈ ର୍ବ୍ୟାଖ୍ୟା ବିଧାୟିଭିଃ ।

୪୪ । ସ୍ୱୟଂ ଚୈତଦୁଦ୍ଗୀର୍ଣ୍ଣଂ ତେନୋଦୀର୍ଣ୍ଣମହାମୋହମଗ୍ନମୁଜ୍ଜି-
ହୀର୍ଷତା ଲୋକମତିବିମଲଜ୍ଞାନାଲୋକଦାୟିନା
ଲୋକନାଥେନ—

୪୫ । "ଯଥା ଯଥା ବିପର୍ଯ୍ୟେତି ଲୋକତନ୍ତ୍ରମସାରବତ୍,
ତଥା ତଥା ବିରାଗୋଽତ୍ର ଜାୟତେ ନାତ୍ର ସଂଶୟଃ ।"
ଇତ୍ୟାଦି ବହୁଶଃ କଥୟତା ।

---

୪୨ । ପାତଞ୍ଜଳାଦି ଶାସ୍ତ୍ର ଓ ରାମାୟଣାଦି କାବ୍ୟର ଶୋଭାକୁ ଧାରଣ କରିଥିବା ମହାଭାରତରେ ମଧ୍ୟ ଯାଦବ ଓ ପାଣ୍ଡବମାନଙ୍କର ଅବସାନ ପର୍ଯ୍ୟନ୍ତ ବର୍ଣ୍ଣନା ଦ୍ୱାରା ଦୁଃଖଦାୟିନୀ ସମାପ୍ତି ନିବନ୍ଧନ କରିଥିବାରୁ, ମହାମୁନି ବ୍ୟାସଦେବ ପ୍ରଧାନତଃ ସ୍ୱପ୍ରବନ୍ଧର ତାତ୍ପର୍ଯ୍ୟ ବୈରାଗ୍ୟ ଏବଂ ମୋକ୍ଷ ହେଉଛି ପ୍ରଧାନ ପୁରୁଷାର୍ଥ, ପୁନଶ୍ଚ ଶାନ୍ତ ହେଉଛି ପ୍ରଧାନ ରସ, ଏହା ତାଙ୍କର ଅଭିପ୍ରାୟ ବୋଲି ସୂଚାଇ ଅଛନ୍ତି ।

୪୩ । ଅନ୍ୟ ବ୍ୟାଖ୍ୟାକର୍ତ୍ତାମାନେ ମଧ୍ୟ ଏକାଂଶରେ ଏହାର ସୂଚନା ଦେଇଅଛନ୍ତି ।

୪୪ । ଅତି ଉତ୍କଟ ମହାମୋହାନ୍ଧକାରରେ ମଗ୍ନ ଲୋକମାନଙ୍କୁ ଉଦ୍ଧାର କରିବା ଇଚ୍ଛାରେ ଅତି ଉଜ୍ଜ୍ୱଳ ଜ୍ଞାନାଲୋକ ପ୍ରଦାନ କରିଥିବା ଲୋକନାଥ ବେଦବ୍ୟାସ ମଧ୍ୟ ସ୍ୱୟଂ ପ୍ରକାଶ କରିଛନ୍ତି, ଯଥା—

୪୫ । "ଲୌକିକ କାର୍ଯ୍ୟାବଳୀ ଯେତିକି ଯେତିକି ନିଃସାର ରୂପେ ପର୍ଯ୍ୟବସିତ ହେବ ତହିଁରେ ଲୋକର ସେତିକି ସେତିକି ବୈରାଗ୍ୟ ଜାତ ହେବ । ଏଥିରେ ସନ୍ଦେହ ନାହିଁ ।"

ଏହିପରି ଅନେକ ଉକ୍ତି ବ୍ୟାସଦେବ ପ୍ରକାଶ କରିଛନ୍ତି ।

୪୬ । ତତଶ୍ଚ ଶାନ୍ତୋରସୋ ରସାନ୍ତରୈଃ, ମୋକ୍ଷଲକ୍ଷଣଃ ପୁରୁଷାର୍ଥଃ, ପୁରୁଷାର୍ଥାନ୍ତରୈସ୍ତଦୁପସର୍ଜ୍ଜନତ୍ୱେନାନୁଗମ୍ୟମାନୋଽଙ୍ଗିତ୍ୱେନ ବିବକ୍ଷାବିଷୟ ଇତି ମହାଭାରତତାତ୍ପର୍ଯ୍ୟଂ ସୁବ୍ୟକ୍ତମେବାବଭାସତେ ।

୪୭ । ଅଙ୍ଗାଙ୍ଗିଭାବଶ୍ଚ ଯଥା ରସାନାଂ, ତଥା ପ୍ରତିପାଦିତମେବ ।

୪୮ । ପାରମାର୍ଥିକାନ୍ତସ୍ତତ୍ତ୍ୱାନପେକ୍ଷୟା ଶରୀରସ୍ୟେବାଙ୍ଗଭୂତସ୍ୟ ରସସ୍ୟ ପୁରୁଷାର୍ଥସ୍ୟ ଚ ସ୍ୱପ୍ରାଧାନ୍ୟେନ ଚାରୁତ୍ୱମପ୍ୟବିରୁଦ୍ଧମ୍ ।

୪୯ । ନନୁ, ମହାଭାରତେ ଯାବାନ୍ ବିବକ୍ଷାବିଷୟଃ, ସୋଽନୁକ୍ରମଣ୍ୟାଂ ସର୍ବ ଏବାନୁକ୍ରାନ୍ତୋ, ନ ଚୈତତ୍ତତ୍ର ଦୃଶ୍ୟତେ, ପ୍ରତ୍ୟୁତ ସର୍ବପୁରୁଷାର୍ଥପ୍ରବୋଧ

---

୪୬ । ତେଣୁ ମହାଭାରତରେ ଶାନ୍ତରସ ମୁଖ୍ୟ, ଅନ୍ୟ ରସମାନେ ଅଙ୍ଗରୂପେ ଅନୁଗତ । ମୋକ୍ଷ ପୁରୁଷାର୍ଥ ପ୍ରଧାନ, ଅନ୍ୟ ପୁରୁଷାର୍ଥମାନେ ତାର ପୋଷକ । ଏହିପରି ମୋକ୍ଷ ଲଭର ଅନୁକୂଳ ଶାନ୍ତରସ ପ୍ରକାଶ କରିବା ବ୍ୟାସଦେବଙ୍କର ଅଭିଳଷିତ, ଏହାଂ ମହାଭାରତର ତାତ୍ପର୍ଯ୍ୟ ବୋଲି ଜଣାଯାଏ ।

୪୭ । ରସମାନଙ୍କର ପରସ୍ପର ମଧ୍ୟରେ ଯେପରି ଅଙ୍ଗାଙ୍ଗିଭାବ ହୁଏ, ତାହା ପୂର୍ବରୁ ପ୍ରତିପାଦିତ ହୋଇଅଛି ।

୪୮ । ଯେପରି ପାରମାର୍ଥିକ ଜ୍ଞାନହୀନ ମୂଢ଼ଲୋକେ ଆତ୍ମାର ସ୍ୱରୂପ ଜାଣି ନ ପାରି ଶରୀରରେ ଆତ୍ମବୁଦ୍ଧି କରନ୍ତି, ସେହିପରି ତତ୍ତ୍ୱଜ୍ଞାନହୀନ ଲୋକେ ମହାଭାରତର ପ୍ରଧାନ ରସ ଶାନ୍ତରସକୁ ଜାଣି ନ ପାରି, ତାହାର ଅନୁଗତ ବୀରାଦିରସ ଓ ଧର୍ମ, ଅର୍ଥପ୍ରଭୃତି ଗୌଣପୁରୁଷାର୍ଥକୁ ପ୍ରଧାନ ବୋଲି ମନେକରନ୍ତି । ଏହା ବିରୁଦ୍ଧ ନୁହେ ।

୪୯ । ପ୍ରଶ୍ନ—ମହାଭାରତରେ ଯାହା କିଛି ବର୍ଣ୍ଣିତ ହୋଇଅଛି, ତାହା ଆରମ୍ଭ (ଅନୁକ୍ରମଣୀ)ରେ କୁହାଯାଇ ଅଛି । ମାତ୍ର ଏହି ବିଷୟ

ହେତୁତ୍ୱଂ ସର୍ବରସଗର୍ଭିତ୍ୱଂ ଚ, ମହାଭାରତସ୍ୟ ତସ୍ମିନ୍ ଦେଶେ ସ୍ୱଶବ୍ଦାନବେଦ୍ୟତ୍ୱେନ ପ୍ରତୀୟତେ ।

୫୦ । ଅତ୍ରୋଚ୍ୟତେ—ସତ୍ୟଂ ଶାନ୍ତସ୍ୟୈବ ରସସ୍ୟାଙ୍ଗିତ୍ୱଂ ମହାଭାରତେ ମୋକ୍ଷସ୍ୟ ଚ ସର୍ବପୁରୁଷାର୍ଥେଭ୍ୟଃ ପ୍ରାଧାନ୍ୟଂ, ଇତ୍ୟେତନ୍ନ ସ୍ୱଶବ୍ଦାଭିଧେୟତ୍ୱେନାନୁକ୍ରମଣ୍ୟାଂ ଦର୍ଶିତଂ, ଦର୍ଶିତଂ ତୁ ବ୍ୟଙ୍ଗ୍ୟତ୍ୱେନ ।

୫୧ । "ଭଗବାନ୍ ବାସୁଦେବଶ୍ଚ କୀର୍ତ୍ତ୍ୟତେଽତ୍ର ସନାତନଃ" ଇତ୍ୟେତସ୍ମିନ୍ ବାକ୍ୟେ ହ୍ୟୟମର୍ଥୋ ବ୍ୟଙ୍ଗ୍ୟତ୍ୱେନ ବିବକ୍ଷିତୋ ଯଦତ୍ର ମହାଭାରତେ ପାଣ୍ଡବାଦିଚରିତଂ ଯତ୍ କୀର୍ତ୍ତ୍ୟତେ, ତତ୍ସର୍ବଂ ତସ୍ମିନ୍ନେବ ପରମେଶ୍ୱରେ ଭଗବତି ଭବତ ଭାବିତଚେତସୋ ମାଭୂତ ବିଭୂତିଷୁ

ତହିଁରେ ଦେଖାଯାଏ ନାହିଁ । ଓଲଟି ସେହି ଗ୍ରନ୍ଥରେ ସମସ୍ତ ପୁରୁଷାର୍ଥ ଉତ୍କୃଷ୍ଟ ଓ ସମସ୍ତ ରସ ଗର୍ଭିତ ହୋଇଅଛୁ ବୋଲି ଉକ୍ତ ଅନୁକ୍ରମଣୀରେ ଶବ୍ଦ ଦ୍ୱାରା ପ୍ରକାଶିତ ହୋଇଅଛି ।

୫୦ । ଉତ୍ତର—ମହାଭାରତରେ ଶାନ୍ତରସ ଅଙ୍ଗୀ, ମୋକ୍ଷ ଅନ୍ୟ ପୁରୁଷାର୍ଥଙ୍କଠାରୁ ପ୍ରଧାନ, ଏହା ଅନୁକ୍ରମଣୀରେ ଶବ୍ଦ ଦ୍ୱାରା ସ୍ପଷ୍ଟଭାବେ ଲେଖାଯାଇ ନାହିଁ ସତ, କିନ୍ତୁ ବ୍ୟଙ୍ଗ୍ୟ ମୁଦ୍ରାରେ ପ୍ରଦର୍ଶିତ ହୋଇଅଛି ।

୫୧ । ଏହି ମହାଭାରତରେ ନିତ୍ୟପୁରୁଷ ଭଗବାନ୍ ବାସୁଦେବ ପ୍ରକୀର୍ତ୍ତିତ ହୋଇଛନ୍ତି ବୋଲି ଯାହା କୁହାଯାଇଛି ତହିଁରେ ବ୍ୟଙ୍ଗ୍ୟଭାବେ ଏହି ଅର୍ଥ ବିବକ୍ଷିତ ହୋଇଅଛି ଯେ—"ଏଥିରେ ପାଣ୍ଡବାଦିଙ୍କର ଯାହା କିଛି ବୃତ୍ତାନ୍ତ ବର୍ଣ୍ଣିତ ଅଛି, ତାହାସବୁ ଯେଉଁ ତହିଁରୁ (ତସ୍ମାତ୍) ସେହି ପରମାତ୍ମା ବାସୁଦେବଙ୍କଠାରେ ଚିତ୍ତ ସମର୍ପଣ କର । ଅସାର ବିଭୂତିରେ ଅନୁରକ୍ତ ହୁଅ ନାହିଁ, କିମ୍ବା କେବଳ ନୀତି-ବିନୟ-ପରାକ୍ରମାଦି ଗୁଣମାନଙ୍କରେ ମଧ୍ୟ ନିବିଷ୍ଟ ହୁଅ ନାହିଁ । ଆଉ ପୁଣି ନିଜର ଆଖିଆଗରେ ସଂସାରର ନିଃସାରତା ଦେଖ ।" ପାଣ୍ଡବାଦିଙ୍କର ବର୍ଣ୍ଣିତ ଚରିତ ଏହି ଅର୍ଥକୁ ସ୍ପଷ୍ଟତଃ (ବ୍ୟଙ୍ଗଭାବେ) ପ୍ରକାଶ କରୁଅଛି ।

ନିଃସାରସ୍ଥ ଗଗିଣୋ, ଗୁଣେହ୍ ବା ନୟବିନୟପରା-
କ୍ରମାଦିଷ୍ୱମୀଷ୍ କେବଳେଷ୍ଟୁ କେହ୍ନଚିତ୍ ସର୍ବାତ୍ମନା
ପ୍ରତିନିବିଷ୍ଟଧିୟଃ, ତଥାଗୃରେ ପଶ୍ୟତ, ନିଃସାରଣଂ
ସଂସାରସ୍ୟ ଇତ୍ୟମୁମେବାର୍ଥଂ ଦ୍ୟୋତୟତ୍ ସ୍ଫୁଟ-
ମେବାବଭାସତେ । ବ୍ୟଞ୍ଜକ ଶକ୍ତ୍ୟାଽନୁଗୃହୀତଃ ଚ ଶବ୍ଦଃ ।
ଏବଂବିଧମେବ ଗୃର୍ଥଂ ଗର୍ଭୀକୃତଂ ସନ୍ଦର୍ଶୟନ୍ତୋଽ-
ନନ୍ତରଶ୍ଳୋକା ଲକ୍ଷ୍ୟନ୍ତେ—"ସହି ସତ୍ୟମ୍"
ଇତ୍ୟାଦୟଃ ।

୫୬ । ଅୟଂ ଚ ନିଗୂଢରମଣୀୟୋଽଥୋ ମହାଭାରତା-
ବସାନେ ହରିବଂଶବର୍ଣ୍ଣନେନ ସମାପ୍ତିଂ ବିଦଧତା
କବିବେଧସା କୃଷ୍ଣଦ୍ୱୈପାୟନେନ ସମ୍ୟକ୍ ସ୍ଫୁଟୀକୃତଃ ।

---

"ଭଗବାନ୍ ବାସୁଦେବଶ୍ଚ" ଶ୍ଳୋକର ଚ ଶବ୍ଦ ଏହି ଅର୍ଥର ବ୍ୟଞ୍ଜକ ଅଟେ । ଏହି ଶ୍ଳୋକର ପରବର୍ତ୍ତୀ "ସହି ସତ୍ୟଂ" ଇତ୍ୟାଦି ଶ୍ଳୋକ-ମାନଙ୍କରୁ "ଚ" ଶବ୍ଦରେ ଏହି ଅର୍ଥ ଗର୍ଭୀକୃତ ହୋଇଥିଲା ଭଳି ଦେଖାଯାଏ । ଯଥା—

ଭଗବାନ୍ ବାସୁଦେବଶ୍ଚ କୀର୍ତ୍ତ୍ୟତେଽତ୍ର ସନାତନଃ ।
ସହି ସତ୍ୟଂ ଋତଂ ଚୈବ ପବିତ୍ରଂ ପୁଣ୍ୟମେବ ଚ ॥
ଶାଶ୍ୱତଂ ବ୍ରହ୍ମ ପରମଂ ଧ୍ରୁବଂ ଜ୍ୟୋତିଃ ସନାତନମ୍ ।
ଯସ୍ୟ ଦିବ୍ୟାନି କର୍ମାଣି କଥୟନ୍ତି ମନୀଷିଣଃ ॥

ଅର୍ଥ—ସେହି ଭଗବାନ୍ ଶ୍ରୀକୃଷ୍ଣ ସତ୍ୟ, ଋତ, ପବିତ୍ର, ପୁଣ୍ୟ, ନିତ୍ୟ, ପରମବ୍ରହ୍ମ, ଧ୍ରୁବ ନିତ୍ୟଜ୍ୟୋତିଃ, ମନୀଷୀମାନେ ତାଙ୍କର ଦିବ୍ୟ-ଚେଷ୍ଟା ବର୍ଣ୍ଣନା କରିଥାନ୍ତି ।

୫୬ । ଏହି ଅତ୍ୟନ୍ତ ଗୂଢ଼ ଓ ରମଣୀୟ ଅର୍ଥକୁ କବି ପ୍ରଜାପତି ବ୍ୟାସଦେବ ମହାଭାରତ ଶେଷରେ ହରିବଂଶ ବର୍ଣ୍ଣନ କରି ଗ୍ରନ୍ଥ ସମାପ୍ତି କରିଥିବା ଦ୍ୱାରା ସ୍ପଷ୍ଟଭାବେ ପ୍ରତିପାଦନ କରିଛନ୍ତି ।

୫୩ । ଅନେନ ଗ୍ରନ୍ଥେନ ସଂସାରଗତେ ତତ୍ତ୍ୱାନ୍ତରେ ଭକ୍ତ୍ୟ- ଭଣସ୍ୱଂ ପ୍ରବର୍ତ୍ତୟତା ସକଳ ଏବ ସାଂସାରିକୋ ବ୍ୟବହାରଃ ପୂର୍ବପକ୍ଷୀକୃତୋ ଅଧ୍ୟୟେଣ ପ୍ରକାଶତେ ।

୫୪ । ଦେବତା-ତୀର୍ଥ-ତପଃପ୍ରଭୃତୀନାଂ ଚ ପ୍ରଭାବାଭଣସ୍ୟ ବର୍ଣ୍ଣନଂ, ତସ୍ୟୈବ ପରବ୍ରହ୍ମଣଃ ପ୍ରାପ୍ତ୍ୟୁପାୟତ୍ୱେନ ତତ୍ତଦ୍ ବିଭୂତତ୍ୱେନୈବ ବା ଦେବତା ବିଶେଷାଣା- ମନ୍ୟେଷାଂ, ପାଣ୍ଡବାଦ ଚରିତବର୍ଣ୍ଣନସ୍ୟାପି ବୈରାଗ୍ୟ- ଜନକତାପୂର୍ଯ୍ୟାତ୍, ବୈରାଗ୍ୟସ୍ୟ ଚ ମୋକ୍ଷମୂଳତ୍ୱାତ୍, ମୋକ୍ଷସ୍ୟ ଚ ଭଗବତ୍ପ୍ରାପ୍ତ୍ୟୁପାୟତ୍ୱେନ ମୁଖ୍ୟତୟା ଗୀତାଦଷୁ ପ୍ରଦର୍ଶିତତ୍ୱାତ୍ ପରବ୍ରହ୍ମପ୍ରାପ୍ତ୍ୟୁପାୟତ୍ୱମେବ ।

---

୫୩ । ଏହି ଶାସ୍ତ୍ରରେ (ସାଂସାରିକ ବସ୍ତୁରେ ଅରୁଚି ଉତ୍ପାଦନ ପୂର୍ବକ) ସଂସାରଗତ ପରଂବ୍ରହ୍ମରୂପ ତତ୍ତ୍ୱବସ୍ତୁରେ ଅତ୍ୟନ୍ତ ଭକ୍ତି ଉତ୍ପାଦନ କରାଇବା ଦ୍ୱାରା ପ୍ରତ୍ୟକ୍ଷତଃ ସଂସାରିକ ବ୍ୟବହାରକୁ ପୂର୍ବପକ୍ଷ ରୂପରେ ବର୍ଜନ ଯୋଗ୍ୟ ବୋଲି ପ୍ରକାଶ କରିଅଛନ୍ତି ।

୫୪ । ସେହି ପରଂବ୍ରହ୍ମଙ୍କ ପ୍ରାପ୍ତିର ଉପାୟ (ସାଧନ) ହୋଇଥିବା ହେତୁରୁ ଦେବତା, ତୀର୍ଥ, ଗୃହସ୍ଥାଶ୍ରମାଦି ତପସ୍ୟାପ୍ରଭୃତିର ଅତ୍ୟନ୍ତ ପ୍ରଭାବ ବର୍ଣ୍ଣିତ ହୋଇଅଛି । ଉକ୍ତ ଦେବତା ଓ ତୀର୍ଥପ୍ରଭୃତି ଉକ୍ତ ପରଂବ୍ରହ୍ମଙ୍କର ଭିନ୍ନ ଭିନ୍ନ ପ୍ରକାର ବିଭୂତି ଅଟେ ।

ଯଥା —ଗୀତାରେ—

ଯଦ୍ ଯଦ୍ ବିଭୂତି ମତ୍ସତ୍ତ୍ୱଂ ଶ୍ରୀମଦୂର୍ଜିତମେବ ବା,<br>
ତତ୍ତ୍ୱ ଦେବାଗଚ୍ଛ ତ୍ୱଂ ମମ ତେଜୋଂଽଶ ସମ୍ଭବମ୍ ।

ପାଣ୍ଡବାଦଙ୍କ ଚରିତ ବର୍ଣ୍ଣନର ତାତ୍ପର୍ଯ୍ୟ ହେଉଛି ବୈରାଗ୍ୟ ଉତ୍ପତ୍ତି । (ଏତେ ବଡ଼ ଶକ୍ତି, ସାଧନା ଓ ବିଭୂତିର ପରିଣତି ବୃଥା, ଏଣୁ ବୈରାଗ୍ୟ), ପୁନଶ୍ଚ ଏହି ବୈରାଗ୍ୟ ହେଉଛି ମୋକ୍ଷ ଲାଭର କାରଣ, ଏବଂ ଏହି ମୋକ୍ଷ ଭଗବାନଙ୍କୁ ପାଇବାର ପ୍ରକୃଷ୍ଟ ଉପାୟ ବୋଲି ଗୀତା-

୫୫ । ପରମ୍ପରୟା ବାସୁଦେବସଂଜ୍ଞାଭିଧେୟତ୍ୱେନ ଶ୍ରୁତପର-
ମିତ ଶକ୍ତ୍ୟାସ୍ପଦଂ ପରଂବ୍ରହ୍ମ ଗୀତାଦନ୍ତ୍ରଦେଶାନ୍ତରେଷୁ
ତଦଭିଧାନତ୍ୱେନ ଲବ୍ଧପ୍ରସିଦ୍ଧିମାଥୁରପ୍ରାଦୁର୍ଭାବାନୁ-
କୃତ-ସକଳସ୍ୱରୂପଶଂସି ରୂପଂ ବିବକ୍ଷିତମ୍, ନ ତୁ
ମାଥୁରପ୍ରାଦୁର୍ଭାବାଂଶ ଏବ ସନାତନ ଶବ୍ଦ
ବିଶେଷିତତ୍ୱାତ ।

୫୬ । ରାମାୟଣାଦଷୁ ରଘୁନନ୍ଦନସଂଜ୍ଞୟା ଭଗବନ୍ମୂର୍ତ୍ତ୍ୟନ୍ତରେ
ବ୍ୟବହାର ଦର୍ଶନାତ୍ ।

---

ପ୍ରଶ୍ନୋତ୍ତରେ ପ୍ରଦର୍ଶିତ ହୋଇଅଛି । ଅତଏବ ପାଣ୍ଡବାଦଙ୍କ ଚରିତ ପରମ୍ପରା
କ୍ରମେ ପରଂବ୍ରହ୍ମ ପ୍ରାପ୍ତିର ଉପାୟ (କାରଣ) ଅଟେ ।

୫୫ । "ଭଗବାନ୍ ବାସୁଦେବଶ୍ଚ କୀର୍ତ୍ତ୍ୟତେଽତ୍ର ସନାତନଃ" ଏଥିରେ
ଯେଉଁ ବାସୁଦେବ ଶବ୍ଦ ରହିଅଛି, ତାହା ବିଶେଷଣ ସନାତନ ଶବ୍ଦ ସାହା-
ଚର୍ଯ୍ୟରୁ କେବଳ ମଥୁରାଜାତ ବସୁଦେବ ପୁତ୍ର ଶ୍ରୀକୃଷ୍ଣ ମାତ୍ରଙ୍କୁ ବୁଝାଉ ନାହିଁ.
କିନ୍ତୁ ଶାସ୍ତ୍ର ପରମ୍ପରା ପ୍ରସିଦ୍ଧି ଅନୁସାରେ ଅପରିମିତ ଶକ୍ତିର କେନ୍ଦ୍ରସ୍ଥଳ
ଗୀତାଦି ଶାସ୍ତ୍ରରେ ସୁପ୍ରସିଦ୍ଧ ଏବଂ ରାମ, ନୃସିଂହାଦି ଅଶେଷ ଅବତାରରୂପରେ
ଆଧାର ପରଂବ୍ରହ୍ମଙ୍କୁ ବୁଝାଉଅଛି ।

(ପରଂବ୍ରହ୍ମଙ୍କ ବିଷୟ ବର୍ଣ୍ଣିତ ହୋଇଥିବାରୁ ମହାଭାରତର ମୁଖ୍ୟ
ପ୍ରୟୋଜନ ମୋକ୍ଷ) ।

୫୬ । (ବସୁଦେବଙ୍କ ପୁତ୍ରରୂପେ ଜାତ ହେବା ପୂର୍ବରୁ ମଧ୍ୟ ଭଗବାନ-
ଙ୍କର ବାସୁଦେବ ସଂଜ୍ଞା ରହିଅଛି । ଯଥା—)

ଆଉ ମଧ୍ୟ (ମହାଭାରତଠାରୁ ପ୍ରାଚୀନ) ରାମାୟଣାଦି ଗ୍ରନ୍ଥରେ
ଭଗବାନଙ୍କର ଅନ୍ୟମୂର୍ତ୍ତି ରାମଚନ୍ଦ୍ରାଦିଙ୍କଠାରେ ମଧ୍ୟ ଏହି ବାସୁଦେବ ସଂଜ୍ଞା
ବ୍ୟବହୃତ ହୋଇଅଛି ।

ରାମାୟଣ ବାଳକାଣ୍ଡ—ସ° ୪୦

"ଯସ୍ୟେୟଂ ବସୁଧା କୃତ୍ସ୍ନା ବାସୁଦେବସ୍ୟ ଧୀମତଃ ।
ମହିଷୀ ମାଧବସ୍ୟୈଷା ସ ଏବ ଭଗବାନ୍ ପ୍ରଭୁଃ ॥"

୫୭ । ନିର୍ଣ୍ଣୀତଶ୍ଚାୟମଂଶଃ ଶବ୍ଦତତ୍ତ୍ୱବିଦ୍ଭିରେବ ।

୫୮ । ତଦେବମନୁକ୍ରମଣୀନିର୍ଦ୍ଦିଷ୍ଟେନ ବାକ୍ୟେନ ଭଗବଦ୍‌ବ୍ୟତିରେକିଣଃ ସର୍ବସ୍ୟାନ୍ୟସ୍ୟ ଅନିତ୍ୟତାଂ ପ୍ରକାଶୟତା ମୋକ୍ଷଲକ୍ଷଣ ଏବୈକଃ ପରଃ ପୁରୁଷାର୍ଥଃ ଶାସ୍ତ୍ରନୟେ, କାବ୍ୟନୟେ ଚ ତୃଷ୍ଣାକ୍ଷୟସୁଖପରିପୋଷଲକ୍ଷଣଃ ଶାନ୍ତୋରସୋ ମହାଭାରତସ୍ୟାଙ୍ଗିତ୍ୱେନ ବିବକ୍ଷିତ ଇତି ସୁପ୍ରତିପାଦିତମ୍ ।

୫୯ । ଅତ୍ୟନ୍ତ ସାର ଭୂତତ୍ୱାତ୍ ଚାୟମର୍ଥୋ ବ୍ୟଙ୍ଗ୍ୟତ୍ୱେନୈବ ଦର୍ଶିତୋ ନ ତୁ ବାଚ୍ୟତ୍ୱେନ । ସାରଭୂତୋ ହ୍ୟର୍ଥଃ

---

୫୭ । ଶବ୍ଦତତ୍ତ୍ୱବିତ୍ ବୈୟାକରଣମାନେ ଏହି ବିଷୟକୁ ନିର୍ଣ୍ଣୟ କରିଅଛନ୍ତି ।

(ବୈୟାକରଣଙ୍କ ମତରେ ଶବ୍ଦ ନିତ୍ୟ, ତାହା କାକତାଳୀୟ ନ୍ୟାୟରେ ଭିନ୍ନ ଭିନ୍ନ ସଂଜ୍ଞାରୂପେ ବ୍ୟବହୃତ ହୁଏ, ତେଣୁ ଏଠାରେ ନିତ୍ୟ ବାସୁଦେବ ଶବ୍ଦ ଶ୍ରୀକୃଷ୍ଣ ରାମଚନ୍ଦ୍ରାଦିଙ୍କଠାରେ ସଂଜ୍ଞାରୂପେ ପ୍ରବର୍ତ୍ତିଛି) ।

୫୮ । ସୁତରାଂ ଉକ୍ତ ଅନୁକ୍ରମଣୀ ନିର୍ଦ୍ଦେଶ ଅନୁସାରେ ଭଗବାନ୍‌ଙ୍କ ଛଡ଼ା ଅନ୍ୟ ସମସ୍ତ ଅନିତ୍ୟ ବୋଲି ମହାଭାରତ ପ୍ରତିପାଦନ କରୁଅଛି ଏବଂ ଶାସ୍ତ୍ର ମତରେ ଏକମାତ୍ର ପରମପୁରୁଷାର୍ଥ ମୋକ୍ଷ ଓ କାବ୍ୟ ମତରେ ତୃଷ୍ଣାକ୍ଷୟ ରୂପକ ସୁଖର ପରିପୋଷ, ଯାହା କି ଶାନ୍ତରସ ନାମରେ ପରିଚିତ ତାହାହିଁ ମହାଭାରତର ଅଙ୍ଗୀ, ଅନ୍ୟ ବୀରାଦିରସ ଅଙ୍ଗ ବୋଲି ମଧ୍ୟ ପ୍ରତିପାଦିତ ହୋଇଅଛି ।

୫୯ । ଏହି ବିଷୟ ଅତ୍ୟନ୍ତ ସାର (ପରମ ରମଣୀୟ ଗୂଢ଼ତତ୍ତ୍ୱ) ହୋଇ ଥିବାରୁ ବାଚ୍ୟରୂପେ ପ୍ରଦର୍ଶିତ ନ ହୋଇ ବ୍ୟଙ୍ଗ୍ୟରୂପେ ପ୍ରଦର୍ଶିତ

ସ୍ୱଶବ୍ଦାନଭିଧେୟତ୍ୱେନ ପ୍ରକାଶିତଃ ସୁତରାମେବ ଶୋଭାମାବହନ୍ତି ।

୬୦ । ପ୍ରସିଦ୍ଧିଶ୍ଚେୟମସ୍ତ୍ୟେବ ବିଦଗ୍ଧବିଦ୍ୱତ୍‌ପରିଷତ୍ସୁ ଯଦଭିମତତରଂ ବସ୍ତୁ ବ୍ୟଙ୍ଗ୍ୟତ୍ୱେନ ପ୍ରକାଶ୍ୟତେ, ନ ସାକ୍ଷାଚ୍ଛବ୍ଦବାଚ୍ୟତ୍ୱେନୈବ ।

୬୧ । ତସ୍ମାତ୍ ସ୍ଥିତମେତତ୍—ଅଙ୍ଗିଭୂତରସାଦ୍ୟାଶ୍ରୟେଣ କାବ୍ୟେ କ୍ରିୟମାଣେ ନବନବାର୍ଥଲାଭୋ ଭବତି, ବନ୍ଧଚ୍ଛାୟା ଚ ମହତୀ ସମ୍ପଦ୍ୟତେ ।

୬୨ । ଅତଏବ ଚ ରସାନୁଗୁଣାର୍ଥବିଶେଷୋପନିବନ୍ଧନମଲଂକାରାନ୍ତରବିରହେଽପି ଛାୟାତିଶୟଯୋଗି ଲକ୍ଷ୍ୟେ ଦୃଶ୍ୟତେ ।

---

ହୋଇଅଛି । କାରଣ ସାରଭୂତ ଅର୍ଥ ସ୍ୱଶବ୍ଦରେ ପ୍ରକାଶିତ ନ ହୋଇ ବ୍ୟଞ୍ଜନା ବୃତ୍ତି ଦ୍ୱାରା ପ୍ରକାଶିତ ହେଲେ ଅଧିକ ସୌନ୍ଦର୍ଯ୍ୟ ବହନ କରେ ।

୬୦ । ପ୍ରସିଦ୍ଧ ପଣ୍ଡିତଗୋଷ୍ଠୀରେ ପ୍ରସିଦ୍ଧି ଅଛି ଯେ—ଅତ୍ୟନ୍ତ ଅଭିମତ ବସ୍ତୁକୁ ବ୍ୟଙ୍ଗ୍ୟଭାବେ ପ୍ରକାଶ କରିବାକୁ ହେବ, କିନ୍ତୁ ସାକ୍ଷାତ୍ ଶବ୍ଦରେ ବାଚ୍ୟରୂପେ ପ୍ରକାଶ କରିବାକୁ ହେବ ନାହିଁ ।

୬୧ । ତେଣୁ ଏହା ନିର୍ଣ୍ଣୀତ ହୋଇଅଛି ଯେ ଗୋଟିଏ ରସକୁ ଅଙ୍ଗୀରୂପେ ଗ୍ରହଣ କରି, ସେହି ଅଙ୍ଗୀରସର ଆଶ୍ରୟରେ କାବ୍ୟ ରଚନା କଲେ ବର୍ଣ୍ଣନୀୟ ବିଷୟବସ୍ତୁର ନୂତନତା ଓ କାବ୍ୟର ଅତ୍ୟନ୍ତ ଶୋଭା ସମ୍ପାଦିତ ହୁଏ ।

୬୨ । ଅତଏବ କାବ୍ୟ (ଲକ୍ଷ୍ୟସ୍ଥଳ)ରେ ବର୍ଣ୍ଣନୀୟ ରସର ପରିପୁଷ୍ଟିସାଧନ କରୁଥିବା ବିଷୟ ବସ୍ତୁ (ଅର୍ଥ)ର ବର୍ଣ୍ଣନା ମଧ୍ୟରେ କୌଣସି ଅଳଂକାର ବିଶେଷ ନ ଥିଲେ ମଧ୍ୟ ଉକ୍ତ ରସପୋଷକ ବର୍ଣ୍ଣନା ଦ୍ୱାରା କାବ୍ୟର ଶୋଭା ଅତ୍ୟନ୍ତ ବୃଦ୍ଧିପ୍ରାପ୍ତ ହୋଇଥାଏ ।

୭୩ । ଯଥା—

"ମୁନିଜର୍ଯ୍ୟତି ଯୋଗୀନ୍ଦ୍ରୋ ମହାତ୍ମା କୁମ୍ଭସମ୍ଭବଃ
ଯେନୈକ-ଚୂଲକେ ଦୃଷ୍ଟୌ ଦିବ୍ୟୌ ତୌ ମତ୍ସ୍ୟକଚ୍ଛପୌ ।"
ଇତ୍ୟାଦୌ

୭୪ । ଅତ୍ରାଦ୍ଭୁତରସାନୁଗୁଣମେକଚୂଲକେ ମତ୍ସ୍ୟ-କଚ୍ଛପ-
ଦର୍ଶନଂ ଛାୟାତିଶୟଂ ପୁଷ୍ଣାତି ।

୭୫ । ଅତ୍ରୈକଚୂଲକେ ଜଲଧିସନ୍ନିଧାନାଦପି ଦିବ୍ୟମତ୍ସ୍ୟ-
କଚ୍ଛପଦର୍ଶନମକ୍ଷୁଣ୍ଣତ୍ୱାଦଦ୍ଭୁତରସାନୁଗୁଣତରମ୍ ।

୭୬ । କ୍ଷୁଣ୍ଣଂ ହି ବସ୍ତୁ ଲୋକପ୍ରସିଦ୍ଧ୍ୟାଦ୍ଭୁତମପି ନାଶ୍ଚର୍ଯ୍ୟକାରି
ଭବତି ।

---

୭୩ । ଏହାର ଉଦାହରଣ ଯଥା—

ଯୋଗିଶ୍ରେଷ୍ଠ କୁମ୍ଭଜାତ ମହାତ୍ମା ଅଗସ୍ତ୍ୟମୁନିଙ୍କର ଜୟ, ଯେ କି (ସମୁଦ୍ର ଶୋଷିବା ସମୟରେ) ଏକା ଚଳୁରେ ସେହି ଦିବ୍ୟ (ଅତି ବିଶାଳ) ମତ୍ସ୍ୟ ଓ କଚ୍ଛପ ଦୁହିଁଙ୍କୁ ଦେଖିଥିଲେ ।

୭୪ । ଏହା ଅଦ୍ଭୁତରସର ରଚନା । ଏଥିରେ ଏକା ଚଳୁକେ ମତ୍ସ୍ୟ କଚ୍ଛପଙ୍କ ଦର୍ଶନ ଅଧିକ ଆଶ୍ଚର୍ଯ୍ୟଜନକ ହୋଇ ରଚନାର ଅନୁଗୁଣ ହୋଇ-ଅଛି ଏବଂ କାବ୍ୟର ଶୋଭାକୁ ବର୍ଦ୍ଧନ କରିଅଛି ।

୭୫ । ଏ ପଦ୍ୟରେ ଏକା ଚଳୁକେ ସଂପୂର୍ଣ୍ଣ ସମୁଦ୍ର ସମାଇବା ଆଶ୍ଚର୍ଯ୍ୟର କଥା, ତାହା ଅପେକ୍ଷା ଉକ୍ତ ଜଳ ମଧ୍ୟରେ ଏକାବେଳେ ଦିବ୍ୟ ମତ୍ସ୍ୟ କଚ୍ଛପ (ଅବତାର ଦ୍ୱୟ) ଦୁହିଙ୍କୁ ଦେଖିବା ଲୋକ କଳ୍ପନାରୁ ଅତୀତ ହୋଇଥିବାରୁ ଆହୁରି ଅଧିକ ଆଶ୍ଚର୍ଯ୍ୟକର । ଏଣୁ ଅଦ୍ଭୁତରସର ପୋଷକ ।

୭୬ । ଯେଉଁ ବିଷୟ ପିଷ୍ଟପେଷଣ ନ୍ୟାୟରେ ବହୁବାର ଶୁଣ ଯାଇଥାଏ (କ୍ଷୁଣ୍ଣ-ଅର୍ଥ, ଘସରା), ତାହା ଆଶ୍ଚର୍ଯ୍ୟକର ହେଲେ ମଧ୍ୟ ଲୋକଙ୍କୁ ଆଶ୍ଚର୍ଯ୍ୟାନ୍ୱିତ କରିପାରେ ନାହିଁ ।

୬୭ । ନଗ୍ନ୍ୟୁସ୍ତୁଂ ବସ୍ତୂପନବଧ୍ୟମାନମଭ୍ଧୂତରସସୈ୍ୟବାନ-
ଗୁଣଂ, ଯାବଦ୍ ରସାନ୍ତରସ୍ୟାଽପି ।

୬୮ । ତଦ୍ ଯଥା—ସିଜ୍ଜଇ ରୋମଞ୍ଚିଜ୍ଜଇ ବେବଇ
ରଚ୍ଛାତୁଲଗ୍ଗପଡ଼ିଲଗୋ ।
ସୋ ମାସୋ ଅଜ୍ଜ ବି ସୁହଅ !
ତୀଇ କେଣସି ବୋଲୀଣୋ ॥
(ସ୍ୱିଦ୍ୟତି ରୋମାଞ୍ଚତି ବେପତେ
ରଥ୍ୟା-ତୁଲାଗ୍ର ପ୍ରତିଲଗ୍ନଃ ।
ସ ପାର୍ଶ୍ୱୋଽଦ୍ୟାପି ସୁଭଗ !
ତସ୍ୟା ଯେନାସ୍ୟତିଗତଃ) ॥ ଇତ୍ୟଚ୍ଛାୟା ।

୬୯ । ଏତଦ୍‌ଗାଥାର୍ଥାତ୍ ଭାବ୍ୟମାନାଦ୍ ଯା ରସପ୍ରତୀତିର୍ଭବତି,
ସା ତ୍ୱାଂ ସ୍ପୃଷ୍ଟ୍ୱା ସ୍ୱିଦ୍ୟତି ରୋମାଞ୍ଚତି ବେପତେ,

---

୬୭ । କେବଳ ଅଦ୍ଭୁତ ରସରେ ଅନନୁଭୂତ (ଅଯୁକ୍ତ) ବସ୍ତୁ ଅନୁଗୁଣ ହୁଏ ତା ନୁହେ, ଅନ୍ୟ ରସମାନଙ୍କରେ ମଧ୍ୟ ତାହା ପରିପୁଷ୍ଟି ସାଧନ କରଥାଏ ।

୬୮ । ଏହାର ଉଦାହରଣ ଯଥା—

ହେ ସୁଭଗ ! ତୁମେ ଗଳିରାସ୍ତାରେ ଆଲୁଥ୍‌କ ଭାବେ ଆମ ସଖୀଙ୍କର ଯେଉଁ ପାଖଦେଇ ଚାଲି ଯାଇଥିଲ, ତାଙ୍କର ସେହି ପାଖ (ପାର୍ଶ୍ୱ)ଟି ଏବେସୁଦ୍ଧା ତୁମ୍ଭର ସ୍ପର୍ଶପାଇଁ ଝାଳେଉଛି ରୋମାଞ୍ଚିତ ହେଉଛି ଏବଂ ଥରୁଛି । ମୋଟ ଉପରେ ତୁମ୍ଭ ସଂସର୍ଗରୁ ବର୍ତ୍ତମାନପର୍ଯ୍ୟନ୍ତ ମଧ୍ୟ ସ୍ୱେଦ ରୋମାଞ୍ଚ ଓ ବେପଥୁ ପ୍ରଭୃତି ସାତ୍ତ୍ୱିକ ଲକ୍ଷଣ ଦେଖାଯାଉଛି ।

୬୯ । ଏହି "ସ୍ୱିଦ୍ୟତି" ଇତ୍ୟାଦି ପଦ୍ୟର ଅର୍ଥରୁ ଯେଉଁ ସମ୍ଭୋଗ ଶୃଙ୍ଗାର ରସର ପ୍ରତୀତି ହେଉଅଛି, ତାହା "ତୁମ୍ଭ ସ୍ପର୍ଶରୁ ସେ ନାୟିକାର

ଇତ୍ୟେବଂବିଧାଦର୍ଥାତ୍ ପ୍ରତୀୟମାନାତ୍ମନା ମନାଗପି ନୋ ଜାୟତେ ।

୭୦ । ତାଦେବଂ ଧ୍ୱନିପ୍ରଭେଦସମାଶ୍ରୟେଣ ଯଥା କାବ୍ୟାର୍ଥାନାଂ ନବନବତ୍ୱଂ ଜାୟତେ, ତଥା ପ୍ରତିପାଦିତମ୍ ।

୭୧ । ଗୁଣୀଭୂତବ୍ୟଙ୍ଗ୍ୟସ୍ୟାପି ତ୍ରିଭେଦବ୍ୟଙ୍ଗ୍ୟାପେକ୍ଷୟା ଯେ ପ୍ରକାରାଃ, ତତ୍ ସମାଶ୍ରୟେଣାପି କାବ୍ୟବସ୍ତୂନାଂ ନବତ୍ୱଂ ଭବତ୍ୟେବ । ତତ୍ତୁ ଅତି ବିସ୍ତାରକାରୀତି ନୋଦାହୃତମ୍ । ସହୃଦୟୈଃ ସ୍ୱୟମୁତ୍ପ୍ରେକ୍ଷଣୀୟମ୍ ।

୭୨ । ଧ୍ୱନେରିତ୍ଥଂ ଗୁଣୀଭୂତବ୍ୟଙ୍ଗ୍ୟସ୍ୟ ଚ ସମାଶ୍ରୟାତ୍ ।
ନ କାବ୍ୟାର୍ଥବିରାମୋଽସ୍ତି ଯଦିସ୍ୟାତ୍ ପ୍ରତିଭାଗୁଣଃ । ୬ ।

---

ସ୍ୱେଦ, ରୋମାଞ୍ଚ ଓ କମ୍ପନ ହେଉଅଛି” ଏହିପରି ବାକ୍ୟରୁ ଠିକଏ ହେଲେ ପ୍ରତୀତ ହେଉନାହିଁ ।

୭୦ । ଅତଏବ ଧ୍ୱନିର ବସ୍ତୁ ଅଲଂକାର ଓ ରସାଦି ଭେଦ ଯୋଗୁଁ ଯେପରି କାବ୍ୟାର୍ଥର ନବନବତା ଜାତ ହୁଏ ଅର୍ଥାତ୍ କବିତା ଏକାର୍ଥକ ହୋଇଥିଲେ ମଧ୍ୟ ରଚନା ଭେଦରେ ପ୍ରାଚୀନଠାରୁ ନୂତନର ଅପୂର୍ବତା ପ୍ରକାଶପାଏ, ତାହା ପ୍ରତିପାଦନକଲୁଁ ।

୭୧ । ଉକ୍ତ ବସ୍ତୁ, ଅଲଂକାର ଓ ରସାଦି ବ୍ୟଙ୍ଗ୍ୟମାନେ ଗୁଣୀଭୂତ ହେଲେ ଗୁଣୀଭୂତ ବ୍ୟଙ୍ଗ୍ୟ ବୋଲନ୍ତି । ଉକ୍ତ ଗୁଣୀଭୂତ ବ୍ୟଙ୍ଗ୍ୟର ଯେତେ ଅବାନ୍ତର ପ୍ରଭେଦ ଅଛି, ସେ ସମସ୍ତ ପ୍ରଭେଦ ଯୋଗୁଁ ମଧ୍ୟ ପୂର୍ବୋକ୍ତ ନ୍ୟାୟରେ କାବ୍ୟ ବସ୍ତୁର ନୂତନତା ସମ୍ପାଦିତ ହୋଇପାରେ ତାହାର ଉଦାହରଣ ଦେବାକୁ ହେଲେ ଗ୍ରନ୍ଥ ଅତି ବିସ୍ତୃତ ହୋଇଯିବ । ଏଣୁ ଉଦାହରଣ ଦିଆଗଲା ନାହିଁ “ସହୃଦୟମାନେ ତାହା ନିଜେ ନିଜେ ତର୍କଣା କରିନେବେ ।

୭୨ । ଯଦି କବିର ଏହି ପ୍ରକାର କାବ୍ୟ ରଚନା କରିବାରେ ପ୍ରତିଭା (ପଟୁତା) ଥିବ, ତେବେ ଧ୍ୱନି ଓ ଗୁଣୀଭୂତ ବ୍ୟଙ୍ଗ୍ୟ ଯୋଗରେ କାବ୍ୟର

ସତ୍ସ୍ୱପି ପୁରାତନକବିପ୍ରବନ୍ଧେଷୁ ଯଦି ସ୍ୟାତ୍ ପ୍ରତିଭା-
ଗୁଣଃ । ତସ୍ମିଁସ୍ତ୍ୱସତି ନ କିଂଚିଦେବ କବେର୍ବସ୍ତ୍ୱସ୍ତି ।

୭୩ । ବନ୍ଧଚ୍ଛାୟାପ୍ୟର୍ଥଦ୍ୱୟାନୁରୂପଶବ୍ଦସନ୍ନିବେଶାର୍ଥପ୍ରତିଭାନା-
ଽଭାବେ କଥମୁପପଦ୍ୟତେ ।

୭୪ । ଅନପେକ୍ଷିତାର୍ଥବିଶେଷାକ୍ଷର-ରଚନୈବ ବନ୍ଧଚ୍ଛାୟେତି
ନେଦଂ ନେଦୀୟଃ ସହୃଦୟାନାମ୍ ।

୭୫ । ଏବଂ ହି ସତ୍ୟର୍ଥାନପେକ୍ଷଚତୁରମଧୁରବଚନରଚ-
ନାୟାମପି କାବ୍ୟବ୍ୟପଦେଶଃ ପ୍ରବର୍ତ୍ତେତ ।

---

ଅନନ୍ତ ଅର୍ଥ ସମ୍ପାଦିତ ହେବ । ସେହି ଅର୍ଥରେ ବହୁପ୍ରାଚୀନ ରଚନା ଥିଲେ ମଧ୍ୟ କବିର ପ୍ରତିଭା ଦ୍ୱାରା ନୂତନତା ଫୁଟିଉଠେ । ପ୍ରତିଭାହୀନ କବିର କିଛି ହେଲେ ନିଜସ୍ୱ ନ ଥାଏ ।

୭୩ । (ପ୍ରଶ୍ନ) ଉକ୍ତ ଧ୍ୱନି ଓ ଗୁଣୀଭୂତବ୍ୟଙ୍ଗ୍ୟ ରୂପ ଅର୍ଥଦ୍ୱୟକୁ ପ୍ରକାଶ କରିବାଭଳି ଶବ୍ଦ ଯୋଜନାରେ କବିର ପ୍ରତିଭା ନ ଥିଲେ କାବ୍ୟ ଶୋଭା କିପରି ଉପପନ୍ନ ହେବ ?

୭୪ । (ଉତ୍ତର) ଅର୍ଥର ବିଶେଷତ୍ୱ ଉପରେ ଦୃଷ୍ଟି ନ ରଖି କେବଳ ଶୁଦ୍ଧ ଅକ୍ଷର ଯୋଗ କରିବା, ଅର୍ଥାତ୍ ବ୍ୟଙ୍ଗ୍ୟାର୍ଥ ଶୂନ୍ୟକାବ୍ୟ, ସୁନ୍ଦର କାବ୍ୟ ବୋଲି କୌଣସି ସହୃଦୟଙ୍କର ମତ ନୁହେ ।

୭୫ । ଏହାପରେ ଧ୍ୱନି ଓ ଗୁଣୀଭୂତବ୍ୟଙ୍ଗ୍ୟ ବିଶିଷ୍ଟ ରଚନାକୁ କାବ୍ୟ ବୋଲି କହିବା ସ୍ଥିର ହୁଅନ୍ତେ ଅର୍ଥକୁ ଅପେକ୍ଷା ରଖି ନ ଥିବା, କେବଳ ଶ୍ରୁତି ସୁଖକର ଶବ୍ଦାବଳୀର ମଧୁର ରଚନାକୁ କାବ୍ୟ ବୋଲି ନାମ ମାତ୍ର ଦିଆଯାଏ । (ବସ୍ତୁତଃ ତାହା କାବ୍ୟ ନୁହେ) ।

୨୬ । ଶବ୍ଦାର୍ଥୟୋଃ ସାହିତ୍ୟେନ କାବ୍ୟତ୍ୱେ କଥଂ ତଥାବିଧେ
ବିଷୟେ କାବ୍ୟବ୍ୟବସ୍ଥା, ଇତ୍ୟତେତ୍ ପରୋପନିବ-
ଦ୍ଧାର୍ଥବିରଚନେ ଯଥା ତତ୍ କାବ୍ୟତ୍ୱସ୍ୟ ବ୍ୟବହାରଃ
ତଥା ତଥାବିଧାନାଂ କାବ୍ୟସନ୍ଦର୍ଭାଣାମ୍ ।

୨୭ । ନ ପ୍ରତିଭାନନ୍ତ୍ୟଂ ବ୍ୟଙ୍ଗ୍ୟାର୍ଥାପେକ୍ଷୟୈବ, ଯାବଦ୍
ବାଚ୍ୟାର୍ଥାପେକ୍ଷୟାଽପୀତି ପ୍ରତିପାଦୟିତୁମୁଚ୍ୟତେ ।

୨୮ । ଅବସ୍ଥା-ଦେଶକାଳାଦିବିଶେଷୈରପି ଜାୟତେ ।
ଆନନ୍ତ୍ୟମେବ ବାଚ୍ୟସ୍ୟ ଶୁଦ୍ଧସ୍ୟାପି ସ୍ୱଭାବତଃ । ୭ ।
ଶୁଦ୍ଧସ୍ୟାନପେକ୍ଷିତବ୍ୟଙ୍ଗ୍ୟସ୍ୟାପି ବାଚ୍ୟସ୍ୟାନନ୍ତ୍ୟମେବ
ଜାୟତେ ସ୍ୱଭାବତଃ ।

---

୨୬ । (ପ୍ରଶ୍ନ) ଶବ୍ଦ ଓ ଅର୍ଥ ଉଭୟଙ୍କର ସାହିତ୍ୟ ହେଉଛି କାବ୍ୟ, ନ୍ତେବେ, ଅର୍ଥ ରହିତ କେବଳ ଶବ୍ଦ ରଚନାକୁ କିପରି କାବ୍ୟ ବୋଲି କୁହାଯିବ ? (ଯେଣୁ ସେଥିରେ ଅର୍ଥର ସାହିତ୍ୟ ନାହିଁ) ।

(ଉତ୍ତର)—ଅନ୍ୟ ଏକ କବି ଯେଉଁ ଅର୍ଥ ଗ୍ରହଣ କରି କାବ୍ୟ ରଚନା କରିଅଛନ୍ତି, କୌଣସି ପ୍ରକାର ନବୀନତା ନ ଥିବା ସେହି ଅର୍ଥକୁ ନେଇ ରଚନା କରାଯାଇ ଥିବା ଗ୍ରନ୍ଥକୁ ଯେପରି କାବ୍ୟ ବୋଲି କୁହାଯାଏ ସେହିପରି, ଅର୍ଥରେ ଚାତୁର୍ଯ୍ୟ ନ ଥିବା କେବଳ ଶବ୍ଦ ରଚନାକୁ କାବ୍ୟ ବୋଲି କୁହାଯିବ ।

ସାର—(ପର କାବ୍ୟାର୍ଥର ଅନୁବାଦ ଓ ଅର୍ଥ ନିରପେକ୍ଷ ଶବ୍ଦ ରଚନା, ଏ ଉଭୟ କାବ୍ୟନୁହେ । ଏଭଳି ଗ୍ରନ୍ଥକୁ କାବ୍ୟ ବୋଲି କହି-ବାରେ କାବ୍ୟ ଶବ୍ଦର ବ୍ୟବହାର ଲକ୍ଷଣିକ) ।

୨୭ । କବି ପ୍ରତିଭା ବଳରୁ କେବଳ ବ୍ୟଙ୍ଗ୍ୟାର୍ଥର ଆନନ୍ତ୍ୟ ହୁଏ ନାହିଁ, ବ୍ୟଙ୍ଗ୍ୟାର୍ଥ ସମ୍ପର୍କ ଶୂନ୍ୟ ବିଶୁଦ୍ଧ ବାଚ୍ୟାର୍ଥର ମଧ୍ୟ ଅବସ୍ଥାଦି ଭେଦରୁ ଆନନ୍ତ୍ୟ ହୁଏ ତାହା ପ୍ରତିପାଦନ କରାଯାଉଛି ଯଥା—

୨୮ । ବ୍ୟଙ୍ଗ୍ୟାର୍ଥ ନିରପେକ୍ଷ ଶୁଦ୍ଧ ବାଚ୍ୟ ଅର୍ଥ ମଧ୍ୟ ଅବସ୍ଥା ବୈଶିଷ୍ଟ୍ୟ, ଦେଶ ବୈଶିଷ୍ଟ୍ୟ, ଓ କାଳ ବୈଶିଷ୍ଟ୍ୟ ପ୍ରଭୃତିରୁ ଆପଣା ସ୍ଥିଏଁ ସ୍ଥିଏଁ ଅନନ୍ତ (ଅସଂଖ୍ୟ) ହୁଏ ।

୭୯ । ସ୍ୱଭାବୋକ୍ତ୍ୟର୍ଥଂ ବାଚ୍ୟାନାଂ ଚେତନାନାମଚେତନା-
ନାଂ ଚ ଯଦବସ୍ଥାଭେଦାତ୍ ଦେଶଭେଦାତ୍ କାଳ-
ଭେଦାତ୍ ସ୍ୱାଲକ୍ଷଣ୍ୟଭେଦାଚ୍ଚ ଅନନ୍ତତା ଭବତି ।

୮୦ । ତୈଶ୍ଚ ତଥା ବ୍ୟବସ୍ଥିତୈଃ ସଦ୍ଭିଃ ପ୍ରସିଦ୍ଧାନେକ-
ସ୍ୱଭାବାନୁସରଣରୂପୟା ସ୍ୱଭାବୋକ୍ତ୍ୟାଽପି ତାବଦୁପ-
ନିବଧ୍ୟମାନୈର୍ନିରବଧିଃ କାବ୍ୟାର୍ଥଃ ସମ୍ପଦ୍ୟତେ ।

୮୧ । ତଥା ହ୍ୟବସ୍ଥାଭେଦାନ୍ନବତ୍ୱଂ ଯଥା—
ଭଗବତୀ ପାର୍ବତୀ କୁମାରସମ୍ଭବେ "ସର୍ବୋପମାଦ୍ର-
ବ୍ୟସମୁଚ୍ଚୟେନ" ଇତ୍ୟାଦିଭିରୁକ୍ତିଭିଃ ପ୍ରଥମମେବ
ପରିସମାପିତରୂପବର୍ଣ୍ଣନାଽପି ପୁନର୍ଭଗବତଃ ଶମ୍ଭୋ-
ର୍ଲୋଚନଗୋଚରମାୟାନ୍ତୀ "ବସନ୍ତପୁଷ୍ପାଭରଣଂ

୭୯ । ଚେତନ ଓ ଅଚେତନ ବସ୍ତୁ ବିଷୟକ ବାଚ୍ୟମାନଙ୍କର ଏହା ହେଉଛି ସ୍ୱଭାବ, ଯାହା କି ସେ ଅବସ୍ଥା ଦେଶ, କାଳ ଓ ସ୍ୱରୂପ (ସ୍ୱାଲକ୍ଷଣ୍ୟ) ଭେଦରେ ଅନନ୍ତପ୍ରକାର ହୁଅନ୍ତି ।

୮୦ । ଉକ୍ତ ସ୍ଥିତିରେ ବିଭିନ୍ନ ବାଚ୍ୟାର୍ଥମାନେ ସୁପ୍ରସିଦ୍ଧ ନାନାବିଧ ସ୍ୱଭାବ ଅନୁସାରେ ପ୍ରବର୍ତ୍ତିଥିବା ସ୍ୱଭାବୋକ୍ତି ଅଲଂକାର ଦ୍ୱାରା ନିବଦ୍ଧମାନ ହେଲେ ମଧ୍ୟ ଅନନ୍ତ (ନିରବଧି) ପ୍ରକାର ହୁଅନ୍ତି ।

୮୧ । ଅବସ୍ଥା ଭେଦରେ ନୂତନତା ଯଥା—

କୁମାରସମ୍ଭବ କାବ୍ୟରେ ୧ମ ସର୍ଗରେ "ସର୍ବୋପମା ଦ୍ରବ୍ୟ" ଇତ୍ୟାଦି ଶ୍ଳୋକମାନଙ୍କ ଦ୍ୱାରା ଭଗବତୀ ପାର୍ବତୀ ଦେବୀଙ୍କର ରୂପବର୍ଣ୍ଣନା କରି ଯାଇଥିଲେ ହେଁ, ପୁନଶ୍ଚ ତୃତୀୟ ସର୍ଗରେ ଯେତେବେଳେ କି ଦେବୀ ଭଗବାନ୍ ଶମ୍ଭୁଙ୍କର ନୟନଗୋଚର ହୁଅନ୍ତି ସେତେବେଳେ ତାଙ୍କୁ କାମ-

ବହନ୍ତୀ” ମନ୍ମଥୋପକରଣଭୂତେନ ଭଙ୍ଗ୍ୟନ୍ତରେ-
ଣୋପବର୍ଣ୍ଣିତା ।

୮୨ । ସୈବ ଚ ପୁନର୍ନବୋଦ୍ୱାହସମୟେ ପ୍ରସାଧ୍ୟମାନା “ତାଂ
ପ୍ରାଙ୍ମୁଖୀଂ ତତ୍ର ନିବେଶ୍ୟ ତନ୍ୱୀ” ମିତ୍ୟାଦ୍ୟୁକ୍ତିଭିର୍ନ-
ବେନୈବପ୍ରକାରେଣ ନିରୂପିତରୂପସୌଷ୍ଠବା ।

୮୩ । ନ ଚ ତେ ତସ୍ୟ କବେରେକତ୍ରୈବାସକୃତ୍କୃତା
ବର୍ଣ୍ଣନପ୍ରକାରା ପୁନରୁକ୍ତତ୍ୱେନ ବାଽନବନବାର୍ଥ-
ନିର୍ଭରତ୍ୱେନ ବା ପ୍ରତିଭାସନ୍ତେ ।

୮୪ । ଦର୍ଶିତମେବୈତଦ୍ ବିଷମବାଣଲୀଲାୟାମ୍—
ଣ ଅ ତାଣ ଘଡ଼ଇ ଓହୀ ଣ ଅ ତେ ବୀସନ୍ତି କହବି ପୁନରୁତ୍ତା,

---

ଦେବର ଉପକରଣ ରୂପରେ “ବସନ୍ତ ପୁଷ୍ପାଭରଣଂ ବହନ୍ତୀ” ଇତ୍ୟାଦି ଶ୍ଳୋକ ଦ୍ୱାରା ଭଙ୍ଗୀ ଭେଦରେ ବର୍ଣ୍ଣନା କରାଯାଇ ଅଛି ।

(ସୁତରାଂ ଏଥିରେ ବାଲ୍ୟାବସ୍ଥା ଓ ବିବାହ୍ୟାବସ୍ଥା ଭେଦଯୋଗୁଁ ରୂପବର୍ଣ୍ଣନାରେ ପୁନରୁକ୍ତ ନାହିଁ ଓଲଟି ନବରି ରହିଅଛି) ।

୮୨ । ପୁନଶ୍ଚ ସେହି ପାର୍ବତୀଙ୍କର ବିବାହ ସମୟରେ ଯେତେବେଳେ କି ସଖୀମାନେ ତାଙ୍କୁ ବିବାହୋଚିତ ବେଶ କରୁଛନ୍ତି, ସେତେବେଳେ “ତାଂ ପ୍ରାଙ୍ମୁଖୀଂ ତନ୍” ଇତ୍ୟାଦି ଶ୍ଳୋକମାନଙ୍କ ଦ୍ୱାରା ତାଙ୍କର ରୂପଲାବଣ୍ୟ ଅଭିନବ ପ୍ରକାରରେ ବର୍ଣ୍ଣିତ ହୋଇଅଛି ।

୮୩ । ଏକା କୁମାରସମ୍ଭବ କାବ୍ୟରେ କବି କାଳିଦାସଙ୍କର ବାରମ୍ବାର ଭିନ୍ନ ଭିନ୍ନ ପ୍ରକାର ପାର୍ବତୀଙ୍କ ରୂପ ବର୍ଣ୍ଣନା ପୁନରୁକ୍ତ ଭଳି କିମ୍ବା ଅନଭିନବାର୍ଥ ଦ୍ୟୋତକ ଭଳି ଜଣାଯାନ୍ତି ନାହିଁ ।

୮୪ । (ମହାକବିମାନଙ୍କ ବାଣୀରେ ପୁନରୁକ୍ତ ନ ଥିବା) ବିଷୟ ବିଷମବାଣ ଲୀଳାରେ ପ୍ରଦର୍ଶିତ ହୋଇଅଛି ଯଥା—

କେ ବିଭ୍ରମା ପ୍ରିୟାଣାଂ ଅର୍ଥା ବା ସୁକବି ବାଣୀଣାମ୍ ।
(ନୈବ ତେଷାଂ ଘଟତେଽବଧିଃ ନ ଚ ତେ ଦୃଶ୍ୟନ୍ତେ
କଥମପି ପୁନରୁକ୍ତାः । ଯେ ବିଭ୍ରମାः ପ୍ରିୟାଣାମର୍ଥବା
ସୁକବିବାଣୀନାମ୍) । ଇତିଚ୍ଛାୟା ।

୮୫ । ଅପ୍ୟସମପରସ୍ଥାବସ୍ଥାଭେଦପ୍ରକାରେ ଯଦଚେତନାନାଂ
ସର୍ବେଷାଂ ଚେତନଂ ଦ୍ୱିତୀୟଂ ରୂପମଭିମାନତ୍ୱପ୍ରସିଦ୍ଧଂ
ହିମବଦ୍‌ଗଙ୍ଗାଦୀନାମ୍ । ତଦୋଚିତଚେତନବିଷୟସ୍ୱରୂପ-
ଯୋଜନୟୋପନିବଧ୍ୟମାନମନ୍ୟଦେବ ସମ୍ପଦ୍ୟତେ ।

---

ପ୍ରିୟାମାନଙ୍କ ଉପଭୋଗକାଳକ ବିଭ୍ରମ (ବିଳାସ) କିମ୍ବା ଉତ୍ତମ
କବିମାନଙ୍କ ବାଣୀର ଅର୍ଥ, ଏ ଉଭୟଙ୍କର ସୀମା ନାହିଁ ଓ କେବେହେଲେ
ତାହା ପୁନରୁକ୍ତଭଳି ପ୍ରତୀତ ହୁଅନ୍ତି ନାହିଁ ।

(ଶ୍ରୀକୃଷ୍ଣଙ୍କ ପରି କୌଣସି ବହୁବଲ୍ଲଭ ବିଭିନ୍ନ ବଲ୍ଲଭାଙ୍କ ଉପ-
ଭୋଗରେ କାନ୍ତାମାନଙ୍କ ବିଭ୍ରମରେ ପୁନରୁକ୍ତ ଅନୁଭବ କରିପାରେ ନାହିଁ ।
ପୁନଶ୍ଚ ସଂସାରରେ ପରମ୍ପରା ପ୍ରବାହ ରୂପରେ ସ୍ତ୍ରୀମାନଙ୍କଠାରେ ବିଭ୍ରମ
ଦେଖାଯାଉଥିଲେ ମଧ୍ୟ ତାହା ପୁନରୁକ୍ତ ନୁହେ, ଯେଣୁ ସ୍ତ୍ରୀମାନେ ତାହା
ଅନ୍ୟଠାରୁ ଶିକ୍ଷାକରି ନାହାନ୍ତି । ତାହା (ବିଭ୍ରମ) ସ୍ୱାଭାବିକ ମଦନ ଭଙ୍ଗୀର
ବିକାଶ, ଏଣୁ ତାହା ନିତ୍ୟ ନୂତନ ଅଟେ । ସେହିପରି କାଳିଦାସଙ୍କ ଭଳି
ମହାକବିମାନଙ୍କ ବାଣୀ ମଧ୍ୟ) ।

୮୫ । ଅବସ୍ଥା ଭେଦର ଏହା ଆଉଗୋଟିଏ ପ୍ରକାର ଯଥା—
ହିମାଳୟ ଗଙ୍ଗାପ୍ରଭୃତିସବୁ ଅଚେତନ ବସ୍ତୁର ଅଭିମାନିରୂପେ ପ୍ରସିଦ୍ଧ
ଚେତନାରୂପ ମଧ୍ୟ ରହିଅଛି । (ଯଥା ହିମାଳୟ ପର୍ବତର ହିମାଳୟାଭିମାନୀ
ଦେବତାବିଶେଷ) । "ତେଣୁ ଅଚେତନ ବସ୍ତୁରେ ସମୁଚିତ ଚେତନାବସ୍ତୁ
ସ୍ୱରୂପ ଯୋଜନାପୂର୍ବକ ବର୍ଣ୍ଣନାକରି କାବ୍ୟ ରଚନା କଲେ କାବ୍ୟ
ଅପୂର୍ବ ରମଣୀୟ ହୁଏ ।"

୮୬ । ଯଥା କୁମାରସମ୍ଭବ ଏବ ପର୍ବତସ୍ୟ ହିମବତୋ ବର୍ଣ୍ଣନଂ, ପୁନଃ ସପ୍ତର୍ଷିପ୍ରେଷ୍ୟୋକ୍ତିଷୁ ଚେତନତତ୍‌ସ୍ୱରୂପାପେକ୍ଷୟା ପ୍ରଦର୍ଶିତଂ ତଦପୂର୍ବମେବ ପ୍ରତୀୟତେ ।

୮୭ । ପ୍ରସିଦ୍ଧଶ୍ଚାୟଂ କବୀନାଂ ମାର୍ଗଃ ।

୮୮ । ଇଦଂ ଚ ପ୍ରସ୍ଥାନଂ କବିଵ୍ୟୁତ୍ପତ୍ତୟେ ବିଷମବାଣଲୀଳାୟାଂ ସପ୍ରପଞ୍ଚଂ ଦର୍ଶିତମ୍ ।

୮୯ । ଚେତନାନାଂ ଚ ବାଲ୍ୟାଦ୍ୟବସ୍ଥାଭିରନ୍ୟତ୍ୱଂ ସତ୍‌କବୀନାଂ ପ୍ରସିଦ୍ଧମେବ ।

୯୦ । ଚେତନାନାମବସ୍ଥାଭେଦେଽପ୍ୟବାନ୍ତରାବସ୍ଥାଭେଦାନ୍ନାନାତ୍ୱମ୍ । ଯଥା କୁମାରୀଣାଂ କୁସୁମଶରଭିନ୍ନ-

---

୮୬ । ଯଥା କୁମାରସମ୍ଭବରେ—(ପ୍ରଥମ) ହିମାଳୟକୁ ପର୍ବତରୂପେ ବର୍ଣ୍ଣନା କରାଯାଇଅଛି । ପୁନଶ୍ଚ (ଷଷ୍ଠ ସର୍ଗରେ) ସପ୍ତର୍ଷିମାନଙ୍କ ସହିତ କଥୋପକଥନ ସମୟରେ ତାହାର ଚେତନ ସ୍ୱରୂପ ପ୍ରଦର୍ଶିତ ହୋଇଅଛି । ଏହାଦ୍ୱାରା ହିମାଳୟ ବର୍ଣ୍ଣନାରେ କୌଣସି ଦୋଷ ହୋଇ ନାହିଁ, କିନ୍ତୁ ଅପୂର୍ବ ଶୋଭା ବିକଶିତ ହେଉଅଛି ।

୮୭ । ସୁକବିମାନେ ଉକ୍ତ ରୀତିରେ ଅଚେତନ ବସ୍ତୁକୁ ଚେତନ ଅଚେତନ ଅବସ୍ଥା ଭେଦରେ ବର୍ଣ୍ଣନା କରିବା ସୁପ୍ରସିଦ୍ଧ ।

୮୮ । ଏହି ପ୍ରକାର ବର୍ଣ୍ଣନା ପଦ୍ଧତିକୁ ଭବିଷ୍ୟତ୍ କବିମାନଙ୍କ ଜାଣିବା ନିମନ୍ତେ ଆମ୍ଭେ ଅସ୍ମକୃତ ବିଷମବାଣଲୀଳାରେ ବିସ୍ତୃତଭାବରେ ଦର୍ଶାଇ ଅଛୁଁ ।

୮୯ । ଚେତନମାନଙ୍କର ମଧ୍ୟ ବାଲ୍ୟ ଯୌବନାଦି ଅବସ୍ଥା ଭେଦରେ ବିଭିନ୍ନତା ସତ୍‌କବିଙ୍କ ରଚନାରେ ସୁପ୍ରସିଦ୍ଧ ।

୯୦ । ଚେତନମାନଙ୍କ କୌମାରାଦି ଅବସ୍ଥାର ମଧ୍ୟ ଅବାନ୍ତର ଭେଦ ଦ୍ୱାରା ଅବସ୍ଥା ଭେଦ ବହୁପ୍ରକାର ହୁଏ । ଯଥା—ଏକମାତ୍ର କୌମାରାବସ୍ଥାରେ, କାମଶରପୀଡ଼ିତା କୁମାରୀ ଓ କାମଶର ପୀଡ଼ାରହିତା କୁମାରୀ

ହ୍ରଦସ୍ଥାନାମନ୍ୟାସାଂ ଚ । ତତ୍ରାପି ବନୀତାନାମଙ୍କନୀ-
ତାନାଂ ଚ ।

୨୧ । ଅଚେତନାନାଂ ଚ ଭାବାନାମାରମ୍ଭାଦ୍ୟବସ୍ଥାଭେଦ-
ଭିନ୍ନାନାମେକୈକଶଃ ସ୍ୱରୂପମୁପନିବଧ୍ୟମାନମାନନ୍ତ୍ୟ-
ମେବୋପଯାତି ।

୨୨ । ଯଥା—

ହଂସାନାଂ ନିନଦେଷୁ ଯୈଃ କବଳିତୈ ରାସଜ୍ୟତେ କୂଜତା-
ମନ୍ୟଃ କୋଽପି କଷାୟକଣ୍ଠଲୁଠନାଦାଘର୍ଘରୋ ବିଭ୍ରମଃ ।
ତେ ସମ୍ପ୍ରତ୍ୟକଠୋରବାରଣବଧୂଦନ୍ତାଙ୍କୁରସ୍ପର୍ଦ୍ଧିନୋ
ନିର୍ଯାତାଃ କମଳାକରେଷୁ ବିସିନୀକନ୍ଦାଗ୍ରିମ ଗ୍ରନ୍ଥୟଃ ।

୨୩ । ଏବମନ୍ୟତ୍ରାପି ଦଶାନ୍ତରାନୁସର୍ତ୍ତବ୍ୟମ୍ ।

---

ଇତ୍ୟାଦି । ସେଥିରେ ପୁଣି ଏ ପ୍ରତ୍ୟେକେ ବନୀତା କିମ୍ବା ଅବନୀତା, ଇତ୍ୟାଦି ପ୍ରକାରେ ଚେତନମାନଙ୍କର ଅବସ୍ଥାଭେଦ ବହୁପ୍ରକାର ।

୨୧ । ଅଚେତନ ବସ୍ତୁମାନଙ୍କର ମଧ୍ୟ ଆରମ୍ଭାଦି ଭେଦରେ ବିଭିନ୍ନ ଅବସ୍ଥା ହୁଏ । ପ୍ରତ୍ୟେକ ବସ୍ତୁର ସେହିଭଳି ଅବସ୍ଥା ଭେଦରେ ସ୍ୱରୂପ ଉଲ୍ଲେଖ କଲେ ତାହା ଅନନ୍ତ ପ୍ରକାର ହେବ ।

୨୨ । ଯଥା—(ପଦ୍ମନାଡ଼ର ଗଣ୍ଠି ଅବସ୍ଥା ବର୍ଣ୍ଣନା) ।

ଯାହାକୁ ଖାଇବାରେ ଶବ୍ଦ କରୁଥିବା ହଂସମାନଙ୍କର କଣ୍ଠ କଷାୟିତ ହେବାରୁ ତହିଁରୁ ଅପୂର୍ବ ଘର୍ଘରଶବ୍ଦ ଉତ୍ଥିତ ହୁଏ; ପଦ୍ମର ସେହି ପ୍ରାଥମିକ ଗଣ୍ଠିଗୁଡ଼ିକ ବର୍ତ୍ତମାନ ପିଲାଳିଆ ହସ୍ତିନୀମାନଙ୍କ ଗଜଦନ୍ତ ସହିତ ସ୍ପର୍ଦ୍ଧା କରି ପୋଖରୀମାନଙ୍କରେ ଗଜୁରୁଛି (ଆବିର୍ଭୂତ ହେଉଛି) ।

ଏଠାରେ ପଦ୍ମଗଛର ଆରମ୍ଭାବସ୍ଥା ବର୍ଣ୍ଣନା କରାଯାଉଅଛି ।

୨୩ । ଅନ୍ୟ ସ୍ଥଳମାନଙ୍କରେ ମଧ୍ୟ ଏହି ନ୍ୟାୟରେ ଆରମ୍ଭ, ମଧ୍ୟ ଓ ଅବସାନାଦି ଅବସ୍ଥା ଭେଦରେ ବିଭିନ୍ନତା ହୁଏ ବୋଲି ମନେ କରିବାକୁ ହେବ ।

୯୪ । ଦେଶଭେଦାନ୍ନାନାତ୍ୱମଚେତନାନାଂ ତାବତ୍ । ଯଥା—
ବାୟୂନାଂ ନାନାଦଗ୍‌ଦେଶଗତ୍ୱେଣାମନ୍ୟେଷାମପି
ସଲିଳକୁସୁମାଦୀନାଂ ପ୍ରସିଦ୍ଧମେବ ।

୯୫ । ଚେତନାନାମପି ମାନୁଷପଶୁପକ୍ଷିପ୍ରଭୃତୀନାଂ ଗ୍ରାମାରଣ୍ୟ-
ସଲ୍ଲାଦସମ୍ବେଧିତାନାଂ ପରସ୍ପରଂ ମହାନ୍ ବିଶେଷଃ
ସମୁପଲକ୍ଷ୍ୟତ ଏବ । ସ ଚ ବିଵେଚ୍ୟ ଯଥାଯଥମୁପ-
ନିବଧ୍ୟମାନସ୍ତଥୈବାନନ୍ତ୍ୟମାପ୍ନୋତି ।

୯୬ । ତଥାହି ମାନୁଷାଣାମେବ ତାବଦ୍ଦିଗ୍‌ଦେଶାଦିଭିନ୍ନାନାଂ
ତୈଃ ବ୍ୟବହାର ବ୍ୟାପାରାଦିଷୁ ବିଚିତ୍ରା ବିଶେଷାସ୍ତେଷାଂ
କେନାନ୍ତଃ ଶକ୍ୟତେ ଗନ୍ତୁମ୍ । ବିଶେଷତୋ ଯୋଷିତାମ୍ ।
ଉପନିବଧ୍ୟତେ ଚ ତତ୍‌ସର୍ବମେବ ସୁକବିଭିର୍ଯଥା
ପ୍ରତିଭମ୍ ।

---

୯୪ । ଦେଶ ଭେଦରେ ଅଚେତନମାନଙ୍କର ଭିନ୍ନତା ଯଥା—ବାୟୁର ନାନାଦିଗରୁ ନାନାଦେଶ ଦେଇ ପ୍ରବାହିତ ହେବାରେ ନାନା ପ୍ରଭେଦ କଳ୍ପନା କରାଯାଇପାରେ । ପୁଷ୍ପମାନଙ୍କର ମଧ୍ୟ ବୃକ୍ଷପୁଷ୍ପ, ଜଳପୁଷ୍ପଇତ୍ୟାଦି ଭେଦରେ ଭିନ୍ନତା ଅଛି ।

୯୫ । ଚେତନମାନଙ୍କର ମଧ୍ୟ ମନୁଷ୍ୟ, ପଶୁ, ପକ୍ଷୀ, ଇତ୍ୟାଦି ଭେଦ ଓ ସେମାନଙ୍କର ମଧ୍ୟ ପ୍ରତ୍ୟେକରେ ଗ୍ରାମ୍ୟ, ଆରଣ୍ୟ ଜଳୀୟ ଇତ୍ୟାଦି ଭେଦରେ ପରସ୍ପରଠାରୁ ଅତ୍ୟନ୍ତ ବୈଶିଷ୍ଟ୍ୟ (ଭିନ୍ନତା) ଦେଖାଯାଏ । ତାହାସବୁ ବିବେଚନାପୂର୍ବକ ଯଥାଯଥଭାବେ ବର୍ଣ୍ଣିତ ହେଲେ ପୂର୍ବାପର ଅନନ୍ତପ୍ରକାର ହୁଏ ।

୯୬ । ଯଥା—ପ୍ରଥମତଃ ମନୁଷ୍ୟମାନେ ଦିଗଦେଶାଦି ଭେଦରେ ବିଭିନ୍ନ, ସେମାନେ ମଧ୍ୟ ପ୍ରତ୍ୟେକେ ବିଭିନ୍ନ ବ୍ୟବହାର ଯୋଗରୁ ପରସ୍ପର-ଠାରୁ ବିଭିନ୍ନ; ଏସବୁ ପ୍ରଭେଦ ଏତେ ଅଧିକ ଯେ ଏହାକୁ କିଏ ବା ଗଣି ପାରିବ । ବିଶେଷତଃ ସ୍ତ୍ରୀମାନଙ୍କର ପ୍ରଭେଦ ବେଶୀ । ଏହାକୁ ସୁକବିମାନେ ସେମାନଙ୍କ ପ୍ରତିଭାବଳରେ ପ୍ରତିପାଦନ କରିଥାନ୍ତି ।

୯୭ । କାଲଭେଦାଚ୍ଚ ନାନାତ୍ୱମ୍ । ଯଥର୍ତ୍ତୁଭେଦାଦ୍ କ୍ଷ୍ମା-ବ୍ୟୋମସଲିଳାଦୀନାମଚେତନାନାମ୍ । ଚେତନାନାଂ ଚୌତ୍ସୁକ୍ୟାଦୟଃ କାଲବିଶେଷାଶ୍ରୟିଣଃ ପ୍ରସିଦ୍ଧା ଏବ ।

୯୮ । ସ୍ୱାଲକ୍ଷଣ୍ୟପ୍ରଭେଦାଚ୍ଚ ସକଳଜଗଦ୍‌ଗତାନାଂ ବସ୍ତୂନାଂ ବିନିବନ୍ଧନଂ ପ୍ରସିଦ୍ଧମେବ । ତଚ୍ଚ ଯଥାବସ୍ଥିତାମପି ତାବଦୁପନିବଧ୍ୟମାନମନନ୍ତତାମେବ କାବ୍ୟାର୍ଥସ୍ୟାପାଦୟତି ।

୯୯ । ଅତ୍ର କେଚିଦାଚକ୍ଷୀରନ୍—ଯଥା ସାମାନ୍ୟାତ୍ମନା ବସ୍ତୂନି ବାଚ୍ୟତାଂ ପ୍ରତିପଦ୍ୟନ୍ତେ ନ ବିଶେଷାତ୍ମନା । ତାନି ହି ସ୍ୱୟମନୁଭୂତାନାଂ ସୁଖାଦୀନାଂ ତନ୍ନିମିତ୍ତାନାଂଚ ସ୍ୱରୂପ-

---

୯୭ । କାଲଭେଦରୁ ନାନାତ୍ୱ ଯଥା—ଋତୁ, ଆକାଶ, ଜଳ ପ୍ରଭୃତି ଅଚେତନମାନଙ୍କର ବସନ୍ତାଦି ଋତୁ ଭେଦରେ ଭିନ୍ନତା ହୁଏ । ଚେତନମାନଙ୍କର ମଧ୍ୟ କାଲବିଶେଷବଶତଃ ଔତ୍ସୁକ୍ୟାଦି ବ୍ୟାପାର ଜାତ ହୁଏ, ତେଣୁ ଏକବ୍ୟକ୍ତି ମଧ୍ୟ ସେ ସେ ଅବସ୍ଥା ଯୋଗୁଁ ବିଭିନ୍ନ । ଏହା ସୁପ୍ରସିଦ୍ଧ ।

୯୮ । ସ୍ୱରୂପଭେଦ (ସ୍ୱାଲକ୍ଷଣ୍ୟଭେଦ)ରୁ ମଧ୍ୟ ଜଗତର ସମସ୍ତ ବସ୍ତୁକୁ ଭିନ୍ନ ଭିନ୍ନ ଭାବେ ବର୍ଣ୍ଣନା କରିବା ବିଧେୟ । ତାହା ମଧ୍ୟ ଅବସ୍ଥା ଭେଦରେ ବିଭିନ୍ନ ହୋଇ ବର୍ଣ୍ଣିତ ହେବା ଦ୍ୱାରା କାବ୍ୟାର୍ଥ ଅନନ୍ତ ପ୍ରକାର ହୁଏ ।

୯୯ । (ଅବସ୍ଥାଦି ବୈଚିତ୍ର୍ୟରୁ କାବ୍ୟାର୍ଥର ଅନନ୍ତ ଭେଦ ପରିକଳ୍ପନାକୁ ଯେଉଁମାନେ ସ୍ୱୀକାର ନ କରନ୍ତି ସେମାନଙ୍କ ମତ ଉଲ୍ଲେଖ କରି-ଖଣ୍ଡନ କରାଯାଉଅଛି । ଯଥା—)

(ପୂର୍ବପକ୍ଷ) :—ବାଚ୍ୟାର୍ଥର ଆନନ୍ତ୍ୟ ସମ୍ବନ୍ଧେ କେତେକ କହି-ପାରନ୍ତି ଯଥା—ବସ୍ତୁଗୁଡ଼ିକ ସାମାନ୍ୟଭାବେ ବାଚ୍ୟ ହୁଅନ୍ତି କିନ୍ତୁ ଅବସ୍ଥା ଦେଶକାଳାଦି ବିଶେଷ ଭାବେ ବାଚ୍ୟ ହୁଅନ୍ତି ନାହିଁ । କାରଣ କବିମାନେ

ମନ୍ୟନ୍ତ ଆରୋପୟନ୍ତି ସ୍ୱପରାନୁଭୂତରୂପସାମାନ୍ୟ ମାତ୍ରାଶ୍ରୟେଣୋପନିବଧ୍ୟନ୍ତେ କବୟଃ ।

୧୦୦ । ନହି ତୈ ରତୀତମନାଗତଂ ବର୍ତ୍ତମାନଂ ଚ ପର-ଚିତ୍ତାଦିସ୍ୱଲକ୍ଷଣଂ ଯୋଗିଭିରିବ ପ୍ରତ୍ୟକ୍ଷୀକ୍ରିୟତେ ।

୧୦୧ । ତଚ୍ଚାନୁଭାବ୍ୟାନୁଭବସାମାନ୍ୟଂ ସର୍ବପ୍ରତିପତ୍ତୃସାଧାରଣଂ ପରିମିତତ୍ୱାତ୍ ପୁରାତନାନାମେବ ଗୋଚରୀଭୂତଂ ତସ୍ୟା ବିଷୟତ୍ୱାନୁପପତ୍ତେଃ ।

୧୦୨ । ଅତଏବ ସ ପ୍ରକାରବିଶେଷୋ ଯୈରଦ୍ୟତନୈରଭି-ନବତ୍ୱେନ ପ୍ରତୀୟତେ ତେଷାମଭିମାନମାତ୍ରମେବ ଭଣିତିକୃତଂ ବୈଚିତ୍ର୍ୟମତ୍ରାସ୍ତୀତି ।

---

ନିଜର ଅନୁଭବରେ ଆସୁଥିବା ସୁଖାଦିର ହେତୁ ଚନ୍ଦ୍ର ଚନ୍ଦନ ଆଦି ଅଖିଳବସ୍ତୁର ସ୍ୱରୂପକୁ ଅନ୍ୟସମ୍ବନ୍ଧରେ ଆରୋପ କରନ୍ତି । ସୁତରାଂ ସେମାନେ ସ୍ୱପରସାଧାରଣାନୁଭବ ମାତ୍ରକୁ ଆଶ୍ରୟକରି ବସ୍ତୁମାନଙ୍କୁ ବର୍ଣ୍ଣନା କରୁଥାନ୍ତି ।

୧୦୦ । ପୂର୍ବପକ୍ଷ :—କବିମାନେ ବସ୍ତୁର ବିଶେଷତାକୁ ବର୍ଣ୍ଣନା କରି ନ ପାରିବାର କାରଣ ଏହା ଯେ, ସେମାନେ ଯୋଗୀମାନଙ୍କପରି ବସ୍ତୁର ଅତୀତ ଅନାଗତ ଓ ବର୍ତ୍ତମାନ ଜାଣିପାରନ୍ତି ନାହିଁ, କିମ୍ବା ପରର ଚିତ୍ତବୃତ୍ତି କଅଣ, ତାହା ପ୍ରତ୍ୟକ୍ଷ କରିପାରନ୍ତି ନାହିଁ । (ସୁତରାଂ ସେମାନେ ବସ୍ତୁମାନଙ୍କୁ ବିଶେଷଭାବେ ବର୍ଣ୍ଣନା କରି ନ ପାରି ସାମାନ୍ୟଭାବେ ବର୍ଣ୍ଣନା କରିଥାନ୍ତି) ।

୧୦୧ । ତାହା ପୁଣି, ସୁଖାଦି ଅନୁଭବ୍ୟର ସକଳ ଅନୁଭବିତାମାନଙ୍କଦ୍ୱାରା ସାଧାରଣଭାବେ ଗୃହୀତ ଯେଉଁ ଅନୁଭବ ସାମାନ୍ୟ, ତାହା ପରିମିତ ହେତୁ କେବଳ ପୁରାତନ କବି ବାଲ୍ମୀକିପ୍ରଭୃତଙ୍କ ଗୋଚରୀଭୂତ । ଏବମ୍ଭୂତ ବସ୍ତୁସାମାନ୍ୟ କାବ୍ୟରେ ବର୍ଣ୍ଣିତ ହେବା ଅନୁପପନ୍ନ ନୁହେ ।

୧୦୨ । ଅତଏବ ପୁରାତନମାନଙ୍କ ଦ୍ୱାରା ଗୃହୀତ ବସ୍ତୁମାନଙ୍କର ଯେଉଁ ପ୍ରକାର ବିଶେଷକୁ ଯେଉଁ ଆଧୁନିକ କବିମାନେ ନୂତନ ବୋଲି ଗ୍ରହଣ

୧୦୬ । ତତ୍ରୋଚ୍ୟତେ—ଯତ୍ତୂକ୍ତଂ ସାମାନ୍ୟମାତ୍ରାଶ୍ରୟେଣ କାବ୍ୟପ୍ରବୃତ୍ତିସ୍ତସ୍ୟ ଚ ପରିମିତତ୍ୱେନ ପ୍ରାଗେବ ଗୋଚରୀକୃତତ୍ୱାନ୍ନାସ୍ତି ନବତ୍ୱଂ କାବ୍ୟବସ୍ତୂନାମିତି, ତଦଯୁକ୍ତମ୍ । ଯତୋ ଯଦି ସାମାନ୍ୟମାତ୍ରମାଶ୍ରିତ୍ୟ କାବ୍ୟଂ ପ୍ରବର୍ତ୍ତତେ କିଂକୃତସ୍ତର୍ହି ମହାକବିନିବଧ୍ୟମାନାନାଂ କାବ୍ୟାର୍ଥାନାମତିଶୟଃ ।

---

କରୁଅଛନ୍ତି ଓ ସେପରି ବର୍ଣ୍ଣନାରେ ଉକ୍ତିର ବିଚିତ୍ରତା ରହିଅଛି ବୋଲି ଭାବନ୍ତି, ତାହା ସେହି ଆଧୁନିକ କବିମାନଙ୍କର ବୃଥା ଅଭିମାନ ମାତ୍ର ।"

ପ୍ରତିବାଦର ସାରମର୍ମ :—(କବିମାନେ ଯୋଗୀମାନଙ୍କପରି ତ୍ରିକାଳଜ୍ଞ ନୁହନ୍ତି ବା ପରଚିତ୍ତ ଜାଣି ପାରନ୍ତି ନାହିଁ, ତେଣୁ ସେମାନେ ନିଜ ନିଜର ଅନୁଭବ ଅନୁସାରେ ଯେଉଁ ବସ୍ତୁର ସ୍ୱରୂପ ଯାହା ଜାଣିଥାନ୍ତି ତାହା ସାମାନ୍ୟତଃ ବର୍ଣ୍ଣନା କରିଥାନ୍ତି, କିନ୍ତୁ ବିଶେଷଭାବେ ବର୍ଣ୍ଣନା କରି ପାରନ୍ତି ନାହିଁ । ତେଣୁ ବସ୍ତୁମାନଙ୍କର ଅବସ୍ଥାଦି ବୈଶିଷ୍ଟ୍ୟରୁ ଆନନ୍ତ୍ୟ କିଭଳି ସମ୍ଭବ ହେବ ?)

୧୦୬ । ଉକ୍ତ ପୂର୍ବ ପକ୍ଷର ଉତ୍ତର ଯଥା—

ତୁମ୍ଭେ ପ୍ରତିବାଦୀ ଯାହା କହିଲ "ଅବସ୍ଥାଦି ବିଶେଷକୁ ଆଶ୍ରୟ ନ କରି କେବଳ ସାମାନ୍ୟ ମାତ୍ରକୁ ଆଶ୍ରୟ କରି କାବ୍ୟ ପ୍ରବର୍ତ୍ତେ, ପୁନଶ୍ଚ ଏହି କାବ୍ୟବସ୍ତୁ ପରିମିତ ହେତୁ ପୁରାତନ କବି ବାଲ୍ମୀକି ପ୍ରଭୃତିଙ୍କର କେବଳ ଅନୁଭୂତିର ବିଷୟ, ସୁତରାଂ ଚର୍ବିତ ଚର୍ବଣ ନ୍ୟାୟରେ ଏପରି ପୁନରୁକ୍ତ କାବ୍ୟବସ୍ତୁରେ କିଛିହେଲେ ନୂତନତା ନାହିଁ ବୋଲି, ତାହା ଅଯୁକ୍ତ (ଠିକ୍‌ନୁହେ), କାରଣ ଯଦି କେବଳ ସାମାନ୍ୟକୁ ଆଶ୍ରୟ କରି କାବ୍ୟ ପ୍ରବର୍ତ୍ତୁଥାନ୍ତା (ନିର୍ମିତ ହେଉଥାନ୍ତା) ତେବେ (କାଳିଦାସାଦି) ମହାକବିମାନଙ୍କ ଦ୍ୱାରା ନିବଧ୍ୟମାନ ମହାକାବ୍ୟମାନଙ୍କରେ ଉତ୍କର୍ଷ ଅନୁଭୂତ ହୁଅନ୍ତା ନାହିଁ । ଭାବ-କାବ୍ୟବସ୍ତୁର ଅବସ୍ଥାଦି ବୈଶିଷ୍ଟ୍ୟ ନ ଥିଲେ ନୂତନ କବିଙ୍କ ରଚିତ ମହାକାବ୍ୟାଦିରେ ଚମତ୍କାରିତା ରହିପାରନ୍ତା ନାହିଁ, ଏଣୁ କାବ୍ୟବସ୍ତୁ ସାମାନ୍ୟଭାବେ ବର୍ଣ୍ଣିତ ନୁହେ ॥

୧୦୪। ବାଲ୍ମୀକି ବ୍ୟତିରିକ୍ତସ୍ୟାନ୍ୟସ୍ୟ
ସାମାନ୍ୟ ବ୍ୟତିରିକ୍ତସ୍ୟାନ୍ୟସ୍ୟ କାବ୍ୟାର୍ଥସ୍ୟାଭାବାତ୍,
ସାମାନ୍ୟସ୍ୟ ଶ୍ଚାଦିକବିନୈବ ପ୍ରଦର୍ଶିତତ୍ୱାତ୍।

୧୦୫। ଉକ୍ତ ବୈଚିତ୍ର୍ୟାନ୍ନୈଷ ଦୋଷ ଇତି ଚେତ୍ କିମିଦ-
ମୁକ୍ତବୈଚିତ୍ର୍ୟମ୍।

୧୦୬। ଉକ୍ତିର୍ହି କାବ୍ୟବିଶେଷ ପ୍ରତିପାଦକବଚନମ୍।
ତଦ୍‌ବୈଚିତ୍ର୍ୟେ କଥଂ ନ ବାଚ୍ୟବୈଚିତ୍ର୍ୟମ୍।
ବାଚ୍ୟବାଚକୟୋରବିନାଭାବେନ ପ୍ରବୃତ୍ତେଃ।

---

୧୦୪। ଏହି ମତରେ ଅର୍ଥାତ୍ କାବ୍ୟବସ୍ତୁ ସାମାନ୍ୟଭାବେ ବର୍ଣ୍ଣିତ ହୁଏ ବୋଲି ସ୍ଥିରକଲେ ବାଲ୍ମୀକିଙ୍କ ବ୍ୟତିରିକ୍ତ ଅନ୍ୟ କାହାରିକୁ କବି ବୋଲି କୁହାଯାଇ ପାରିବ ନାହିଁ। କାରଣ ସାମାନ୍ୟ ବ୍ୟତିରିକ୍ତ ଅନ୍ୟପ୍ରକାର (ବିଶେଷ) କାବ୍ୟାର୍ଥ ନାହିଁ ଓ ସେ ସାମାନ୍ୟକୁ ଆଦିକବି ବାଲ୍ମୀକି ଦର୍ଶାଇଯାଇଛନ୍ତି।

ଭାବ – ତୁମ୍ଭ ମତ ଅନୁସାରେ ନିର୍ଣ୍ଣୟ କଲେ କେବଳ ବାଲ୍ମୀକିଙ୍କ ଛଡ଼ା ଅନ୍ୟ କେହି କବି ହୋଇ ପାରିବେ ନାହିଁ। ଯେଣୁ ତୁମ୍ଭ ମତରେ ବାଲ୍ମୀକିଙ୍କ ପରବର୍ତ୍ତୀ କବିମାନେ ଚର୍ବିତ ଚର୍ବଣ ନ୍ୟାୟରେ ପୂର୍ବ ବର୍ଣ୍ଣିତ କାବ୍ୟ ବସ୍ତୁକୁ ପୁନରୁକ୍ତ କରି ବର୍ଣ୍ଣନା କରିଛନ୍ତି।

୧୦୫। ପୂର୍ବବର୍ଣ୍ଣିତ କାବ୍ୟ ବସ୍ତୁକୁ ପରବର୍ତ୍ତୀ କବିମାନେ ଉକ୍ତିର ବିଚିତ୍ରତାରେ ନୂତନ ପ୍ରାପ୍ତ କରିଅଛନ୍ତି, ଏଣୁ ଅର୍ବାଚୀନ କାବ୍ୟମାନଙ୍କରେ ମଧ୍ୟ ଚମତ୍କାରିତା ଅଛି ଓ ଅର୍ବାଚୀନ କାବ୍ୟକର୍ତ୍ତାମାନେ ମଧ୍ୟ କବି ପଦ-ବାଚ୍ୟ ହେବାରେ ଦୋଷ ନାହିଁ ବୋଲି ଯଦି କହିବ, ତେବେ ତୁମ୍ଭର ଏଭଳି ଉତ୍ତରରେ ଆମ୍ଭେ ପଚାରୁଛୁ ଯେ ଉକ୍ତିର ବିଚିତ୍ରତା କଅଣ ? ଯାହା-ଦ୍ୱାରା ପୁରାତନ କାବ୍ୟବସ୍ତୁ ନୂତନପ୍ରାପ୍ତ ହୋଇପାରେ।

୧୦୬। (ଉକ୍ତି ବୈଚିତ୍ର୍ୟର ବିବରଣ) ବାଚ୍ୟ ବିଶେଷକୁ ପ୍ରତିପାଦନ କରୁଥିବା ବଚନକୁ ଉକ୍ତି ବୋଲିଯାଏ, ଯେବେ ଉକ୍ତି (ବାଚକ)ର ବୈଚିତ୍ର୍ୟ ରହିବ ତେବେ ବାଚ୍ୟର ବୈଚିତ୍ର୍ୟ ନ ରହିବ କିପରି ? ଯେଣୁ ବାଚ୍ୟ ଓ ବାଚକଙ୍କର ଅବିନାଭାବ ସମ୍ବନ୍ଧ ରହିଅଛି। (ଉଭୟ ଉଭୟକୁ ଛାଡ଼ିଦେଇ ରହି ନ ପାରିଲେ ଅବିନାଭାବ ସମ୍ବନ୍ଧ ଅଛି ବୋଲି ଜାଣିବାକୁ ହେବ)।

୧୦୭ । ବାଚ୍ୟାନାଂ ଚ କାବ୍ୟେ ପ୍ରତିଭାସମାନାନାଂ ଯଦ୍ରୂପଂ ତତ୍ତୁ ଗ୍ରାହ୍ୟବିଶେଷାଭେଦେନୈବ ପ୍ରତୀୟତେ । ତେନୋକ୍ତିବୈଚିତ୍ର୍ୟବାଦିନା ବାଚ୍ୟବୈଚିତ୍ର୍ୟମନିଚ୍ଛତାଽପ୍ୟବଶ୍ୟମେବାଽଭ୍ୟୁପଗନ୍ତବ୍ୟମ୍ ।

୧୦୮ । ତଦୟମତ୍ର ସଂକ୍ଷେପଃ :—

ବାଲ୍ମୀକିବ୍ୟତିରିକ୍ତସ୍ୟ ଯଦ୍ୟେକସ୍ୟାପି କସ୍ୟଚିତ୍ ।
ଇଷ୍ୟତେ ପ୍ରତିଭାନନ୍ତ୍ୟଂ ତତ୍ତଦାନନ୍ତ୍ୟମକ୍ଷତମ୍ ॥

୧୦୯ । କିଂଚ, ଉକ୍ତିବୈଚିତ୍ର୍ୟଂ ଯତ୍ କାବ୍ୟନବତ୍ୱେ ନିବନ୍ଧନ-ମୁଚ୍ୟତେ, ତଦସ୍ମତ୍ପକ୍ଷାନୁଗୁଣମେବ । ଯତୋ ଯାବାନୟଂ କାବ୍ୟାର୍ଥାନନ୍ତ୍ୟଭେଦହେତୁଃ ପ୍ରକାରଃ ପ୍ରାଗ୍‌ଦର୍ଶିତଃ ସ ସର୍ବ ଏବ ପୁନରୁକ୍ତିବୈଚିତ୍ର୍ୟାତ୍ ଦ୍ୱିଗୁଣତାମାପଦ୍ୟତେ ।

---

୧୦୭ । କାବ୍ୟରେ ବର୍ଣ୍ଣିତ ହୋଇଥିବା ବାଚ୍ୟ (କାବ୍ୟ ବସ୍ତୁ) ମାନଙ୍କର ଯାହା କି ସ୍ୱରୂପ, ତାହା ପ୍ରତ୍ୟକ୍ଷ ଦି ପ୍ରମାଣ ଦ୍ୱାରା ଗ୍ରାହ୍ୟ ବିଶେଷର ତାଦାତ୍ମ୍ୟରେ ପ୍ରତୀତ ହୁଏ (ଅର୍ଥାତ୍ କାବ୍ୟ ବସ୍ତୁ ସାମାନ୍ୟରୂପ ନୁହେ ବିଶେଷ ରୂପ) । "ତେଣୁ ଉକ୍ତିର ବିଚିତ୍ରତାକୁ ସ୍ୱୀକାର କରୁଥିବା ପ୍ରତିବାଦୀ, ଇଚ୍ଛା ନ ଥିଲେ ହେଁ ବାଚ୍ୟର ବିଚିତ୍ରତାକୁ ସ୍ୱୀକାର କରିବାକୁ ବାଧ ।"

୧୦୮ । ବାଚ୍ୟର ଆନନ୍ତ୍ୟ ସମ୍ବନ୍ଧେ ସଂକ୍ଷେପତଃ ଏହା ଯେ, ଯଦି ବାଲ୍ମୀକିଙ୍କ ଛଡ଼ା ଅନ୍ୟ ଗୋଟିଏ ହେଲେ କବିର ପ୍ରତିଭାନନ୍ତ୍ୟ ସ୍ୱୀକାର କରିବ, ତେବେ (ସେହି ନ୍ୟାୟରେ ସମସ୍ତ ନୂତନ କବିଙ୍କର ପ୍ରତିଭାନନ୍ତ୍ୟ ପ୍ରତିପାଦିତ ହେଉଥିବା ହେତୁ) କାବ୍ୟାର୍ଥର ଆନନ୍ତ୍ୟ ଅଖଣ୍ଡିତ ହିବେ ରହିବ ।

୧୦୯ । ଆଉ ପୁଣି ଯାହା କି ଉକ୍ତି ବୈଚିତ୍ର୍ୟକୁ କାବ୍ୟର ନୂତନତାରେ ହେତୁ (ନିବନ୍ଧନ) ବୋଲି କହୁଛ, ତାହା ଅମ୍ଭ ମତର ମଧ୍ୟ ଅନୁକୂଳ । କାରଣ କାବ୍ୟର ଅନନ୍ତଭେଦ ପ୍ରତି ଯେତେ ପ୍ରକାର ହେତୁ ଆମ୍ଭେ ପୂର୍ବରୁ ଦର୍ଶାଇ ଅଛୁଁ, ସେ ସମସ୍ତ ହେତୁ ଉକ୍ତି ବୈଚିତ୍ର୍ୟର ସହଯୋଗ ପାଇଲେ ଦ୍ୱିଗୁଣ ଶୋଭା ଧାରଣ କରନ୍ତି ।

୧୧୦। ଯସ୍ମାତ୍ସ୍ମୃପମାଶ୍ଳେଷାଦିରଲଂକାରବର୍ଗଃ ପ୍ରସିଦ୍ଧଃ ସ ଭଣିତି-ବୈଚିତ୍ର୍ୟାଦୁପନିବଧ୍ୟମାନଃ ସ୍ୱୟମେବାନ-ବଧିର୍ଧତ୍ତେ ପୁନଃ ଶତଶାଖତାମ୍ ।

୧୧୧। ଭଣିତିଶ୍ଚ ସ୍ୱଭାଷାଭେଦେନ ବ୍ୟବସ୍ଥିତା ସତୀ ପ୍ରତି-ନିୟତଭାଷାଗୋଚରାର୍ଥବୈଚିତ୍ର୍ୟନିବନ୍ଧନଂ ପୁନର-ପରଂ କାବ୍ୟାର୍ଥାନାମାନନ୍ତ୍ୟମାପାଦୟତି ।

୧୧୨। ଯଥା ମମୈବ :—

ମହୁ ମହୁ ଇତି ଭଣନ୍ତ ଓ ବଜ୍ଜଦି କାଲୋ ଜଣସ୍ସ ।
ତୋଇଣ ଦେଉ ଜଣଦ୍ଦଣ ଗୋଅରୀଭୋଦି ମଣସୋ ॥

---

୧୧୦। ଯାହାଙ୍କ ଉପମା ଶ୍ଳେଷାଦି ଅଲଂକାରବର୍ଗ ସୁପ୍ରସିଦ୍ଧ ହେବେ ଚିହ୍ନିଅଛୁ, ତାହା ସ୍ୱତଃ ଅପରିମେତ, ପୁନଶ୍ଚ ଉକ୍ତି ବୈଚିତ୍ର୍ୟରେ ଉପସ୍ଥାପିତ ହେଲେ ଶହ ଶହ (ଅନନ୍ତ) ପ୍ରକାର ହୁଅନ୍ତି ।

୧୧୧। ଉକ୍ତି ମଧ କାବ୍ୟର ସଂସ୍କୃତ ପ୍ରାକୃତାଦି ଭାଷା ଭେଦରେ ବିଭିନ୍ନ । ପୁନଶ୍ଚ ତାହା ପ୍ରତି ଭାଷାରେ ଯେଉଁ ଭାଷାର ଅର୍ଥ ବିଚିତ୍ରତା ପ୍ରତି ଯାହା କାରଣ, ସେହି କାରଣମାନଙ୍କ ଦ୍ୱାରା ଅନନ୍ତ ପ୍ରକାର ହୋଇ କାବ୍ୟାର୍ଥକୁ ଅନନ୍ତ ପ୍ରକାର କରେ ।

୧୧୨। ଏହାର ଉଦାହରଣ ଯଥା—ମୋ ନିଜ ଶ୍ଳୋକ :—
ମଧୁମଥନ ମୋର, ମଧୁମଥନ ମୋର, ବୋଲି କହି କହି ଲୋକର କାଳ କଟିଯାଉଛି । ତଥାପି ମଧୁମଥନ ଜନାର୍ଦ୍ଦନ ମନର ଗୋଚର ହେଉ ନାହାନ୍ତି । ଅର୍ଥାତ୍ ହରି ମାନସ ପ୍ରତ୍ୟକ୍ଷର ବିଷୟ ହେଉ ନାହାନ୍ତି ।

(ଏଠାରେ ହରିଙ୍କୁ ଡାକିଲେ ମଧ ତାଙ୍କ ସାକ୍ଷାତ ନ ମିଳିବାରୁ ବିରୋଧାଭାସ ଅଲଂକାର । ଏ ପଦ୍ୟରେ ସୈନ୍ଧବୀଭାଷାର "ମହୁ ମହୁ" ଶବ୍ଦ ମମ ମମ ଓ ମଧୁମଥନ ଏହି ଦୁଇଟି ସଂସ୍କୃତ ଶବ୍ଦର ସ୍ଥାନୀରୂପେ ଥାଇ କାବ୍ୟଶୋଭା ବର୍ଦ୍ଧନ କରୁଅଛି) ।

**୧୧୩ । ଇତ୍ଥଂ ଯଥା ଯଥା ନିରୂପ୍ୟତେ ତଥା ତଥା ନ ଲଭ୍ୟତେଽନ୍ତଃକାବ୍ୟାର୍ଥାନାମ୍ ।**

**୧୧୪ । ଇଦଂ ତୂଚ୍ୟତେ—**

**ଅବସ୍ଥାଦି ବିଭିନ୍ନାନାଂ ବାଚ୍ୟାନାଂ ବିନିବନ୍ଧନମ୍ ।**
**ଯତ୍ ପ୍ରଦର୍ଶିତଂ ପ୍ରାକ୍**
**ଭୂମ୍ନୈବ ଦୃଶ୍ୟତେ ଲକ୍ଷ୍ୟେ ନ ତତ୍ ଶକ୍ୟମପୋହିତୁମ୍ ।**

**୧୧୫ । ତତ୍ତୁ ଭାତି ରସାଶ୍ରୟାତ୍ । ୮ ।**

**୧୧୬ । ତଦିଦମତ୍ର ସଂକ୍ଷେପେଣାଭିଧୀୟତେ ସତ୍କବୀନାମୁପଦେଶାୟ ।**

---

**୧୧୩** । ଏହିପରି ଯେତେ ଯେତେ ନିରୂପଣ କରୁଥିବ, କାବ୍ୟାର୍ଥର ସେତେ ସେତେ ଅନ୍ତ ଅକଳଣା ହେଉଥିବ । (ଅର୍ଥାତ୍ କାବ୍ୟାର୍ଥ ଅନନ୍ତ ପ୍ରକାର ହେବ) ।

**୧୧୪** । ଏଠାରେ କୁହାଯାଉଛି, ଯେ—

ଅବସ୍ଥା, ଦେଶ, କାଳାଦି ଭେଦରେ ବାଚ୍ୟାର୍ଥମାନଙ୍କର ସଂଯୋଜନ -ଯାହାକି ପୂର୍ବରୁ ପ୍ରଦର୍ଶିତ ହୋଇଅଛି, ତାହାର ଲକ୍ଷ୍ୟସ୍ଥଳ ପ୍ରଚୁର ମାତ୍ରାରେ ଦେଖାଯାଏ । ତେଣୁ ତାହାକୁ ଅସ୍ୱୀକାର କରିହେବ ନାହିଁ ।

୧୧୫ । ତାଦୃଶ ବାଚ୍ୟଯୋଜନା ରସବ୍ୟଞ୍ଜକ ହେଲେ ଆହୁରି ଅଧିକ ଶୋଭାପାଏ ।

**୧୧୬** । ବାଚ୍ୟାନନ୍ତ୍ୟରୁ କାବ୍ୟାନନ୍ତ୍ୟ ହେଉଥିବାରୁ ସତ୍କବିମାନଙ୍କୁ ଉପଦେଶ ଦେବାପାଇଁ ସଂକ୍ଷେପରେ କୁହାଯାଉଛି; ଯଥା—

(ଗୋଟିଏ ବିଷୟ ଜଣେ କବିଙ୍କ ଦ୍ୱାରା ବର୍ଣ୍ଣିତ ହୋଇଥିଲେ, ପୁନଶ୍ଚ ଆଉଜଣେ କବିଙ୍କ ଦ୍ୱାରା ତାହାର ସେହିପରି ବର୍ଣ୍ଣନା କରାଗଲେ, ଉକ୍ତ ଅର୍ବାଚୀନ କାବ୍ୟ କାହାରି ସନ୍ତୋଷ ବିଧାନ କରିପାରେ ନାହିଁ, ଏହା ସତ । କିନ୍ତୁ କାବ୍ୟାର୍ଥ ପୂର୍ବୋକ୍ତ ରୀତିରେ ଅବସ୍ଥାଦି ଭେଦରେ ଏତେ ଅପରିମିତ ଯେ କେବେହେଲେ ତାହା ସମାପ୍ତ ହେଉନାହିଁ । ଅର୍ଥାତ୍ ପ୍ରତ୍ୟେକଙ୍କ ରଚନାରେ କିଛି ନା କିଛି ନୂତନତା ନିଶ୍ଚୟ ରହିପାରିବ । ଏହି ଉଦ୍ଦେଶ୍ୟରେ କୁହାଯାଉଛି :—)

୧୧୭ । ଉପଲକ୍ଷ୍ୟବାଦସମ୍ବନ୍ଧୀ ଯଦ୍ୱୈଧ୍ୟାଚାତ୍ୟାନୁସାରଣୀ ।
(କ) ଅନ୍ୱୀୟତେ ବସ୍ତୁଗତ ଦେଶକାଳାଦିଭେଦେନ ।୯।
(ଖ) ତତ୍ କା ଗଣନା କବୀନାମନ୍ୟେଷାଂ ପରିମିତଶକ୍ତୀନାମ୍ ।
(ଗ) ବାଚସ୍ପତି ସହସ୍ରାଣାଂ ସହସ୍ରୈରପି ଯତ୍ନତଃ ।
ନିବଦ୍ଧା ସା କ୍ଷୟଂ ନୈତି ପ୍ରକୃତିର୍ଜଗତାମିବ ।୧୦।

୧୧୮ । ଯଥା ହି ଜଗତ୍ ପ୍ରକୃତିରତୀତକଲ୍ପପରମ୍ପରାସ୍ୱବିଭୂତ ବିଚିତ୍ରବସ୍ତୁପ୍ରପଞ୍ଚା ସତୀ · ପୁନରିଦାନୀଂ ପରିକ୍ଷୀଣା ପରପଦାର୍ଥନିର୍ମାଣଶକ୍ତିରିତି ନ ଶକ୍ୟତେଽଭିଧାତୁମ୍, ତଦ୍ୱଦେବେୟଂ କାବ୍ୟସ୍ଥିତିରନନ୍ତାଭିଃ କବିମତି-

---

୧୧୭ । (କ) ଯଦି ଉପଲକ୍ଷ୍ୟବାଦ-ଯୁକ୍ତ ଔଚିତ୍ୟାନୁସାର-ବସ୍ତୁଗତକୁ ଦେଶକାଳାଦି ଭେଦରେ ପ୍ରୟୋଗ କରାଯାଏ, ତେବେ—

(ଖ) କ୍ଷୀଣଶକ୍ତି ସାଧାରଣ କବିମାନଙ୍କ କଥା ବା କଣ କହିବା,

(ଗ) ସହସ୍ର ସହସ୍ର ବାଚସ୍ପତି (ବୃହସ୍ପତି) ମଧ୍ୟ ସବୁପ୍ରକାର କାବ୍ୟାର୍ଥକୁ ପ୍ରୟୋଗ କରିବା ପାଇଁ ଇଚ୍ଛା କରି ଯତ୍ନପୂର୍ବକ ଯଦି କାବ୍ୟ ନିର୍ମାଣ କରନ୍ତି, ତେବେ ମଧ୍ୟ କାବ୍ୟରଚନା ଶକ୍ତି (ପ୍ରକୃତି) ପରି ଉକ୍ତ ବସ୍ତୁଗତ କ୍ଷୟପ୍ରାପ୍ତ ହୁଏ ନାହିଁ ।

ସାର—(ପ୍ରକୃତିର ଯେପରି ନୂତନ ନୂତନ ସୃଷ୍ଟିକରଣ କ୍ଷମତା ଥାଏ, ସେହିପରି ନୂତନ ନୂତନ କାବ୍ୟାର୍ଥ ପ୍ରକାଶ ପାଏ) ।

୧୧୮ । (ବୃତ୍ତିର ଅର୍ଥ) ଯେଉଁପରି ଜଗତର ପ୍ରକୃତି, ଅତୀତ ସୃଷ୍ଟି ପରମ୍ପରାରେ ବିଚିତ୍ର ବସ୍ତୁ ସମଷ୍ଟିକୁ ଉତ୍ପାଦନ କରିଥିଲେ ମଧ୍ୟ ଏବେ ବି ତାର ପଦାର୍ଥ ନିର୍ମାଣ ଶକ୍ତି କ୍ଷୀଣ ହୋଇଅଛି ବୋଲି କୁହାଯାଇ ନ ପାରେ,

ଭିରୁପଭୁକ୍ତାପି ନେଦାନାଂ ପର୍ୟ୍ୟାପ୍ୟତେ, ଦ୍ରକ୍ଷ୍ୟତ ନବନବାଭିର୍ବ୍ୟୁତ୍ପତ୍ତିଭିଃ ପରିବର୍ଦ୍ଧତେ ।

୧୧୯ । ଇତ୍ଥଂ ସ୍ଥିତେଽପି—

ସମ୍ବାଦାସ୍ତୁ ଭବନ୍ତ୍ୟେବ ବାହୁଲ୍ୟେନ ସୁମେଧସାମ୍ ।
ସ୍ଥିତଂ ହ୍ୟେତତ୍ ସମ୍ବାଦନ୍ୟେବ ମେଧାବିନାଂବୁଦ୍ଧୟଃ ।

୧୨୦ । କିନ୍ତୁ

ନୈକରୂପତୟା ସର୍ବେ ତେ ମନ୍ତବ୍ୟା ବିପଶ୍ଚିତା ॥ ୧୧ ।

୧୨୧ । କଥମିତି ଚେତ୍

ସମ୍ବାଦୋ ହ୍ୟନ୍ୟସାଦୃଶ୍ୟଂ ତତ୍ପୁନଃ ପ୍ରତିବିମ୍ବବତ୍ ।
ଆଲେଖ୍ୟାକାରବତ୍ତୁଲ୍ୟଦେହବଚ୍ଚ ଶରୀରିଣାମ୍ । ୧୨

ସମ୍ବାଦୋ ହି କାବ୍ୟାର୍ଥସ୍ୟୋଚ୍ୟତେ ଯଦନ୍ୟେନ କାବ୍ୟବସ୍ତୁନା ସାଦୃଶ୍ୟମ୍ । ତତ୍ ପୁନଃ ଶରୀରିଣାଂ

---

ସେହିପରି ଏହି କାବ୍ୟସ୍ଥିତି (କାବ୍ୟ ମର୍ଯ୍ୟାଦା) ଅନନ୍ତ, କବିମାନଙ୍କରେ ଉପଭୁକ୍ତା ହେଲେ ମଧ୍ୟ ଅଦ୍ୟାପି କ୍ଷୟପ୍ରାପ୍ତ ହୋଇନାହିଁ, ଓଲଟି ନୂତନ ନୂତନ ପ୍ରକାର ଘେନି ବଢ଼ୁଛି ।

୧୧୯ । ଏହିଭଳି ବ୍ୟବସ୍ଥା କରାଯାଇଥିଲେ ମଧ୍ୟ—ମେଧାବୀ କବିମାନଙ୍କର ବହୁକ୍ଷେତ୍ରରେ ବୁଦ୍ଧିର ସମ୍ବାଦ ହୁଏ, ଅର୍ଥାତ୍ ଜଣେ କବିର ବର୍ଣ୍ଣନାସହ ଅନ୍ୟ କବିର ବର୍ଣ୍ଣନା ମିଳିଯାଏ ।

୧୨୦ । କବିମାନଙ୍କ ପରସ୍ପର ରଚନାର ସମ୍ବାଦ (ମେଳ) ହେଉଥିଲେ ମଧ୍ୟ ପଣ୍ଡିତଲୋକ ତାହାକୁ ଏକା କବିତା ବୋଲି ମନେ କରିବା ଠିକ୍ ନୁହେ । ଅର୍ଥାତ୍ ଏ କବି ଅନ୍ୟ କବିର ଅନୁକରଣରେ ଏଭଳି ଲେଖିଛି ବୋଲି ଭାବିବା ଅସଙ୍ଗତ ।

୧୨୧ । ପ୍ରଶ୍ନ—ଏପରି ନ ଭାବିବାର କାରଣ କଣ ?

ଉତ୍ତର—ଏକ ରଚନା ସହିତ ଅନ୍ୟ ରଚନାର ସାଦୃଶ୍ୟକୁ ସମ୍ବାଦ ବୋଲିପାଏ । ସେହି ସମ୍ବାଦ ହେଉଛି ପ୍ରତିବିମ୍ବ ପରି । (ଅର୍ଥାତ୍ ମନୁଷ୍ୟର ପ୍ରକୃତ ମୁଖ ଓ ଦର୍ପଣରେ ପ୍ରତିବିମ୍ବିତ ମୁଖ, ଏ ଉଭୟର

ପ୍ରତିବିମ୍ବବତ୍, ଆଲେଖ୍ୟାକାରବତ୍, ତୁଲ୍ୟଦେହି-
ବଚ୍ଚ ତ୍ରିଧା ବ୍ୟବସ୍ଥିତମ୍ ।

କିଂଚିଦ୍ଧି କାବ୍ୟବସ୍ତୁ ବସ୍ତ୍ୱନ୍ତରସ୍ୟ ଶରୀରେଣଃ
ପ୍ରତିବିମ୍ବକଳ୍ପମ୍ । ଅନ୍ୟଦାଲେଖ୍ୟପ୍ରଖ୍ୟମ୍ ; ଅନ୍ୟତ୍
ତୁଲ୍ୟେନ ଶରୀରେଣ ସଦୃଶମ୍ ।

୧୨୨ । ତତ୍ର ପୂର୍ବମନନ୍ୟାତ୍ମ ତୁଚ୍ଛାତ୍ମ ତଦନନ୍ତରମ୍ ।
ତୃତୀୟଂତୁ ପ୍ରସିଦ୍ଧାତ୍ମ ନାନ୍ୟସାମ୍ୟଂ ତ୍ୟଜେତ୍ କବିଃ ।୧୩

'ତତ୍ର ପୂର୍ବଂ ପ୍ରତିବିମ୍ବ କଳ୍ପଂ କାବ୍ୟବସ୍ତୁ ପରିହର୍ତ୍ତବ୍ୟଂ
ସୁମତିନା । ଯତସ୍ତଦନନ୍ୟାତ୍ମ ତାତ୍ତ୍ୱିକଶରୀର
ଶୂନ୍ୟମ୍ । ତଦନନ୍ତରମାଲେଖ୍ୟ ପ୍ରଖ୍ୟ ମନ୍ୟସାମ୍ୟଂ
ଶରୀରାନ୍ତରଯୁକ୍ତମପି ତୁଚ୍ଛାତ୍ମତ୍ୱେନ ତ୍ୟକ୍ତବ୍ୟମ୍ ।
ତୃତୀୟଂ ତୁ ବିଭିନ୍ନକମନୀୟଶରୀର ସଦ୍ଭାବେ
ସତି ସସମ୍ବାଦମପି କାବ୍ୟବସ୍ତୁ ନ ତ୍ୟକ୍ତବ୍ୟଂ କବିନା ।

---

ସାମ୍ୟପରି), କିମ୍ବା ଚିତ୍ର (ଆଲେଖ୍ୟ) ପରି (ଯେପରି ବାସ୍ତବ ମୂର୍ତ୍ତି ଓ ତାର ଚିତ୍ର ଏକାପରି ଦେଖାଯାନ୍ତି ସେହିପରି) କିମ୍ବା ସମାନାକୃତି ଉଭୟ ଲୋକ ମଧ୍ୟରେ ଥିବା ସମାନ ଆକୃତି ପରି ଅଛି । ଏରୂପେ ସମ୍ବାଦ ତିନି ପ୍ରକାର ।

୧୨୨ । ଉକ୍ତ ତ୍ରିବିଧ ସମ୍ବାଦ ମଧ୍ୟରେ ପ୍ରଥମ, ପ୍ରତିବିମ୍ବ ତୁଲ୍ୟ ପ୍ରକାରଟି ହେଉଛି ଅନନ୍ୟାତ୍ମ ଅର୍ଥାତ୍ ଅଭିନ୍ନ ; ତାହାର ସ୍ୱତନ୍ତ୍ର ଶରୀର ନାହିଁ, ତେଣୁ ସେଭଳି ସମ୍ବାଦଯୋଗ୍ୟ ରଚନାକୁ କବି ତ୍ୟାଗ କରିବା ଉଚିତ ।

ଦ୍ୱିତୀୟ ଆଲେଖ୍ୟ (ଚିତ୍ର) ସାମ୍ୟ, ଏଥିରେ ସ୍ୱତନ୍ତ୍ର ଶରୀର ଥିଲେ ମଧ୍ୟ ତାହା ଅନୁକାର୍ଯ୍ୟର ବୁଦ୍ଧିକୁ ଜନ୍ମାଇଥିବାରୁ ତୁଚ୍ଛାତ୍ମ, ତେଣୁ ତାହା ବର୍ଜ୍ଜନୀୟ । ତୃତୀୟ ପ୍ରକାର ସ୍ଥଳରେ ଯଦି ମନୋହର ରଚନା ହୋଇଥାଏ ତେବେ, ତାହାର ସ୍ୱତନ୍ତ୍ର ଶରୀର ସ୍ୱୀକାର କରିବାକୁ ହେବ ଓ ପୂର୍ବ କବିତା-

ନହ୍ମ ଶରୀରୀ ଶରୀରେଣାନ୍ୟେନ ସଦୃଶୋଽପ୍ୟେକ ଏବେତି ଶକ୍ୟତେ ବକ୍ତୁମ୍ ।

୧୨୩ । ଏତଦେବୋପପାଦୟିତୁମୁଚ୍ୟତେ —

ଆତ୍ମନୋଽନ୍ୟସ୍ୟ ସଦ୍‌ଭାବେ ପୂର୍ବସ୍ଥିତ୍ୟନୁଯାୟ୍ୟପି ।
ବସ୍ତୁ ଭାତିତରାଂ ତନ୍ୱ୍ୟାଃ ଶଶିଚ୍ଛାୟମିବାନନମ୍ । ୧୪ ।

ତତ୍ତ୍ୱସ୍ୟ ସାରଭୂତସ୍ୟାତ୍ମନଃ ସଦ୍‌ଭାବେଽନ୍ୟସ୍ୟ ପୂର୍ବସ୍ଥିତ୍ୟନୁଯାୟ୍ୟପି ବସ୍ତୁ ଭାତିତରାମ୍ । ପୁରାଣ ରମଣୀୟଚ୍ଛାୟାନୁଗୃହୀତଂ ହି ବସ୍ତୁ ଶରୀରବତ୍ ପରାଂ ଶୋଭାଂ ପୁଷ୍ୟତି । ନ ତୁ ପୁନରୁକ୍ତତ୍ୱେନ ଅବଭାସତେ । ତନ୍ୱ୍ୟାଃ ଶଶିଚ୍ଛାୟମିବାନନମ୍ ।

୧୨୪ । ଏବଂ ତାବତ୍ ସସଂବାଦାନାଂ ସମୁଦାୟରୂପାଣାଂ ବାକ୍ୟାର୍ଥାନାଂ ବିଭକ୍ତାଃ ସୀମାନଃ । ପଦାର୍ଥରୂପାଣାଂ ଚ ବସ୍ତ୍ୱନ୍ତରସଦୃଶାନାଂ କାବ୍ୟବସ୍ତୂନାଂ ନାସ୍ତ୍ୟେବ ଦୋଷ ଇତି ପ୍ରତିପାଦୟିତୁମୁଚ୍ୟତେ ।

---

ସହ ମେଳ ଘଟୁଥିଲେ ମଧ୍ୟ କବି ତାଦୃଶ କାବ୍ୟବସ୍ତୁକୁ ତ୍ୟାଗ କରିବ ନାହିଁ । କାରଣ ଗୋଟିଏ ଶରୀରୀ ଅନ୍ୟଶରୀରୀ ସହିତ ଯେତେ ସମାନ ପରି ଦେଖା ଯାଉଥିଲେ ମଧ୍ୟ, ସେ ଦୁହେଁ ଏକ ବୋଲି କେହି କହି ପାରିବ ନାହିଁ ।

୧୨୩ । ଏହି ବିଷୟକୁ ପ୍ରତିପାଦନ କରିବା ପାଇଁ କୁହାଯାଉଛି :— ଅର୍ବାଚୀନ (ଅନ୍ୟ) କାବ୍ୟରେ ଯଦି ରମଣୀୟବାଦୀ ଆତ୍ମାର ସଦ୍‌ଭାବ ଥାଏ, ତେବେ ତାହାର କାବ୍ୟ ବସ୍ତୁ ପ୍ରାଚୀନ ରମଣୀୟ ବର୍ଣ୍ଣନାନୁସାରୀ ହେଲେ ମଧ୍ୟ ଉତ୍ତମ ଶୋଭା ପୋଷଣ କରେ । କିନ୍ତୁ ପୁନରୁକ୍ତ ପ୍ରାପ୍ତ ହୁଏ ନାହିଁ । ଯଥା "ରମଣୀର ଚନ୍ଦ୍ର ତୁଲ୍ୟ ମୁଖ ଚନ୍ଦ୍ରସଙ୍କେତ କ ଲବଣ୍ୟ ଯୋଗୁଁ ଆହ୍ଲାଦ-କର ହୋଇଥାଏ ।

୧୨୪ । ବାକ୍ୟଗତ ବସ୍ତ୍ୱନ୍ତର ସଂବାଦରେ ଏହିପରି ସୀମା ବିଭାଗ କରାଗଲା, କିନ୍ତୁ ପଦାର୍ଥଗତ ବସ୍ତ୍ୱନ୍ତର ସାଦୃଶ୍ୟ ଯୁକ୍ତ କାବ୍ୟବସ୍ତୁରେ ଆଦୌ ଦୋଷ ନାହିଁ । ଏହା ପ୍ରତିପାଦନ କରିବାକୁ କୁହାଯାଉଛି । ଯଥା—

୧୬୫ । ଅକ୍ଷରାଦିରଚନେବ ଯୋଜ୍ୟତେ
ଯତ୍ର ବସ୍ତୁରଚନା ପୁରାତନୀ ।
ନୂତନେ ସ୍ଫୁରତି କାବ୍ୟବସ୍ତୁନି
ବ୍ୟକ୍ତମେବ ଖଲୁ ସା ନ ଦୁଷ୍ୟତି । ୧୫।

୧୬୬ । ନହି ବାଚସ୍ପତିନାଽପି ଅକ୍ଷରାଣି ପଦାନି ବା କାନିଚି-ଦପୂର୍ବାଣି ଘଟୟିତୁଂ ଶକ୍ୟନ୍ତେ । ତାନି ତୁ ତାନ୍ୟେବୋ-ପନିବଦ୍ଧାନି ନ କାବ୍ୟାଦିଷୁ ନବତାଂ ବିରୁଧ୍ୟନ୍ତି । ତଥୈବ ପଦାର୍ଥରୂପାଣି ଶ୍ଳେଷାଦିମୟାନ୍ୟର୍ଥତତ୍ତ୍ୱାନି ।

୧୬୭ । ତସ୍ମାତ୍—
ଯଦପି ତଦପି ରମ୍ୟଂ ଯତ୍ର ଲୋକସ୍ୟ କିଂଚିତ୍
ସ୍ଫୁରିତମିଦମିତୀୟଂ ବୁଦ୍ଧିରଭ୍ୟୁଜ୍ଜିହୀତେ ।
ସ୍ଫୁରଣେୟଂ କାଚିଦିତି ସହୃଦୟାନାଂ ଚମତ୍କୃତି
ରୁତ୍ପଦ୍ୟତେ ।

---

୧୬୫ । ଯେଉଁ ନୂତନ ଜୀବନ୍ତ କାବ୍ୟରେ ପ୍ରାଚୀନ କବିଙ୍କ ବ୍ୟବହୃତ ପୁରାତନ ବସ୍ତୁ ପୂର୍ବ କବି ବ୍ୟବହୃତ ଅ, ଆ, ପ୍ରଭୃତି, ଅକ୍ଷରକୁ ପରବର୍ତ୍ତୀ କବି ବ୍ୟବହାର କଲାଭଳି ସଂଯୋଜିତ ହୋଇଥାଏ, ତାଦୃଶ ସ୍ଥଳରେ ନିଶ୍ଚିତ ଭାବେ ଦୋଷ ନାହିଁ ।

୧୬୬ । ସ୍ୱୟଂ ବୃହସ୍ପତି ମଧ୍ୟ "ଅ, ଆ" ଇତ୍ୟାଦି ଅକ୍ଷରମାଳାକୁ କିମ୍ବା ଅଭିନବ ପଦମାନଙ୍କୁ ସୃଷ୍ଟିକରି ପାରିବେ ନାହିଁ । ଏଣୁ ପ୍ରାଚୀନ କବିମାନଙ୍କ ଦ୍ୱାରା ବ୍ୟବହୃତ ହୋଇଥିଲେ ମଧ୍ୟ ପଦଗୁଡ଼ିକ ଅକ୍ଷରଭଳି ପରବର୍ତ୍ତୀ କବିମାନଙ୍କ ଦ୍ୱାରା ପୁନଶ୍ଚ କାବ୍ୟରେ ବ୍ୟବହୃତ ହେଲେ ପୁନରୁକ୍ତ ହୁଅନ୍ତି ନାହିଁ । ଏହି ନ୍ୟାୟରେ ପଦର ଅର୍ଥ ସ୍ୱରୂପ ଶ୍ଳେଷାଦି ଅଳଂକାର ଘଟକ ଅର୍ଥମାନେ ମଧ୍ୟ ପୁନରୁକ୍ତ ହୁଅନ୍ତି ନାହିଁ ।

୧୬୭ । ଅତଏବ—

ଯେଉଁ କାବ୍ୟବସ୍ତୁ ଦର୍ଶନରେ "ଏହି ରଚନାଟି ଅପୂର୍ବ ସ୍ଫୁରଣ" ବୋଲି ଲୋକମାନଙ୍କ ମନରେ ଚମତ୍କାର ଉପସ୍ଥିତ ହୁଏ, ସେହିଭଳି

ଅନ୍ୱଗତମପି ପୂର୍ବଚ୍ଛାୟୟା ବସ୍ତୁତାଦୃକ୍
ସୁକବିରୁପନିବଧ୍ନନ୍ ନିନ୍ଦ୍ୟତାଂ ନୋପଯାତି । ୧୭ ।

ତାଦନୁଗତମପି ପୂର୍ବଚ୍ଛାୟୟା ବସ୍ତୁ ତାଦୃକ୍ ତାଦୃଶଂ ସୁକବିର୍ବିବକ୍ଷିତବ୍ୟଂଗ୍ୟବାଚ୍ୟାର୍ଥସମର୍ପଣସମର୍ଥ-ଶବ୍ଦ-ରଚନାରୂପୟା ବନ୍ଧଚ୍ଛାୟୟା ଉପନିବଧ୍ନନ୍ ନିନ୍ଦ୍ୟତାଂ ନୈବ ଯାତି ।

୧୨୮ । ତଦିତ୍ଥଂ ସ୍ଥିତମ୍—
ପ୍ରତାୟନ୍ତାଂ ବାଚୋ ନିମିତବିବିଧାର୍ଥାମୃତରସା
* ନ ବାଦଃ କର୍ତ୍ତବ୍ୟଃ କବିଭିରନବଦ୍ୟେ ସ୍ୱବିଷୟେ ।
ପରସ୍ୱାଦାନେଚ୍ଛାବିରତମନସୋ ବସ୍ତୁ ସୁକବେଃ
ନ କଶ୍ଚିତ୍ କବେର୍ଗୁଣ ଇତି ଭାବୟିତ୍ୱା—

ବସ୍ତୁ ଯାହାତାହା ହେଲେ ମଧ୍ୟ (ଯଦ୍ୟପି ତଦ୍ୟପି), ପୂର୍ବକବି ବର୍ଣ୍ଣନାର ଅନୁକରଣ ହେଲେ ମଧ୍ୟ, ତାହାକୁ ସୁକବି ବ୍ୟଙ୍ଗ୍ୟ ପ୍ରକାଶକ ପର ବାଚକ ଶବ୍ଦ ଯୋଜନା ଦ୍ୱାରା ନିବନ୍ଧନ କରିଥିଲେ ନିନ୍ଦାପ୍ରାପ୍ତ ହୁଏନାହିଁ ।

୧୨୮ । ଏହିଭଳି କାବ୍ୟନିର୍ମାଣ ଶୈଳୀ ନିରୂପିତ ହୁଅନ୍ତେ ଆହେ ଭବିଷ୍ୟତ୍ କବିବୃନ୍ଦ ! ଆପଣମାନେ ଅମୃତତୁଲ୍ୟ ବାଚ୍ୟ ବ୍ୟଙ୍ଗ୍ୟାଦି ଅର୍ଥଭରା ବାକ୍ୟାବଳୀ ରଚନା କରନ୍ତୁ । କବିମାନେ ପ୍ରଶଂସନୀୟ (ଅନବଦ୍ୟ) ସ୍ୱବିଷୟ (କବିତା ରଚନା)ରେ ଅନ୍ୟଦ୍ୱାରା ରଚିତ ହୋଇଛି, ନୋହିଛି ଇତ୍ୟାଦି ବିଷୟରେ ପରସ୍ପର ବାଦବିବାଦ କରିବା ବିଧେୟ ନୁହେ । (ପାଠ ଇତମାଠେ) ଅନ୍ୟ କବି ଦ୍ୱାରା ଏ ବସ୍ତୁ ଗୃହୀତ ହୋଇଛି ବୋଲି ମନଜ୍ଞା କରିବା ସଙ୍ଗତ ନୁହେ । ଅର୍ଥାତ୍ କାବ୍ୟରଚନା ସମୟରେ ଯାହା ସ୍ୱତଃ ସ୍ଫୂର୍ତ୍ତ ହେବ ତାହାକୁ ନିଜର ପରର ବୋଲି ନ ଭାବି ଗ୍ରହଣ କରିଯିବ ।

* ନ ବାଦଃ ଇତି ପାଠାନ୍ତରମ୍

ପରସ୍ୱାଦାନେଚ୍ଛା ୱିରତମନସୋ ବସ୍ତୁ ସୁକବେଃ
ସରସ୍ୱତ୍ୟୈବୈଷା ଘଟୟତି ଯଥେଷ୍ଟଂ ଭଗବତୀ । ୧୬
ପରସ୍ୱାଦାନେଚ୍ଛା ୱିରତମନସଃ ସୁକବେଃ ସରସ୍ୱତ୍ୟେଷା ଭଗବତୀ ଯଥେଷ୍ଟଂ ଘଟୟତି ବସ୍ତୁ ।

୧୨୯ । ଯେଷାଂ ସୁକବୀନାଂ ପ୍ରାକ୍ତନପୁଣ୍ୟାଭ୍ୟାସପରିପାକବଶେନ ପ୍ରବୃତ୍ତିସ୍ତେଷାଂ ପରୋପରଚିତାର୍ଥପରିଗ୍ରହନିସ୍ପୃହାଣାଂ ସ୍ୱବ୍ୟାପାରୋ ନ କ୍ୱଚିଦୁପଯୁଜ୍ୟତେ । ସୈବ ଭଗବତୀ ସରସ୍ୱତୀ ସ୍ୱୟମଭିମତମର୍ଥମାବିର୍ଭାବୟତି । ଏତଦେବ ହି ମହାକବିତ୍ୱଂ ମହାକବୀନମିତ୍ୟୋମ୍ ।

୧୩୦ । ଇତ୍ୟକ୍ଲିଷ୍ଟରସାଶ୍ରୟୋଚିତଗୁଣାଲଂ-
କାରଶୋଭାଭୃତୋ

---

ଅଭିନବ କାବ୍ୟାର୍ଥମାନ ତ ଅଛି, ପରର ରଚନାକୁ ଗ୍ରହଣ କଲେ କବିର କିଛି ସମ୍ମାନ ରହେ ନାହିଁ, ଏହା ଭାବି ପରର ରଚନାକୁ ଆଣି ନିଜର ରଚନାରେ ମିଶାଇବାକୁ ଇଚ୍ଛା କରୁ ନ ଥିବା ସୁକବିଙ୍କୁ ସ୍ୱୟଂ ବାଗଦେବୀ (ସରସ୍ୱତୀ) ତାଙ୍କ ଇଚ୍ଛା ଅନୁସାରେ ଅଭିନବ ବର୍ଣ୍ଣନୀୟ ବସ୍ତୁ ଯୁଟାଇ ଦେଇଥାଆନ୍ତି ।

୧୨୯ । ବୃତ୍ତି ଯେଉଁ ପୁଣ୍ୟବନ୍ତ କବିମାନଙ୍କର ପୂର୍ବାର୍ଜିତ ପୁଣ୍ୟ କର୍ମର ପରିପାକ ବଶତଃ କାବ୍ୟ ରଚନା ପ୍ରବୃତ୍ତି ଆସିଥାଏ, ପର ରଚନା ଗ୍ରହଣରେ ନିସ୍ପୃହ, ସେହି କବିମାନଙ୍କର କବିତା ନିର୍ମାଣ ପାଇଁ ଚେଷ୍ଟା (ସ୍ୱ ବ୍ୟାପାର) ଅନାବଶ୍ୟକ । ସେହି ଭଗବତୀ ସରସ୍ୱତୀ ସ୍ୱୟଂ ଅଭିମତ ଅର୍ଥର ଆବିର୍ଭାବ କରନ୍ତି । ଏହାହିଁ ମହାକବିମାନଙ୍କର ମହାକବିତ୍ୱ ।

୧୩୦ । (ବୃତ୍ତିକାରଙ୍କର ଆଶୀର୍ବାଦାତ୍ମକ ମଙ୍ଗଳ ପ୍ରଦର୍ଶନ ବାକ୍ୟ ଯଥା)—

ଯସ୍ମାଦ୍‌ବସ୍ତୁ ସମୀହିତଂ ସୁକୃତିଭିଃ
ସର୍ବଂ ସମାସାଦ୍ୟତେ ॥
କାବ୍ୟାଖ୍ୟେଽଖିଳ ସୌଖ୍ୟଧାମ୍ନି ବିବୁଧୋ
ଦ୍ୟାନେ ଧ୍ୱନିର୍ଦର୍ଶିତଃ
ସୋଽୟଂ କଳ୍ପତରୂପମାନ ମହିମା
ଭୋଗ୍ୟୋଽସ୍ତୁ ଭବ୍ୟାତ୍ମନାମ୍ ।

---

ଅନାଦି ବାସନା ପରମ୍ପରାଗତ ହିସାବେ ନିତ୍ୟ ଓ ଗୁଣୀଭାବ ରହିତ (ଅକ୍ଲିଷ୍ଟ) ଅର୍ଥାତ୍ ମୁଖ୍ୟଭାବେ ଅବସ୍ଥିତ ଯେଉଁ ରସ ତାହାର ଅନୁକୂଳ (ଆଶ୍ରୟ) ପ୍ରଶସ୍ତ ଔଚିତ୍ୟ, ଗୁଣ ଓ ଅଳଂକାରମାନଙ୍କ ଦ୍ୱାରା ଶୋଭା ଧାରଣ କରୁଥିବା କାବ୍ୟରୁ ଯହିଁରୁ କି ସୁକୃତିମାନେ ସର୍ବବିଧ (ବ୍ୟୁତ୍ପତ୍ତି କୀର୍ତ୍ତି ପ୍ରୀତି ପ୍ରଭୃତି) ଅଭିଳଷିତ ବସ୍ତୁ ଲାଭ କରନ୍ତି, ସେହି ଅଖିଳ ସୁଖଲାଭର ନିକେତନ, ବିବୁଧମାନଙ୍କ ଉଦ୍ୟାନ ସ୍ୱରୂପ, କାବ୍ୟ ମଧ୍ୟରେ କଳ୍ପତରୁ ସଦୃଶ ମହତ୍ତ୍ୱଶାଳୀ ଧ୍ୱନି ପରିଦର୍ଶିତ ହେଲା । ସେହି ଏହି ଧ୍ୱନି ସୁକୃତୀମାନଙ୍କ ଉପଭୋଗରେ ଆସୁ ।

(ଏ ପଦ୍ୟରେ ଧ୍ୱନିର କଳ୍ପତରୁ ସାଦୃଶ୍ୟ କଳ୍ପନା କରାଯାଇ ଥିବାରୁ କାବ୍ୟ ଉପରେ ଉଦ୍ୟାନର ଆରୋପ କରାଯାଇ ଅଛି ।

ଉଦ୍ୟାନ ପକ୍ଷରେ ଅର୍ଥ ଯଥା—ଅକ୍ଲେଶ ସମ୍ପାଦିତ ଜଳଧାର (ରସ)ର ଆଶ୍ରୟ ହୋଇଥିବା ହେତୁ ସମୁଚିତ ପଲ୍ଲବିତ ଛାୟାଚନ୍ଦ୍ରାଦି ଗୁଣାଳଂକୃତ, ଯହିଁରୁ କି ପୁଣ୍ୟାତ୍ମାମାନେ ପତ୍ର ପୁଷ୍ପଫଳାଦି ସର୍ବବିଧ ଅଭିଳଷିତ ବସ୍ତୁ ପାଇପାରନ୍ତି, ସେହି ଅଖିଳ ସୁଖଲାଭର ନିଳୟ ନନ୍ଦନ କାନନରେ (ବିବୁଧୋଦ୍ୟାନ) ମଧ୍ୟରେ କଳ୍ପତରୁ ସଦୃଶ ଧ୍ୱନି ପରିଦର୍ଶିତ ହେଲା, ତାହା ସୁକୃତୀମାନଙ୍କ ଉପଭୋଗରେ ଲାଗୁ ।

(ବାଚସ୍ପତି କହନ୍ତି—ଧ୍ୱନି ପୁଣ୍ୟାତ୍ମାଙ୍କ ଲଭ୍ୟ ହେତୁ ପରଂବ୍ରହ୍ମଙ୍କ ତୁଲ୍ୟ । ବଦରୀନାଥ ଧ୍ୱନି ଉପରେ ଭଗବାନ୍ ହରିଙ୍କର ଆରୋପ କରନ୍ତି) ।

୧୭୧ । ସତ୍କାବ୍ୟତତ୍ତ୍ୱନୟବର୍ତ୍ମ ଚିରପ୍ରସୁପ୍ତ
କଳ୍ପଂ ମନଃସୁ ପରିପକ୍ୱଧିୟାଂ ଯଦାସୀତ୍
ତଦ୍ବ୍ୟାକରୋତ୍ ସହୃଦୟୋଦୟଲାଭହେତୋ
ରାନନ୍ଦବର୍ଦ୍ଧନ ଇତି ପ୍ରଥିତାଭିଧାନଃ ।

ଇତି ଶ୍ରୀ ରାଜାନକାନନ୍ଦବର୍ଦ୍ଧନାଚାର୍ଯ୍ୟ ବିରଚିତେ ଧ୍ୱନ୍ୟାଲୋକେ
ଚତୁର୍ଥ ଉଦ୍ୟୋତଃ
ସମାପ୍ତୋଽୟଂ ଗ୍ରନ୍ଥଃ ।

---

୧୭୧ । ସତ୍କାବ୍ୟର ତତ୍ତ୍ୱ ଅର୍ଥାତ୍ ଆତ୍ମାସ୍ୱରୂପ ଯେଉଁ ଧ୍ୱନି, ତାହାପର ପକ୍ୱମତି ସହୃଦୟମାନଙ୍କ ମନରେ ସ୍ଫୁରିତ ପ୍ରସୁପ୍ତ ପ୍ରାୟ ଥିଲା, ଅର୍ଥାତ୍ ମନରେ ସ୍ଫୁରିତ ହେଉଥିଲେ ମଧ୍ୟ, ତାହା ଏହିପରି ବୋଲି ପ୍ରକାଶ କରି ହେଉ ନ ଥିଲା, ସେହି ଧନିକୁ ସହୃଦୟମାନଙ୍କ ଆନନ୍ଦ ବର୍ଦ୍ଧନ ପାଇଁ ଆନନ୍ଦବର୍ଦ୍ଧନ ନାମରେ ଖ୍ୟାତ (ବୃତ୍ତିକାର) ସାହିତ୍ୟିକ ପଣ୍ଡିତ ବ୍ୟାଖ୍ୟାନ କରି ଅଛନ୍ତି ।

ଇତି ଧ୍ୱନ୍ୟାଲୋକେ ଚତୁର୍ଥ ଉଦ୍ୟୋତଃ
ସମାପ୍ତୋଽୟଂ ଗ୍ରନ୍ଥଃ



# ଧ୍ୱନ୍ୟାଲୋକ ଅନୁବାଦରେ ଥିବା ପାରିଭାଷିକ ଶବ୍ଦମାନଙ୍କର ଅର୍ଥ

୧ । ଅଚେତନ ବସ୍ତୁ— ଯେଉଁମାନଙ୍କର ଚେତନା ନ ଥାଏ, ଯଥା ନଦୀ ପର୍ବତ ପ୍ରଭୃତି ।

୨ । ଅତିବ୍ୟାପ୍ତି—ଯେଉଁ ସ୍ଥଳ ଲକ୍ଷ୍ୟନୁହେ ସେ ସ୍ଥଳରେ ଲକ୍ଷଣର ବ୍ୟାପ୍ତିକୁ ଅତିବ୍ୟାପ୍ତି ବୋଲଯାଏ । "ଅଲକ୍ଷ୍ୟେ ଲକ୍ଷଣ-ଗମନଂ ଅତିବ୍ୟାପ୍ତିଃ ।"

ଯଥା—ଯାହାର ଶୃଙ୍ଗ ଅଛି ସେ ଗୋରୁ, ଗୋରୁର ଏହିପରି ଲକ୍ଷଣ କଲେ ତାହା ଅଲକ୍ଷ୍ୟ ମହିଷ ପ୍ରଭୃତିରେ ମଧ୍ୟ ପ୍ରାପ୍ତ ହେବ । ଏଣୁ ଅତିବ୍ୟାପ୍ତି ଦୋଷ ହେତୁ ଏ ଲକ୍ଷଣ ଅଶୁଦ୍ଧ ।

୩ । ଅତିଶୟୋକ୍ତି— ଅଲଙ୍କାର ବିଶେଷ । ଅଲଂକାର ପ୍ରକରଣରେ ତାହାର ବିଶେଷ ବିବରଣ ଦ୍ରଷ୍ଟବ୍ୟ ।

୪ । ଅତ୍ୟନ୍ତତିରସ୍କୃତ ବାଚ୍ୟ—ଲକ୍ଷଣ ଲକ୍ଷଣାସ୍ଥଳର ଧ୍ୱନି ।

୫ । ଅନିର୍ବଚନୀୟ—ଯାହାର ସ୍ୱରୂପ ନିର୍ବଚନ ଯୋଗ୍ୟ ନୁହେ, ତାହା ଅନିର୍ବଚନୀୟ । ଅର୍ଥାତ୍ ଯାହା ବଚନରେ ପ୍ରକାଶ କରି ହୁଏ ନାହିଁ ।

୬ । ଅନୁପ୍ରାସ—ଶବ୍ଦାଲଙ୍କାର ବିଶେଷ (ଅଲଙ୍କାର ପ୍ରକରଣରେ ଦ୍ରଷ୍ଟବ୍ୟ)

୭ । ଅନୁବାଦ—ପୂର୍ବରୁ ଯାହା ବିହିତ ହୋଇଥାଏ, ତାହାର ପୁନର୍ବାର କଥନକୁ ଅନୁବାଦ ବୋଲଯାଏ । ଯଥା—ପ୍ରଥମେ "ଘିଅରେ ହୋମ କରୁଛି" ବୋଲି କହି ତା ପରେ "ଦହିରେ ହୋମ କରୁଛି ।" ବୋଲି କହିଲେ— ୨ୟ ବାକ୍ୟର "ହୋମ କରୁଛି" ପଦଟି ଅନୁବାଦ ଅଟେ ।

୮ । ଅନୁଭାବ—ରତ୍ୟାଦି ସ୍ଥାୟିଭାବର ଆତ୍ମପ୍ରକାଶକୁ ଅନୁଭାବ ବୋଲଯାଏ, ଯଥା—ଶୃଙ୍ଗାରରେ ଭ୍ରୂବିକ୍ଷେପକଟାକ୍ଷ-ବୀକ୍ଷଣାଦି ।

୯ । ଅନୁମିତ—ଅନୁମାନ ଦ୍ୱାରା ଲବ୍ଧ ଜ୍ଞାନ ।

୧୦ । ଅନୁରଣନ—ଶବ୍ଦଜ ଶବ୍ଦ, ଯଥା—କଂସା ପିତ୍ତଳ ପ୍ରଭୃତିର ପାତ୍ରକୁ ଆଘାତ କଲେ ତହିଁରୁ ଏକ ଶବ୍ଦ ପରମ୍ପରା ନିର୍ଗତ ହୋଇଥାଏ, ତାଦୃଶ ଶବ୍ଦ ପରମ୍ପରାକୁ ଅନୁରଣନ ବୋଲଯାଏ ।

୧୧ । ଅନ୍ୟୋନ୍ୟାଶ୍ରୟ ଦୋଷ—ଯେଉଁଠି ଦୁଇ ବସ୍ତୁ ପରସ୍ପରର ଆଶ୍ରୟ ହୋଇ ରହିଥାନ୍ତି, ତାହାକୁ ଅନ୍ୟୋନ୍ୟାଶ୍ରୟ ଦୋଷ ବୋଲଯାଏ ।

୧୨ । ଅନ୍ୱୟ ଦୃଷ୍ଟାନ୍ତ—ବର୍ଣ୍ଣନୀୟ ବସ୍ତୁର ଅନୁକୂଳଭାବେ (ସଂଜ୍ଞା. ନ ୩୬) ଦେଖା । ଯେଉଁ ଉଦାହରଣ ଦିଆଯାଇଥାଏ, ଅର୍ଥାତ୍ କାରଣ ରହିବାସ୍ଥଳେ କାର୍ଯ୍ୟ ରହିବା । (ତତ୍‌ସତ୍ତ୍ୱେ-ତତ୍‌ସତ୍ତ୍ୱା) ।

୧୩ । ଅନ୍ୱିତ ପଦ—ବାକ୍ୟଗତ ପଦମାନଙ୍କର ପରସ୍ପର ସମ୍ବନ୍ଧକୁ ଅନ୍ୱୟ ବୋଲଯାଏ । ଉକ୍ତ ଅନ୍ୱୟଯୁକ୍ତ ପଦକୁ ଅନ୍ୱିତ ପଦ କହନ୍ତି ।

୧୪ । ଅନ୍ୱିତାଭିଧାନବାଦ—ବାକ୍ୟାନ୍ତର୍ଗତ ଅନ୍ୱିତ ପଦଗୁଡ଼ିକ ଅଭିଧା ବୃତ୍ତିରେ ଅର୍ଥବୋଧ କରାନ୍ତି, ଏହି ମତକୁ ଅନ୍ୱିତା-ଭିଧାନବାଦ ବୋଲଯାଏ । (ଏହା ମୀମାଂସକ, ପ୍ରଭାକର ଭଟ୍ଟ, ତଥା ନୈୟାୟିକଙ୍କ ମତ) ।

୧୫ । ଅପହ୍ନୁତି—ଅର୍ଥାଲଙ୍କାର ବିଶେଷ ।

୧୬ । ଅପ୍ରସ୍ତୁତ—ଅପ୍ରାକରଣିକ ବା ଅପ୍ରାସଙ୍ଗିକ ।

୧୭ । ଅପ୍ରସ୍ତୁତ ପ୍ରଶଂସା—ଅଲଙ୍କାର ବିଶେଷ ।

୧୮ । ଅବିବକ୍ଷିତବାଚ୍ୟ—ଯେଉଁଠି ବାଚ୍ୟ ଅର୍ଥଟି ବିବକ୍ଷିତ ହୋଇ ନ ଥାଏ ଅର୍ଥାତ୍ ଲକ୍ଷଣାମୂଳଧ୍ୱନି ।

୧୯ । ଅବ୍ୟାପ୍ତି—ଯଦି ଲକ୍ଷ୍ୟସ୍ଥଳରେ ଲକ୍ଷଣର ପ୍ରାପ୍ତି ନ ହୁଏ, ତେବେ ତାହାକୁ ଅବ୍ୟାପ୍ତି ବୋଲଯାଏ । "ଲକ୍ଷ୍ୟେ ଲକ୍ଷଣାଗମନ-ମବ୍ୟାପ୍ତିଃ"

୨୦। ଅବ୍ୟୁତ୍ପତ୍ତିକୃତଦୋଷ—କବିର କାବ୍ୟ ନିର୍ମାଣ ବିଷୟରେ ଜ୍ଞାନ ନ ଥିବାରୁ ଯେଉଁସବୁ ଦୋଷ ଘଟେ ତାହାସବୁ ଅବ୍ୟୁତ୍ପତ୍ତି କୃତଦୋଷ (୯ଜ ୭୨ ଦେଖ)।

୨୧। ଅଭାବବାଦୀ—ଯେଉଁମାନେ ଧ୍ୱନିର ଅସ୍ତିତ୍ୱ ସ୍ୱୀକାର ନ କରନ୍ତି।

୨୨। ଅଭିଧା ବ୍ୟାପାର—ଘଟ, ପଟପ୍ରଭୃତି ଶବ୍ଦମାନଙ୍କ ଗୋଟିଏ ଗୋଟିଏ ନିର୍ଦ୍ଦିଷ୍ଟ ଅର୍ଥକୁ ବୁଝାଇ ଥାଆନ୍ତି। ଉକ୍ତ ନିର୍ଦ୍ଦିଷ୍ଟ ଅର୍ଥକୁ ସଂକେତିତାର୍ଥ ବୋଲଯାଏ। ଏହି ସଂକେତିତାର୍ଥକୁ ଶବ୍ଦ ଯେଉଁ ବୃତ୍ତି ସାହାଯ୍ୟରେ ବୁଝାଏ ତାହାର ନାମ ଅଭିଧା ବୃତ୍ତି। ମୁଖ୍ୟାବୃତ୍ତି, ଅଗ୍ରିମାବୃତ୍ତି ପ୍ରଭୃତି ତାହାର ନାମାନ୍ତର।

୨୩। ଅଭିନେୟାର୍ଥ— ଦୃଶ୍ୟକାବ୍ୟ (ଶକୁନ୍ତଳାଦି)।

୨୪। ଅଭିସାର—ନିର୍ଦ୍ଦିଷ୍ଟ ସ୍ଥାନକୁ ନାୟକ ଉଦ୍ଦେଶ୍ୟରେ ନାୟିକାର ଗୁପ୍ତଗମନକୁ ଅଭିସାର ବୋଲଯାଏ।

୨୫। ଅଭିସାରିକା- ଅଭିସାର କରୁଥିବା ସ୍ତ୍ରୀ।

୨୬। ଅଭିହିତାନ୍ୱୟବାଦୀ— ଅଭିହିତ ଅର୍ଥାତ୍ ଅଭିଧା ବୃତ୍ତିରେ ବୋଧିତ ପଦମାନଙ୍କର ପରସ୍ପର ଅନ୍ୱୟକୁ ଅଭିହିତାନ୍ୱୟ ବୋଲ-ଯାଏ, ଯେଉଁମାନେ ଏହି ମତ ପୋଷଣ କରନ୍ତି ସେମାନେ ଅଭିହିତାନ୍ୱୟବାଦୀ। (ଏହା ମୀମାଂସକମାନଙ୍କର ମତ)

(ଅନ୍ୱିତାଭିଧାନ ବାଦୀମାନଙ୍କ ମତରେ ବାକ୍ୟଗତ ପଦମାନଙ୍କର ପ୍ରଥମେ ପରସ୍ପର ସମ୍ବନ୍ଧ ଓ ପରେ ଅର୍ଥ ଜ୍ଞାପନ। କିନ୍ତୁ ଅଭିହିତାନ୍ୱୟବାଦୀଙ୍କ ମତରେ ବାକ୍ୟଗତ ପଦମାନଙ୍କର ପ୍ରଥମେ ଅର୍ଥବୋଧନ ଓ ତତ୍ପରେ ପରସ୍ପର ଅନ୍ୱୟ)।

୨୭। ଅର୍ଥାନ୍ତରନ୍ୟାସ—ଅର୍ଥାଳଙ୍କାର ବିଶେଷ।

୨୮। ଅର୍ଥାନ୍ତରସଂକ୍ରମିତ—ଉପାଦାନଲକ୍ଷଣାମୂଳଧ୍ୱନି।

୨୯ । ଅଲଂକାର—ମନୁଷ୍ୟ ତାହାର ଶରୀରଶୋଭା ବୃଦ୍ଧି ପାଇଁ ଯେପରି କୁଣ୍ଡଳ ପ୍ରଭୃତି ଅଲଂକାର ଧାରଣ କରିଥାଏ, ସେହିପରି କାବ୍ୟ ଶରୀରର ଶୋଭା ବୃଦ୍ଧି ପାଇଁ ଉପମା, ଶ୍ଳେଷ ପ୍ରଭୃତି ଅଲଂକାରବର୍ଗ ସୃଷ୍ଟି ଯାଇଥାଏ । ଉକ୍ତ ଅଲଂକାର ମାନେ କାବ୍ୟର ଶରୀର ସ୍ୱରୂପ ଶବ୍ଦ ଓ ଅର୍ଥକୁ ଅଲଂକୃତ କରିଥାନ୍ତି ।

୩୦ । ଅଶକ୍ତି କୃତଦୋଷ—କାବ୍ୟ ରଚନା କରିବାରେ ସାମର୍ଥ୍ୟର ଅଭାବ ହେଉଛି ଅଶକ୍ତି । ଏହି ଅଶକ୍ତି ହେତୁ କବି, ତାହାର ରଚନାରେ ଯେଉଁ ତ୍ରୁଟି ଘଟାଇଥାଏ, ତାହାର ନାମ ଅଶକ୍ତିକୃତ ଦୋଷ ।

୩୧ । ଅସଂଲକ୍ଷ୍ୟକ୍ରମବ୍ୟଙ୍ଗ୍ୟ—ମୁଖ୍ୟାର୍ଥବୋଧ ଓ ବ୍ୟଙ୍ଗ୍ୟାର୍ଥ ବୋଧ, ଏ ଉଭୟର ପୂର୍ବାପର ଭାବ ଯେଉଁଠି ଜଣାଯାଏ, ତାହା ସଂଲକ୍ଷ୍ୟକ୍ରମବ୍ୟଙ୍ଗ୍ୟ ବା ଅନୁରଣନ ବ୍ୟଙ୍ଗ୍ୟର ସ୍ଥଳ । ଯେଉଁଠି ମୁଖ୍ୟାର୍ଥ ପ୍ରତୀତିର ସମକାଳରେ ବ୍ୟଙ୍ଗ୍ୟ ପ୍ରତୀତ ହୁଏ ତାହା ଅସଂଲକ୍ଷ୍ୟକ୍ରମ ବ୍ୟଙ୍ଗ୍ୟର ସ୍ଥଳ । ରସ, ଭାବ, ରସାଭାସ ପ୍ରଭୃତି ଅସଂଲକ୍ଷ୍ୟକ୍ରମବ୍ୟଙ୍ଗ୍ୟ ଅଟନ୍ତି । ଯଥା—

୧୦୦ଟି ପଦ୍ମପତ୍ରକୁ ଉପରେ ଧରି ଗୋଟିଏ ମୁନିଆ ଛୁଞ୍ଚିରେ ଫୋଡ଼ି ପକାଇଲେ ପତ୍ରଗୁଡ଼ିକ ଆଗ ପଛ ହୋଇ ଫୋଡ଼ି ହୋଇଥିଲେ ମଧ୍ୟ ଅମୁକ ପତ୍ରଟି ଅମୁକ ସମୟରେ ଫୋଡ଼ି ହେଲା ବୋଲି କହି ନ ହୁଏ । ସେହିପରି ଉକ୍ତ ସ୍ଥଳରେ ବାଚ୍ୟ ପ୍ରତୀତି ଓ ବ୍ୟଙ୍ଗ୍ୟ ପ୍ରତୀତି ମଧ୍ୟରେ କ୍ରମ ଥିଲେ ମଧ୍ୟ ଆଶୁବୋଧ ହେତୁ ତାହା ଲକ୍ଷ୍ୟକରି ହୁଏ ନାହିଁ । ଏଣୁ ଏହାର ନାମ ଅସଂଲକ୍ଷ୍ୟକ୍ରମ ବ୍ୟଙ୍ଗ୍ୟ ।

୩୨ । ଆକ୍ଷେପ—ଅର୍ଥାଲଂକାର ବିଶେଷ ।

୩୩ । ଆଖ୍ୟାୟିକା—ଗଦ୍ୟ ପ୍ରଚୁର ପ୍ରବନ୍ଧ ।

୩୪ । ଇତିବୃତ୍ତ—ଇତିହାସ ।

୩୫ । ଉତ୍ପ୍ରେକ୍ଷଣ—ତର୍କଣା ।

୩୬ । ଉତ୍ପ୍ରେକ୍ଷା—ଅର୍ଥାଳଂକାର ବିଶେଷ ।

୩୭ । ଉପନାଗରିକାବୃତ୍ତି—ଲଳିତ ନାମକ ଏକ ବୃତ୍ତି ।

୩୮ । ଉପମା—ଅର୍ଥାଳଂକାର ବିଶେଷ ।

୩୯ । ଉପଲକ୍ଷଣ—ଯାହା ନିଜେ ଗୃହୀତ ହେବା ସଙ୍ଗେ ସଙ୍ଗେ ନିଜ ଭିନ୍ନ ଅନ୍ୟ କେତେକଙ୍କୁ ମଧ୍ୟ ଗୃହୀତ କରାଏ, ତାହାର ନାମ ଉପଲକ୍ଷଣ ।

ଯଥା—"ବ୍ରାହ୍ମଣ, ସମ୍ମାନ ପ୍ରାପ୍ତିକୁ ବିଷ ପରି ମନେ କରିବ" ଏ ବାକ୍ୟରେ ବ୍ରାହ୍ମଣ ଠାରେ କ୍ଷତ୍ରିୟାଦିଙ୍କର ମଧ୍ୟ ଗ୍ରାହକ ହୋଇ ପାରୁଛି ।

୪୦ । ଉପଅନ୍ଧ—ଉପକ୍ଷେପାଦି ୬୪ ପ୍ରକାର ।

୪୧ । ଉପସର୍ଜନ—ଗୌଣତା ବା ଗୁଣୀଭାବ ।

୪୨ । ଉପାଦାନ କାରଣ—ବସ୍ତୁ ଯେଉଁ ସାମଗ୍ରୀରେ ନିର୍ମିତ ହୋଇଥାଏ, ସେହି ବସ୍ତୁ ପ୍ରତି ତାହା ଉପାଦାନ କାରଣ । ଯଥା—ଘଟର ମୃତ୍ତିକା ।

୪୩ । ଉପାଦାନ ଲକ୍ଷଣା—ଅଜହତ୍ ସ୍ୱାର୍ଥ ଲକ୍ଷଣା ।

୪୪ । ଊର୍ଜସ୍ୱି—ରସାଭାସ ଗୁଣୀଭୂତ ହେଲେ "ଊର୍ଜସ୍ୱି" ନାମ ଧାରଣ କରେ ।

୪୫ । ଔପଚ୍ଛନ୍ଦସିକ ବୃତ୍ତ—ଛନ୍ଦ ବିଶେଷ ।

୪୬ । ଔପାଧିକ—ଅସ୍ଥାୟୀ

୪୭ । କଂକ—ଖଡ୍ଗ ।

୪୮ । କଥା—କାବ୍ୟର ବିଷୟବସ୍ତୁକୁ କଥା ବୋଲଯାଏ । ପୁନଶ୍ଚ ଗଦ୍ୟରେ ଲିଖିତ କଥା-କାବ୍ୟକୁ ମଧ୍ୟ କଥା କୁହାଯାଏ ।

୪୯ । କଳାପକ—ଏକ ଅନ୍ୱୟବିଶିଷ୍ଟ ଚାରିଗୋଟି ଶ୍ଳୋକ ।

୫୦ । କବନ୍ଧବନ୍ଧ ବକ୍ତୃ ପ୍ରୌଢ଼ୋକ୍ତି—କବିଙ୍କ ଦ୍ୱାରା ପରିକଳ୍ପିତ ବକ୍ତାର ଅତିଶୟୋକ୍ତି ଉକ୍ତି ।

୫୧ । କବି ପ୍ରୌଢ଼ୋକ୍ତି—କବିଙ୍କର ପ୍ରୌଢ଼ା (ଅତିଶୟୁତା) ଉକ୍ତି ।

୫୨ । କାକତାଳୀୟ—କୁଆ ବସି ପଡ଼ିବା ବେଳକୁ ପାଚିଲା ତାଳ ଖସି ପଡ଼ିଲେ, ଲୋକେ ତାଳଟିକୁ କୁଆ ପକାଇଲା ବୋଲି କହନ୍ତି । ସେହିପରି କୌଣସି କାର୍ଯ୍ୟର ସମାଧାନର ଖ୍ୟାତି କେହି ଯଦି ଅନାୟାସରେ ଗ୍ରହଣ କରେ ତାକୁ କାକ-ତାଳୀୟ ନ୍ୟାୟ ବୋଲିଯାଏ ।

୫୩ । କାକୁ—ଶୋକ, କ୍ରୋଧ, ହର୍ଷାଦି ହେତୁରୁ କଣ୍ଠର ଭିନ୍ନ ପ୍ରକାର ଧ୍ୱନିକୁ କାକୁ ବୋଲଯାଏ । ଯଥା—"ମୁଁ ପାସ୍ କରିଦେନି" ? ଅର୍ଥ—(ପାସ୍ କରିବି) ଇତ୍ୟାଦି ।

୫୪ । କାବ୍ୟ—କବିଙ୍କର ପଦ୍ୟ ଗଦ୍ୟାଦି ରଚନାକୁ କାବ୍ୟ ବୋଲିଯାଏ । ବିଶ୍ୱନାଥ କହନ୍ତି "ରସାତ୍ମକ ବାକ୍ୟ କାବ୍ୟ । "ବାକ୍ୟଂ ରସାତ୍ମକଂ କାବ୍ୟମ୍" ।

୫୫ । କୁଳକ—ଏକ ଅନ୍ୱୟବିଶିଷ୍ଟ ପାଞ୍ଚଗୋଟି ଶ୍ଳୋକର ନାମ କୁଳକ, "ପଞ୍ଚଭିଃ କୁଳକଂ ମତମ୍"

୫୬ । କୈଶିକୀ—ଚାରିଗୋଟି ବୃତ୍ତି ମଧ୍ୟରେ କୈଶିକୀ ଗୋଟିଏ ବୃତ୍ତି । ତାହା ଶୃଙ୍ଗାର ରସର ପ୍ରତିପାଦିକା । ସ୍ତ୍ରୀ ପାତ୍ର ବହୁଳ ଓ ନୃତ୍ୟ ଗୀତାଦି ଯୁକ୍ତା ।
(ବିଶେଷ ଲକ୍ଷଣ ଦର୍ପଣରେ ଦ୍ରଷ୍ଟବ୍ୟ)

୫୭ । ଖଣ୍ଡକଥା—କଥାର ଏକଦେଶ ବର୍ଣ୍ଣନାତ୍ମକ କାବ୍ୟ, ତାହା କେବଳ ପ୍ରାକୃତ ଭାଷାରେ ପ୍ରସିଦ୍ଧ ।

୫୮ । ଖଣ୍ଡିତା—ଯେଉଁ ସ୍ତ୍ରୀର ସ୍ୱାମୀ ଅନ୍ୟ ସ୍ତ୍ରୀ ସମ୍ଭୋଗ ଚିହ୍ନରେ ଚିହ୍ନିତ ହୋଇ ତାହା ନିକଟରେ ଉପସ୍ଥିତ ହୋଇଥାଏ ସେ ସ୍ତ୍ରୀ ଖଣ୍ଡିତା ।

୫୯ । ଗମକତା—ବୋଧକତା

୬୦ । ଗୁଣ—ଦେହୀର ଶୌର୍ଯ୍ୟ, ଦୟା ପ୍ରଭୃତି ଗୁଣ ପରି କାବ୍ୟରେ ଓଜ, ପ୍ରସାଦ ଓ ମାଧୁର୍ଯ୍ୟ ନାମରେ ତିନିଗୋଟି ଗୁଣ ରହନ୍ତି ।
(ଅଳଂକାର ଓ ଗୁଣ ଏ ଦୁଇଟିଯାକ ଶବ୍ଦାର୍ଥରୂପକାବ୍ୟର ଉତ୍କର୍ଷକ ହେଉଥିଲେ ମଧ୍ୟ ଦୁହିଁଙ୍କ ମଧ୍ୟରେ ପ୍ରଭେଦ ଅଛି । ଯଥା—ଅଳଂକାର ଅସ୍ଥାୟୀ ଓ ଗୁଣ ସ୍ଥାୟୀ) ।

୬୧ । ଗୁଣବୃତ୍ତି—ଲକ୍ଷଣାବୃତ୍ତି ।

୬୨ । ଗୁଣୀଭୂତ ବ୍ୟଙ୍ଗ୍ୟ—ବ୍ୟଙ୍ଗ୍ୟ ଅର୍ଥଟି ମୁଖ୍ୟ ନ ହୋଇ ଗୁଣୀଭୂତ ହୋଇଥିଲେ ତାହାକୁ ଗୁଣୀଭୂତ ବ୍ୟଙ୍ଗ୍ୟ କହନ୍ତି । ଗୁଣୀଭୂତ ବ୍ୟଙ୍ଗ୍ୟ ଆଠ ପ୍ରକାର ।
ଯଥା—ଇତରାଙ୍ଗ, କାକ୍ବାକ୍ଷିପ୍ତ, ବାଚ୍ୟସିଦ୍ଧ୍ୟଙ୍ଗ, ସଂଦିଗ୍ଧପ୍ରାଧାନ୍ୟ, ତୁଲ୍ୟପ୍ରାଧାନ୍ୟ, ଅସ୍ଫୁଟ, ଅଗୂଢ଼ ଓ ଅସୁନ୍ଦର ।

୬୩ । ଗୋତ୍ର ସ୍ଖଳନ—ନାୟକ ନାୟିକାଙ୍କ ପ୍ରଣୟ ଆଳାପ ମଧ୍ୟରେ ନାୟକ ଯଦି ନାୟିକାଠାରୁ ନାମାଦି କହିବା ବେଳେ ଅନ୍ୟ ନାୟିକାର ନାମାଦି କହିପକାଏ ତାହାକୁ ଗୋତ୍ରସ୍ଖଳନ ବୋଲଯାଏ ।

୬୪ । ଗୌଣୀ ଲକ୍ଷଣା—ସାଦୃଶ୍ୟ ମୂଳ ଲକ୍ଷଣା ।

୬୫ । ଘୋଷ—ଗଉଡ଼ ଗାଁ ।

୬୬ । ଚୃଟୁ—ନାରୀ କିମ୍ବା ରଜା ପ୍ରଭୃତିଙ୍କ ମନୋରଞ୍ଜନ ପାଇଁ (ମିଥ୍ୟାସ୍ତୁତି) ଖୋସାମତିଆ କଅଁଳ କଥାକୁ ଚୃଟୁ ବୋଲଯାଏ ।

୬୭ । ଚିତ୍ର—ଯେଉଁ ରଚନାରେ ବ୍ୟଙ୍ଗ୍ୟ ମୁଖ୍ୟଭାବେ କିମ୍ବା ଗୌଣଭାବେ ନ ଥାଏ ତାହାର ନାମ ଚିତ୍ର ।

୬୮ । ଚେତନ—ମନୁଷ୍ୟ ପ୍ରଭୃତି ।

୬୯ । ତାତ୍ପର୍ଯ୍ୟ ବୃତ୍ତି—ଅଭିହିତାନ୍ୱୟ ବାଦୀଙ୍କ ମତରେ, ଅଭିଧାବୃତ୍ତି ପଦର ଅର୍ଥ ବୁଝାଇ ବିରତ ହେବା ପରେ, ବାକ୍ୟଗତ ଭିନ୍ନ ଭିନ୍ନ ପଦମାନଙ୍କର ଅର୍ଥ ଗୁଡ଼ିକ ପରସ୍ପର ଅନ୍ୱିତ ହୋଇ ଯେଉଁ ବୃତ୍ତି ସାହାଯ୍ୟରେ ବାକ୍ୟାର୍ଥକୁ ପ୍ରକାଶ କରନ୍ତି ତାହାର ନାମ ତାତ୍ପର୍ଯ୍ୟ ବୃତ୍ତି । ତାତ୍ପର୍ଯ୍ୟାର୍ଥର ଅନ୍ୟନାମ 'ବାକ୍ୟାର୍ଥ' ।

୭୦ । ତିରସ୍କାର—ତୁଚ୍ଛୀକରଣ କିମ୍ବା ଅଧଃକରଣ ।

୭୧ । ତୁଲ୍ୟଯୋଗିତା—ଅର୍ଥାଲଂକାର ବିଶେଷ ।

୭୨ । ଦୀପକ—ଅର୍ଥାଲଂକାର ବିଶେଷ ।

୭୩ । ଦୀପ୍ତି—ଓଜଗୁଣର ଅନ୍ୟ ନାମ ଦୀପ୍ତି ।

୭୪ । ଦ୍ୟୋତକ—ବ୍ୟଞ୍ଜକ, ଅର୍ଥାତ୍ ବ୍ୟଞ୍ଜନା ବୃତ୍ତି ଦ୍ୱାରା ଅର୍ଥର ପ୍ରକାଶକ ।

୭୫ । ଧୀରୋଦାତ୍ତ—ଚତୁର୍ବିଧ ନାୟକ ମଧ୍ୟରେ ଶ୍ରେଷ୍ଠ ନାୟକ । ତାର ଲକ୍ଷଣ ଯଥା—ଆତ୍ମଶ୍ଳାଘାହୀନ, କ୍ଷମାଶୀଳ, ଦୃଢ଼ବ୍ରତ । ସ୍ଥିରମତି ମହାମନା ଧୀରୋଦାତ୍ତ । ଏହାର ଉଦାହରଣ ରାମଚନ୍ଦ୍ର, ଯୁଧିଷ୍ଠିର ଇତ୍ୟାଦି ।

୭୬ । ଧୀରୋଦ୍ଧତ—ଚତୁର୍ବିଧ ନାୟକ ମଧ୍ୟରୁ ଏକ ପ୍ରକାର ନାୟକ । ତାର ଲକ୍ଷଣ ଯଥା—ମାୟାବୀ ଚପଳ ଅହଂକାରୀ ଦର୍ପୋଦ୍ଧତ । ଆତ୍ମସ୍ତୁତି ରତତା ଜାଣ ଧୀରୋଦ୍ଧତ । ଏହାର ଉଦାହରଣ ରାବଣ, ଭୀମସେନ ପ୍ରଭୃତି ।

୭୭ । ଧ୍ୱନି—ବ୍ୟଙ୍ଗ୍ୟ ଅର୍ଥ ପ୍ରଧାନଭାବେ ରହିଥିଲେ ତାକୁ ଧ୍ୱନି ବୋଲଯାଏ ।

୭୮ । ଧ୍ୱନ୍ୟାଭାସ—ଧ୍ୱନି ପରି ଆଭାସମାନ ଅର୍ଥାତ୍ ଗୁଣୀଭୂତ ବ୍ୟଙ୍ଗ୍ୟ ।

୭୯ । ନାଟକ—ରୂପକ ବିଶେଷ । ତାହାର ଲକ୍ଷଣ ଯଥା—"ନାଟକଂ ଖ୍ୟାତ-ବୃତ୍ତଂ ସ୍ୟାତ୍ ପଞ୍ଚସନ୍ଧିସମନ୍ୱିତଂ" ଇତ୍ୟାଦି ସାହିତ୍ୟ-ଦର୍ପଣରେ ଦେଖ ।

୮୦ । ନାଟିକା—ଚାରିଅଙ୍କ ବିଶିଷ୍ଟ ଦୃଶ୍ୟ କାବ୍ୟ ବିଶେଷ ।

୮୧ । ନିଦର୍ଶନ—ଅର୍ଥାଲଂକାର ବିଶେଷ ।

୮୨ । ନିପାତନ—ଚ, ବା, ହ, ପ୍ରଭୃତି ଅବ୍ୟୟମାନଙ୍କୁ ନିପାତନ ବୋଲଯାଏ ।

୮୩ । ନିରପଭ୍ରଂଶ—ବିଶୁଦ୍ଧ (ଯାହା ଅପଭ୍ରଷ୍ଟ ହୋଇ ନାହିଁ)

୮୪ । ନିଷ୍ୟନ୍ଦ—ଠୋପା ଠୋପା ଝରିବା ।

୮୫ । ପଞ୍ଚାଗ୍ନି ତପ—ନିଜର ଚତୁର୍ଦ୍ଦିଗରେ ଅଗ୍ନି ଜାଳି ଆକାଶ ମଧ୍ୟଗତ ସୂର୍ଯ୍ୟଙ୍କୁ ଅବଲୋକନ କରି ତପସ୍ୟା କରିବା ।

୮୬ । ପରିକଥା—ଧର୍ମ, ଅର୍ଥ, କାମ, ମୋକ୍ଷ ଏହି ଚତୁର୍ବିଧ ପୁରୁଷାର୍ଥ ମଧ୍ୟରୁ ଗୋଟିକ ଉଦ୍ଦେଶ୍ୟରେ ନାନାପ୍ରକାର ବୃତ୍ତାନ୍ତ-ବର୍ଣ୍ଣନା ।

୮୭ । ପରିକର—ଅର୍ଥାଲଂକାର ବିଶେଷ ।

୮୮ । ପରିକର ଶ୍ଳୋକ—କାରିକାଗତ ଅର୍ଥର ପରିପୂରକ ଶ୍ଳୋକ । ଅର୍ଥାତ୍ ଯେଉଁ ଶ୍ଳୋକମାନଙ୍କ ଦ୍ୱାରା କାରିକାର ଅସ୍ପଷ୍ଟ ଅର୍ଥ ସୁସ୍ପଷ୍ଟ ହେଉଅଛି ଏବଂ ମୂଳକାରିକାରେ ନଥିବା ଅର୍ଥ ମଧ୍ୟ ମୂଳ-କାରିକାର ଅବବୋଧରେ ପ୍ରତିପାଦିତ ହେଉଅଛି, ସେହିପରି ଶ୍ଳୋକର ନାମ ପରିକର ଶ୍ଳୋକ ।

୮୯ । ପର୍ଯ୍ୟାୟବନ୍ଧ—ଖଣ୍ଡ କାବ୍ୟ ସ୍ୱରୂପ । ଗ୍ରନ୍ଥ ସମାପ୍ତିରେ ବସନ୍ତାଦି ଅବସ୍ଥାର ବିଷୟର ବର୍ଣ୍ଣନା ଥାଏ ।

୯୦ । ପର୍ଯ୍ୟାୟୋକ୍ତ—ଅର୍ଥାଲଂକାର ବିଶେଷ ।

୯୧ । ପ୍ରତିପ୍ରସବ—ଏକ ବାକ୍ୟରେ ନିଷିଦ୍ଧ କାର୍ଯ୍ୟକୁ ପୁନଶ୍ଚ ଅନ୍ୟ ବାକ୍ୟ ଦ୍ୱାରା ବିଧେୟ ବୋଲି ପ୍ରତିପାଦନ କରିଦେବାକୁ ପ୍ରତିପ୍ରସବ ବୋଲଯାଏ ।

୯୨ । ପ୍ରତିଭା—ନବନବୋନ୍ମେଷଶାଳିନୀ ବୁଦ୍ଧି ।

୯୩ । ପ୍ରତିଷେଧ—"ଅପ୍ରାଧାନ୍ୟଂ ବିଧେର୍ଯତ୍ର ପ୍ରତିଷେଧେ ପ୍ରଧାନତା' ପ୍ରସଜ୍ୟ ପ୍ରତିଷେଧୋଽସୌ କ୍ରିୟୟାସହ ଯତ୍ର ନଞ୍ ।" ଯେଉଁ ସ୍ଥଳରେ ବିଧିର ପ୍ରାଧାନ୍ୟ ନଥାଏ ଏବଂ ନିଷେଧର ପ୍ରାଧାନ୍ୟ ଥାଏ, ତାହାକୁ ପ୍ରତିଷେଧ ବା ପ୍ରସଜ୍ୟପ୍ରତିଷେଧ ବୋଲଯାଏ ।

ଯଥା—ଯାଚିତ ଅନ୍ନ ଖାଅ ନାହିଁ, ଭଙ୍ଗାଶିଶି ଆଣ ନାହିଁ ଇତ୍ୟାଦି । ଏସବୁ ସ୍ଥଳରେ ନିଷେଧାର୍ଥକ "ନାହିଁ" ପଦଟି କ୍ରିୟାସହିତ ସ୍ପଷ୍ଟଭାବେ ପଠିତ ହେଉଅଛି । ଯେଉଁଠି ନିଷେଧାର୍ଥକ ପଦ, କ୍ରିୟାସହିତ ନଥାଇ ସମାସ ଦ୍ୱାରା ଗୁଣୀଭୂତ ହୋଇଥାଏ, ଏବଂ ବିଧିର ପ୍ରାଧାନ୍ୟ ଥାଇ

ନିଷେଧର ପ୍ରାଧାନ୍ୟ ବ୍ୟାହତ ହୋଇଥାଏ, ତାହା ପର୍ଯ୍ୟୁଦାସ ।

ଯଥା—ଅଯାଚିତ ଅନଲଖାଅ । ଅଭଙ୍ଗାଶିଶି ଆଣ ଇତ୍ୟାଦି ।

୯୪ । ପ୍ରତୀୟମାନାର୍ଥ—ଧ୍ୱନ୍ୟମାନ ଅର୍ଥ (ବ୍ୟଙ୍ଗ୍ୟାର୍ଥ)

୯୫ । ପ୍ରବନ୍ଧ—ଗ୍ରନ୍ଥ ।

୯୬ । ପ୍ରସାଦ—କାବ୍ୟର ତିନିଗୋଟି ଗୁଣ ମଧ୍ୟରୁ ଗୋଟିଏ ଗୁଣ ।

୯୭ । ପ୍ରସ୍ତୁତ—ପ୍ରାକରଣିକ ।

୯୮ । ପ୍ରସ୍ଥାନ—ପ୍ରସିଦ୍ଧ ବସ୍ତୁ । ଯଥା—କାବ୍ୟରେ ଗୁଣାଲଂକାରାଦି ପରମ୍ପରାକ୍ରମେ ସୁପ୍ରସିଦ୍ଧ ।

୯୯ । ପ୍ରେୟ—ଦେବତା, ରାଜା ପ୍ରଭୃତିଙ୍କ ବିଷୟରେ ଯେଉଁ ଭାବ, ସେ ଭାବ ଅନ୍ୟ ରସାଦିଙ୍କ ଦ୍ୱାରା ଗୁଣୀଭୂତ ହେଲେ, ପ୍ରେୟ ଅଲଂକାର ଆଖ୍ୟା ଧାରଣ କରନ୍ତି ।

୧୦୦ । ପ୍ରୋଷିତଭର୍ତ୍ତୃକା—ଯେଉଁ ସ୍ତ୍ରୀର ସ୍ୱାମୀ ପ୍ରବାସଗାମୀ ହୋଇଥାଏ ସେ ସ୍ତ୍ରୀର ନାମ ପ୍ରୋଷିତଭର୍ତ୍ତୃକା ।

୧୦୧ । ପ୍ରୌଢ଼ବାଦ—ପ୍ରୌଢ଼ (ପୋଖତ) ଲୋକ ଯେପରି ବାଦୀକୁ ବୁଝାଇ ସୁଝାଇ ନିଜ ମତରେ ପରିଗୃହୀତ କରେ, ସେହିପରି ପ୍ରଥମେ ବାଦୀର ମତକୁ ଗ୍ରହଣ କରି ଖଣ୍ଡନ କରିବାକୁ ପ୍ରୌଢ଼ବାଦ ବୋଲଯାଏ ।

୧୦୨ । ଭକ୍ତି—ଲକ୍ଷଣାବୃତ୍ତି ।

୧୦୩ । ଭାକ୍ତ—ଲାକ୍ଷଣିକ ।

୧୦୪ । ଭୂମିକା—ନିଅଁ, ପକାଘର, ଦେଉଳ ପ୍ରଭୃତି ତୋଳିବା ପୂର୍ବରୁ ଭୂମି ଭିତରେ ଯେଉଁ କାନ୍ଥ ଗଢ଼ାଯାଇଥାଏ, ତାହାର ନାମ ଭୂମିକା । ଉକ୍ତ ଭୂମିକା, ଘରକୁ ଧାରଣ କରି ରହିଥାଏ ।

୧୦୫ । ମହାକାବ୍ୟ—ମହାକାବ୍ୟ ସର୍ବଦା ପଦ୍ୟାତ୍ମକ ସୁବୃହତ୍ କବିତା । ତହିଁରେ ବନ ଋତୁ, ପର୍ବତାଦି ବିବିଧ ବସ୍ତୁର ବର୍ଣ୍ଣନା ମଧ୍ୟ ପ୍ରାସଙ୍ଗିକ ଭାବେ ରହିଥାଏ । ସଂସ୍କୃତରେ ରାମାୟଣ, ଶିଶୁପାଳବଧ ପ୍ରଭୃତି ଓଡ଼ିଶାରେ ବୈଦେହୀଶ ବିଳାସ, ଲାବଣ୍ୟବତୀ ପ୍ରଭୃତି ମହାକାବ୍ୟ । ମହାକାବ୍ୟର ଲକ୍ଷଣ ସାହିତ୍ୟ ଦର୍ପଣରେ ଦ୍ରଷ୍ଟବ୍ୟ ।

୧୦୬ । ମାଧୁର୍ଯ୍ୟ—କାବ୍ୟର ତିନିଗୋଟି ଗୁଣ ମଧ୍ୟରୁ ଗୋଟିଏ ଗୁଣ ।

୧୦୭ । ମାଳୋପମା—ଅର୍ଥାଲଂକାର ବିଶେଷ ।

୧୦୮ । ମୁକ୍ତକ—ପୂର୍ବାପର ନିରପେକ୍ଷ ଗୋଟିକିଆ ଶ୍ଳୋକ ।

୧୦୯ । ଯଥାସଂଖ୍ୟ—ଅଲଂକାର ବିଶେଷ ।

୧୧୦ । ଯମକ—ଶବ୍ଦାଲଂକାର ବିଶେଷ ।

୧୧୧ । ରସ—ବିଭାବ, ଅନୁଭାବ, ବ୍ୟଭିଚାରିଭାବମାନଙ୍କ ସଂଯୋଗରେ ସରବତ୍ ତିଆରି ନ୍ୟାୟରେ ରସ, ସୃଷ୍ଟ ନିର୍ମିତ ହୁଏ । ଉକ୍ତ ରସ କାବ୍ୟ ନାଟକ ଶ୍ରବଣ ଦର୍ଶନ ଦ୍ୱାରା ସହୃଦୟମାନଙ୍କ ହୃଦୟରେ ପ୍ରକାଶ ପାଏ । ସେ ସ୍ୱ-ପ୍ରକାଶ ଅଟେ । ରସାନୁଭବ ସମୟରେ ଅନ୍ୟ ଅନୁଭବ ହୋଇ ପାରେ ନାହିଁ । ଯେଉଁମାନଙ୍କର କାବ୍ୟ ନାଟକାଦିର ଶ୍ରବଣ ଦର୍ଶନ ଦଶାରେ ଅର୍ଥଚିନ୍ତା ବା ଅଳଂକାର ଚିନ୍ତା କିମ୍ବା ନର୍ତ୍ତକମାନଙ୍କର ଅଙ୍ଗଭଙ୍ଗୀ ଚିନ୍ତା ଥାଏ, ସେମାନେ ରସାସ୍ୱାଦ କରନ୍ତି ନାହାନ୍ତି ବୋଲି ବୁଝିବାକୁ ହେବ । କାରଣ ରସାସ୍ୱାଦ ଦଶାରେ ତଦ୍‌ଭିନ୍ନ ଅନ୍ୟ ଅନୁଭୂତ ହୋଇ ନ ପାରେ । ଏଣୁ ସାହିତ୍ୟ ଦର୍ପଣକାର ବିଶ୍ୱନାଥ ରସାସ୍ୱାଦକୁ ବ୍ରହ୍ମାସ୍ୱାଦ ସହୋଦର ବୋଲି ଲେଖିଅଛନ୍ତି । ଉକ୍ତରସ ୯ ପ୍ରକାର ଯଥା—ଶୃଙ୍ଗାର, ବୀର, କରୁଣ, ଅଦ୍‌ଭୁତ, ହାସ୍ୟ, ଭୟାନକ, ବୀଭତ୍ସ, ରୌଦ୍ର ଓ ଶାନ୍ତ । କାହାରି କାହାରି ମତରେ ବାତ୍ସଲ୍ୟ ମଧ୍ୟ ଗୋଟିଏ ରସ ।

୧୧୨ । ରସବଦଲଂକାର—ଉକ୍ତ ଶୃଙ୍ଗାରାଦି ରସମାନେ ଗୁଣୀଭୂତ ହେଲେ ରସବଦଲଂକାର ନାମ ଧାରଣ କରନ୍ତି ।

୧୧୩ । ରସାଦି—ରସାଦି କହିଲେ ରସ, ଭାବ, ରସାଭାସ, ଭାବାଭାସ, ଭାବସନ୍ଧି ଓ ଭାବଶବଳତାମାନଙ୍କୁ ବୁଝିବାକୁ ହେବ ।

୧୧୪ । ରୀତି—ଶରୀରର ଅଙ୍ଗ ଯୋଜନା ପରି କାବ୍ୟର ଶବ୍ଦ ଯୋଜନାକୁ ରୀତି ବୋଲାଯାଏ । ତାହା ପ୍ରକାର—୧ ଗୌଡ଼ୀ, ୨ ବୈଦର୍ଭୀ, ୩ ପାଞ୍ଚାଳୀ ।

୧୧୫ । ରୂପକ—ଅର୍ଥାଲଂକାର ବିଶେଷ ।

୧୧୬ । ଲକ୍ଷଣ - ସ୍ୱରୂପ, ଯେଉଁ ବାକ୍ୟ ଦ୍ୱାରା ବସ୍ତୁର ସ୍ୱରୂପ ଜ୍ଞାନ ହୁଏ, ତାହାକୁ ମଧ୍ୟ ଲକ୍ଷଣ କହନ୍ତି । ଯଥା—"ଗନ୍ଧବତୀ ପୃଥିବୀ" ଏହା ପୃଥିବୀର ଲକ୍ଷଣ ।

୧୧୭ । ଲକ୍ଷଣକାର—ଗ୍ରନ୍ଥକାର ।

୧୧୮ । ଲକ୍ଷଣ ଲକ୍ଷଣା ଜହତ୍ସ୍ୱାର୍ଥ ଲକ୍ଷଣା ।

୧୧୯ । ଲକ୍ଷଣା—ଅଭିଧେୟାର୍ଥ ବାଧିତ ହେଲେ ଲକ୍ଷଣା ପ୍ରବର୍ତ୍ତେ । ଏହି ଲକ୍ଷଣା ରୂଢ଼ି ବା ପ୍ରୟୋଜନ ହେତୁରୁ ଅଭିଧେୟ ଅର୍ଥର ସମ୍ବନ୍ଧୀ ଅନ୍ୟ ଏକ ଅର୍ଥକୁ ବୁଝାଇଥାଏ । ଯଥା— "ଚକ୍ଷୁ ଆ" ବାକ୍ୟରେ ଶକ୍ଷାର ଆଗମନ ଶକ୍ୟ ନ ଥିବାରୁ ମୁଖ୍ୟାର୍ଥଟି ବାଧିତ ହେଲା । ତେଣୁ ସେଠାରେ ଲକ୍ଷଣା ପ୍ରବର୍ତ୍ତିଲା । ଲକ୍ଷଣା ଏଠାରେ ଶକ୍ଷା ଶବ୍ଦର ଯାନ ବିଶେଷ-ରୂପକ ମୁଖ୍ୟାର୍ଥ ସହିତ ବାହ୍ୟ ବାହକ ସମ୍ବନ୍ଧରେ ସମ୍ବନ୍ଧୀ, ଶକ୍ଷାବାହକ ରୂପକ ଅର୍ଥକୁ ବୁଝାଇଲା । ଶକ୍ଷାବାହକ ଅର୍ଥରେ ଶକ୍ଷା ଶବ୍ଦକୁ ପ୍ରୟୋଗ କରିବା ପରମ୍ପରା କ୍ରମେ ପ୍ରସିଦ୍ଧ ହୋଇଥିବାରୁ ଏହା ରୂଢ଼ିମୂଳା ଲକ୍ଷଣା ।

୧୨୦ ଲକ୍ଷ୍ୟ—ଲକ୍ଷଣା ବୃତ୍ତି ଦ୍ୱାରା ବୋଧ୍ୟ ଅର୍ଥ ।

୧୨୧ । ଲଳିତ—ଉପନାଗରିକା ବୃତ୍ତିର ନାମାନ୍ତର ।

୧୨୨ । ଲାକ୍ଷଣିକ—ଲକ୍ଷଣା ସମ୍ବନ୍ଧୀ ।

୧୨୩ । ଲକ୍ଷିତ ପାଠକ—ଯେଉଁମାନେ ଲେଖା ଯାଇଥିବା ପୁସ୍ତକ ମାନକୁ ପଢ଼ି ପାରନ୍ତି ଓ ଗ୍ରନ୍ଥ ମୁଖସ୍ଥ କରି ନଥାନ୍ତି କିମ୍ବା ଅର୍ଥ ଗ୍ରହଣ କରି ନଥାନ୍ତି । ସେମାନଙ୍କୁ ଲକ୍ଷିତ ପାଠକ କୁହାଯାଏ ।

୧୨୪ । ଲିଙ୍ଗ—ହେତୁ, ଯଥା ବହ୍ନିର ଅନୁମାନ ପାଇଁ ଧୂମ ।

୧୨୫ । ଲିଙ୍ଗତ୍ୱ—ହେତୁତା ।

୧୨୬ । ଲିଙ୍ଗୀ—ହେତୁମାନ୍, ଯଥା—ଧୂମରୂପ ଲିଙ୍ଗର ଲିଙ୍ଗୀ ହେଉଛି ବହ୍ନି

୧୨୭ । ବାଗ୍‌ବିକଳ୍ପ—ଅଭିଧା ବ୍ୟାପାରର ସ୍ୱଗତ ପ୍ରଭେଦ ।

୧୨୮ । ବାଚକ—ଅଭିଧେୟ ଅର୍ଥର ବୋଧକ ଶବ୍ଦ ।

୧୨୯ । ବାଚକ ଗୁରୁତ୍ୱ ହେତୁ—ଶବ୍ଦାଳଂକାର ।

୧୩୦ । ବାଚକତା—ଅଭିଧା ବୃତ୍ତି ।

୧୩୧ । ବାଚ୍ୟ—ଅଭିଧା ବୃତ୍ତି ଦ୍ୱାରା ବୁଝାଯାଉଥିବା ଅର୍ଥ ।

୧୩୨ । ବାଚ୍ୟ ଗୁରୁତ୍ୱ ହେତୁ—ଅର୍ଥାଳଂକାର (ଉପମା ପ୍ରଭୃତି) ।

୧୩୩ । ବାଚ୍ୟ ସିଦ୍ଧ୍ୟଙ୍ଗ—ଗୁଣୀଭୂତ ବ୍ୟଙ୍ଗ୍ୟର ଗୋଟିଏ ପ୍ରକାର ।

୧୩୪ । ବିଧି—ଯାହା ପୂର୍ବରୁ ବିହିତ ହୋଇ ନଥାଏ । ନୂତନ ଭାବରେ ବିଧାନ କରାଯାଏ । ତାହା ବିଧି । ଯଥା—ଯାଅ, ଖାଅ ଇତ୍ୟାଦି ।

୧୩୫ । ବିପ୍ରଲମ୍ଭ—ଶୃଙ୍ଗାର ରସ, ସମ୍ଭୋଗ ଓ ବିପ୍ରଲମ୍ଭ ଭେଦରେ ଦୁଇ ପ୍ରକାର, ତନ୍ମଧ୍ୟରେ ସମ୍ଭୋଗ ଏକ ପ୍ରକାର ଓ ବିପ୍ରଲମ୍ଭ ପ୍ରବାସ, ମାନ, କରୁଣ ଓ ପୂର୍ବରାଗ ଭେଦରେ ୪ ପ୍ରକାର ବୋଲି ବିଶ୍ୱନାଥଙ୍କର ମତ ।

୧୩୬ । ବିବକ୍ଷା—ବକ୍ତାଙ୍କର ଇଚ୍ଛା ।

୧୩୭ । ବିବକ୍ଷିତାନ୍ୟପର ବାଚ୍ୟ—ଅଭିଧା ମୂଳ ଧ୍ୱନି । ଯେଉଁଠି ବାଚ୍ୟ ଅର୍ଥଟି ବ୍ୟଙ୍ଗ୍ୟପର ହୁଏ ।

୧୩୮ । ବିଭାବ—ରତିହାସାଦି ସ୍ଥାୟୀ ଭାବଗୁଡ଼ିକର ଉଦ୍‌ବୋଧ କାରଣକୁ ବିଭାବ ବୋଲଯାଏ । ଏହି ବିଭାବ ଦୁଇ ପ୍ରକାର ଯଥା—ଆଲମ୍ବନ ବିଭାବ ଓ ଉଦ୍ଦୀପନ ବିଭାବ ।

ଆଲମ୍ବନ ବିଭାବ ଯଥା—ଶୃଙ୍ଗାରରେ ନାୟକ ଓ ନାୟିକା । ବୀରରେ ପକ୍ଷ ପ୍ରତିପକ୍ଷ । ଏହିପରି ଆନ୍ୟ ରସରେ ।

୧୩୯ । ଉଦ୍ଦୀପନ ବିଭାବ—ଯାହା ଦ୍ୱାରା ରସ ଉଦ୍ଦୀପିତ ହୁଏ । ଯଥା—ଶୃଙ୍ଗାରରେ ଚନ୍ଦ୍ର, ଚନ୍ଦନ, ଭ୍ରମରାଦି ।

୧୪୦ । ବିଶେଷକ—ଏକ ଅନ୍ୱୟବିଶିଷ୍ଟ ତିନିଗୋଟି ଶ୍ଳୋକ ।

୧୪୧ । ବିଶେଷୋକ୍ତି—ଅର୍ଥାଳଂକାର ବିଶେଷ ।

୧୪୨ । ବୃତ୍ତି—ବିଶ୍ୱନାଥଙ୍କ ମତରେ କୌଶିକୀ, ସାତ୍ତ୍ୱତୀ, ଆରଭଟୀ ଓ ଭାରତୀ ନାମରେ ଚାରିଗୋଟି ବୃତ୍ତି ତାହା ସର୍ବବିଧ ନାଟ୍ୟ କାବ୍ୟର ମାତୃକା ।

୧୪୩ । ବ୍ୟଞ୍ଜକ—ବ୍ୟଞ୍ଜନାବୃତ୍ତି ଦ୍ୱାରା ଅର୍ଥ ପ୍ରକାଶକ ଶବ୍ଦ ।

୧୪୪ । ବ୍ୟଞ୍ଜକତା—ବ୍ୟଞ୍ଜନା ।

୧୪୫ । ବ୍ୟଞ୍ଜନା—ବ୍ୟଞ୍ଜନା ବୃତ୍ତି ଅଭିଧା ଲକ୍ଷଣା ଓ ତାତ୍ପର୍ଯ୍ୟାବୃତ୍ତିରୁ ବିଲକ୍ଷଣ ବୃତ୍ତି ବିଶେଷ ।

୧୪୬ । ବ୍ୟତିରେକ—ଅର୍ଥାଳଂକାର ବିଶେଷ ।

୧୪୭ । ବ୍ୟତିରେକ ଦୃଷ୍ଟାନ୍ତ—ବର୍ଣ୍ଣନୀୟ ବସ୍ତୁର ଅଭାବ ବିଷୟଙ୍କ ଦୃଷ୍ଟାନ୍ତ ଯଥା—କାରଣ ନଥିବା ସ୍ଥଳେ କାର୍ଯ୍ୟ ନ ରହିବା । (ତଦସତ୍ତ୍ୱେ ତଦସତ୍ତ୍ୱା)

୧୪୮ । ବ୍ୟଭିଚାର—ଯେଉଁ ଲକ୍ଷଣରେ ଅତିବ୍ୟାପ୍ତି, ଅବ୍ୟାପ୍ତି କିମ୍ବା ଅସମ୍ଭବ ଏହି ତିନି ଦୋଷ ମଧ୍ୟରୁ ଗୋଟିଏ ଦୋଷ ଦେଖାଯାଏ । ସେହି ଲକ୍ଷଣର ବ୍ୟଭିଚାର ଘଟିଲା ବୋଲି କୁହାଯାଏ । ବ୍ୟଭିଚାରର ଅର୍ଥ ଅଶୁଦ୍ଧି ।

୧୪୯ । ବ୍ୟଭିଚାରି ଭାବ—ରତ୍ୟାଦି ସ୍ଥିର (ସ୍ଥାୟୀ) ଭାବମାନଙ୍କ ସଙ୍ଗରେ ଅସ୍ଥିରଭାବେ ଯେଉଁ ଭାବଗୁଡ଼ିକ ରହନ୍ତି ସେମାନଙ୍କୁ ବ୍ୟଭିଚାରୀ ଭାବ ବୋଲାଯାଏ । ତାହା ୩୩ ପ୍ରକାର, ଯଥା—ସାହିତ୍ୟଦର୍ପଣ ଶ୍ଳୋକ—

ନିର୍ବେଦାବେଗଦୈନ୍ୟ ଶ୍ରମମଦଜଡ଼ତାଔଗ୍ର୍ୟମୋହୌ ବିବୋଧଃ,
ସ୍ୱପ୍ନାପସ୍ମାରଗର୍ବାମରଣମଲସତାମର୍ଷନିଦ୍ରାଽବହିତ୍ଥାଃ ।
ଔତ୍ସୁକ୍ୟୋନ୍ମାଦଶଙ୍କାଃ ସ୍ମୃତିମତିସହିତାବ୍ୟାଧିସନ୍ତ୍ରାସଲଜ୍ଜା,
ହର୍ଷାସୂୟାବିଷାଦାଃ ସଧୃତିଚପଲତା ଗ୍ଳାନିଚିନ୍ତାବିତର୍କାଃ । ଇତି ।

ନିର୍ବେଦ, ଆବେଗ, ଦୈନ୍ୟ, ଶ୍ରମ, ମଦ, ଜଡ଼ତା, ଉଗ୍ରତା, ମୋହ, ବିବୋଧ, ସ୍ୱପ୍ନ, ଅପସ୍ମାର, ଗର୍ବ, ମରଣ, ଆଲସ୍ୟ, ଅମର୍ଷ, ନିଦ୍ରା, ଅବହିତ୍ଥା, ଔତ୍ସୁକ୍ୟ, ଉନ୍ମାଦ, ଶଙ୍କା, ସ୍ମୃତି, ମତି, ବ୍ୟାଧି, ତ୍ରାସ, ଲଜ୍ଜା, ହର୍ଷ, ଅସୂୟା, ବିଷାଦ, ଧୃତି, ଚପଳତା, ଗ୍ଳାନି ଚିନ୍ତା ଓ ବିତର୍କ ।

୧୫୦ । ବୀଜସ୍ତୁତି—ଅର୍ଥାଳଂକାର ବିଶେଷ ।

୧୫୧ । ଶକ୍ତି—ଶବ୍ଦର ଅଭିଧେୟାର୍ଥ ପ୍ରକାଶ ସାମର୍ଥ୍ୟ ।

୧୫୨ । ଶକ୍ତିଗ୍ରହ—କେଉଁ ଶବ୍ଦର କେଉଁ ଅର୍ଥ ପ୍ରକାଶ ପାଇଁ ଶକ୍ତି ଅଛି ତାହା ଜାଣିବା । ଶକ୍ତି ଜ୍ଞାନ ସମ୍ବନ୍ଧେ ଗୋଟିଏ ଶ୍ଳୋକ, ଯଥା—

ଶକ୍ତିଗ୍ରହୋ ବ୍ୟାକରଣୋପମାନ କୋଷାପ୍ତବାକ୍ୟାଦ୍‌ବ୍ୟବହାରତଶ୍ଚ,
ବାକ୍ୟସ୍ୟ ଶେଷାଦ୍ ବିବୃତେର୍ବଦନ୍ତି ସାନ୍ନିଧ୍ୟତଃ ସିଦ୍ଧପଦସ୍ୟ ବିଜ୍ଞାଃ ।

୧୫୩ । ଶଠନାୟକ—ଯେଉଁ ନାୟକ ଉଭୟ ସ୍ତ୍ରୀଙ୍କଠାରେ ବାହାରେ ସମାନ ଅନୁରାଗ ଦେଖାଇ ଭିତରେ ଗୋଟିକଠାରେ ଗାଢ଼ ଅନୁରାଗ ରଖି ଅନ୍ୟଟିର ଅପ୍ରିୟ ସଂପାଦନ କରୁଥାଏ ସେ ଶଠ ନାୟକ ।

୧୫୪ । ଶୁଦ୍ଧାଲକ୍ଷଣା—ଯେଉଁ ଲକ୍ଷଣାରେ ସାଦୃଶ୍ୟ ସମ୍ବନ୍ଧ ନଥାଏ ।

୧୫୫ । ଶ୍ରୁତି—ଶ୍ରୁତି ସଙ୍ଗୀତ ଶାସ୍ତ୍ର ପ୍ରସିଦ୍ଧ । ତାହା ୨୨ ପ୍ରକାର—

୧୫୬ । ଶ୍ରୁତିଦୁଷ୍ଟ—ଶ୍ରୁତିକଟୁ ଦୋଷଯୁକ୍ତ ।

୧୫୭ । ଶ୍ଳେଷ—ଅଳଂକାର ବିଶେଷ ।

୧୫୮ । ସକଳକଥା—ଯହିଁରେ ଫଳପର୍ଯ୍ୟନ୍ତ ଯାଇଥିବା ବୃତ୍ତାନ୍ତର ବର୍ଣ୍ଣନା କରାଯାଇଥାଏ । ତାହା କେବଳ ପ୍ରାକୃତ ଭାଷାରେ ପ୍ରସିଦ୍ଧ ।

୧୫୯ । ସମୟ—ସଂକେତ ଏବଂ ଚୁକ୍ତି ।

୧୬୦ । ସହୃଦୟ—ସାମାଜିକ ।

୧୬୧ । ସତ୍ତ୍ୱ—ଜାତି ବିଶେଷ (ଯେ କି ଦ୍ରବ୍ୟ, ଗୁଣ ଓ କର୍ମ, ଏହି ତିନି ଗୋଟିରେ ରହେ) ।

୧୬୨ । ସଦ୍ଧେତୁ—ଯେଉଁ ହେତୁ ହେତୁମାନ୍‌ରେ ନିୟତ ଭାବେ ରହିଥାଏ । ଯଥା—ଧୂମ ବହ୍ନି ଭିନ୍ନ ଅନ୍ୟତ୍ର କଦାପି ନଥାଏ । ତେଣୁ ଏଠାରେ ଧୂମହେତୁ ଓ ବହ୍ନି ହେତୁମାନ୍ । (ବ୍ୟାପ୍ତି-ପକ୍ଷ ଧର୍ମତାବତ୍ତ୍ୱମ୍ ସଦ୍ଧେତୁତ୍ୱମ୍) ।

୧୬୩ । ସଞ୍ଚାର ଭାବ—ବ୍ୟଭିଚାରି ଭାବ ।

୧୬୪ । ସଞ୍ଚାର ରସ—ଅନ୍ୟ ଅଙ୍ଗୀରସର ପୋଷକ ଭାବେ ରହିଥିବା ରସ ।

୧୬୫ । ସନ୍ଦାନିତକ—ଯୁଗ୍ମକ (ଏକାନ୍ୱୟ ବିଶିଷ୍ଟ ଶ୍ଳୋକଦ୍ୱୟ) ।

୧୬୬ । ସନ୍ଦେହ—ଅର୍ଥାଳଂକାର ବିଶେଷ ।

୧୬୭ । ସନ୍ଧି—ଦୁଇ ଭାବର ସନ୍ଧି ।

୧୬୮ । ସନ୍ଧି—ନାଟକମାନଙ୍କରେ ମୁଖ, ପ୍ରତିମୁଖ, ଗର୍ଭ, ବିମର୍ଶ ଓ ଉପ-ସଂହାର ନାମରେ ୫ ଗୋଟି ସନ୍ଧି ଥାଏ ।

(ଏମାନଙ୍କର ବିଶେଷ ବିବରଣ ସାହିତ୍ୟ ଦର୍ପଣରେ ଅଛି)

୧୬୯ । ସମାସୋକ୍ତି—ଅର୍ଥାଳଂକାର ବିଶେଷ ।

୧୭୦ । ସମ୍ବାଦ—ଦୁଇ ବସ୍ତୁ ଏକାଭଳି ହେବା । ଯଥା—ଦୁଇଟି ଅକ୍ଷର ଏକ ଆକୃତି ବିଶିଷ୍ଟ ହେବା କିମ୍ବା ଦୁଇଟି ରଚନା ଏକ ପ୍ରକାର ହେବା ଇତ୍ୟାଦି ।

୧୭୧ । ସର୍ଗବନ୍ଧ—ମହାକାବ୍ୟ ।

୧୭୨ । ସାରୋପା—ଯେଉଁ ଲକ୍ଷଣା ସ୍ଥଳରେ ଉପମାନ ଓ ଉପମେୟ ଦୁହେଁ ରହିଥାନ୍ତି ଏବଂ ଉପମେୟ ଉପରେ ଉପମାନର ଆରୋପ ହୋଇଥାଏ । ଏହା ରୂପକ ଅଳଂକାରର ସ୍ଥଳ ।

୧୭୩ । ସାଧ୍ୟବସାନା—ଯେଉଁଠି ଉପମାନ କେବଳ ଉକ୍ତ ହୋଇଥାଏ କିନ୍ତୁ ଉପମେୟର ଉକ୍ତି ନଥାଏ, ସେ ସ୍ଥଳ । ଏହା ଅତି-ଶୟୋକ୍ତି ଅଳଂକାରର ସ୍ଥଳ ।

୧୭୪ । ସଂଘଟ୍ଟନା—ରଚନା, ବା ଗଢ଼ ।

୧୭୫ । ସଂକର— } ଅଳଂକାର ବିଶେଷ ।
୧୭୬ । ସଂସୃଷ୍ଟି— }

୧୭୭ । ସ୍ଥାୟୀଭାବ—ରତି ହାସ, ଶୋକ, କ୍ରୋଧ, ଉତ୍ସାହ, ଭୟ, ଜୁଗୁପ୍ସା ଓ ବିସ୍ମୟ ଏହି ଆଠଗୋଟି ସ୍ଥାୟୀଭାବ । ଏମାନେ ଯଥାକ୍ରମେ ଶୃଙ୍ଗାର ହାସ୍ୟ, କରୁଣ, ରୌଦ୍ର, ବୀର, ଭୟାନକ, ବୀଭତ୍ସ ଓ ଅଦ୍ଭୁତ ରସର ସ୍ଥାୟୀଭାବ । ଯେଉଁମାନଙ୍କ ମତରେ ଶାନ୍ତ ନବମ ରସ । ତାଙ୍କ ମତରେ ନିର୍ବେଦ ମଧ୍ୟ ଶାନ୍ତ ରସର ସ୍ଥାୟୀଭାବ ହିସାବରେ ଗୋଟିଏ ସ୍ଥାୟୀଭାବ । ଉକ୍ତ ରତ୍ୟାଦି ଶୃଙ୍ଗାରାଦିରେ ନିୟତଭାବେ ରହୁଥିବାରୁ ସ୍ଥାୟୀ ।

୧୭୮ । ସ୍ୱର—ସ୍ୱର ସାତ ପ୍ରକାର ଯଥା—ଷଡ଼୍‌ଜ, ଋଷଭ, ଗାନ୍ଧାର, ମଧ୍ୟମ, ପଞ୍ଚମ ଧୈବତନିଷାଦ ।

ଶ୍ରୀ କୁଳମଣି ମିଶ୍ର ଶର୍ମ୍ମା



Printed at the Orissa Mission Press, Cuttack-1,
by Sri P. K. Pradhan.